# ସୃଜନଧାରା

## ଓଡ଼ିଆ ସାହିତ୍ୟ ର ସାଧକ ଓ ସାଧନା

(ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ)



ପ୍ରଫେସର ଡ଼କ୍ଟର ସୁବାଷ ନାୟକ

# ସୃଜନଧାରା

## ଓଡିଆ ସାହିତ୍ୟ ର ସାଧକ ଓ ସାଧନା

### (ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ)

ପ୍ରଫେସର ଡକ୍ଟର ସୁବାଷ ନାୟକ



# ଉତ୍ସର୍ଗ



**ମୋ ଗୁରୁ ଡକ୍ଟର ନୃସିଂହ ଚରଣ ମିଶ୍ରଙ୍କୁ**

ଯାହାଙ୍କ ପ୍ରେରଣାରେ ମୁଁ ଓଡିଆ ଭାଷା ଓ ସାହିତ୍ୟ ର ଜଣେ ଅଧ୍ୟାପକ, ସାହିତ୍ୟିକ ଓ ଗବେଷକ ହୋଇପାରିଅଛି - ସେ ହେଉଛନ୍ତି ମୋର ପୂଜ୍ୟ ଗୁରୁ - ଓଡିଆ ଭାଷା ଓ ସାହିତ୍ୟ ର ପ୍ରାଧ୍ୟାପକ ଡକ୍ଟର ନୃସିଂହ ଚରଣ ମିଶ୍ର (ପ୍ରାକ୍ତନ୍ ପ୍ରିନିସ୍‌ପାଲ - ବାଜିରାଉତ ମେମୋରିଆଲ କଲେଜ, ଭୁବନ) ମୋର ଓଡିଆରେ ସ୍ନାତକ ପରେ ସେ ହିଁ ମୋତେ ପ୍ରେରଣା ଦେଇଥିଲେ - ଓଡିଆ ସାହିତ୍ୟରେ ସ୍ନାତକୋତର (ଏମ୍.ଏ.) କରିବାପାଇଁ । ଏମ୍.ଏ. ରେ ମଧ୍ୟ ଘରୋଇ ଭାବରେ ସେ ମୋତେ ପାଠ ପଢାଇଛନ୍ତି ।

ଗୁରୁଙ୍କ ଋଣ ଜୀବନରେ ସୁଝିହୁଏ ନାହିଁ, ମାତ୍ର ଜଣେ ସଫଳ ଛାତ୍ର ଭାବରେ ଏ ପୁସ୍ତିକା - "ସୃଜନଧାରା" - ଓଡିଆ ସାହିତ୍ୟ ର ସାଧକ ଓ ସାଧନା - (ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ) କୁ ଗୁରୁ ପ୍ରାଧ୍ୟାପକ ଡକ୍ଟର ମିଶ୍ରଙ୍କୁ ଉତ୍ସର୍ଗକରି କିଛିମାତ୍ରାରେ ପ୍ରଫୁଲ୍ଲିତ ହୋଇପାରିଅଛି ।

ମହାପ୍ରଭୁ ଜଗନ୍ନାଥ ଙ୍କୁ ପ୍ରାର୍ଥନା ତାଙ୍କ ଅବସର ଜୀବନ ସୁଖମୟ ହେଉ ଓ ତାଙ୍କ ଆଶୀର୍ବାଦ ମୋର ମୁଣ୍ଡ ଉପରେ ରହିଥାଉ ।

**ଗୁଣମୁଗ୍ଧ ସାହିତ୍ୟସେବକ**

**(ପ୍ରଫେସର ଡକ୍ଟର ସୁବାଷ ନାୟକ)**



## ପ୍ରାବନ୍ଧିକ ଙ୍କ କଲମରୁ .....

ଓଡ଼ିଶା, ଓଡ଼ିଆ ଜାତି, ଭାଷାର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥ । ସୁଦୀର୍ଘ ଅଢେଇ ହଜାର ବର୍ଷର ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗୌରବର କଥା । ଓଡ଼ିଆ ଏକ ଜାତି ପ୍ରାଣର ସ୍ପନ୍ଦନ, ଏ ଜାତି ଭାରତୀୟ ମୁକ୍ତି ସଂଗ୍ରାମର ସାରଥି । ଭାଷା ଓ ଜାତି ପରସ୍ପର ପରିପୂରକ । ମଣିଷ ସଭ୍ୟତାର ବିକାଶରେ ଭାଷାର ଭୂମିକା କୁ ଅଣଦେଖା କରାଯାଇପାରିବ ନାହିଁ । ମଣିଷ-ମଣିଷ ମଧ୍ୟରେ ସମ୍ପର୍କର ସେତୁ ଭାଷା, ଯେଉଁ ଭାଷା ଯେତେ ସମୃଦ୍ଧ ସେ ଜାତି ସେତିକି ବଳିଆନ୍ ।

ଆମ ମାତୃଭାଷା ଓଡ଼ିଆ । ଓଡ଼ିଆ ସାହିତ୍ୟ ଏକ ମହାସମୁଦ୍ର ହେଲେ ମୁଁ ବିନ୍ଦୁ ଭଳି ଜଣେ ସାହିତ୍ୟିକଟିଏ । ନିଜ ମାତୃଭାଷା ଓଡ଼ିଆ ସାହିତ୍ୟ ର ସେବକ । ମୋର ଏ ସାରସ୍ୱତ ସମ୍ଭାର - "ସୃଜନଧାରା" - ଓଡ଼ିଆ ସାହିତ୍ୟ ର ସାଧକ ଓ ସାଧନା - (ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ), ଏଥିରେ ଓଡ଼ିଆ ସାହିତ୍ୟ ର ଆଧୁନିକ ଓ ଉତର ଆଧୁନିକତାର ସମଷ୍ଟିରେ କୋଡ଼ିଏ ଜଣ ସାହିତ୍ୟିକ ଙ୍କ ଜୀବନୀ ଓ ସୃଜନୀକୁ ନେଇ ଏ କୃତି ।

ଯେଉଁମାନେ ଏ ପୁସ୍ତିକାଟି ଶିର ମଣ୍ଡନ କରିଅଛନ୍ତି - ସେହି ସାହିତ୍ୟିକଗଣ ହେଲେ - ଦେବୀପ୍ରସନ୍ନ ପଟ୍ଟନାୟକ, ବୈଷ୍ଣବଚରଣ ସାମଲ, ରାମଚନ୍ଦ୍ର ବେହେରା, ହରପ୍ରସାଦ ଦାସ, ନୀଳାଦ୍ରିଭୂଷଣ ହରିଶ୍ଚନ୍ଦନ, ଆଦିକନ୍ଦ ସାହୁ, ତରୁଣକାନ୍ତି ମିଶ୍ର, ଧନେଶ୍ୱର ସାହୁ, ଅନ୍ତର୍ଯ୍ୟାମୀ ମିଶ୍ର, ବାଉରୀବନ୍ଧୁ କର, ନୃସିଂହଚରଣ ଷଡ଼ଙ୍ଗୀ, ବିଷ୍ଣୁ ସାହୁ, ଉଦୟନାଥ ସାହୁ, କୃଷ୍ଣଚନ୍ଦ୍ର ପ୍ରଧାନ, ବିଜୟାନନ୍ଦ ସିଂ, ବିଷ୍ଣୁପ୍ରିୟା ଓଟା, ଗୌରହରି ଦାସ, ସନ୍ତୋଷ କୁମାର ତ୍ରିପାଠୀ, ମଣୀନ୍ଦ୍ର କୁମାର ମେହେର, ସୁବାଷ ନାୟକଙ୍କ ଜୀବନୀ ଓ ସୃଜନୀକୁ ସ୍ଥାନ ଦିଆଯାଇଅଛି

ଏ ମୋର ସୃଷ୍ଟି ସମ୍ଭାରକୁ ମୋର ଗୁରୁ ପ୍ରାଧ୍ୟାପକ ଡକ୍ଟର ନୃସିଂହଚରଣ ମିଶ୍ରଙ୍କୁ ଉତ୍ସର୍ଗ କରିଅଛି ।

ଏ ପୁସ୍ତିକାଟି ଓଡ଼ିଆ ସାହିତ୍ୟ ର ଆଗାମୀ ପିଢ଼ିଙ୍କୁ ଅନେକ ତଥ୍ୟ ଦେବାରେ ସହାୟକ ସହିତ ଗବେଷଣାଧର୍ମୀ କରାଇବାରେ ସହାୟକ ହୋଇପାରିବ । ପୁସ୍ତକଟି ପାଠକୀୟ ଆଦୃତି ଲାଭ କରିଲେ ମୋର ଶ୍ରମ ସାର୍ଥକ ହୋଇପାରିବ ।

**ସାହିତ୍ୟସେବକ**

**(ପ୍ରଫେସର ଡକ୍ଟର ସୁବାଷ ନାୟକ)**



# ସୃଜନଧାରା
# ଓଡିଆ ସାହିତ୍ୟ ର ସାଧକ ଓ ସାଧନା
# (ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ)

ଆଧୁନିକ ଓଡିଆ ସାହିତ୍ୟ ର ସାରସ୍ୱତ ସାଧକ ଓ ତାଙ୍କ ସାଧନାର ଏକ ମିଳିତ ଫଳସୃତି ମୋର ଏ ସାରସ୍ୱତ ସମ୍ଭାର "ସୃଜନଧାରା" - ଅନେକ ଓଡିଆ ସାହିତ୍ୟିକ ଙ୍କ ମଧ୍ୟରୁ ମୋ ମାନସପଟ୍ଟରେ ଉଙ୍କି ମାରିଥିବା ସର୍ବୋପରି ମୋ ସାହିତ୍ୟିକ ଜୀବନରେ ସେମାନଙ୍କ ଜୀବନଦର୍ଶନ ଓ କୃତି ପ୍ରଭାବିତ କରିଥିବା ସାହିତ୍ୟିକମାନଙ୍କ ସୃଷ୍ଟିର ଏକ ସମାହାର ।

## ସୂଚୀପତ୍ର





## ଓଡିଆ - ଏକ ସୃଜନଧାରା

ଓଡିଆ ଏକ ଭାରତୀୟ ଭାଷା । ମୂଳ ଓଡିଆ ଭାଷା ପାଲି ଓ ଔଡ୍ରୀ ପ୍ରାକୃତରୁ ସିଧା ସୃଷ୍ଟି ହେଇଥିବା ଭାଷାବିଜ୍ଞାନୀ ମାନେ ପ୍ରମାଣ ଦିଅନ୍ତି । ଏହି ଭାଷା ଭାରତରରେ ବିଶେଷତଃ ଓଡିଶାରେ ୨୫୦୦ ବର୍ଷରୁ ଅଧିକ ବର୍ଷ ଆଗରୁ କୁହାଯାଉଥିଲା । ଏହା ବୌଦ୍ଧ ଧର୍ମର ତ୍ରିପିଟକ ଓ ଜୈନ ଧର୍ମଗ୍ରନ୍ଥର ମୂଳ ଭାଷା ଥିଲା । ଓଡିଆ ବାକି ଭାରତୀୟ ଭାଷାମାନଙ୍କ ତୁଳନାରେ ଖୁବ୍ କମ୍ ପାରସୀ ଓ ଆରବୀ ଭାଷାଦ୍ୱାରା ପ୍ରଭାବିତ ।

ଇଂଲଣ୍ଡର କୁଇନଟେସେନସିଆଲ ଙ୍କ ଭାଷା ବିଭାଗର ମତରେ ଧଉଳିଠାରୁ ମିଳିଥିବା ଅଶୋକ ଙ୍କ ସମୟର ଶିଳାଲେଖ, ଜଉଗଡର ଶିଳାଲେଖ ଓ ଖାରବେଳ ଙ୍କ ବେଳରେ ତିଆରି ଖଣ୍ଡଗିରି ଓ ହାତୀଗୁମ୍ଫା ଶିଳାଲେଖ ଓଡିଆ ଭାଷାର ମୂଳ ଇତିହାସ ଉପରେ ସୂଚନା ଦିଏ । ହାତୀଗୁମ୍ଫାର ଶିଳାଲେଖାରୁ ଜଣାଯାଏ ଯେ ଆଧୁନିକ ଓଡିଆ ଭାଷାର ମୂଳ ପାଲି ଭାଷାରୁ । ହାତୀଗୁମ୍ଫାର ଶିଳାଲେଖାରେ ଲେଖାଭାଷୀ ହେଉଛି - ପାଲି ଆଉ ଲିପି ହେଉଛି - ବ୍ରାହ୍ମୀ, ତେବେ ଏହି ଶିଳାଲେଖା ହିଁ ପ୍ରମାଣ କରିଦିଏ ଯେ ଓଡିଆ ଭାଷା ଅନ୍ୟ ଭାଷାଠାରୁ ପୁରାତନ । ସଂସ୍କୃତ ଭାଷାର ପ୍ରଭାବରେ ପୁରୁଣା ପାଲି ଭାଷାରେ ଅନେକ ଜାଗାରେ ଶବ୍ଦସବୁ ବଦଳିଯାଇଛି । ତେବେ ଓଡିଆରେ ବିଦେଶୀ ଭାଷାର ପ୍ରଭାବ ଖୁବ୍ କମ୍ ଦେଖାଯାଏ, ଯାହାକି ଅନ୍ୟ ଭାରତୀୟ ଭାଷାଠାରୁ ଖୁବ୍ ଗୌଣ ।

ପ୍ରଫେସର ଇଲଡେନବର୍ଗ ଙ୍କ ମତରେ ପାଲି ଭାଷା ହିଁ ଓଡିଆ ଭାଷାର ମୂଳ । ଓଡିଆ ଶବ୍ଦର ବ୍ୟବହାର ସପ୍ତମ ଶତାବ୍ଦୀର ତାଳପତ୍ରରେ ଦେଖିବାକୁ ମିଳେ । ବିଶେଷକରି ନେପାଳ ରାଜ ଦରବାର ରୁ ସଂଗୃହୀତ ବୌଦ୍ଧ ଆଚାର୍ଯ୍ୟମାନଙ୍କ ଦ୍ୱାରା ରଚିତ ଚାର୍ଯ୍ୟା ସାହିତ୍ୟ ହେଉଛି - ପ୍ରାଚୀନ ଓଡିଆ ଶବ୍ଦାବଳୀର ଗନ୍ତାଘର । ସେହିପରି ଭଦ୍ରକରୁ ପ୍ରାପ୍ତ ମହାରାଜା ଗଣଙ୍କର ନବମ ଶତାବ୍ଦୀରେ ଲିଖିତ ଶିଳାଲେଖାରେ "ଦେବ କହି ଉଦ୍ଧତି କରୁଣ ବୋଲନ୍ତି ଭୋ କୁମ୍ଭାର ଶେଣ" ହେଉଛି - ଓଡିଆ ଭାଷାରେ ରଚିତ ସ୍ୱୟଂ ସମ୍ପୂର୍ଣ୍ଣ ଓଡିଆ ଶବ୍ଦ । ଓଡିଆ ଶବ୍ଦ କୁମ୍ଭାର - Kumbhar ର ବ୍ୟବହାର ତମ୍ବାପଟାରେ ଲେଖିଥିବାର ଦେଖିବାକୁ ମିଳେ । ସେମିତି ୯୯୧ ସନର ଲେଖ ଓ ୭୧୫ ସନର ଲେଖରେ ଓଡିଆ ଶବ୍ଦ ଭିତରୁ (Bhitaru) ଆଉ ପନ୍ଦର ପ୍ରକୃତିର ବ୍ୟବହାର ଦେଖିବାକୁ ମିଳେ ।

### ଓଡିଆ ଭାଷା -

ଓଡିଆ (ଇଂରାଜୀ ଭାଷାରେ Odia) ଏକ ଭାରତୀୟ ଭାଷା, ଯାହା ଏକ ଇଣ୍ଡୋ-ୟୁରୋପୀୟ ଭାଷାଗୋଷ୍ଠୀ ଅନ୍ତର୍ଗତ ଇଣ୍ଡୋ-ଆର୍ଯ୍ୟ ଭାଷା । ଏହା ଭାରତ ଦେଶର ଓଡିଶା ପ୍ରଦେଶରେ ସର୍ବାଧିକ ବ୍ୟବହାର କରାଯାଉଥିବା ମୁଖ୍ୟ ସ୍ଥାନୀୟ ଭାଷା, ଯାହା ୯୧.୯୫% ଲୋକ ବ୍ୟବହାର କରିଥାନ୍ତି ।

ଓଡିଶା ସମେତ ଏହା ପଶ୍ଚିମବଙ୍ଗ, ଛତିଶଗଡ଼, ଝାଡ଼ଖଣ୍ଡ, ଆନ୍ଧ୍ରପ୍ରଦେଶ, ଗୁଜୁରାଟ (ମୂଳତଃ ସୁରଟ) ରେ କୁହାଯାଇଥାଏ । ଏହା ଓଡିଶାର ସରକାରୀ ଭାଷା, ଏହା ଭାରତର ସମ୍ବିଧାନ ସ୍ୱୀକୃତିପ୍ରାପ୍ତ ୨୨ ଗୋଟି ଭାରତୀୟ ଭାଷା ମଧ୍ୟରୁ ଗୋଟିଏ ଓ ଝାଡ଼ଖଣ୍ଡର ୨ୟ ପ୍ରଶାସନିକ ଭାଷା । ଓଡିଆ ଷଷ୍ଠ ଭାରତୀୟ ଭାଷା ଭାବରେ ଏକ ସ୍ୱତନ୍ତ୍ର ଓ ଅନ୍ୟ ଭାଷାଦ୍ୱାରା ପ୍ରଭାବିତ ହୋଇନଥିବା ଭାଷା ଭାବରେ ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇଛି ।

ଓଡିଆ ଭାଷାରେ ବ୍ୟବହୃତ ଅଚଂଳ - ଭାରତ, ଆମେରିକା, ଲଣ୍ଡନ, ଅଷ୍ଟ୍ରେଲିଆ, ସାଉଦ ଆରବ, ବର୍ମା, ମାଲେସିଆ, ସିଙ୍ଗାପୁର, ସିଂହଳ ରେ ବସବାସ କରୁଥିବା ଓଡିଆ ସ୍ଥାନ ଓ ଆମ ରାଷ୍ଟ୍ର ଭାରତ ମଧ୍ୟରେ ଅଧିକାଂଶ ଓଡିଆ ଭାଷା ବ୍ୟବହୃତ ରାଜ୍ୟ - ଆମ ରାଜ୍ୟ ଓଡିଶା, ପଡୋଶୀ ରାଜ୍ୟ ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗ ।

ଓଡିଆ ସାହିତ୍ୟ - ଓଡିଆ ଭାଷାରେ ଲିଖିତ ସାହିତ୍ୟର ନାନା ବିଭବକୁ ବୁଝାଇଥାଏ ।

ଉଇକିମିଡିଆ କମନ୍ସରେ ଓଡିଆ ସାହିତ୍ୟ ବିଭାଗ ବାବଦରେ ମାଧମ ରହିଛି ।

ସାହିତ୍ୟ ସମାଜର ହିତ ସାଧନାକରି ଜନସାଧାରଣଙ୍କୁ ସମ୍ବୋଧନଶୀଳ ତଥା ସଚେତନ କରାଇବାରେ ପ୍ରମୁଖ ସହାୟକ । ଓଡିଆ ସାହିତ୍ୟ ଓଡିଶାବାସୀଙ୍କ ଉନ୍ନତିରେ କର୍ମରତ । ଏହା ଆମ ରାଜ୍ୟର ବିକାଶ ଓ ସଂସ୍କୃତି ର ପରିଚୟ ଦେଇଥାଏ । ନିମ୍ନରେ ଓଡିଆ ସାହିତ୍ୟର ବିଭାଗୀକରଣ କରାଯାଇ ପ୍ରତ୍ୟେକ ବିଭାଗର ବିବରଣୀ ପ୍ରଦାନ କରାଯାଇଛି ।

### ଇତିହାସ -

ମୂଳଲେଖା - ଓଡିଆ ସାହିତ୍ୟର ଇତିହାସ - ସୁଦୂର ଅତୀତର ଲିପିର ଅଭାବ ହେତୁ ମୁଖସ୍ଥ କରିବା ଥିଲା ସାହିତ୍ୟକୁ ବଚାଂଇ ରଖିବାର ଏକମାତ୍ର ଉପାୟ । ତେଣୁ ମନେ ରଖିବାର ସୁବିଧା ନିମନ୍ତେ ସବୁକଥାକୁ ପଦ୍ୟର ରୂପଦେବା ଦରକାର ଥିଲା । ଗଣିତ ବିଦ୍ୟା, ଆକାଶ ବିଦ୍ୟା, ଏପରିକି ମାଛ ମାରିବା, ପାଗଳାଣିବା ଆଦିକୁ ନେଇ ପଦ୍ୟସବୁ ରଚା ଯାଉଥିଲା । ଓଡିଆରେ ଅନେକ ପୁରାତନ ରଚନା - ଯେମିତିକି ଲୀଳାବତୀ ସୂତ୍ର, ଡାକରଷି ବଚନ, ଖନା ବଚନ ଓ ଗଣିତର ବିଭିନ୍ନ ସୂତ୍ର ଲୋକଗୀତରେ ଅଛି । ଓଡିଆ ସାହିତ୍ୟର ଇତିହାସ - ଚର୍ଯ୍ୟାଗୀତିରୁ ଆରମ୍ଭବୋଲି ପ୍ରମାଣ ମିଳିଅଛି । ଏହା ବୁଦ୍ଧଙ୍କ ଜନ୍ମ ସମୟରେ ସୃଷ୍ଟି ହୋଇଥିଲା । ସେହି କାଳରୁ ବୁଦ୍ଧଙ୍କ ଜନ୍ମଜାତକ (ବୁଦ୍ଧଜାତକ), ବାଣୀ ତ୍ରିପିଟକ ଭାବରେ ଓ ବୌଦ୍ଧ ସାଧୁସନ୍ଥମାନଙ୍କ ଲେଖା ଚର୍ଯ୍ୟାଗୀତିକା ଓଡିଆ ସାହିତ୍ୟରୁ ଆରମ୍ଭ । ଏହା ପରବର୍ତୀ କାଳରେ ଭକ୍ତିମୁଖ ସମୟରେ ଏହା ଖୁବ୍ ଉନ୍ନତ ହୋଇଥିଲା । ପରେ ରୀତିଯୁଗ ଓ ଆଧୁନିକ ଓଡିଆ ସାହିତ୍ୟର ଆରମ୍ଭ ହୋଇଥିଲା । କେତେକ ସ୍ଥାନରେ ଉତର ଆଧୁନିକ ସାହିତ୍ୟର ଭକ୍ତି ଦେଖିବାକୁ ମିଳିଥିଲା ।

## ଓଡିଆ ସାହିତ୍ୟ ର ବିଭାଗୀକରଣ -

ଓଡିଆ ସାହିତ୍ୟ ର ସମୟକାଳକୁ ବିଭିନ୍ନ ଯୁଗ ଅନୁସାରେ ବଟଂନ କରାଯାଇଥାଏ । ସେଗୁଡିକ ହେଲା -

ଚର୍ଯ୍ୟା ଯୁଗ
ସାରଳା ଯୁଗ
ପଚଂସଖା ଯୁଗ
ରୀତି ବା ଭଞ୍ଜ ଯୁଗ
ରାଧାନାଥ ବା ଆଧୁନିକ ଯୁଗ
ସତ୍ୟବାଦୀ ଯୁଗ
ପ୍ରଗତି ଯୁଗ
ସବୁଜ ଯୁଗ
ସ୍ୱାଧିନତା ପରର ଯୁଗ | ଅତ୍ୟାଧୁନିକ ପର୍ବ
ଉତର ଅତ୍ୟାଧୁନିକ ପର୍ବ

କିନ୍ତୁ ଭାଷାବିତ୍ ମାନଙ୍କର ଏହି ସମୟକ୍ରମ ଅନୁସାରେ ଆମେ ଓଡିଆ ସାହିତ୍ୟକୁ ଭାଗକଲେ ଓଡିଆ ସାହିତ୍ୟ ର ସଠିକ୍ ଚିତ୍ର ପାଇପାରିବା ନାହିଁ ।

ବୁଝିବାର ସୁବିଧା ନିମନ୍ତେ ଆମ ସାହିତ୍ୟକୁ ଦୁଇଟି ଭାଗରେ ବିଭକ୍ତ କରାଯାଇଛି - କଥିତ ସାହିତ୍ୟ ଓ ଲିଖିତ ସାହିତ୍ୟ । କଥିତ ସାହିତ୍ୟ ସାଧାରଣ ଲୋକମୁଖର କଥା, କବିତା ଆଦିକୁ ବୁଝାଯାଏ । ସାଧାରଣ ଲୋକ ନିଜର ଆନନ୍ଦ, ବିଷାଦ, ଆଶା, ଆକାଂକ୍ଷା କୁ ଗୀତ ଓ ଗପ ମାଧ୍ୟମରେ ପ୍ରକାଶ କରିଥାନ୍ତି । ଗାଁ ଗହଳିରେ ଅନେକ ଭାବପ୍ରବଣ ଲୋକ ମୁହଁମୁହଁରେ ଗୀତ ବାନ୍ଧି ଦେଇଥାନ୍ତି । ଏମିତିକି ପିଢି ପରେ ପିଢି ସେହି ଗୀତ, ଢଗ ଢମାଳୀ, ପ୍ରବଚନ ଆଦି କାନରୁ କାନକୁ ଯାଏ ଓ ପୁରୁଷ ପୁରୁଷ ଯାଏ, ସେ ସବୁ ଲୋକଙ୍କୁ ଗାଇ ବୁଲୁଥାଏ, ଏହି କଥିତ ସାହିତ୍ୟର ଲେଖକ କିଏ, ତାହା ଆକଳନ କରିବା ଅସମ୍ଭବ । ହେଲେ ସେଥିରେ ସାଧାରଣ ଲୋକଙ୍କ ଜୀବନର ଛବି ଅଙ୍କାଯାଇଥାଏ ଓ ସାଧାରଣ ଭାଷାରେ ପ୍ରକାଶିତ ହୋଇଥାଏ, ଏ ସବୁର ମୂଲ୍ୟ ସାହିତ୍ୟ ଓ ଭାଷା ପାଇଁ ଖୁବ୍‌ବେଶୀ । ଓଡିଆ ସାହିତ୍ୟରେ କାନ୍ଦଣା, ଓଷାଗୀତ, ଦୋଳିଗୀତ, ଶଗଡିଆ ଗୀତ, ଚଷାଗୀତ, ନାଉରିଆ ଗୀତ ଆଦି ରହିଅଛି ।

ଓଷାବ୍ରତ ଆଦିରେ ଗାନ କରାହେବା ଲାଗି ମଧ ଅନେକ ଗୀତ ରହିଅଛି । ଆଦିବାସୀମାନଙ୍କ କରମା ଗୀତ, ପାଲା ଓ ଦାସକାଠିଆ, ସଙ୍ଗୀତ, ବାଲେଶ୍ୱର ର ଚଢେଇଆ ସଙ୍ଗୀତ ଆଦିସବୁ ଏହି ଶ୍ରେଣୀର । ଗୀତ ପରି ଗାଥା ଓ କାହାଣୀ ମଧ ଲୋକମୁଖରେ ଚାଲୁଅଛି । ଭୂତ, ପ୍ରେତ, ଦେବତା, ଅସୁର, ଅସୁରୁଣୀ, ରାଜାପୁଅ, ସାଧବପୁଅ, ପଶୁପକ୍ଷୀ, ଗାଈଆଳ, ଚଷା, ବିଧବା ଏ ସଭିଁଙ୍କୁ ନେଇ ପଲ୍ଲୀଗୀତ ଓ କଥା ତିଆରି ହୋଇଅଛି ।

## ଚର୍ଯ୍ୟା / ଚାରିଜାଗିତି ଯୁଗ / ସିଦ୍ଧି ସାହିତ୍ୟ ଯୁଗ ବା ନାଥ ସାହିତ୍ୟ

## ଅଷ୍ଟମ / ନବମ ଶତାବ୍ଦୀ

ଭାରତର ସବୁଠାରୁ ପୁରୁଣା ଭାଷା ପାଲିରୁ ଓଡିଆ ତିଆରି । ୨୦୦୦ ବର୍ଷରୁ ଅଧିକ ଆଗରୁ ଓଡିଶାରେ ବୁଦ୍ଧଙ୍କ ଜନ୍ମ, ଧର୍ମପ୍ରଚାର ଓ ବୌଦ୍ଧଧର୍ମର ବିକାଶକାଳରେ ପାଲିଭାଷା ଥିଲା ଓଡିଆ ଭାଷା । ତିଆରିର ମୂଳଦୁଆ ଯାହା ଆଧୁନିକ ଓଡିଆ ଭାଷାର ମୂଳଦୁଆ । ଓଡିଶା ଓ ଏହାର ସୀମାନ୍ତ ରାଜ୍ୟମାନଙ୍କର ବିଭିନ୍ନ ଅଚଂଳରୁ ସଂଗୃହୀତ ତାମ୍ରଫଳକ ଓ ପଥର ଖୋଦିତ ଲେଖାମାନଙ୍କରୁ ଖ୍ରୀଷ୍ଟାବ୍ଦ ୭୦୦ ରୁ ୧୦୦୦ ମଧ୍ୟରେ ଉକ୍ତ ଭାଷାର ପ୍ରଚଳନ ଥିବା ସ୍ପଷ୍ଟ ଭାବରେ ଜଣାପଡିଛି । ଏହାଛଡା ନେପାଳରୁ ସଂଗ୍ରହ କରାଯାଇଥିବା ବୌଦ୍ଧଧର୍ମୀ ଚର୍ଯ୍ୟା ପଦମାନଙ୍କର ପଦରଚନା ମଧ୍ୟରୁ ଏହି ସମୟରେ ଓଡିଆ ଭାଷାର ଆଦ୍ୟ ଅବସ୍ଥାର ପରିଚୟ ମିଳିଅଛି । ଆଦିଯୁଗର ଓଡିଆ ଭାଷା ଏବେକାର ଓଡିଆ ଭାଷାପରି ନଥିଲା । ଅଷ୍ଟମ-ନବମ ଶତାବ୍ଦୀର ଓଡିଆ ପାଲି ଭାଷାର ଅନୁରୂପ ଥିଲା । ଏହି କାଳର ପାଲି ଭାଷାକୁ କେହି ସାନ୍ଧ୍ୟ ଭାଷା କହିଥାନ୍ତି । ଏଥିରେ ଲିଖିତ ଗୀତିକବିତା କେତେକ ମିଳିଅଛି, ଯାହାକୁ ଚର୍ଯ୍ୟାଗୀତି ବା ଚର୍ଯ୍ୟାଗୀତିକା କୁହାଯାଏ । ବୌଦ୍ଧ ସିଦ୍ଧି କବିମାନେ ଏସବୁର ରଚନା କରିଥିଲେ । ଏଗୁଡିକ ଆକାରରେ ଖୁବ୍ ଛୋଟ । କାହ୍ନୁ ପା, ଲୁଇ ପା, ସବରି ପା, ହାଡୁ ପା, କୁକୁରି ପା ଏହି କାଳର କବି । ଧନର୍ସ, ରାମତରି, ମାଳସିରି, ବରାଡି ଆଦି ରାଗରେ ଏସବୁ ଲେଖା । ଏସବୁ ଭଲ ଭାବରେ ବୋଲା ଯାଇପାରେ ଓ ନିତାନ୍ତ ସରଳ ଓ ମୌଳିକ ଭାଷାରେ ଲିଖିତ । ଏହି କବିତା ଗୁଡିକରେ ଶବର, ଶବରୁଣୀ, ଜନ୍ମକ୍ଷେତ୍ର, କପା ବୁଣିବା, ସୁନା, ବେଙ୍ଗ ଆଦିର ରୂପକ ବା ପ୍ରତୀକ ଛବି ରହିଅଛି ।

ଏହି ଚର୍ଯ୍ୟାଗୀତି ବା ଚାରିଜାଗିତି ସବୁ ଓଡିଆ, ବଙ୍ଗଳା, ଆସିମିଆ ଓ ମୈଥିଳି ସାହିତ୍ୟ ର ଆଦିରୂପ ବୋଲି କୁହାଯାଏ । ଏହି ଯୁଗକୁ ସିଦ୍ଧି ସାହିତ୍ୟ ର ଯୁଗ ଓ ଚାରିଜାଗିତିର ଯୁଗ କୁହାଯାଏ ।

ନାଥ ଯୁଗରେ ମତ୍ସ୍ୟେନ୍ଦ୍ର ନାଥ ଓ ଗୋରେଖ ନାଥ ଆଦି ସ୍ରଷ୍ଟା ନାଥ ସାହିତ୍ୟକୁ ଋଦ୍ଧିମନ୍ତ କରିଥିଲେ । ୧୨ ଶହ ଓ ୧୩ ଶହ ଶତାବ୍ଦୀବେଳକୁ ଓଡିଆ ସାହିତ୍ୟରେ ଏହି ସିଦ୍ଧି ସାହିତ୍ୟ ର ବିକାଶ କିଛି ହୋଇଥିଲା । ପୁରାତନ ଓଡିଆ ଭାଷା ଓ ସାହିତ୍ୟ ର ଅନେକ ଚଉତିଶା ରଚିତ ହୋଇଥିଲା । ଏଯାବତ୍ ଏହାର ସମ୍ଭାର କାଳନା କରାଯାଇପାରିନାହିଁ, ଏଥିରୁ ଓଡିଆ ଗୀତି ସାହିତ୍ୟ ଓ ଛାନ୍ଦ ସାହିତ୍ୟ

ଉଦ୍ଭବ ହୋଇଅଛି । ଚଉତିଶା ରଚନା ଏକ ଆଳଙ୍କାରିକ ରଚନା । କ ଠାରୁ କ୍ଷ ପର୍ଯ୍ୟନ୍ତ ୩୪ ଗୋଟି ବ୍ୟଞ୍ଜନ ବର୍ଣ୍ଣର ଆଦି କ୍ରମରେ ରଚିତ ହୋଇଥିବା କବିତା ଚଉତିଶା ନାମରେ ନାମିତ ।

କେହିକେହି ଓଡ଼ିଆ କବି ଓଲଟା ଚଉତିଶା ରଚନା କରିଥିବାର ଦେଖିବାକୁ ମିଳେ, ଏହା କ୍ଷ ରୁ ଆରମ୍ଭହୋଇ କ ରେ ଶେଷ ହୋଇଥିବାର ଦେଖାଯାଏ । ଅନ୍ଧକବି ଭୀମଭୋଇ ଏହିପରି କେତେକ ଚଉତିଶା ରଚନା କରିଥିବା ଜଣାଯାଏ । ପୁରାତନ ଓଡ଼ିଆ ସାହିତ୍ୟରେ ଅନେକ ଚଉତିଶା ଲୋକପ୍ରିୟତା ହାସଲ କରିଥିଲା । ଏମାନଙ୍କ ମଧ୍ୟରେ କଳସା ଚଉତିଶା, କୋଇଲି ଚଉତିଶା ଆଦି ପ୍ରଧାନ ।

## ଚଉତିଶା ର ଶ୍ରେଣୀ ବିଭାଗ -

### ସନ୍ଦେଶମୂଳକ ଚଉତିଶା -

କୋଇଲି, କାଦମ୍ବିନୀ, ଚିଟାଉ (ଉପେନ୍ଦ୍ରଭଞ୍ଜ) ।

### ଜଣାଣ ଓ ସ୍ତୁତିମୂଳକ ଚଉତିଶା -

ଓଡ଼ିଆରେ ବହୁ ପୁରାଣ ଜଣାଣ ରହିଅଛି । ଯାହା ମାଧ୍ୟମରେ କବିମାନେ ଜଣାଣ ରଚୁଛନ୍ତି । ସର୍ପ ଜଣାଣ (କବିସୂର୍ଯ୍ୟ ବଳଦେବ ରଥ), ଆ ତ୍ରାଣ ଚଉତିଶା (ଦୀନକୃଷ୍ଣ) ।

### ମିଳନ ଓ ବିଗ୍ରହମୂଳକ ଚଉତିଶା -

ଏଥିରେ ସମ୍ଭୋଗ ଓ ବିପ୍ରଳମ୍ଭ ଶୃଙ୍ଗାର ବର୍ଣ୍ଣନା କରାଯାଇଥାଏ । ରାଧାବିରହ ଚଉତିଶା (କେଶବ), ଅନୁରାଗ ରତ୍ନାକର ଚଉତିଶା (ଦୀନକୃଷ୍ଣ ଦାସ) ।

### ବର୍ଣ୍ଣନାମୂଳକ ଚଉତିଶା -

ଏହି ପୌରାଣିକ ଚଉତିଶା ଗୁଡ଼ିକରେ ନାନାଦି ପୁରାଣ ଓ ବାସ୍ତବ ଘଟଣା ବର୍ଣ୍ଣନା କରାଯାଇଛି ।

### ଅଳଙ୍କାରିକ ଚଉତିଶା -

ନାରାୟଣ ଙ୍କ ଲିଖିତ ଚଉତିଶା ମାନଙ୍କରେ ନାରୀ ମାନଙ୍କର ନାନା ବିଭାଗରେ ସ୍ୱାଧିନ ଭର୍ତିକା, ବସକ ସଜ୍ଜା ବର୍ଣ୍ଣିତ

### ଶ୍ଳୋକ ବା ବିଳାସମୂଳକ ଚଉତିଶା -

ଏସବୁ କରୁଣ ରସପ୍ରଦାନ ଓଡିଶାର ଗାଉଁଲି ଜୀବନ ଓ ସାହିତ୍ୟ ରେ ପ୍ରଧାନ ସ୍ଥାନ ଅଧିକାର କରିଅଛି । ମକୁନ୍ଦ ରଚିତ କରେ କୋଦଣ୍ଡ ଚଉତିଶା ଏହି ଶ୍ରେଣୀର ରଚନା ।

### ବ୍ରହ୍ମଜ୍ଞାନମୂଳକ ଚଉତିଶା -

ଓଡିଶାରେ ଜ୍ଞାନ ମିଶ୍ର ସନ୍ଥକବିମାନେ ଅନେକ ବ୍ରହ୍ମଜ୍ଞାନମୂଳକ ଚଉତିଶା ଲେଖିଛନ୍ତି । ଜଗନ୍ନାଥ ଦାସଙ୍କ କମଳ କେଶର ଚଉତିଶା, ନନ୍ଦା ଅରକ୍ଷିତ ଙ୍କ ରସବ୍ରହ୍ମ ଚଉତିଶା ।

### ବୈରାଗ୍ୟମୂଳକ ଚଉତିଶା -

ନଶ୍ୱରତା ଓ ବୈରାଗ ପରାୟଣତାକୁ ନେଇ ପ୍ରାଚୀନ ସାହିତ୍ୟରେ ଅନେକ ଛୋଟବଡ କବିତା ରଚିତ ହୋଇଅଛି । ଭକ୍ତଚରଣ ଦାସଙ୍କ ମନବୋଧ ଚଉତିଶା ପ୍ରଧାନ । ଚଉତିଶାର ସମକକ୍ଷ ସାହିତ୍ୟ ଚଉପଦୀ ।

## ସାରଳା ଯୁଗ -

୧୫୦୦ ଶତାବ୍ଦୀରେ ଜଗତ୍‌ସିଂହପୁର ର ଝଙ୍କଡ଼ ଠାରେ ସାରଳା ଦାସ ଜନ୍ମଗ୍ରହଣ କରିଥିଲେ । ତାଙ୍କ ମୂଳ ନାମଥିଲା - ସିଦ୍ଧେଶ୍ୱର ପରିଡା । ସେ ଚଣ୍ଡିଙ୍କ ଜଣେ ଭକ୍ତ ଥିଲେ, ତାଙ୍କ କୃପାରୁ ସାହିତ୍ୟ ସର୍ଜନା କରିବାର କ୍ଷମତା ଲଭିଥିଲେ ବୋଲି ଲୋକବିଶ୍ୱାସ ରହିଅଛି । ସେ ତାଳପତ୍ର ପୋଥିରେ ୧୮ ଖଣ୍ଡ ମହାଭାରତ ଲେଖିଥିଲେ । ଏହା ଦାଣ୍ଡିଭୂତରେ ଲେଖା, ଏଥିରେ କେବଳ ପୁରାଣ ବଖାଣ ନାହିଁ ବରଂ ଓଡିଶାର ଇତିହାସ, ଭୂଗୋଳ, ଲୋକକଥା, ସାଧାରଣ ଜନଜୀବନର ଛବି ରହିଛି । ତାଙ୍କ ରଚିତ - ବିଲଙ୍କା ରାମାୟଣ, ଚଣ୍ଡିପୁରାଣ ଓ ରାମାୟଣ ଗ୍ରନ୍ଥ ଏହି ଯୁଗର କିଛି କାଳଜୟୀ ସୃଷ୍ଟି ସମ୍ପଦ । ଏହାଥିଲା ତାଙ୍କର ପଦ୍ୟ ସାହିତ୍ୟ ।

ସାରଳା ଗଦ୍ୟ ସାହିତ୍ୟରେ - ନାରୟଣ ନନ୍ଦ ଅବଧୂତ ସ୍ୱାମୀଙ୍କ ରଚିତ - ରୁଦ୍ର ସୁଧାନିଧି ଏକ ଅମୂଲ୍ୟ ଗ୍ରନ୍ଥ । ଖୁବ୍ ଛୋଟଛୋଟ ବାକ୍ୟରେ ଏହା ଲେଖାଯାଇଅଛି । ଏହାର ଗଦ୍ୟ ରଚନା ଭଙ୍ଗୀରେ ପଦ୍ୟ ମାଧୁରୀ ଦେଖିବାକୁ ମିଳିଥାଏ । ବତ୍ସା ଦାସଙ୍କ କଳସା ଚଉତିଶା ଓ ମାର୍କଣ୍ଡ ଦାସଙ୍କ କେଶବ କୋଇଲି - ଓଡିଆ ସାହିତ୍ୟ ର ଦୁଇ ପ୍ରାଚୀନ ରଚନା । ଚଉତିଶା ଓ କୋଇଲି ରଚନା ଓଡିଆ ସାହିତ୍ୟକୁ ଅତି ଉନ୍ନତ କରିଅଛି ।

## ପଚଂସଖା ଯୁଗ (୧୪୯୦ ରୁ ବା ୧୫୦୦-୧୬୦୦ ଶତାବ୍ଦୀ) -

ଅତିବଡି ଜଗନ୍ନାଥ ଦାସଙ୍କ - "ଓଡିଆ ଭାଗବତ"

ବଳରାମ ଦାସଙ୍କ - "ଜଗମୋହନ ରାମାୟଣ"

ଅଚ୍ୟୁତା ନନ୍ଦଙ୍କ - "ହରିବଂଶ" ଓ "ମାଳିକା"

ଏ ଯୁଗର କେତୋଟି ଅମୂଲ୍ୟ ରଚନା ।

ଯଶୋବନ୍ତ ଦାସଙ୍କ - "ପ୍ରେମଭକ୍ତି ବ୍ରହ୍ମଗୀତା"

ଅନନ୍ତ ଦାସଙ୍କ - "ହେତୁଦୟ ଭାଗବତ"

ଏହି ପଚଂସଖା - ଜଗନ୍ନାଥ ଙ୍କ ପରମଭକ୍ତ ଉତ୍କଳୀୟ ପଚଂସଖା । ଏହି ସାଧକମାନେ ଗୋଟିଏ ଶତାବ୍ଦୀର ସିଦ୍ଧିପୁରୁଷ । ଏମାନେ "ଦାସ" ସଂଜ୍ଞାଧାରୀ ବୈଷ୍ଣବ ଭାବରେ ପରିଚିତ । ଏମାନେ ସମସ୍ତେ ଉତ୍କଳୀୟ ବୈଷ୍ଣବ ଧର୍ମର ସାଧକ ଓ ଲେଖକ । ଏମାନଙ୍କର ଇଷ୍ଟଦେବତା "ଶ୍ରୀ ଜଗନ୍ନାଥ" ଓ ସାଧନାପୀଠ ଥିଲା - "ପୁରୀ" ।

ପଚଂସଖା ପରେ ଖଡିଆଳର ଚୈତନ୍ୟ ଦାସଙ୍କ ରଚନା ମଧ୍ୟ ଓଡିଆ ସାହିତ୍ୟକୁ ଉନ୍ନତ କରିଛି । ଏହି କାଳରେ ଓଡିଆ ଭାଷାରେ ପ୍ରଥମ ଜୀବନୀ ଲେଖକ ଦିବାକର ଦାସଙ୍କ ଦେଇ ଲେଖା ଯାଇଥିଲା ଶ୍ରୀ ଜଗନ୍ନାଥଙ୍କ ପରମଭକ୍ତ - ଭକ୍ତ ସାଲବେଗଙ୍କ ଭକ୍ତି ରଚନା ମଧ୍ୟ ଅନ୍ୟତମ ।

ଏହି ସମୟରେ ଓଡିଶାରେ ପ୍ରାଥମିକ ଶିକ୍ଷାପାଇଁ ବିଦ୍ୟାଳୟମାନ ଖୋଲା ଯାଇଥିଲା । ଓଡିଶାରେ ରେଭେନ୍ସା କଲେଜ, କଟକରେ ପ୍ରତିଷ୍ଠା ହେଲା । ୧୮୫୩ ରେ ପୁରୀ, ବାଲେଶ୍ୱର ରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ହେଲା । ଓଡିଶାରେ ୧୮୭୦ ମସିହାବେଳକୁ ସରକାରୀ ଓ ବେସରକାରୀ ସ୍ତରରେ ୧୦୦ ସ୍କୁଲ ପ୍ରତିଷ୍ଠା ହୋଇଥିଲା ।

## ରୀତି ବା ଭଞ୍ଜ ଯୁଗ -

ଅଭିମନ୍ୟୁ ସାମନ୍ତସିଂହାର, ଉପେନ୍ଦ୍ରଭଞ୍ଜ, ଗୋପାଳକୃଷ୍ଣ ପଟ୍ଟନାୟକ, ଦୀନକୃଷ୍ଣ ଦାସ, ବଳଦେବ ରଥ, ବ୍ରଜନାଥ ବଡଜେନା, ଭକ୍ତଚରଣ ଦାସ, ଭୀମଭୋଇ, ମାଧବୀ ଦାସ, ବିଶ୍ୱନାଥ ଖୁଣ୍ଟିଆ, ବୃନ୍ଦାବତୀ ଦାସ ଙ୍କ ସୃଷ୍ଟିରେ ଭଞ୍ଜ ଯୁଗ ଋଦ୍ଧିମନ୍ତ ହୋଇଥିଲା ।

ଆଳଙ୍କାରିକ ଯୁଗ (ରୀତି ଯୁଗ) ବା ଭଞ୍ଜ ଯୁଗ ରେ ଧନଞ୍ଜୟ ଭଞ୍ଜଙ୍କ ବିଳାସ ଠାରୁ ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ପର୍ଯ୍ୟନ୍ତ ଓ ତତ୍ ପାଶ୍ଚାତବର୍ତୀ ଯଦୁମଣିଙ୍କ ଠାରୁ ଦିପ୍ର ପିତାମ୍ୱର ଙ୍କ ସାମଗ୍ରିକ ରଚନାରରେ ଧର୍ମ, ପୌରାଣିକ ଆଖ୍ୟାୟିକା ଙ୍କ ପରିଭାଷା ହିଁ ପରିବେଷ୍ଟିତ । ପ୍ରଚୁର ଶବ୍ଦ ପରିସ୍ଫୁଟନ, ଯମକ, ଯତିପାଦ, ଛାନ୍ଦ ଓ ରାଗ ରାଗିଣୀରେ ଅଳଙ୍କୃତ କାବ୍ୟଛାଟ, ବିମ୍ବ ପ୍ରୟୋଗ ବ୍ୟଞ୍ଜନ, କଳ୍ପନା ବିଳାସରେ ସେହି କାବ୍ୟ ସମ୍ପଦଗୁଡିକ ସମୃଦ୍ଧ । କେବଳ ତାହା ନୁହେଁ, ତାତ୍ୱିକବୋଧରେ ମଧ୍ୟ ଆଳଙ୍କାରିକ ଯୁଗର କାବ୍ୟ ସ୍ଥାପତ୍ୟ ସମୃଦ୍ଧ ।

ଉପେନ୍ଦ୍ର ଭଞ୍ଜଙ୍କ ଅନୁପମ, ଅପ୍ରତିଦ୍ୱନ୍ଦୀ କାବ୍ୟକୃତି ପାଇଁ ଆଳଙ୍କାରିକ ଯୁଗକୁ "ଭଞ୍ଜଯୁଗ" ବୋଲି ମଧ୍ୟ କୁହାଯାଏ । ତେବେ ଅନ୍ୟାନ୍ୟ କରିତକର୍ମୋ କାବ୍ୟପୁରୁଷ ଯଥା - ଭକ୍ତଚରଣ, ଦନାଇ, ବିଶ୍ୱନାଥ, ବଳଦେବ, ଗୋପାଳକୃଷ୍ଣ ପ୍ରଭୃତି ସରଳ ଓ ସାବଳୀଳ ଶୈଳୀ ଓ ଭାବବୋଧର ସମ୍ବଳ ଭିତରେ ମଧ୍ୟ ଅଳଙ୍କରଣକୁ ପ୍ରାଧାନ୍ୟ ଦେଇଛନ୍ତି ଏବଂ କାଳଜୟୀ କାବ୍ୟସମ୍ଭାର ଉପଢୌକନ ଦେଇଛନ୍ତି

ଆଳଙ୍କାରିକ ଯୁଗରେ ଭକ୍ତିଧ୍ୱନି ସହିତ ପ୍ରେମ, ଶୃଙ୍ଗାର ରସର ମିଳନାତ୍ମକ କାରୁକଳା ପ୍ରଗାଢ । ରାଧା, କୃଷ୍ଣ, ଶ୍ରୀରାମ, ବିଦ୍ରୋହୀ ତଥା ଅନ୍ୟାନ୍ୟ କାବ୍ୟ ନାୟକ-ନାୟିକା ଙ୍କ ସମ୍ଭୋଗ ଓ ସୌନ୍ଦର୍ଯ୍ୟ ର ଆଧାର ହିଁ ଚିରକାଳୀନ କାବ୍ୟସଜ୍ଜା ।

## ରାଧାନାଥ ବା ଆଧୁନିକ ଯୁଗ -

ଓଡିଆ ସାହିତ୍ୟରେ ରାଧାନାଥ ଯୁଗକୁ ଆଧୁନିକ ଯୁଗର ଆଖ୍ୟା ଦିଆଯାଇଅଛି । ୧୮୭୦ ମସିହା ପରଠାରୁ କ୍ରମବିକାଶ ପଥରେ ଓଡିଆ ସାହିତ୍ୟ ଗତି କରିଅଛି । ୧୮୭୦ ରୁ ୧୯୨୦ ମସିହା ପର୍ଯ୍ୟନ୍ତ ରାଧାନାଥ ଯୁଗ ସାହିତ୍ୟ କୁହାଯାଏ । ଏହି ଯୁଗରେ - ରାଧାନାଥ ରାୟ, ଫକୀରମୋହନ ସେନାପତି, ଗଙ୍ଗାଧର ମେହେର, ମଧୁସୂଦନ ରାଓ, ଚିନ୍ତାମଣି ମହାନ୍ତି, ନନ୍ଦକିଶୋର ବଳ ଆଦି ସ୍ରଷ୍ଟାଙ୍କ ଦ୍ୱାରା ଓଡିଆ ସାହିତ୍ୟ ଋଦ୍ଧିମନ୍ତ ହୋଇପାରିଅଛି ।

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ର ସମ୍ପର୍କରୁ ଓଡିଆ ସାହିତ୍ୟରେ ଆଧୁନିକତାର ଅଭ୍ୟୁଦୟ ଘଟିଥିଲା । ୧୮୦୩ ରେ ଓଡିଶା ଇଂରେଜମାନଙ୍କ ଅଧିନକୁ ଏହି ସମୟରେ ଧିରେଧିରେ ଇଂରେଜମାନେ ସେମାନଙ୍କର ଧର୍ମ, ଭାଷା, ସଭ୍ୟତା, ଶିକ୍ଷା, ଦୀକ୍ଷା, ଆଚାର, ବ୍ୟବହାର ଏ ଦେଶରେ ପ୍ରବର୍ତନ କରିବାରେ ଲାଗିଲେ । ଏ ସଂଘର୍ଷ ଏ ଦେଶରେ ୧୮୦୩ ରୁ ୧୮୭୦ ପର୍ଯ୍ୟନ୍ତ ଲାଗିରହିଲା ଓ ପରିମାଣରେ ସମାଜ ଓ ସାଂସ୍କୃତିକ ଚେତନାରେ ଯେପରି ଠିକ୍ ସାହିତ୍ୟରେ ମଧ୍ୟ ସେହିପରି ଆଧୁନିକତାର ଉନ୍ମେମେଷ ଘଟାଇଥିଲା । ଏହି ସଂଘର୍ଷରେ ସାହିତ୍ୟରେ ପୂର୍ବବର୍ତୀ ଧାରା ସେହି ଏକାଦିନରେ ତିରୋହିତ ହୋଇଯାଇନଥିଲା । ସେହିପରି ଆଧୁନିକ ଯୁଗର ସୃଷ୍ଟି ଇତିହାସ କୌଣସି ଏକ ନିର୍ଦ୍ଦିଷ୍ଟ ବିନ୍ଦୁର ସାହାସ ଜନ୍ମଲାଭ ହୋଇନଥିଲା ।

ଓଡିଆ ସାହିତ୍ୟ ର ଆଧୁନିକ ଯୁଗରେ ଯେଉଁସବୁ ସାହିତ୍ୟିକ, ସାଂସ୍କୃତିକ, ସାମାଜିକ, ରାଜନୈତିକ ଘଟଣାବଳୀ ସକ୍ରିୟହୋଇ ଉଠିଥିଲା, ପର୍ଯ୍ୟାୟକ୍ରମେ ସେ ସବୁ ଘଟଣାବଳୀର ଉପସ୍ଥାପନା ଦ୍ୱାରା ଆଧୁନିକ ଯୁଗର ସୃଷ୍ଟି ।

## ସତ୍ୟବାଦୀ ଯୁଗ -

ସତ୍ୟବାଦୀ ଯୁଗ ସ୍ରଷ୍ଟାମାନେ ହେଲେ - ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମହାପାତ୍ର, ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ମିଶ୍ର, ଚିନ୍ତାମଣି ଦାସ, କୁନ୍ତଳା କୁମାରୀ ସାବତ ଙ୍କର ସୃଷ୍ଟିରେ ସତ୍ୟବାଦୀ ଯୁଗ ଓଡିଆ ସାହିତ୍ୟରେ ପ୍ରଭାବ ବିସ୍ତାର କରିଥିଲା ।

ସତ୍ୟବାଦୀ ସାହିତ୍ୟ ଯୁଗର ପୁରୋଧା ଥିଲେ - ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ । ତାଙ୍କର କାଳଜୟୀ ସୃଷ୍ଟି ଓଡ଼ିଆ ସାହିତ୍ୟରେ ଅନନ୍ୟ ।

ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ପ୍ରମୁଖ ସତ୍ୟବାଦୀ ଗୋଷ୍ଠୀର ରଚନାରେ ଆମ ଦେଶର ଚଳଣି ଜାତୀୟତାବାଦ ଦେଖିବାକୁ ମିଳିଥାଏ । ଏହି କାଳରେ ଇତିହାସ ଓ ସମାଲୋଚନା ସାହିତ୍ୟ ର ସାହିତ୍ୟ ଲେଖାଗଲା । ଗୋଦାବରୀଶ ମହାପାତ୍ର, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ପଦ୍ମଚରଣ ପଟ୍ଟନାୟକ ପ୍ରଭୃତି ସ୍ରଷ୍ଟାମାନେ ଏହି କାଳରେ ଲେଖନୀ ଚାଳନା କରିଥିଲେ ।

ଗୋଦାବରୀଶ ଙ୍କ "ନିଆଁଖୁଂଟା" ପତ୍ରିକା - ଓଡ଼ିଶାରେ ବେଶ୍ ପଠନଯୋଗୀ ଓ ଜନପ୍ରିୟ ହୋଇପାରିଥିଲା । ସେ କାଳର ସରକାରଙ୍କର ଦୋଷତ୍ରୁଟି ସବୁକୁ ପଦାରେ ପକାଇଦେବାରେ ଓ ଇଂରେଜ ସରକାର ବିରୁଦ୍ଧରେ ଜାତୀୟତାବାଦର ଉନ୍ମେଷ ପାଇଁ ଏହି ସମୟର ରଚନା ସବୁ ବାଟ କଢାଇଥିଲା ।

ପଣ୍ଡିତ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ - ଏହି ଯୁଗର ଅନ୍ୟତମ ବିଶିଷ୍ଟ ଲେଖକ ଥିଲେ । ଗୋପବନ୍ଧୁ ଦାସଙ୍କ ପ୍ରତିଷ୍ଠିତ - "ସମାଜ" - ଓଡ଼ିଆ ଖବରକାଗଜ ଏକ ଶତାବ୍ଦୀର କୀର୍ତ୍ତିସ୍ତମ୍ଭ ଅଟେ ।

## ପ୍ରଗତି ଯୁଗ -

ପ୍ରଗତି ଯୁଗର ଅନେକ ସାରଥିଙ୍କ ମଧ୍ୟରୁ - ଭଗବତୀଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ (ସଚ୍ଚି) ପ୍ରମୁଖ ବିନ୍ଧାଣୀ ଥିଲେ ।

୧୯୩୫ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ସୃଷ୍ଟି ଏହି ପ୍ରଗତିବାଦୀ ସାହିତ୍ୟ ର ବିଶେଷତ୍ୱ ଥିଲା ।

କବି ସଚ୍ଚି ରାଉତରାୟଙ୍କ ଉପନ୍ୟାସ - "ଚିତ୍ରଗ୍ରୀବ", ଗଳ୍ପଗ୍ରନ୍ଥ - "ମଶାଣିର ଫୁଲ", କାହ୍ନୁଚରଣ ମହାନ୍ତିଙ୍କ "ହା'ଅନ୍ନ" ଓ "ଶାସ୍ତି" - ଉପନ୍ୟାସ, ଗୋପିନାଥ ମହାନ୍ତିଙ୍କ "ପରଜା" ଓ "ଅମୃତର ସନ୍ତାନ" - ଉପନ୍ୟାସ ଓଡ଼ିଆ ସାହିତ୍ୟ ର ମାଇଲଖୁଂଟ ।

ଭଗବତୀଚରଣ ପାଣିଗ୍ରାହୀଙ୍କ "ଆଧୁନିକ" ରେ ଲେଖିଥିଲେ ଜଗତର ସବୁଅଂଶରେ ଏକ ଚୂଡ଼ାନ୍ତ ପରିବର୍ତ୍ତନର ଆଭାସ ମିଳୁଛି

ଓଡ଼ିଆ ସାହିତ୍ୟରେ ସାମ୍ୟଭାବ ଆଣିବା, ସାମାଜିକ ନ୍ୟାୟ ଲୋଡ଼ିବା, ଦାରିଦ୍ର୍ୟର ଦୂରୀକରଣ ପାଇଁ ସଂଗ୍ରାମ କରିବା ହେଲା ପ୍ରଗତିଶୀଳ ଲେଖକ ମାନଙ୍କର ଆଭିମୁଖ୍ୟ । ଏମାନେ ରାଜନୀତି ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ ।

## ସବୁଜ ଯୁଗ -

ସବୁଜ ଯୁଗର ପ୍ରମୁଖ ସ୍ରଷ୍ଟାମାନଙ୍କ ମଧ୍ୟରେ - କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ମାୟାଧର ମାନସିଂହ ଓ ଅନ୍ନଦାଶଙ୍କର ରାୟ ପ୍ରମୁଖ ସ୍ରଷ୍ଟା ଥିଲେ ।

୧୯୩୧ ରୁ ୧୯୩୫ ମସିହା ମଧ୍ୟରେ ଓଡ଼ିଆ ସାହିତ୍ୟରେ ଏକ ନୂଆଧାରାର ସନ୍ଧାନ ମିଳିଥିଲା । ଏହି କାଳରେ ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ପ୍ରମୁଖ ସବୁଜ ଯୁଗର କବିମାନେ ଯେଉଁ କବିତା ସାହିତ୍ୟ ରଚନା କରିଥିଲେ ତାହାକୁ ସୁବଜଧାରା କୁହାଯାଇଥାଏ । କାଳିନ୍ଦୀଚରଣ ଙ୍କ "ମାଟିର ମଣିଷ" - ଉପନ୍ୟାସ ଏକ ଅମଳିନ କୃତି ।

ଏଇ ସମୟରେ ନଅଜଣ ଲେଖକ ଙ୍କ ଦେଇ ଲେଖା - "ବାସନ୍ତୀ" ଉପନ୍ୟାସ ଏକ ସାହିତ୍ୟରେ ଏକ ନୂତନ ପରୀକ୍ଷା ।

ଏହି ସମୟର ସମସାମୟିକ କବି ଓ ଲେଖକ ମାନେ ହେଲେ - କୁନ୍ତଳା କୁମାରୀ ସାବତ, ମାୟାଧର ମାନସିଂହ ଓ ସଚ୍ଚି ରାଉତରାୟ ।

କବି ମାୟାଧର ମାନସିଂହ - ଜଣେ ଶିକ୍ଷାବିତ୍, କବି ଓ ସମାଲୋଚକ ଭାବରେ ଅନେକ ବହୁମୂଲ୍ୟ ରଚନା ରଚିଯାଇଛନ୍ତି । ତାଙ୍କର ରଚିତ - "ଓଡ଼ିଆ ସାହିତ୍ୟ ର ଇତିହାସ" - ଏକ ଗବେଷଣାଭିତିକ ନିବନ୍ଧ । ସେ ଜ୍ଞାନପୀଠ ପୁରସ୍କାର ରେ ସମ୍ମାନୀତ । ସଚ୍ଚି ରାଉତରାୟ ସାହିତ୍ୟରେ ମୁକ୍ତଛନ୍ଦ ପ୍ରୟୋଗକରି ଆଧୁନିକ କବିତାରେ ଏକ ନୂଆଯୁଗ ସୃଷ୍ଟିକରି ଯାଇଛନ୍ତି । ତାଙ୍କର "ବାଜିରାଉତ" କବିତାପାଇଁ ସେ ବିଶ୍ୱବନ୍ଦୀତ ।

ଏହି ସମୟର ଗାଥାକବି ହେଲେ - ରାଧାମୋହନ ଗଡନାୟକ ଓ କୃଷ୍ଣଚନ୍ଦ୍ର ତ୍ରିପାଠୀ ।

ରେଭେନ୍ସା କଲେଜରେ ପଢ଼ିବା ସମୟରେ କାଳିନ୍ଦୀଚରଣ ଓ ସାଥିମାନେ "ନନ୍‌ସେନ୍ସ" କ୍ଲବ୍ ଗଠନ କରିଥିଲେ । ଏ ସମୟରେ ସବୁଜଗୋଷ୍ଠୀର ମୁଖପତ୍ର "ଯୁଗବାଣୀ" ରେ ସବୁଜ କବିମାନଙ୍କ ଲେଖା ପ୍ରକାଶିତ ହୋଇଥିଲା । କବିତାରୁ ହିଁ କାଳିନ୍ଦୀଚରଣ ଙ୍କ ସାହିତ୍ୟ ସର୍ଜନା ଆରମ୍ଭ ହୋଇଥିଲା । ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ତାଙ୍କ ସାହିତ୍ୟ ସ୍ୱର ଉତୋଳନ କରୁଥିଲା । ସେ ଦରଜୀକବି ଓ ଜୀବନବାଦୀ ସାହିତ୍ୟିକ ଭାବରେ ପରିଚିତ ଥିଲେ । "ମାଟିର ମଣିଷ" ଉପନ୍ୟାସ ତାଙ୍କୁ କାଳଜୟୀ କରିପାରିଅଛି । କାଳିନ୍ଦୀଚରଣ - ଏକାଧାରାରେ ଔପନ୍ୟାସିକ, ଗାଳ୍ପିକ, କବି, ନାଟ୍ୟକାର, ପ୍ରାବନ୍ଧିକ, ଜୀବନୀକାର, ଆତ୍ମଜୀବନୀକାର ଭାବରେ ଓଡ଼ିଆ ସାହିତ୍ୟରେ ପରିଗଣିତ ଥିଲେ । "ପଦ୍ମଭୂଷଣ" ଉପାଧି ଭାରତ ସରକାରଙ୍କ ଠାରୁ ପାଇଥିଲେ, ତାଙ୍କର ସାମଗ୍ରିକ ସାରସ୍ୱତ ସୃଷ୍ଟିପାଇଁ ।

ଓଡ଼ିଆ ସାହିତ୍ୟ ର ସବୁଜଯୁଗ କହିଲେ - ମୁଖ୍ୟତଃ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ ବୁଝାଯାଉଥିଲା ।

## ସ୍ୱାଧୀନତା ପରର ଯୁଗ -

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଭାରତବର୍ଷ ସ୍ୱାଧୀନତା ହେବାପରେ ଅଦ୍ୟାବଧି ରଚିତ ସାହିତ୍ୟକୁ ସ୍ୱାଧୀନତା ପରବର୍ତ୍ତୀ ଯୁଗ ସାହିତ୍ୟ ବୋଲି ଗଣନା କରାଯାଇଛି - ଓଡ଼ିଆ ସାହିତ୍ୟରେ । ଏହାକୁ ଦୁଇଗୋଟି ଭାଗରେ ବିଭକ୍ତ କରାଯାଇଅଛି

୧. ଅତ୍ୟାଧୁନିକ ପର୍ବ

୨. ଉତର ଅତ୍ୟାଧୁନିକ ପର୍ବ

ଓଡ଼ିଆ ଭାଷାରେ ଫକୀରମୋହନ ସେନାପତିଙ୍କୁ ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ର ଜନକ ବୋଲି ଧରାଯାଇଥାଏ । ତାଙ୍କ ରଚିତ "ରେବତୀ" ପ୍ରଥମ ଓଡ଼ିଆ କ୍ଷୁଦ୍ରଗଳ୍ପର ମାନ୍ୟତା ପାଇଅଛି ।

ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ସରଳ ଓ ବୋଧ ଭାଷାରେ ରଚିତ "ନନାଙ୍କ ବସ୍ତାନୀ", "ଭାଗବତ ଟୁଙ୍ଗୀରେ ସନ୍ଧ୍ୟା" ଓ "ଆମ ଗାଁର ହାଲଚାଲ" ଆଦି କହାଣୀ ଓ ପ୍ରବନ୍ଧ ପୋଥି ଓଡ଼ିଆ ସାହିତ୍ୟକୁ ଉନ୍ନତ କରିଅଛି ।

ଉମେଶ ଚନ୍ଦ୍ର ସରକାରଙ୍କ ଲିଖିତ "ପଦ୍ମମାଳୀ" ଥିଲା ପ୍ରଥମ ସମ୍ପୂର୍ଣ୍ଣ ଓଡ଼ିଆ ଉପନ୍ୟାସ - ୪ ଅକ୍ଟୋବର, ୧୮୮୮ ମସିହାରେ କଟକ ପ୍ରିଂଟିଂ କମ୍ପାନୀ ଦ୍ୱାରା ପ୍ରକାଶିତ "ପଦ୍ମମାଳୀ" ପ୍ରକାଶିତ ହେବାର ପ୍ରାୟ ଦଶବର୍ଷ ପୂର୍ବରୁ ରାମଶଙ୍କର ରାୟଙ୍କ ଦ୍ୱାରା ଐତିହାସିକ ପୃଷ୍ଠଭୂମି ଉପରେ ଲିଖିତ ଉପନ୍ୟାସ "ସୌଦାମିନୀ" ୧୮୭୮ ମସିହାରେ "ଉତ୍କଳ ମଧୁପ" ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶ ପାଉଥିଲା । ପରେ ଏହା ତାଙ୍କ ଗ୍ରନ୍ଥାବଳୀରେ ସ୍ଥାନ ପାଇଥିଲା ।

ଫକୀରମୋହନ ସେନାପତିଙ୍କ - ମାମୁଁ, ଲଛମା, ଛମାଣ ଆଠଗୁଣ୍ଠ ଆଦି କାଳଜୟୀ ଉପନ୍ୟାସ ସୃଷ୍ଟି ହୋଇଥିଲା ।

ଗୋପିନାଥ ମହାନ୍ତିଙ୍କ କାଳରେ ଓଡ଼ିଆ ଉପନ୍ୟାସରେ ଅନେକ ଉନ୍ନତି ହୋଇଥିଲା । ଦାଦିବୁଢ଼ା, ପରଜା, ଅମୃତର ସନ୍ତାନ, ହରିଜନ ପ୍ରମୁଖ ଉପନ୍ୟାସ ଅଟେ । "ମାଟିମଟାଳ" ଉପନ୍ୟାସ ପାଇଁ ୧୯୭୩ ରେ ଜ୍ଞାନପୀଠ ପୁରସ୍କାର ପାଇଥିଲେ ।

ଓଡ଼ିଆ ଉପନ୍ୟାସକୁ - କାହ୍ନୁଚରଣ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ପ୍ରତିଭା ରାୟ, ସଚ୍ଚି ରାଉତରାୟ, ମନୋଜ ଦାସ, ରାମଚନ୍ଦ୍ର ବେହେରା, ଶାନ୍ତନୁ ଆଚାର୍ଯ୍ୟ, ବିଭୂତି ପଟ୍ଟନାୟକ ଙ୍କ ଉପନ୍ୟାସ ସବୁ ବହୁ ଭାବରେ ଉତ୍କୃଷ୍ଟ କରିଅଛନ୍ତି ।

ଆଧୁନିକ ଓଡ଼ିଆ କବିତା ସାହିତ୍ୟ କ୍ଷେତ୍ରରେ - ମାୟାଧର ମାନସିଂହ, ରମାକାନ୍ତ ରଥ, ଦିପକ ମିଶ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ବ୍ରଜନାଥ ରଥ, ସୌଭାଗ୍ୟ କୁମାର ମିଶ୍ର ଆଦିଙ୍କ ରଚନାବଳୀ ବିଶେଷ ଭାବରେ ପ୍ରଭାବିତ କରିଅଛି । କବିତା ପାଇଁ ବିଶେଷ ଅବଦାନ ନିମନ୍ତେ ଭାରତ ସରକାର ସୀତାକାନ୍ତ ମହାପାତ୍ରଙ୍କୁ "ପଦ୍ମବିଭୂଷଣ" ଓ ରମାକାନ୍ତ ରଥଙ୍କୁ "ପଦ୍ମଭୂଷଣ" ଉପାଧି ପ୍ରଦାନ କରିଅଛନ୍ତି ।

ଜଗନମୋହନ ଲାଲଙ୍କ ରଚିତ "ବାବାଜୀ" (୧୮୭୭) ଥିଲା - ପ୍ରଥମ ଓଡ଼ିଆ ନାଟକ । ଓଡ଼ିଆ ସାହିତ୍ୟକୁ - କାଳୀଚରଣ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ପ୍ରାଣବନ୍ଧୁ କର, ଗୋପାଳ ଛୋଟରାୟ, ମନୋରଞ୍ଜନ ଦାସ, ବିଶ୍ୱଜିତ୍ ଦାସ ଓ ବିଜୟ ମିଶ୍ର ଙ୍କ ନାଟକ କ୍ଷେତ୍ରରେ ଅବିସ୍ମରଣୀୟ ।

ଓଡ଼ିଆରେ ଚଳଚ୍ଚିତ୍ର ଶିଳ୍ପ ଆରମ୍ଭ ହେବା ପରେପରେ ଅନେକ ପଥିତଯଶା କଥାକାରଙ୍କ ଉପନ୍ୟାସ ଓ ନାଟକ ଚଳଚ୍ଚିତ୍ରରେ ସ୍ଥାନପାଇବା ଆରମ୍ଭ କରିଲା । କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ "ମାଟିର ମଣିଷ" ପରି କାଳଜୟୀ ଉପନ୍ୟାସ ସବୁ ଚଳଚ୍ଚିତ୍ର ପରଦାରେ ସିନେମା ରୂପନେଲା । ବିଭୂତି ପଟ୍ଟନାୟକ ଙ୍କ "ବଧୂ ନିରୁପମା" - ଏକ ସଫଳ ରୂପାନ୍ତରିତ ନାଟକ ଚଳଚ୍ଚିତ୍ରର ରୂପରେଖ ନେଲା । ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କ "ଭାଇଭାଉଜ" ଓ "ଘରସଂସାର" ଚଳଚ୍ଚିତ୍ର ରୂପନେଇଛି । ନାଟ୍ୟକାର ସୁବୋଧ ପଟ୍ଟନାୟକ - ଜଣେ ଜଣାଶୁଣା ନାଟ୍ୟକାର ।

ବାସ୍ତବିକ୍ ଓଡ଼ିଆ ସାହିତ୍ୟ ର ଏକ ସୁଦୀର୍ଘ ପରମ୍ପରା ରହିଅଛି । ଏହାକୁ ଅନେକ ସାହିତ୍ୟିକ - "ଓଡ଼ିଆ ସାହିତ୍ୟ ର ଇତିହାସ" ପୁସ୍ତିକା ରଚନାକରି ସର୍ବଶ୍ରେଷ୍ଠ ବର୍ଣ୍ଣନା କରିଅଛନ୍ତି ।

## ଓଡ଼ିଆ ଏକ ଶାସ୍ତ୍ରୀୟ ଭାଷା -

ସୁଦୀର୍ଘ ୨୫୦୦ ବର୍ଷର ଓଡ଼ିଆ ଭାଷା ଓ ସାହିତ୍ୟ ର ଅବର୍ତମାନକୁ ବିଚାରକୁ ନେଇ ଭାରତ ସରକାର ୨୦ ଫେବୃୟାରୀ, ୨୦୧୪ ମସିହାରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ଦେଇଥିଲେ । ୧୧ ମାର୍ଚ୍ଚରେ ଭାରତର ଗେଜେଟ୍‌ରେ ପ୍ରକାଶିତ ହୋଇଥିଲା । ଏହି ମାନ୍ୟତା ପାଇବାରେ ଓଡ଼ିଆ ଭାଷା ଷଷ୍ଠ ଭାଷା । ଏହାପୂର୍ବରୁ - ତାମିଲ୍, ସଂସ୍କୃତ, ତେଲୁଗୁ, କନ୍ନଡ଼ ଓ ମାଲାୟଲମ କୁ ଶାସ୍ତ୍ରୀୟ ଭାଷା ମାନ୍ୟତା ମିଳିସାରିଛି ।

ଓଡ଼ିଆ ଶାସ୍ତ୍ରୀୟ ଭାଷା ମାନ୍ୟତା ପାଇଲାପରେ ପ୍ରତିବର୍ଷ ଆଠଗୋଟି ଆନ୍ତର୍ଜାତୀୟ ପୁରସ୍କାର ପ୍ରଦାନ କରାଯିବ । ଓଡ଼ିଆ ଭାଷାପାଇଁ ଏକ ସେଟଂର ଅଫ୍ ଏକ୍ସଲେନ୍ ସ୍ଥାପିତ ହେବ । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଗୁଡ଼ିକରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ଖୋଲିବ ଓ ଅଧ୍ୟାପକ ନିଯୁକ୍ତି ପାଇବେ ।

ଓଡ଼ିଶା ସରକାର - ୨୦୧୫ ମସିହାରେ ମାର୍ଚ୍ଚ ମାସ ୧୧ ତାରିଖକୁ ଶାସ୍ତ୍ରୀୟ ଓଡ଼ିଆ ଭାଷା ଦିବସ ରୂପରେ ପାଳନ କରୁଛନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ ଏକ ଦୁଇଦିନିଆ ଶାସ୍ତ୍ରୀୟ ଓଡ଼ିଆ ଭାଷା ଜାତୀୟ କର୍ମଶାଳା ଆୟୋଜନ କରି ଏହାର ରୂପରେଖ ପ୍ରସ୍ତୁତ କରିଅଛନ୍ତି ।

ବିଶିଷ୍ଟ ସାହିତ୍ୟିକ ପଣ୍ଡିତ ଡକ୍ଟର ଅନ୍ତର୍ଯ୍ୟାମି ମିଶ୍ର - ପ୍ରଥମ ଓଡ଼ିଆ ଶାସ୍ତ୍ରୀୟ ଭାଷା ଜାତୀୟ ପୁରସ୍କାର ୨୦୧୯ - ଭାରତର ମହାମହିମ ରାଷ୍ଟ୍ରପତିଙ୍କ ଠାରୁ ପାଇଛନ୍ତି । ଏଥିପାଇଁ ବିଜ୍ଞାପ୍ତି ଜାରି କରାଯାଇଛି ।

ଅନେକ ସାହିତ୍ୟିକ, ଗବେଷକ ଓ ଅଧ୍ୟାପକ ଙ୍କ ଉଚ୍ଚକୋଟୀର ସନ୍ଦର୍ଭ - ଓଡ଼ିଆ ଏକ ଶାସ୍ତ୍ରୀୟ ଭାଷା ପ୍ରକାଶିତ ହୋଇଅଛି ।

ବାସ୍ତବିକ୍ ଓଡିଆ ସାହିତ୍ୟ ଓ ଓଡିଆ ଏକ ଶାସ୍ତ୍ରୀୟ ଭାଷା । ଆମ ଜାତି ଓଡିଆ ପାଇଁ ଗର୍ବୀତ କଥା ଏ ଜାତିର ଆରାଧ୍ୟଦେବତା ମହାପ୍ରଭୁ ଶ୍ରୀ ଜଗନ୍ନାଥ ଏ ଜାତି ଭାଷା ଓ ସଂସ୍କୃତି ର ପ୍ରତୀକ ଅଟନ୍ତି ।

---

## ଓଡିଆ ସାହିତ୍ୟ ର ବିଶିଷ୍ଟ ସାଧକ
## ଭାଷ୍ୟାକାର ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

ଦେବୀପ୍ରସନ୍ନ ପଟ୍ଟନାୟକ ଜଣେ ଓଡିଆ ଭାଷାବିତ୍, ସାମାଜିକ ବିଜ୍ଞାନୀ ଓ ଲେଖକ । ସେ କେନ୍ଦ୍ରୀୟ ଭାଷା ପ୍ରତିଷ୍ଠାନ (CIIL) ମହେଶ୍ୱର ର ପ୍ରତିଷ୍ଠାତା ନିର୍ଦ୍ଦେଶକ । ଓଡିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ପ୍ରଦାନକରିବା କ୍ଷେତ୍ରରେ ଯେଉଁ କେତେଜଣ ଅନନ୍ୟ ଭାଷାବିତ୍‌ଙ୍କ ମହତ୍ୱପୂର୍ଣ୍ଣ ଅବଦାନ ରହିଅଛି, ସେମାନଙ୍କ ମଧ୍ୟରୁ ଦେବୀପ୍ରସନ୍ନ ଅନ୍ୟତମ ।

ଦେବୀପ୍ରସନ୍ନ ପଟ୍ଟନାୟକ ୧୯୩୪ ମସିହା ମାର୍ଚ୍ଚ ମାସ ୧୪ ତାରିଖରେ କଟକ ଜିଲ୍ଲାର ତିଗିରିଆ ଠାରେ ଜନ୍ମଗ୍ରହଣ କରିଥିଲେ । ବାପା ଥିଲେ - ମଧୁସୂଦନ ପଟ୍ଟନାୟକ ଓ ମା' ଥିଲେ - ମିନାମାଳୀ ଦେବୀ । ଗାଁ ସ୍କୁଲରୁ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ପରେପରେ ୧୯୫୦ ମସିହାରେ ବି.ଏ. ଓଡିଆ (ଅନର୍ସ) ନେଇ ସେ ଉତୀର୍ଣ୍ଣ ପରେପରେ ଏମ୍.ଏ. (ଓଡିଆ) - ରେଭେନ୍ସା କଲେଜରୁ ୧୯୫୭ ମସିହାରେ ପ୍ରଥମ ହୋଇ ଭକ୍ତକବି ମଧୁସୂଦନ ଗୋଲ୍ଡ ମେଡାଲ ପାଇଥିଲେ । ୧୯୫୭ ମସିହାରେ ଡିପ୍ଲୋମା ଇନ ଫ୍ରାନିସ୍ - ବିଶ୍ୱଭାରତୀ ଶାନ୍ତି ନିକେତନରୁ ଡିଗ୍ରୀ ଧରିଥିଲେ । ପରେ ୧୯୫୮ରେ ଏମ୍.ଏ. (ଲିଙ୍ଗୁଏଷ୍ଟିକ୍) ଡେକାନ କଲେଜ, ପୁନେରୁ ଉତୀର୍ଣ୍ଣ ହୋଇଥିଲେ । ୧୯୬୧ ମସିହାରେ ଆମେରିକାର କରନୋଲ ବିଶ୍ୱବିଦ୍ୟାଳୟରୁ ଲିଙ୍ଗୁଏଷ୍ଟିକ୍‌ରେ ଡକ୍ଟରେଟ୍ (ପିଏଚ୍.ଡି.) ଉପାଧି ପାଇଥିଲେ । ଦେବୀପ୍ରସନ୍ନ ଙ୍କୁ ସମ୍ମାନଜନକ ଡକ୍ଟର ଅଫ୍ ଲିଟେରଚର (ଡି.ଲିଟ୍.) ଉପାଧି ୨୦୧୧ ମସିହାରେ ଓଡିଶାର ଶିକ୍ଷା ଓ ଅନୁସନ୍ଧାନ ବିଶ୍ୱବିଦ୍ୟାଳୟ ଭୁବନେଶ୍ୱର ପ୍ରଦାନ କରିଥିଲେ ଓ ୨୦୧୩ ମସିହାରେ କଟକର ଐତିହାସିକ ରେଭେନ୍ସା ବିଶ୍ୱବିଦ୍ୟାଳୟ ସମ୍ମାନଜନକ ଡି.ଲିଟ୍. ଉପାଧି ପ୍ରଦାନ କରିଥିଲେ ।

କର୍ମମୟ ଜୀବନରେ ଦେବୀପ୍ରସନ୍ନ ଜଣେ ଭାଷା ବିଜ୍ଞାନୀ ଅଧାପକ ଭାବରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଅଧାପନା କରିଥିଲେ । ପରେ ୧୯୬୯ ମସିହାରେ ମହିଶୂରରେ ପ୍ରତିଷ୍ଠିତ ହେଇଥିବା କେନ୍ଦ୍ରୀୟ ଭାରତୀୟ ଭାଷା ପ୍ରତିଷ୍ଠାନରେ ସେ ପ୍ରତିଷ୍ଠାତା ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିଥିଲେ । ୧୯୬୯ ରୁ ୧୯୮୯ ମସିହା ଦୀର୍ଘ ୨୦ ବର୍ଷକାଳ ସେ ସେଠାରେ କାର୍ଯ୍ୟରତ ଥିଲେ । ଅବସର ସମୟବେଳକୁ ତାଙ୍କୁ ଭାରତ ସରକାରଙ୍କ ଅତିରିକ୍ତ ସଚିବ ପଦବୀତୁଲ୍ୟ ଗଣା ଯାଉଥିଲା । ଭାରତ ସରକାରଙ୍କ ମାନବ ସମ୍ବଳ ବିଭାଗ ଅଧିନରେ ସେ କାର୍ଯ୍ୟ କରୁଥିଲେ । ସେ ଅତିରିକ୍ତ ସଚିବ - ଶିକ୍ଷା ବିଭାଗ - ଭାରତ ସରକାର ପଦବୀରୁ ଅବସର ଗ୍ରହଣ କରିଥିଲେ ।

### ସାରସ୍ୱତସାଧକ ଦେବୀପ୍ରସନ୍ନ -

ଦେବୀପ୍ରସନ୍ନ ପଟ୍ଟନାୟକ ଥିଲେ ଓଡିଆ ଭାଷା ଓ ସାହିତ୍ୟ ର ଜଣେ ପଥିତଯଶା ସ୍ରଷ୍ଟା । ବିଶେଷତଃ ଭାଷାର ବିକାଶପାଇଁ ଅନେକ କାଳଜୟୀ ଭାଷାଭିତିକ ସାହିତ୍ୟ ସେ ରଚନା କରିଛନ୍ତି । ଓଡିଆ ଭାଷାର ଉତ୍ପତି ଓ ତା'ର କ୍ରମବିକାଶ ଦିଗରେ ଭାଷାବିତ୍ ଦେବୀପ୍ରସନ୍ନ ଙ୍କ ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଓଡିଶା କାହିଁକି ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଜଣେ ଭାଷାବିତ୍ ଭାବରେ ଦେବୀପ୍ରସନ୍ନ ଙ୍କ ସୁନାମ ରହିଅଛି ।

ଅନେକ କାଳଜୟୀ ଭାଷାଭିତିକ ପୁସ୍ତକର ରଚୟିତା ଦେବୀପ୍ରସନ୍ନ । ସେଗୁଡ଼ିକ ମଧ୍ୟରେ -

୧. କବିଲିପି (କବିବର ରାଧାନାଥ ରାୟଙ୍କ ଚିଠିପତ୍ରର ସୁସମ୍ପାଦିତ ସଂକଳନ) - ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ - ୧୯୫୬

୨. ସାହିତ୍ୟବୀକ୍ଷା - ଗ୍ରନ୍ଥ ମନ୍ଦିର, କଟକ - ୧୯୬୫

୩. ଏକ ଐତିହାସିକ ସଂକଳନ (ବିଭିନ୍ନ ଭାଷାଭିତିକ) - ଓଡିଆ, ଆସାମିଜ୍, ବେଙ୍ଗଲି, ହିନ୍ଦୀ, ମାଉଟ୍ଁନେଭଗ୍ - ୧୯୬୫

୪. କୁମାନୀ ଭାଷାର ଏକ ମନୋସ୍କ୍ରିପ୍ - ଏମ୍ଏଲ୍ ଆପଟ୍ - ଡୁକ୍ ବିଶ୍ୱବିଦ୍ୟାଳୟ ପ୍ରେସ୍, ଆମେରିକା - ୧୯୬୭

୫. ଇଣ୍ଡିଆନ୍ ଲାଙ୍ଗୁଏଜ୍ - ବାଓଗ୍ରାଫିକାଲ ଗ୍ରାମାର - ଡିସ୍‌ନାରୀ ଆଣ୍ଡ ଟିଚିଙ୍ଗ ମାଟେରିଆଲସ୍ - ଏଜୁକେଶନାଲ ରିସର୍ଚ୍ଚ ସେଟଂର - ନୂଆଦିଲ୍ଲୀ - ୧୯୬୭ - ୨ୟ ଭାଗ - ୧୯୭୪

୬. ଆସ୍ପେଟ୍ ଅଫ୍ ଆପ୍ଲାଏଡ - ଲିଙ୍ଗୁଏଷ୍ଟିକ୍ - ଏସିଆ ପବ୍ଲିସିଂହ ହାଉସ୍ - ୧୯୬୯

୭. ଇଟେଂସିପ୍ - ହିନୀ କୋର୍ସ - ଆମେରିକାନ୍ ଇନିଟ୍ୟୁଷ୍ଟୁଟ୍ ଅଫ୍ ଇଣ୍ଡିଆନ୍ ଷ୍ଟଡିଜି - ପୁନା - ଭାରତ - ୧୯୬୯

୮. ଆନ ଆଡଭାନସ୍ ହିନ୍ଦୀ ରିଡର ସହିତ ଏସ୍. କୁଲା ଆମେରିକାନ ଇନିଷ୍ଟ୍ୟୁଟ୍ ଅଫ୍ ଇଣ୍ଡିଆନ୍ ଷ୍ଟଡିଜ୍ - ମିମୋଓ - ୧୯୬୯

୯. ଆନ ଇଟଂରଡେକସନ୍ ଟୁ ଦି ରିଡିଙ୍ଗ୍ ଆଣ୍ଡ ରାଇଟିଙ୍ଗ୍ ଅପ୍ ଓଡିଆ - ଆମେରିକାନ୍ ଇନଟ୍ୟୁସନ୍ ଅଫ୍ ଇଣ୍ଡିଆନ୍ ଷ୍ଟଡିଜ୍ - ୧୯୭୦ ମିମିଓ

୧୦. ଲାଙ୍ଗୁଏଜ୍ କରିକୁଲମ୍ - କେନ୍ଦ୍ରୀୟ ଭାରତୀୟ ଭାଷା ପ୍ରତିଷ୍ଠାନ - ମହେଶୂର (୨ୟ ସଂସ୍କରଣ) - ୧୯୭୭

୧୧. ଆକାଡେମିକ୍ ରିପୋର୍ଟ - ୟୁନୋସ୍କୋ - ଓ୍ୱାର୍କସପ୍ ଅନ୍ ପ୍ଲୋବୋମ୍ ଅଫ୍ ଲାଙ୍ଗୁଏଜ୍ ଇନଷ୍ଟ୍ରକସନ୍ ଇନ୍ ମଲଟିଲିଙ୍ଗୁଆଲ୍ କଣ୍ଟ୍ରିଂ ଇନ୍ ଏସିଆ ଆଣ୍ଡ ଫାସିପିକ୍ - ୟୁନୋସ୍କୋ ଡକୁମେଟଂ - ୧୯୮୦

୧୨. ଆଡଭାନସ୍ ତାମିଲ ରିଡର ସହିତ ଇ. ଆନ୍ନା ମାଲିଆ ଆଣ୍ଡ ଏମ୍. ଏସ୍. ତିରୁମାଲିଆ - କେନ୍ଦ୍ରୀୟ ଭାରତୀୟ ଭାଷା ପ୍ରତିଷ୍ଠାନ - ମହେଶୂର - ୧୯୮୧

୧୩. ଆନ୍ ଇଟଂରଡେକସନ୍ ଟୁ ତାମିଲ ସ୍କିପିଟ୍ -
ରିଡିଙ୍ଗ୍ ଆଣ୍ଡ ରାଇଟିଙ୍ଗ୍ ସହିତ ଏମ୍. ଏସ୍. ଥିରୁମାଲାଇ କେନ୍ଦ୍ରୀୟ ଭାରତୀୟ ଭାଷା ପ୍ରତିଷ୍ଠାନ - ମହେଶୂର - ୧୯୮୧

୧୪. ମଲଟିଲାଙ୍ଗୁଏଜିମ୍ ଆଣ୍ଡ ମଦର ଟଙ୍ଗ୍ ଏଡୁକେଶନ ଅସ୍କପୋର୍ଡ ବିଶ୍ୱବିଦ୍ୟାଳୟ ପ୍ରେସ୍ - ନୂଆଦିଲ୍ଲୀ - ୧୯୮୧

୧୫. ଲାଙ୍ଗୁଏଜ୍ ଆଣ୍ଡ ସୋସିଆଲ ରେସ୍ୟୁ, ପ୍ରସରଙ୍ଗ ମହେଶୂର ବିଶ୍ୱବିଦ୍ୟାଳୟ ପ୍ରେସ୍ - ୧୯୮୨

୧୬. ଭଜନା ଶତକ - ଅନୁବାଦ ଓ ସମ୍ପାଦନା ଓଡିଶା ଲେଖକ ସମିତି - ଭୁବନେଶ୍ୱର - ୧୯୮୪

୧୭. ଓଡିଆ ଭାଷା ଓ ଭାଷା ବିଜ୍ଞାନ - ଜ୍ଞାନ ମନ୍ଦିର - କଟକ - ୧୯୮୪

୧୮. ରିପୋର୍ଟ ଅନ ମଦରଟନ - ସେକେଣ୍ଡ ଲାଙ୍ଗୁଏଜ୍ - କ୍ଲାସରୁମ୍ ପ୍ରୋସିଜିଓର ଇନ୍ ଇଣ୍ଡିଆ - ୟୁନୋସ୍କୋ ଡକୁମେଟଂ - ୧୯୮୫

୧୯. ମଲଟିଲିଙ୍ଗୁଏଜିମ୍ ଆଣ୍ଡ ମଲଟିଲିଙ୍ଗୁଏଜିମ୍ - ବ୍ରିଟେନ୍ ଆଣ୍ଡ ଇଣ୍ଡିଆ - ଅକୁପେସନାଲ - ପେପର ନମ୍ବର - ୧ -
ଇଟଂରନ୍ୟାସନାଲ ଆସୋସିଏସନ୍ ଅଫ୍ ଇଟଂରଚ୍ୟୁଆଲ ଏଡୁକେଶନ୍, ଇନିଟ୍ୟୁସନ୍ ଅଫ୍ ଏଜୁକେଶନ -
ଲଣ୍ଡନ ୟୁନିଭରସିଟି - ୧୯୮୭

୨୦. ମଲଟିଲିଙ୍ଗୁଏଜିମ୍ ଇନ୍ ଇଣ୍ଡିଆ - ଏଡିଟେଡ୍ - ମଲଟିଲିଙ୍ଗୁଆଲ - ମାର୍ଟର ୟୁକେ - ୧୯୯୦

୨୧. ଲାଙ୍ଗୁଏଜ୍, ଏଜୁକେସନ୍ ଆଣ୍ଡ କଲଚର - କେନ୍ଦ୍ରୀୟ ଭାରତୀୟ ଭାଷା ପ୍ରତିଷ୍ଠାନ - ମହେଶୂର - ୧୯୯୧

ଭାଷାବିତ୍ ଦେବୀପ୍ରସନ୍ନ ପଟ୍ଟନାୟକ ଙ୍କ ସାରସ୍ୱତ ସୃଷ୍ଟି ସମୂହ ମୁଖ୍ୟତଃ ଓଡିଆ ଓ ଭାରତୀୟ ଭାଷା ବିଜ୍ଞାନ ଉପରେ ଆଧାରିତ ପୁସ୍ତକ ।

କବିଲିପି, ସାହିତ୍ୟ ବିକାଶ ତଥା ଓଡିଆ ଭାଷା ଓ ଭାଷା ବିଜ୍ଞାନୀ ଦେବୀପ୍ରସନ୍ନ ଙ୍କ ଓଡିଆ ଭାଷାରେ ପ୍ରକାଶିତ ପୁସ୍ତକ ଅଟେ । ଦେବୀପ୍ରସନ୍ନ ଙ୍କ ଅନ୍ୟାନ୍ୟ ପୁସ୍ତକ ସମୂହ ଭାଷା ଆଧାରିତ ଭାରତୀୟ ଭାଷା ବିଜ୍ଞାନ ଉପରେ ପର୍ଯ୍ୟବେଶିତ ।

## ସମ୍ମାନ ଓ ପୁରସ୍କାର -

ସାରସ୍ୱତସାଧକ ଦେବୀପ୍ରସନ୍ନ ପଟ୍ଟନାୟକ ଅନେକ ସମ୍ମାନ ନିଜର କୃତିତ୍ୱପାଇଁ ଲାଭ କରିଅଛନ୍ତି । ଭାରତ ସରକାର ତାଙ୍କୁ ନାଗରିକ ସମ୍ମାନ "ପଦ୍ମଶ୍ରୀ" ଉପାଧିରେ ଭୂଷିତ କରିଅଛନ୍ତି । ଅନ୍ୟାନ୍ୟ ସମ୍ମାନ ମଧ୍ୟରେ -

୧. ବିଷୁବ ମିଳନ - ୧୯୫୬

୨. ରକ୍‌ପୋଲର ଫୋଲୋସିପ୍ - ୧୯୫୯-୬୧

୩. ଫୁଲବ୍ରାଇଟ୍ ଟ୍ରାଭେଲ ଗ୍ରାଟଂ - ୧୯୫୯

୪. ସମ୍ମାନୀତ - ଇଷ୍ଟ, ୱେଷ୍ଟ ସେଟଂର - ଆମେରିକା - ୧୯୮୩

୫. ଜବାହାରଲାଲ ନେହ୍ରୁ ଫୋଲୋ - ୧୯୮୩-୮୫

୬. ପ୍ରତିଭା ପୁରସ୍କାର - କଳା ବିକାଶ କେନ୍ଦ୍ର - କଟକ - ୧୯୮୭

୭. ଭାରତ ସରକାରଙ୍କ ପଦ୍ମଶ୍ରୀ (ଶିକ୍ଷା ଓ ସାହିତ୍ୟ) - ୧୯୮୭

୮. ଇନ୍ଦିରା ଆକାଡେମୀ - ଭୁବନେଶ୍ୱର ସମ୍ମାନୀତ - ୧୯୮୭

୯. ଆସାମ ସାହିତ୍ୟ ସଭା (୪୯ ଅଧିବେଶନ) ସମ୍ମାନୀତ - ୧୯୮୨

୧୦. କେନ୍ଦ୍ରୀୟ ଲଳିତ କଳା ଏକାଡେମୀ - ନୂଆଦିଲ୍ଲୀ ପକ୍ଷରୁ ୮ମ କଳା ମେଳାରେ ସ୍ୱୀକୃତପ୍ରାପ୍ତ - ୧୯୯୩

୧୧. ଲିଙ୍ଗୁଏଷ୍ଟିକ୍ ସୋସାଇଟ୍ ଅଫ୍ ଇଣ୍ଡିଆ ପକ୍ଷରୁ ସମ୍ମାନୀତ - ୧୯୯୪

୧୨. ଶିଖରା ସମ୍ମାନ - ହିମାଚଳ ପ୍ରଦେଶ - ୧୯୯୫

୧୩. କ୍ଷେତ୍ରବାସୀ ସମ୍ମାନ - ଓଡିଆ ଗବେଷଣା ପରିଷଦ - କଟକ - ୧୯୯୭

୧୪. ନନ୍ଦିଘୋଷ ସମ୍ମାନ - ୧୯୯୮

୧୫. ଜବାହାରଲାଲ ସାରସ୍ୱତ ସମ୍ମାନ - ୧୯୯୮

୧୬. ନିଖିଳ ଉତ୍କଳ ଓଡିଆ ଅଧ୍ୟାପକ ସମ୍ମିଳନୀ ସମ୍ମାନ - ୨୦୦୦

୧୭. ଉତ୍କଳ ପାଠକ ସମାଜ ସମ୍ମାନ - ୨୦୦୧

୧୮. କୁମାରସ୍ରୋବ ସମିତି - ଆଠଗଡ ସମ୍ମାନ - ୨୦୦୧

୧୯. ଏକ୍ରାମ ସମ୍ମାନ - ଭୁବନେଶ୍ୱର - ୨୦୦୪

୨୦. ରାଉଲକେଲା ଷ୍ଟିଲ୍ ପ୍ଲାଟଂ ସମ୍ମାନ (ଉତ୍କଳ ଦିବସରେ) - ୨୦୦୬

୨୧. ପ୍ରଗତି ଉତ୍କଳ ସଂଘ (ଉତ୍କଳ ଦିବସ ସମ୍ମାନ) - ୨୦୦୬

୨୨. ମାନସିଂହ ସମ୍ମାନ - ସାରଳା ସାହିତ୍ୟ ସଂସଦ - ୨୦୦୮

୨୩. ଉତ୍କଳ ସାହିତ୍ୟ ସମାଜ, କଟକ - ସମ୍ବର୍ଦ୍ଧନା - ୨୦୦୮

୨୪. ଜୀବନବ୍ୟାପି ସାଧନା ସମ୍ମାନ - ନକ୍ଷେତ୍ର ଟିଭି - ୨୦୧୧

୨୫. ଦାମୋଦର ସ୍ମୃତି ସଂସଦ ସମ୍ମାନ - ୨୦୧୧
୨୬. ଡି.ଲିଟ୍. (ସମ୍ମାନଜନକ) - ଶିକ୍ଷା ଓ ଅନୁସନ୍ଧାନ ବିଶ୍ୱବିଦ୍ୟାଳୟ - ଭୁବନେଶ୍ୱର - ୨୦୧୧
୨୭. ଜୀବନବ୍ୟାପି ସାଧନା ସମ୍ମାନ - ଟାଇମ୍ସ ଅଫ୍ ଇଣ୍ଡିଆ - ୨୦୧୨
୨୮. ସାରଳା ପୁରସ୍କାର - ୨୦୧୨
୨୯. ଡି.ଲିଟ୍. (ସମ୍ମାନଜନକ) - ରେଭେନ୍ସା ବିଶ୍ୱବିଦ୍ୟାଳୟ - କଟକ - ୨୦୧୩
୩୦. ଉତ୍କଳ ପ୍ରତିଭା ସମ୍ମାନ - କଳା ବିକାଶ କେନ୍ଦ୍ର - ୨୦୧୩
୩୧. ରୁଚି ଉତ୍କଳଗୌରବ ସମ୍ମାନ - ୨୦୧୩
୩୨. କଳିଙ୍ଗ ସାହିତ୍ୟ ସମ୍ମାନ (ସାରସ୍ୱତ ସମ୍ମାନ) - ଭୁବନେଶ୍ୱର - ୨୦୧୩
୩୩. ଉତ୍କଳ ସମ୍ମାନ - କଲିକତା - ୨୦୧୪
୩୪. ଉତ୍କଳ ସାହିତ୍ୟ ସମାଜ - କଟକରୁ ଭାଷା ସମ୍ମାନ - ୨୦୧୪

ଆଦି ପ୍ରମୁଖ ସମ୍ମାନ ଦେବୀପ୍ରସନ୍ନ ଙ୍କୁ ସାରସ୍ୱତ ରଚନାଦିଗରେ ଉତ୍ସାହିତ କରିଥିଲା ।

## ପଦ ଓ ପଦବୀ -

ଭାଷାବିତ୍ ଦେବୀପ୍ରସନ୍ନ ଅନେକ ପଦ ଓ ପଦବୀ ଯୁକ୍ତହୋଇ ସେଠାରେ ସକ୍ରିୟ ଭାବରେ କାର୍ଯ୍ୟଭାର କରି ନିଜର ପଦଗୌରବକୁ ବୃଦ୍ଧି କରିପାରିଛନ୍ତି ।

ସଭାପତି - ଭାରତୀୟ ଯୋଗାଯୋଗ, ତାଲିମ ଓ ଗବେଷଣା ପ୍ରତିଷ୍ଠାନ - ୧୯୮୬
ସଭାପତି - ନ୍ୟାସନାଲ ବୁକ୍ ଟ୍ରଷ୍ଟ
ସଭାପତି - ଭାରତୀୟ ଭାଷା ସମାଜ - ୧୯୭୬-୧୯୭୮
କୁଳାଧିପତି - ଛୋଟୁଂରିଆନ ବିଶ୍ୱବିଦ୍ୟାଳୟ, ଆନ୍ଧ୍ର ପ୍ରଦେଶ - ୨୦୧୭-୨୦୨୧
ସିନେଟ୍ ମେମ୍ବର - ମହେଶୁର ବିଶ୍ୱବିଦ୍ୟାଳୟ - ୧୯୭୧-୭୪
ସଦସ୍ୟ - ଭାରତୀୟ ଜ୍ଞାନପୀଠ - କେନ୍ଦ୍ରୀୟ ଚୟନ କମିଟି - ୧୯୭୨-୭୬
ମେମ୍ବର -ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (ୟୁଜିସି) - ପ୍ୟାନେଲ ଅନ୍ ଲାଙ୍ଗୁଏଜ୍ ଆଣ୍ଡ ଲିଙ୍ଗୁଏଷ୍ଟିକ୍ - ୧୯୭୫
ମେମ୍ବର - ବୋର୍ଡ ଅଫ୍ ଗର୍ଭନରସ୍ - ରାଷ୍ଟ୍ରୀୟ ସଂସ୍କୃତ ସଂସ୍ଥାନ - ୧୯୭୦-୧୯୭୪
ଆଜୀବନ ସଭ୍ୟ - ଭାରତୀୟ ଭାଷା ସମାଜ
ମେମ୍ବର - ଜାତୀୟ ଶିକ୍ଷାନୀତି - ୧୯୮୬
ମେମ୍ବର - ଶାସ୍ତ୍ରୀୟ ଓଡିଆ ଭାଷା ପ୍ରେରଣା କମିଟି - ୨୦୧୩
ମେମ୍ବର - ବୋର୍ଡ ଅଫ୍ ଷ୍ଟଡିଜ୍ - ସ୍କୁଲ ଅଫ୍ ଲାଙ୍ଗୁଏଜ୍ - ଜେଏନ୍.ୟୁ

## ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରୀୟ "ସେମିନାର" ଓ "କନଫରେନସ୍" ରେ ଯୋଗଦାନ -

୧. କନଫରେନସ୍ ଅଫ୍ ଲିଙ୍ଗୁଏଷ୍ଟିକ୍ ଆଣ୍ଡ କଲଚ୍ୟୁରାଲ ଡାଇଭରସିଟି - କାନାଡା ସରକାର ୟୁନିସ୍କୋ - ପ୍ୟାରିସ୍ - ୧୯୭୧
୨. ୱାଲର୍ଡ କଂଗ୍ରେସ ଅଫ୍ ଆପ୍ଲାଏଡ ଲ୍ୟୁଙ୍ଗୁଏଷ୍ଟିକ୍ ମୋଟୋଂରିଆଲ - ୧୯୭୮
୩. ଚେୟାରମ୍ୟାନ - ୟୁନୋସ୍କୋ ୱାର୍କସପ୍ ଅନ୍-ପ୍ଲୋବୋମ୍ ରିଲେଟେଡ -
ଲାଙ୍ଗୁଏଜ୍ ଇନଷ୍ଟ୍ରକସନ୍ ଇନ ମଲଟିଲାଙ୍ଗୁଏଜାଲ କଟ୍ରିଂଜ୍ ଇନ୍ ଏସିଆ ଆଣ୍ଡ ପାସିପିକ୍ - ମହେଶୁର - ଭାରତ - ୧୯୮୦
୪. ନ୍ୟାସନାଲ କନଫରେନସ୍ ଅନ ପ୍ରୋଫାଇଲ ଇନ୍ ଇଣ୍ଡିଆନ ଲାଙ୍ଗୁଏଜ୍ - ଆଇଆଇଟି - କାନପୁର - ଭାରତ - ୧୯୮୫
୫. କନଫରେନସ୍ ଅନ୍ ଲାଙ୍ଗୁଏଜ୍ ପଲିସ୍ ଆଣ୍ଡ ଲାଙ୍ଗୁଏଜ୍ ପ୍ଲାନିକ୍ - ହଙ୍ଗକଙ୍ଗ - ୧୯୮୬
୬. ୟୁଜିସି - ନ୍ୟାସନାଲ ଲେକଚର - ଭାରତ - ୧୯୯୨
୭. ଲୁଣ୍ଡ ୟୁନିଭରସିଟ୍ - ସୁଇଡେନ - ୧୯୯୨

ଭାଷାବିତ୍ ଦେବୀପ୍ରସନ୍ନ ପଟ୍ଟନାୟକ ଏହିପରି ଅନେକ ଜାତୀୟ ଓ ଆନ୍ତର୍ଜାତୀୟ ସେମିନାରରେ ନିଜର ବହୁ ମୂଲ୍ୟାୟନ ସନ୍ଦର୍ଭ ଉପସ୍ଥାପନ କରିଅଛନ୍ତି ।

## ବିଦେଶ ଭ୍ରମଣ -

ଭାଷାବିତ୍ ଦେବୀପ୍ରସନ୍ନ ବେସରକାରୀ ଓ ସରକାରୀ ଭାବରେ ଅନେକ ରାଷ୍ଟ୍ର ପରିଭ୍ରମଣ କରିଛନ୍ତି । ସେଠାକାର ସାହିତ୍ୟ, ସଂସ୍କୃତି ଉପରେ ଅନେକ କାର୍ଯ୍ୟକ୍ରମମାନଙ୍କରେ ସେ ସକ୍ରିୟ ଅଂଶଗ୍ରହଣ କରିଅଛନ୍ତି ।

ବେଲ୍ଜିୟମ୍, ବର୍ମା, ଚନ୍ଦା, ଡେନମାର୍କ, ଇଜିପ୍ଟ, ଫିନ୍‌ଲ୍ୟାଣ୍ଡ, ଫ୍ରାନ୍ସ, ଜର୍ମାନୀ, ହଙ୍ଗକଙ୍ଗ, ଇରାନ୍, ଇରାକ୍, ଇଟାଲି, ଜାପାନ, ଯୋଧାନ, ଲିବାନନ, ମାଲେସିଆ, ମାଲି, ନେପାଳ, ନିଗେରିଆ, ଫିଲିଫାଇନ୍, ସିଙ୍ଗାପୁର, ସାଉଥ ଆଫ୍ରିକା, ଶ୍ରୀଲଙ୍କା, ସୁଡନ, ସୁଡୋନ୍, ସୁଇଜରଲ୍ୟାଣ୍ଡ, ଗିରିଆ, ତାୱାନ, ଥାଇଲ୍ୟାଣ୍ଡ, ଥିରିଣ୍ଡାଣ୍ଡ, ତୁର୍କୀ, ଆମେରିକା ଇତ୍ୟାଦି ।

ବାସ୍ତବିକ୍ ଭାଷାବିତ୍ ଦେବୀପ୍ରସନ୍ନ ଓଡିଆ ଓ ଓଡିଶା ମାଟିର ଜଣେ ଯୋଗ୍ୟ ସନ୍ତାନ, ତାଙ୍କ ଭଳି ଯୋଗ୍ୟ ବ୍ୟକ୍ତିଙ୍କୁ ସାହିତ୍ୟ ଓ ଶିକ୍ଷା କ୍ଷେତ୍ରରେ ଭାରତ ସରକାର - ନାଗରିକ ସମ୍ମାନ "ପଦ୍ମଶ୍ରୀ" ଉପାଧି ପ୍ରଦାନ କରିଅଛନ୍ତି ।

## ଦେବୀପ୍ରସନ୍ନ ଙ୍କ ସୃଜନୀ କଥାର ଏକ ଝଲକ

ଭାଷାବିତ୍ ଦେବୀପ୍ରସନ୍ନ ପଟ୍ଟନାୟକ ଙ୍କ ସାରସ୍ୱତ ସୃଷ୍ଟି - "ଭାଷା ଓ ସାହିତ୍ୟ" ପୁସ୍ତକରୁ ଏକ ପ୍ରବନ୍ଧ - (ଭାଷାଭିତିକ) "ଭାଷା, ସମାଜ ଓ ସଂସ୍କୃତି" ଉପସ୍ଥାପିତ ।

## ଭାଷା, ସମାଜ ଓ ସଂସ୍କୃତି

ଭାଷା ଓ ସଂସ୍କୃତି ଉଭୟର ପ୍ରକୃତି ଓ ପ୍ରୟୋଗ ବିଷୟରେ ପଣ୍ଡିତମାନେ ବହୁଦିନୁ ବିଚାର ମନ୍ଥନ କରୁଛନ୍ତି । କିନ୍ତୁ ଭାଷା କିମ୍ବା ସଂସ୍କୃତି କାହାରି ଏକ ସର୍ବମାନ୍ୟ ସଂଜ୍ଞା ଏପର୍ଯ୍ୟନ୍ତ ସୁଦ୍ଧା ସ୍ଥିରହୋଇ ପାରିନାହିଁ । ଭାଷା ଓ ସଂସ୍କୃତି ପରସ୍ପର ସହିତ ଘନିଷ୍ଠ ଭାବରେ ସଂବନ୍ଧ । ଯଦି ବ୍ୟାପକ ଦୃଷ୍ଟିରୁ ପଶୁ ଜଗତଠାରୁ ମଣିଷ ସମାଜରେ ପାର୍ଥକ୍ୟ ଦେଖାଯାଉଥିବା ମାନବ ସମାଜର ସାର୍ବଜନୀନ ବିଭବ ବିଶେଷକୁ ସଂସ୍କୃତି ରୂପେ ଗ୍ରହଣ କରାଯାଏ, ତେବେ ଭାଷା ବ୍ୟତୀତ ଏଇ ସଂସ୍କୃତିର କଳ୍ପନା କରିବା ଅସମ୍ଭବ । ପଶୁ ବ୍ୟବହାର ବିଶେଷଜ୍ଞମାନେ ମତ ପ୍ରକାଶ କରିଛନ୍ତି ଯେ, କୌଣସି ପଶୁକୁ ମାନବ ସୁଲଭ ଦକ୍ଷତା ସ୍ତର ପର୍ଯ୍ୟନ୍ତ କେତେ କୌଶଳ ଶିଖାଇବା ହୁଏତ ସମ୍ଭବ । କିନ୍ତୁ ସେଇ ପଶୁ ତା'ର ପିଲାମାନଙ୍କୁ ଏଇ ଦକ୍ଷତା ଶିଖାଇପାରିବ ନାହିଁ । ପିଲାମାନେ ପୁଣି ମୂଳରୁ ଆରମ୍ଭକରି ଏହି ସମସ୍ତ କୌଶଳ ଶିଖିବେ । ମଣିଷ ସମାଜରେ ଜ୍ଞାନ ଭଣ୍ଡାର ର ଚାବି ପରମ୍ପରା କ୍ରମେ ଗୋଟିଏ ପିଢିରୁ ଅନ୍ୟ ପିଢିକୁ ଯେ ହସ୍ତାନ୍ତରିତ କରାଯାଇପାରୁଚି, ତାହା ଯେ କେବଳ ଭାଷା ଯୋଗୁଁ ସମ୍ଭବ ହୋଇଛି ଏକଥା ଅସ୍ୱୀକାର କରାଯାଇପାରିବ ନାହିଁ ।

ଭାଷା ଓ ସଂସ୍କୃତି ଉଭୟ ବିଷୟରେ ଲୋକ ମନରେ ଅନେକ ଭୁଲ୍ ଧାରଣା ରହିଚି । ଅନେକଙ୍କର ଧାରଣା ଯେ ଯେଉଁ କଥିତ ଭାବ ବିନିମୟ ମାଧ୍ୟମରେ ଲିପି ନାହିଁ ତାହା ଭାଷା ନୁହେଁ, ବିଭାଷା ବା ଉପଭାଷା । ପୁଣି କେତେକ ଙ୍କ ଧାରଣା ଯେ, କଥିତ ଭାଷା ଓ ଲିଖିତ ଭାଷା ଦୁଇଟି ସ୍ୱତନ୍ତ୍ର ଭାଷା । ଅନ୍ୟ କେତେକ ଭାବନ୍ତି ଯେ ଯଦି ଦୁଇଟି କଥିତ ଭାଷାଭାଷୀ ଲୋକେ ପରସ୍ପରକୁ ବୁଝନ୍ତି ତେବେ ସେ ଦୁଇଟି ଗୋଟିଏ ଭାଷାର ଉପଭାଷା; କିନ୍ତୁ ଯଦି ସେମାନେ ପରସ୍ପରକୁ ନ ବୁଝନ୍ତି ତେବେ ସେମାନେ ଦୁଇଟି ସ୍ୱତନ୍ତ୍ର ଭାଷା । ସଓରା ଭାଷା ବ୍ୟାକରଣ ଆଲୋଚନା କରିଥିବା ଜଣେ ପାଶ୍ଚାତ୍ୟ ପଣ୍ଡିତଙ୍କ ମତରେ, ସେହି ଭାଷାରେ ମାତ୍ର ୭୦୦ଟି ଶବ୍ଦ ଅଛି; ତେଣୁ ତାହା ସମ୍ପୂର୍ଣ୍ଣ ଭାଷା ପଦବାଚ୍ୟ ନୁହେଁ । ଭାଷା ବିଷୟରେ ଯେପରି ସଂସ୍କୃତି ବିଷୟରେ ମଧ୍ୟ ସେହିପରି ନାନା ଭ୍ରାନ୍ତ ଧାରଣା ଲୋକ ମନରେ ରହିଛି । ଅନେକଙ୍କର ଧାରଣା ଯେ ସଂସ୍କୃତି ହେଉଛି ଏକ ଦୁର୍ମୂଲ୍ୟ ଓ ଦୁଷ୍ପ୍ରାପ୍ୟ ବସ୍ତୁ । ଯେଉଁ ଭାଗ୍ୟବାନ ବ୍ୟକ୍ତି ଏହାର ଅଧିକାରୀ ହୁଅନ୍ତି ସେମାନେ ସମାଜରେ ସମ୍ମାନ, ଅର୍ଥ ଓ ପ୍ରତିପତି ଏ ସବୁର ଅଧିକାରୀ ହୁଅନ୍ତି । ଏହି ମତକୁ ଧରି ଆଉ ଟିକିଏ ଆଗେଇଲେ ଦେଖାଯିବ ଯେ ସଂସ୍କୃତି ସର୍ବସାଧାରଣ ଅଧିଗମ୍ୟ ନୁହେଁ । ଏହା ସମାଜରେ ପ୍ରତିପତିଶାଳୀ ଏକ କ୍ଷୁଦ୍ର ପରିସର ର ଏକଚାଟିଆ ସମ୍ପତି । ତେଣୁ ସମାଜରେ ଅବହେଳିତ ବା ବର୍ଣ୍ଣାଶ୍ରମ ସମାଜ ବର୍ହିଭୂତ ଲୋକଙ୍କର ଯେ ସଂସ୍କୃତି ଅଛି ଏକଥା ସ୍ୱୀକାର କରିବାକୁ ମଧ୍ୟ ଅନେକ କୁଣ୍ଠା ପ୍ରକାଶ କରନ୍ତି

ଭାଷା ଓ ସଂସ୍କୃତି ମଧ୍ୟରେ ଅନ୍ତରଙ୍ଗତାର ଏକ ମୂଳ କାରଣ ହେଉଛି ଅର୍ଥ ବିଷୟରେ ଉଭୟର ଆଗ୍ରହ । ଭାଷାର ଯେପରି ସଂସ୍କୃତିର ମଧ୍ୟ ସେପରି ବହିରଙ୍ଗ ରୂପ ଓ ଅନ୍ତର୍ନିହିତ ଅର୍ଥ ଅର୍ଦ୍ଧ ନାରୀଶ୍ୱର ପରି ସମ୍ପର୍କବନ୍ଧ । ତେବେ ସଂସ୍କୃତି ବିଚାରରେ ଭାଷାର ସ୍ୱତନ୍ତ୍ର ସ୍ଥାନ ବିଚାରି ଦେଖିବାର ଅଛି । ଭାଷା ସଂସ୍କୃତିର ଅଙ୍ଗ, ପୁଣି ସଂସ୍କୃତିର ବାହକ । ସଂସ୍କୃତିର ବିଭିନ୍ନ ବିଭବ ପରି ଭାଷା ମଧ୍ୟ ପରମ୍ପରାରେ ଗୋଟିଏ ପୁରୁଷରୁ ଅନ୍ୟ ପୁରୁଷକୁ ଆସେ । ପୁଣି ସଂସ୍କୃତିର ବିଭିନ୍ନ ବିଭାବ ଭାଷା ମାଧ୍ୟମରେ ହିଁ ଗୋଟିଏ ପୁରୁଷରୁ ଅନ୍ୟ ପୁରୁଷକୁ ଆସେ । ଏଇ ଦୃଷ୍ଟିରୁ ବିଚାରିଲେ ଉଭୟ ନୃତତ୍ୱ କିମ୍ବା ସମାଜ ତତ୍ୱ ଓ ସଚାଂର ବିଜ୍ଞାନ ସହିତ ଭାଷାର ଏକକାଳୀନ ସମ୍ବନ୍ଧ । ଭାଷା ଓ ସଂସ୍କୃତିର ସମ୍ବନ୍ଧ ବିଚାରରେ ଅନ୍ୟଏକ ସମାନ୍ତରତା ଦ୍ରଷ୍ଟବ୍ୟ । ଯେପରି ମାନବ ସଂସ୍କୃତି, ବିଶ୍ୱ ସଂସ୍କୃତି, ଭାରତୀୟ ସଂସ୍କୃତି, ଓଡିଆ ସଂସ୍କୃତି ଓ ଆଦିବାସୀ ସଂସ୍କୃତି ପ୍ରସଙ୍ଗରେ ସଂସ୍କୃତ ଶବ୍ଦର ପ୍ରୟୋଗ ସମ୍ଭବ, ସେହିପରି ପୃଥିବୀର ଭାଷା, ଭାରତୀୟ ଭାଷା, ଓଡିଆ ଭାଷା, ଦେଶିଆ ବା ସମ୍ବଲପୁରୀ ଭାଷା ପୁଣି ଆଦିବାସୀ ଭାଷା ପ୍ରସଙ୍ଗରେ "ଭାଷା" ଶବ୍ଦର ମଧ୍ୟ ପ୍ରୟୋଗ ସମ୍ଭବ । ତେଣୁ ସଂସ୍କୃତି ଓ ଭାଷା କିମ୍ବା ସଂସ୍କୃତିରେ ଭାଷା ଯେକୌଣସି ବିଚାର ପ୍ରସଙ୍ଗରେ ଉଭୟର ଅନ୍ତରଙ୍ଗ ସମ୍ବନ୍ଧକୁ ସବୁବେଳେ ଆଖି ଆଗରେ ରଖିବା ପ୍ରୟୋଜନ ।

ସମାଜ ବିଜ୍ଞାନର ଛାତ୍ର ଭାଷା ବିଜ୍ଞାନ ବ୍ୟତୀତ କୌଣସି ଏକ ସାମାଜିକ ଗୋଷ୍ଠୀର ବର୍ଣ୍ଣନାତ୍ମକ ବିବରଣ ଲେଖିବାକୁ ସ୍ପର୍ଦ୍ଧା କରିବା ଅସମ୍ଭବ । ପୁଣି କୋରାପୁଟର ବା ବସ୍ତର ଅଚଂଳର କୌଣସି ଆଦିବାସୀ ଅଚଂଳକୁ ଅଧ୍ୟୟନ କରିବାପାଇଁ ଆଗ୍ରହୀ କୌଣସି ନୃତତ୍ୱବିଦ୍ ପାଖରେ ଭାଷା ବିଜ୍ଞାନ ବ୍ୟତୀତ ମାନ୍ୟତାପ୍ରାପ୍ତ କାମକରିବା ଅସମ୍ଭବ କହିଲେ ଚଳେ । ଅପର ଲୋକଙ୍କ ଲେଖା ଓ ବିଚାର ଉପରେ ନିର୍ଭରକରି ଯେଉଁ କାମ କରାଯାଏ, ତାହାର ମୌଳିକ ମୂଲ୍ୟ ତ ନାହିଁ, କୌଣସି ପ୍ରକାର ମୂଲ୍ୟଅଛି କି ନାହିଁ ସନ୍ଦେହ । ଯେଉଁ ଲୋକ ଚୀନ କିମ୍ବା ଭାରତୀୟ ସମାଜ ବିଷୟରେ ଗବେଷଣା କରିବାରେ ଆଗ୍ରହୀ, ତାଙ୍କ ପକ୍ଷରେ ଚୀନ ଓ ଭାରତୀୟ ପ୍ରାଚୀନ ତଥା ଆଧୁନିକ ଭାଷା ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଆହରଣ କରିବା ଆବଶ୍ୟକ । ସାମାଜିକ ଇତିହାସ ଗବେଷଣା କରୁଥିବା ପ୍ରତ୍ୟେକ ଜାଣନ୍ତି ଯେ ସମୟକ୍ରମେ ପ୍ରତି ସମାଜରେ ଚଳଣିରେ ପରିବର୍ତନ ଘଟେ । ଏହି ପରିବର୍ତନକୁ ପ୍ରତ୍ୟକ୍ଷ ଭାବରେ ହୁଏତ ପ୍ରାଚୀନ କାଳ ସମ୍ବନ୍ଧରେ ଲିଖିତ ବିବରଣୀରୁ ଅଧ୍ୟୟନ କରାଯାଇପାରେ କିମ୍ବା ଏଇ ଚଳଣି ଅନୁଭବ କରିଥିବା ଲୋକଙ୍କ ମୁହଁରୁ ସଂଗୃହୀତ ବିବରଣୀରୁ ଅଧ୍ୟୟନ କରାଯାଇପାରେ

ଗୋଟିଏ ଅପର ର ପରିପୂରକ । ଲିଖିତ ବା କଥିତ ଯେକୌଣସି ସୂତ୍ରରୁ ଆହରଣ କରାଯାଉନା କାହିଁକି ଭାଷା ବିଜ୍ଞାନ ବ୍ୟତୀତ ସାମାଜିକ ଚଳଣିର ବିଚାର ଅସମ୍ଭବ ।

ଅର୍ଥନୀତି, ପଦ ମର୍ଯ୍ୟାଦା, ଲିଙ୍ଗ, ବୟସ ଆଦି ଭେଦରେ ସାମାଜିକ ଗୋଷ୍ଠୀର ଅଧ୍ୟୟନ ପରି ଭାଷାଭିତିକ ସାମାଜିକ ଗୋଷ୍ଠୀର ଅଧ୍ୟୟନ ଏକ ସଂଗତ ଓ ମହତ୍ୱପୂର୍ଣ୍ଣ କାର୍ଯ୍ୟ । ପ୍ରକୃତ ପକ୍ଷରେ ସମାଜ ବୈଜ୍ଞାନିକ-ଭାଷା-ବିଜ୍ଞାନୀ ଭାଷାଭିତିକ ସାମାଜିକ ଗୋଷ୍ଠୀ ଓ ଭାଷା ବ୍ୟତିରିକ୍ତ ଅନ୍ୟାନ୍ୟ ବିଚାର ଉପରେ ପ୍ରତିଷ୍ଠିତ ଗୋଷ୍ଠୀ ମଧ୍ୟରେ ଥିବା ଯୋଗସୂତ୍ର ଅନୁସନ୍ଧାନ କରିଥାନ୍ତି । ଏହା ଫଳରେ ଯେ କେବଳ ଭାଷା ଓ ସଂସ୍କୃତିର ପରସ୍ପର ନିର୍ଭରତା ସ୍ପଷ୍ଟହୁଏ, ତାହା ନୁହେଁ, ଯେଉଁସବୁ ସାମାଜିକ ସ୍ତରଭେଦ ଓ ସଚାଂର ପ୍ରଭାବକୁ ପ୍ରଭାବିତ କରୁଥିବା ଶକ୍ତି ସହଜରେ ଦୃଶ୍ୟହୁଏ ନାହିଁ ତାହା ମଧ୍ୟ ସ୍ପଷ୍ଟହୋଇ ଦିଶେ । ଉଦାହରଣ ସ୍ୱରୂପ ପଦ ମର୍ଯ୍ୟାଦା ହେତୁ ସ୍ୱତନ୍ତ୍ର ବିଶେଷ୍ୟ, ବିଶେଷଣ ଓ କ୍ରିୟାପଦ ବ୍ୟବହୃତ ହେଉଥିବା ଗୋଷ୍ଠୀ କଥା ବିଚାର କରାଯାଉ । ଜାପାନୀ ଭାଷାରେ ଏହାର ଉଦାହରଣ ଦେଖିବାକୁ ମିଳେ । ଭାରତରେ ମଧ୍ୟ ପୁରୁଣା ଗଡଜାତ ଅଚଂଳରେ ରଜା ଏବଂ ତାଙ୍କ ଭାଇ ବିରାଦରମାନଙ୍କ ସ୍ୱତନ୍ତ୍ର ମର୍ଯ୍ୟାଦା ଦୃଷ୍ଟିରୁ ଏପରି ସ୍ୱତନ୍ତ୍ର ଭାଷା ପ୍ରୟୋଗର ଉଦାହରଣ ବିରଳ ନୁହେଁ । ମହୀଶୂରରେ ମହାରାଜା ଓ ଅର୍ଥ (ଯେଉଁ ଗୋଷ୍ଠୀ ସହ ମହାରାଜାଙ୍କର ବୈବାହିକ ସମ୍ବନ୍ଧ ସମ୍ଭବ) ପରିବାରକୁ ସାଧାରଣ ଲୋକ "ବୁର୍ଜ" କହି ସମ୍ବୋଧନ କରିଥାନ୍ତି । ଓଡିଶାରେ ରଜାଘରମାନଙ୍କରେ ଦାନ୍ତ ଘସିବାକୁ ଦାନ୍ତୁଆଣି କରିବା, କାଠିଲାଗି ହେବା, ଗାଧୋଇବାକୁ ମାଜଣା ହେବା, ଖାଇବାକୁ ମଣୋହିକି ବିଜେ ହେବା, ଠା'ରେ ବସିବା, ଶୋଇବାକୁ ପହୁଡିବା, ବସିବାକୁ ବିଜେ ହେବା ଆଦି ପରି ପ୍ରୟୋଗକୁ ଏ ସମ୍ବନ୍ଧରେ ବିଚାର କରାଯାଇପାରେ । ଓଡିଶାରେ ପୁଣି ରଜା ଓ ଠାକୁର ଉଭୟଙ୍କ ପ୍ରତି ଏପ୍ରକାର ବ୍ୟବହାର ପ୍ରଯୋଜ୍ୟ । ଓଡିଆ ସମାଜରେ ରାଜା ଓ ଠାକୁରଙ୍କ ସ୍ଥାନ ଗବେଷଣାରେ ଏହି ଭାଷା ପ୍ରୟୋଗର ମହତ୍ୱପୂର୍ଣ୍ଣ ସ୍ଥାନରହିଛି ।

ଭାଷା ବ୍ୟବହାର ରୁ ସାମାଜିକ ମର୍ଯ୍ୟାଦା କିପରି ବାରିହୋଇ ଦିଶେ ଏ ସମ୍ବନ୍ଧରେ ଶ୍ରୀ ସତ୍ୟସାଇ ବାବା ଗୋଟିଏ ସୁନ୍ଦର ଉଦାହରଣ ଦେଇଛନ୍ତି - ଥରେ ଜଣେ ମହାରାଜା ଶିକାର କରିବାକୁ ଯାଇ ବାଟବଣା ହୋଇ ଆପଣା ଲୋକଙ୍କଠାରୁ ଅଲଗା ହୋଇଗଲେ । ସେ ଜଙ୍ଗଲିଆ ରାସ୍ତାକଡରେ ଗୋଟିଏ ଅନ୍ଧକୁ ବସିଥିବାର ଦେଖିଲେ । ସେ ତାକୁ କହିଲେ, ହେ ମୋର ପ୍ରିୟ ପ୍ରଜା ! ଏ ରାସ୍ତାରେ କାହାକୁ ଯିବାର ତୁମେ ଦେଖିଛ କି ? ଅନ୍ଧ କହିଲା 'ନାହିଁ', କିଛି ସମୟ ପରେ ମନ୍ତ୍ରୀ ସେଇ ବାଟଦେଇ ଆସିଲେ ପଚାରିଲେ, "ହେ ଭାଇ, ଏ ରାସ୍ତାରେ କାହାକୁ ଯିବାର ଦେଖିଚ ?" ଅନ୍ଧ ପୂର୍ବପରି ନାହିଁକଲା । କିଛି ସମୟ ପରେ ସେନାପତି ଆସି ଅନ୍ଧକୁ ପଚାରିଲେ ହେ ବୋକା ଅନ୍ଧ ! ଏହି ବାଟେ କାହାକୁ ଯିବାର ଦେଖିଚୁ ? "ପରେପରେ ଜଣେ ସୈନ୍ୟ ଆସି ତାକୁ ପାଟିକରି ପଚାରିଲା, ଆବେ ଶଳା ଅନ୍ଧ, ତୋ ପୋଚରା ପାଟି ମେଲେଇ ମତେ କହିଲୁ ଏ ବାଟେ କାହାକୁ ଯିବାର ତୁ ଦେଖିଚୁ କି ନାଇଁ ?" ସଭାଶେଷରେ ଯେତେବେଳେ ରାଜଗୁରୁ ଆସି ପଚାରିଲେ, ହଇଏ ଭାଇ, ଏ ରାସ୍ତାରେ କିଏ ଯାଇଛନ୍ତି କି ନାହିଁ ଅନୁଗ୍ରହ କରି କହ ? ସେତେବେଳେ ଅନ୍ଧ ଉତରଦେଲା ଯେ "ଜଣେ ରାଜା, ଜଣେ ମନ୍ତ୍ରୀ, ଜଣେ ସେନାପତି ଓ ଜଣେ ସୈନ୍ୟ ତାଙ୍କ ଆଗରୁ ସେଇ ବାଟଦେଇ ଯାଇଛନ୍ତି ଓ ତାକୁ ସେଇ ଏକ ପ୍ରଶ୍ନ ପଚାରିଛନ୍ତି । ସେମାନଙ୍କର କଥା କହିବା ଢଙ୍ଗରୁ ସେ ତାଙ୍କର ପଦମର୍ଯ୍ୟାଦା ଓ ଚାରିତ୍ରିକ ବୈଶିଷ୍ଟ୍ୟ ଜାଣିପାରିଛି ।"

ଶବ୍ଦ ପ୍ରୟୋଗରୁ ଅନେକ ସମୟରେ ଜାତିଗତ ବୈଶିଷ୍ଟ୍ୟ ଜଣାପଡେ । ତାମିଲ୍ ଭାଷାରେ ସୋରୁ : ସଦାମ୍, "ଖାଇବା" ରୁ ଅବ୍ରାହ୍ମଣ, ବ୍ରାହ୍ମଣ, ଭେଦ ଜଣାପଡେ । ଓଡିଆରେ ସାଗ, ସନ୍ତୁଳାକୁ ଅନେକ ବ୍ରାହ୍ମଣ ଶାସନରେ "ଶ୍ୟାଗ", ଶ୍ୟନ୍ତୋଳା ରୂପେ ଉଚ୍ଚାରଣ କରାଯାଇଥାଏ । ପୁଣି ଚାଉଳ, ନେଉଳ, ଦେଉଳ ପରି ଶବ୍ଦରେ "ର" ବା "ଡ" କୁ "ଳ" ସ୍ଥାନରେ ବ୍ୟବହାର କରିବାକୁ ମଧ୍ୟ ସମାଜରେ ଶିକ୍ଷା ଓ ମର୍ଯ୍ୟାଦାର ନ୍ୟୂନତା ପ୍ରକାଶ ପାଇଥାଏ । ଭୌଗୋଳିକ ପାର୍ଥକ୍ୟ ଦୃଷ୍ଟିରୁ ମଧ୍ୟ ବିଭିନ୍ନ ସାମାଜିକ ଗୋଷ୍ଠୀର କଳ୍ପନା କରାଯାଇପାରେ । "ବର୍ତତେ : ଚରୁତେ" କ୍ରିୟାପଦର ବ୍ୟବହାର ଧାରାୱାଡ ଓ ମହୀଶୂର, କନ୍ନଡ ମଧ୍ୟରେ ପାର୍ଥକ୍ୟ ସୂଚାଇଲା ପରି "ଯାଇଛନ୍ତି" ଓ "ଯାଇଚନି", କଟକ ଓ ବାରିପଦାର ଓଡିଆ ମଧ୍ୟରେ ସୂଚିତକରେ । ଭୌଗୋଳିକ ଭିତିରେ ଗୋଷ୍ଠୀ ଗଠନ ସମ୍ବନ୍ଧରେ ଓଡିଆ ପ୍ରବାଦ "ମ ଗଡଜାତ ବ ଓଡିଶା, ପୋଡିଯାଉ ତୋ ବଉଦ ଭାଷା" ଏ ପାର୍ଥକ୍ୟ ସମ୍ବନ୍ଧରେ ବିଚାର୍ଯ୍ୟ । "ଗୋଡ", "ଗୁଡ" ପରି ଶବ୍ଦରେ ଧ୍ୱନିଗତ ପରିବର୍ତନ କିମ୍ବା ଅଣ୍ଡା, ଗରା, ଘଷି, ଛେନା ପରି ଏକାଅର୍ଥ ପାଇଁ ବିଭିନ୍ନ ଶବ୍ଦର ପ୍ରୟୋଗ କିମ୍ବା "କରୁଚି : କରସେ" ପରି ଶବ୍ଦରେ ଧ୍ୱନିଗତ ପରିବର୍ତନ କିମ୍ବା ଅଣ୍ଡା, ଗରା, ଘଷି, ଛେନା ପରି ଏକାଅର୍ଥ ପାଇଁ ବିଭିନ୍ନ କ୍ରିୟା ପରେ ବିଭିନ୍ନତା ଆଦିକୁ ଧରି ନେଇ ଭୌଗୋଳିକ ଭିନ୍ନତା ଦୃଷ୍ଟିରୁ ସାମାଜିକ ଗୋଷ୍ଠୀର ବିଚାର କରାଯାଇପାରେ । ଭାଷାକୁ ଧରି ସାମାଜିକ ଗୋଷ୍ଠୀ ଗଠନ ବିଚାର ର ଅନ୍ୟଏକ ଦିଗ ହେଉଛି ଲିଙ୍ଗଭେଦ ପ୍ରୟୋଗ, ଯେଉଁଠି ଶବ୍ଦର ଲିଙ୍ଗଭେଦ ସୂଚାଇବା ଏକାନ୍ତ ପ୍ରୟୋଜନ । ଋଷ୍ ଭାଷାରେ ସ୍ତ୍ରୀ କିମ୍ବା ପୁରୁଷ ନ ସୂଚାଇ ମୂଲିଆ ବା ମଜୁରିଆ ପରି ଶବ୍ଦକରିବା ଅସମ୍ଭବ । ଭାରତବର୍ଷରେ ଓଡିଆ, ବଙ୍ଗାଳୀ ଓ ଆସାମୀ ପରି ପୂର୍ବାଚଂଳମାନଙ୍କରେ ବ୍ୟାକରଣିକ ଲିଙ୍ଗଭେଦ ଅନେକ କାଳରୁ ଲୋପପାଇଛି । କିନ୍ତୁ ହିନ୍ଦୀ, ମରାଠୀ ପରି ଭାଷାମାନଙ୍କରେ ବ୍ୟାକରଣିକ ଲିଙ୍ଗଭେଦ ଓ ତହିଁ ସହିତ କର୍ତା, କର୍ମ ଓ କ୍ରିୟାର ଲିଙ୍ଗଗତ ସମନ୍ୱୟ ଏବେ ବି ଚଳୁଚି । ଅନେକ ଏହାକୁ ହିନ୍ଦୀ ଶିକ୍ଷାର ଅନ୍ୟତମ କଠିନତା ରୂପେ ଦର୍ଶାଇଥାନ୍ତି । ତାହାର ବିଚାରସ୍ଥଳ ଅନ୍ୟତ୍ର । ଏଠି ଏତିକି କହିଲେ ଯଥେଷ୍ଟ ହେବ ଯେ ଛୋଟ ଛୁଆରୁ ଆରମ୍ଭକରି ସ୍କୁଲ ଶିକ୍ଷା ପର୍ଯ୍ୟନ୍ତ ବିଭିନ୍ନ ବୟସର ଶବ୍ଦ ଗଣନା ଓ ଶିକ୍ଷିତ ଅଶିକ୍ଷିତଙ୍କର ଭାଷା ସମ୍ପଦ ଅଧ୍ୟୟନରୁ ବିଭିନ୍ନ ବୟସର ଶବ୍ଦ ଗଣନା ଓ ଶିକ୍ଷିତ ଅଶିକ୍ଷିତଙ୍କର ଭାଷା ସମ୍ପଦ ଅଧ୍ୟୟନରୁ ବିଭିନ୍ନ ଗୋଷ୍ଠୀର ବିଚାର କରାଯାଇପାରେ । ଏହି ବିଚାର ଆଚଂଳିକତା, ପଦମର୍ଯ୍ୟାଦା ଆଦି ଭେଦରେ ଭାଷାଭିତିକ, ଗୋଷ୍ଠୀ ସ୍ତରଭେଦ ଓ ଏହାକୁ ଧରି ଅର୍ଥନୀତିକ ଓ ଅନ୍ୟାନ୍ୟ ସାମାଜିକ ଭେଦର ବିଚାରରେ ସହାୟକ ।

ବୈଚିତ୍ର୍ୟ ଓ ବୈଭିନ୍ନ୍ୟ, ସମନ୍ୱୟ ଓ ଐକ୍ୟ ମଣିଷ ସଂସ୍କୃତିର ଏକ ମୂଳତତ୍ତ୍ୱ । ମଣିଷ ସାଧାରଣ ଚାରି ପ୍ରକାର ସମୟ ସୀମା ମଧ୍ୟରେ ଆପଣା ସାମାଜିକ ସାଂସ୍କୃତିକ ଜୀବନର ବିକାଶ ଘଟାଇଥାଏ । ପ୍ରଥମତଃ ହେଉଛି ଜୀବତାତ୍ତ୍ୱିକ ସମୟ (Biological Time), ଯାହା ମଣିଷର ଦିନଚର୍ଯ୍ୟା ଓ ଦୈନନ୍ଦିନ ଘଟଣାସ୍ପନ୍ଦ ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ଦ୍ୱିତୀୟରେ ହେଉଛି ସାମାଜିକ ସମୟ (Social Time), ଯାହା ସାମାଜିକ ପଦମର୍ଯ୍ୟାଦା, ଚଳଣି ଓ ତା' ଉପରେ ନିର୍ଭରଶୀଳ ପରିବର୍ତ୍ତନର ଆବଶ୍ୟକତା, ଅନାବଶ୍ୟକତା, ଖରତା ବା ମନ୍ଥରତା ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ତୃତୀୟରେ ହେଉଛି ଐତିହାସିକ ସମୟ (Historical Time), ଏହା ସମସ୍ତ ବଶିଷ୍ଟତାକୁ ଏକ ସୂତ୍ରରେ ଗୁନ୍ଥି ସେମାନଙ୍କ ମଧ୍ୟରେ ସଂଶ୍ଳେଷ ଓ ପ୍ରବାହମାନତାର ବୋଧ ସୃଷ୍ଟିକରି ତା' ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ଚତୁର୍ଥରେ ଭୂବୈଜ୍ଞାନିକ ସମୟ (Geological Time), ଏହା ପୃଥିବୀର ମୌଳିକ ଉପାଦନର କ୍ଷୟ ଓ ତା'ର ପରିମାପ ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ମଣିଷର ପ୍ରତ୍ୟେକ ମୁହୂର୍ତ୍ତ ଏଇ ଚାରି ସମୟ ଦ୍ୱାରା ଆକ୍ରାନ୍ତ ଏକାଧାରାରେ ପରମ୍ପରା ପରିବର୍ତ୍ତନ ବୋଧଦେଇ ଏଇ ବିଭିନ୍ନ ସମୟ ଚେତନା ମଣିଷକୁ ଓ ତା'ର ସଂସ୍କୃତିକୁ ବିଚିତ୍ର ରଙ୍ଗରେ ରଞ୍ଜିତ କରିଥାଏ । ସମୟ ଚେତନା ପରି ସ୍ଥାନ ଚେତନାର ବିଭିନ୍ନ ସ୍ତର ମଧ୍ୟ ମଣିଷ ସଂସ୍କୃତିର ବୈଶିଷ୍ଟ୍ୟ । ସୀମିତ ସ୍ଥାନ ମଧ୍ୟରେ ପଶୁ ଗୋଷ୍ଠୀର ଯାତାୟତ । ବେବୁନ ଗୋଷ୍ଠୀର ବ୍ୟବହାର ଅଧ୍ୟୟନ କରି ବିଶେଷଜ୍ଞମାନେ ମତ ଦେଇଛନ୍ତି ଯେ, ଯଦି କୌଣସି ଗୋଷ୍ଠୀକୁ ତା'ର ବାସସ୍ଥାନରୁ ତଡି ନିଆଯାଏ ତେବେ ସେମାନେ ଆପଣା ଜଣା ଅଚଂଳର ସୀମାକୁ ଆସି ପୁଣି ତାଙ୍କ ବାସସ୍ଥାନକୁ ଫେରିଆସିବେ । ପୁଣି ପଣ୍ଡିତମାନଙ୍କ ମତରେ ମଣିଷ ବ୍ୟତିରିକ୍ତ "ପ୍ରାଇମେଟ୍" ବା ନରବାନର ଗୋଷ୍ଠୀର ଚଳାଚଳ ସୀମା ହେଉଛି ୨୪ ବର୍ଗ କିଲୋମିଟର । ମଣିଷ ସମାଜ ବ୍ୟବସ୍ଥା ବିକାଶର ଆଦିକାଳରୁ ଶିକାର ଓ ଆହରଣକାରୀ ମଣିଷ ମଧ୍ୟ ଶହଶହ ବର୍ଗ କିଲୋମିଟର ସହ ପରିଚିତ ଥିଲା । ପଶୁ ଓ ମଣିଷର ସମୟ ଓ ସୀମା ଭେଦରେ କେବଳ ପରିମାଣଗତ ନୁହେଁ, ଗୁଣବତ ପ୍ରଭେଦ ରହିଛି । ପଶୁର ସହଜ ବୃତି ଓ ମଣିଷର ଚେତନାଶୀଳତାର ପାର୍ଥକ୍ୟର ପ୍ରକାଶ ଏଇ ସମୟ ଓ ସ୍ଥାନବୋଧ ଭେଦରେ ହିଁ ଖୋଜିବାକୁ ହେବ ।

ଭାଷା ସଚାଂର କ୍ଷେତ୍ରରେ ମଧ୍ୟ ବ୍ୟକ୍ତିଗତ ଓ ସାମାଜିକ ବିଭିନ୍ନତା ହେଉଛି ନିୟମ । କୌଣସି ମଣିଷର କଥ୍ୟ ଭାଷା ଅପର ର ଅବିକଳ ପ୍ରତିରୂପ ନୁହେଁ । ପୁଣି କୌଣସି ଲୋକ ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଓ ବିଭିନ୍ନ ବ୍ୟକ୍ତି ବିଶେଷାଙ୍କ ସହିତ ଗୋଟିଏ ଭାଷାରେ କଥା କହିଲେ ସୁଦ୍ଧା ତହିଁରେ ରୂପଗତ ପାର୍ଥକ୍ୟ ଲକ୍ଷ୍ୟ କରିବାର କଥା । ଉଦାହରଣ ସ୍ୱରୂପ, ସେ ସାମାଜିକ ମର୍ଯ୍ୟାଦା ଦୃଷ୍ଟିରୁ ଉପରହାକିମ, ଚାକର, ବାପା କିମ୍ବା ପୁଅ ସହିତ କଥାବାର୍ତ୍ତା କଲାବେଳେ ଓ ସାଙ୍ଗଙ୍କ ସହିତ ଘରୋଇ କଥାବାର୍ତ୍ତାରେ ଭାଷାରୂପରେ ବିଭିନ୍ନତାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜଣେ ମଣିଷ ବିଭିନ୍ନ ସମୟରେ ବିଭିନ୍ନ ଭାଷାର ମଧ୍ୟ ପ୍ରୟୋଗ କରିପାରେ । ଘରେ ମାତୃଭାଷାର ବ୍ୟବହାର, ବଜାରରେ ଭଙ୍ଗା ହିନ୍ଦୀ, ସ୍କୁଲରେ ଇଂରାଜୀ, ଗବେଷଣାରେ ଫରାସୀ ବା ଜର୍ମାନୀ, ପ୍ରାର୍ଥନାରେ ସଂସ୍କୃତ ବା ଆରବୀ ଓ ମନୋରଞ୍ଜନ ପାଇଁ ଉପନ୍ୟାସ ପଢାରେ ବଙ୍ଗଳା ଭାଷା ବ୍ୟବହାର କରୁଥିବା ଲୋକେ ଆଧୁନିକ ସମାଜରେ ପ୍ରତୁଳ ।

ଭାଷା ପ୍ରୟୋଗ କ୍ଷେତ୍ରରେ ଏହି ବିଭିନ୍ନତାକୁ ଅନ୍ୟ ଏକଦିଗରୁ ବିଚାର କରାଯାଇପାରେ । ଜଣେ ଶିକ୍ଷିତ ତାମିଲ୍ ଭାଷାଭାଷୀକୁ ଆଜି ଏକଧାରାରେ ନିମ୍ନଲିଖିତ ସମସ୍ତ ପ୍ରକାଶଭଙ୍ଗୀର ସାମ୍ନା କରିବାକୁ ପଡେ । "ସେ ନିଜକୁ ମାରିଲା" ଅର୍ଥରେ "ଆଡିଭୁବୋଣ୍ଡନନ୍" (ପ୍ରାଚୀନ ଲିଖିତ ତାମିଲ୍), "ଆଡିତୁକୋଣ୍ଡାନ୍" (ଆଧୁନିକ ଲିଖିତ ତାମିଲ୍), "ଆଡିକ୍କୁକ୍ଲିଟ୍ଟାଁ" (ମାନ୍ୟ କଥ୍ୟ ତାମିଲ୍), "ଆଡିଚୁଣ୍ଟାଁ" (କଥ୍ୟ ବ୍ରାହ୍ମଣ ତାମିଲ୍), "ଆଡିଚୁକିନା" (ମାନ୍ଦ୍ରାଜ ଆଚଂଳିକ କଥ୍ୟ ତାମିଲ୍) ଆଦି । ଏହା ସାଙ୍ଗରେ ଶୈଳୀଗତ ପାର୍ଥକ୍ୟ ବୁଝିବାପାଇଁ ଗୋଟିଏ ହିନ୍ଦୀ ବାକ୍ୟରେ ବିଭିନ୍ନ ରୂପରେ ଦେଖାଯାଇ ।

୧. ଉସନେ ସୀତାକେ ଲିୟେ ପାଚଂ ରୁପୟେ ମେଁ ତୀନ କିତାବେଁ ଖରୀଦୀ
୨. ସୀତାକେ ଲିୟେ ଉସନେ ପାଚଂ ରୁପୟେ ମେଁ ତୀନ କିତାବେଁ ଖରୀଦୀ
୩. ସୀତାକେ ଲିୟେ ପାଚଂ ରୁପୟେ ମେଁ ତୀନ କିତାବେଁ ଖରୀଦୀ
୪. ସୀତାକେ ଲିୟେ ପାଚଂ ରୁପୟେ ମେଁ ତୀନ କିତାବେଁ ଉସନେ ଖରୀଦୀ
୫. ସୀତାକେ ଲିୟେ ଉସନେ ତୀନ କିତାବେଁ ଖରୀଦୀ ପାଚଂ ରୁପୟେ ମେଁ
୬. ଉସନେ ତୀନ କିତାବେଁ ଖରୀଦୀ ପାଚଂ ରୁପୟେ ମେଁ ସୀତାକେ ଲିୟେ
୭. ଉସନେ ତୀନ କିତାବେଁ ଖରୀଦୀ ସୀତାକେ ଲିୟେ ପାଚଂ ରୁପୟେ ମେଁ
୮. ତୀନ କିତାବେଁ ଖରୀଦୀ ଉସନେ ସୀତାକେ ଲିୟେ ପାଚଂ ରୁପୟେ ମେଁ
୯. ଉସନେ ସୀତାକେ ଲିୟେ ତୀନ କିତାବେଁ ଖରୀଦୀ ପାଚଂ ରୁପୟେ ମେଁ
୧୦. ଉସନେ ପାଚଂ ରୁପୟେ ମେଁ ତୀନ କିତାବେଁ ଖରୀଦୀ ସୀତାକେ ଲିୟେ
୧୧. ପାଚଂ ରୁପୟେ ମେଁ ତୀନ କିତାବେଁ ଖରୀଦୀ ଉସନେ ସୀତାକେ ଲିୟେ
୧୨. ପାଚଂ ରୁପୟେ ମେଁ ତୀନ କିତାବେଁ ଖରୀଦୀ ସୀତାକେ ଲିୟେ ଉସନେ

ଏହି ବାକ୍ୟଗଡିକରୁ କେତେକ ଶୈଳୀ ଦୃଷ୍ଟିରୁ ଗ୍ରାହ୍ୟ, ଅନ୍ୟ କେତେକ ବ୍ୟାକରଣସିଦ୍ଧ ହେଲେ ହେଁ ମାନ୍ୟ ହିନ୍ଦୀ ରଚନାରେ ବ୍ୟବହୃତ ହେବା ସନ୍ଦେହଜନକ । ପ୍ରସଙ୍ଗକ୍ରମେ ଏଠି ପୁଣି ବିଷୟାନୁସାରୀ ଭାଷା ପ୍ରୟୋଗ ବିଚାରୀ ଦେଖିବାର ଅଛି । ସାହିତ୍ୟ ଭାଷା ଓ ବିଜ୍ଞାନର ଭାଷା ମଧ୍ୟରେ ଯେ ପାର୍ଥକ୍ୟ ତାହାର ଯଥୋଚିତ ଅଧ୍ୟୟନ ନୋହିଥିଲେ ମଧ୍ୟ ଏହାକୁ ଉପେକ୍ଷା କରାଯାଇପାରିବ ନାହିଁ

ସମୟ, ସ୍ଥାନ, ପରିସ୍ଥିତି ଆଦି ଭେଦରେ ଭାଷା ପ୍ରୟୋଗର ଏଇ ବୈଚିତ୍ର୍ୟ ପ୍ରତି ମୁହୂର୍ତ୍ତରେ ମଣିଷର ସଙ୍ଗୀ । ତେବେ ଅଧିକାଂଶ ସମୟରେ ମଣିଷ ଏଥିପ୍ରତି ସଚେତନ ନୁହେଁ । ମଲିଏର ଙ୍କ "ବର୍ଜୁଆ ଜନ୍ତିଲମ" ର ନାୟକ ତା' ଜୀବନର ୩୦ ବର୍ଷକାଳ ଗଦ୍ୟରେ କଥାବାର୍ତ୍ତା କରୁଥିବାର ସଚେତନତାରେ ଚମକିପଡିଲା ପରି ସାଧାରଣ ମଣିଷ ହୁଏତ ଭାଷାର ବିଭିନ୍ନତାର ବୋଧରେ ଚମକି ଉଠିବ । କିନ୍ତୁ ଏଇ ବିଭିନ୍ନତା ସତ୍ୱେ ବ୍ୟକ୍ତିଗତ ସଚାଂର ର ସମ୍ଭାବତା ଓ ବାସ୍ତବତାର ଅଧ୍ୟୟନ ଗବେଷକ ପ୍ରତି ଯେ ଏକ ଆହ୍ୱାନ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏପର୍ଯ୍ୟନ୍ତ ଭାଷା ଓ ସଂସ୍କୃତିର ବୈଚିତ୍ର୍ୟ ବିଷୟରେ ଆଲୋଚନା କରାଗଲା । ବର୍ତମାନ ଐକ୍ୟ ବିଷୟରେ ସମ୍ୟକ୍ ଆଲୋଚନା ପ୍ରୟୋଜନ । ପୂର୍ବେ କୁହାଯାଇଛି ଯେ ସଂସ୍କୃତିର ବହୁବିଧ ପ୍ରକାଶ ସତ୍ୱେ ଭାରତୀୟ ସଂସ୍କୃତି, ବିଶ୍ୱସଂସ୍କୃତି ପରି ଭାବନା ସମ୍ଭବ । ତା' ନୋହିଥିଲେ "ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ", "ଯତ୍ର ବିଶ୍ୱ ଭବତ୍ୟେକନୀଡଂ" କିମ୍ବା "ବସୁଧୈବ କୁଟୁମ୍ବ" ଙ୍କ ପରି ଚିନ୍ତା ସମ୍ଭବ ହୁଅନ୍ତା ନାହିଁ । ପୁଣି ଆଧୁନିକ କାଳରେ ଜାତି ରାଜ୍ୟର ଜନ୍ମ ପଛରେ ଏଇ ସାଂସ୍କୃତିକ ଐକ୍ୟ ଭାବନା ଯେ ବହୁ ପରିମାଣରେ କାମ କରିଚି, ଏଥିରେ ସନ୍ଦେହ ନାହିଁ । ବିଶ୍ୱ ସରକାର ଗଠନ ଆନ୍ଦୋଳନ ପଛରେ ମାନବିକ ସଂସ୍କୃତି ଭାବନା ରହିଚି । ଭାଷା କ୍ଷେତ୍ରକୁ ଚାହିଁଲେ ଦେଖାଯିବ ଯେ ତିନି ପୁରୁଷ ମଧ୍ୟରେ ଭାଷା ପ୍ରୟୋଗରେ ସ୍ୱାତନ୍ତ୍ର୍ୟ ଥିଲେ ମଧ ଜେଜେବାପାଙ୍କର ନାତି ଅଣନାତିଙ୍କ ସହ କଥାବାର୍ତ୍ତା କରିବାରେ କୌଣସି ଅସୁବିଧା ନାହିଁ । ସାରଳା ଦାସଙ୍କ ଠାରୁ ଗୋପିନାଥ ମହାନ୍ତି ଙ୍କ ଯାଏ ଓଡିଆ ଭାଷାକୁ ପଢି ବୁଝିବା ଆଜିର ଓଡିଆ ପକ୍ଷରେ ଅସମ୍ଭବ ନୁହେଁ । ଭାଷାର ବିଭିନ୍ନ ସ୍ତର ମଧ୍ୟରେ ସାମ୍ୟ ଯେପରି ଭାଷା ମଧ୍ୟରେ ଐକ୍ୟ ସୃଷ୍ଟିକରେ, ଭାଷାଭାଷା ମଧ୍ୟରେ ସାମ୍ୟ ସେହିପରି ଭାଷା ପରିବାର ପ୍ରତିଷ୍ଠାରେ ସାହାଯ୍ୟକରେ । ସଂସ୍କୃତ, ଗ୍ରୀକ୍, ଲାଟିନ୍, ସ୍ଲାଭିକ୍, କେଲ୍ଟିକ୍ ଆଦି ଭାଷା ମଧ୍ୟରେ ଥିବା ସାମ୍ୟ ଭିତିରେ ୟୁରୋପୀୟ ଭାଷା ପରିବାର ଗଢିଉଠିଲା ପରି ବିଭିନ୍ନ ଭାଷା ମଧ୍ୟରେ କୁଟୁମ୍ବିତା ଦୃଷ୍ଟିରୁ ଦ୍ରାବିଡ ଭାଷା ପରିବାର, ଅଷ୍ଟ୍ରୋଏସିଆଟିକ୍ ବା ମୁଣ୍ଡା ଭାଷା ପରିବାର, ତିବ୍ବତୋଚାଇନିଜ୍ ଭାଷା ପରିବାର ଆଦି ବିଭିନ୍ନ ଭାଷା ପରିବାର ମଧ ଗଢିଉଠିଛି । ଭାଷା ବିକାଶର କ୍ରମିକତା ଓ ବିଭିନ୍ନ ସ୍ତରୀୟ ଭାଷା ମଧ୍ୟରେ ଯୋଗ ଓ ଅନ୍ୟ ଦିଗରେ ସଚାଂର ଘନିଷ୍ଠତା ହେତୁ ଭାଷାଭାଷା ମଧ୍ୟରେ କୁଟୁମ୍ବିତା ସ୍ଥାପନ ଏଇ ଉଭୟ ବିଭିନ୍ନ ଭାଷା ମଧ୍ୟରେ ଐକ୍ୟ ସୃଷ୍ଟିପାଇଁ ଦାୟୀ ।

ଭାରତବର୍ଷରେ ୧୯୭୧ ଜନସୁମାରୀ ରିପୋର୍ଟ ଅନୁସାରେ ୧୬୫୨ ମାତୃଭାଷା ଚାରୋଟି ଭାଷା ପରିବାର ପ୍ରତିନିଧି । ଏଇ ବିଭିନ୍ନତା ସତ୍ୱେ ଗତ ୩୦୦୦ ବର୍ଷର ସାଂସ୍କୃତିକ ବିନିମୟ ଏପରି ଏକ ପରିବେଶ ସୃଷ୍ଟିକରିଛି ଯେ ପଣ୍ଡିତମାନେ ଭାରତକୁ ଗୋଟିଏ ଭାଷା ଅଚଂଳ ରୂପେ ଗ୍ରହଣ କରିଛନ୍ତି । ଭାରତୀୟ ଆର୍ଯ୍ୟ ଓ ଦ୍ରାବିଡ ଭାଷା ପରିବାର ର ପାରସ୍ପରିକ ସମ୍ପର୍କ ଆଲୋଚନା କରି ରଷ୍ ଭାଷା ବୈଜ୍ଞାନିକ ଆନ୍ଦୋନୋଭ ମତ ଦେଇଛନ୍ତି ଯେ, ଯଦି ଗୋଟିଏ ଆଧୁନିକ ଭାରତୀୟ ଆର୍ଯ୍ୟ ଓ ଗୋଟିଏ ଆଧୁନିକ ଦ୍ରାବିଡ ଭାଷାକୁ ତୁଳନା କରାଯାଏ ତେବେ ଦେଖାଯିବ ଯେ ଏମାନେ ଆପଣା ଆପଣା ପ୍ରତ୍ନଭାଷା ଅପେକ୍ଷା ପରସ୍ପର ର ଅଧିକ ନିକଟବର୍ତୀ । ଆନ୍ଦୋଲନୋଭ ପୁଣି କହିଛନ୍ତି ଯେ, ଯଦି ଭାଷା ବିକାଶକୁ ତା'ର ସ୍ୱାଭାବିକ ଗତିପଥରେ ଯିବାକୁ ଦିଆଯାଏ ତେବେ ଆଉ ୫୦-୧୦୦ ବର୍ଷ ପରେ ତୁଳନାତ୍ମକ ଭାଷାବିଜ୍ଞାନୀମାନଙ୍କୁ ଏକ ତୃତୀୟ ପ୍ରତ୍ନ-ଭାଷା ପରିବାର ପୁର୍ନଗଠନ କରିବାକୁ ହେବ । ଏମେନୋ ମୁର୍ଦ୍ଧଣ୍ୟ ବର୍ଣ୍ଣର ବିସ୍ତାର, ଦ୍ୱିବଚନ ଲୋପ, ମଧ୍ୟସର୍ଗ (Infix) ଲୋପ, ବିଭିନ୍ନ ଭାଷା ମଧ୍ୟରେ ଶବ୍ଦର ଆହରଣ ଓ ବାକ୍ୟରୀତିର ସାର୍ବଜନୀନତା ଆଦି ଭିତିରେ ଭାରତକୁ ଏକ ଭାଷାଚଂଳ ବୋଲି ଯାହା କହିଥିଲେ, ଆନ୍ଦୋନଭ ତାହାର ସମର୍ଥନ ଓ ପୁଷ୍ଟି କରିଛନ୍ତି ।

ସାଂସ୍କୃତିକ ଐକ୍ୟ ବିଚାର ପ୍ରସଙ୍ଗରେ ମଧ ଭାରତୀୟ ସଂସ୍କୃତିର ବିଚାର କରାଯାଇପାରେ । ନିଗ୍ରୋ, ମୁଣ୍ଡା, ଦ୍ରାବିଡ, ଆର୍ଯ୍ୟ ଆଦି ବିଭିନ୍ନ ଜାତି; ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଶିଖ୍, ବୌଦ୍ଧ, ଜୈନ ଆଦି ବିଭିନ୍ନ ଧର୍ମଗତ; ନାସ୍ତିକ ଭେଦରେ ୧୨ ଦର୍ଶନ ଓ ବହୁବିଧ ଭାଷା ଦ୍ୱାରା ପୁଷ୍ଟ ହୋଇଥିବା ସଂସ୍କୃତି ମଧ୍ୟରେ ଥିବା ଐକ୍ୟ ସୂତ୍ର ଦେଖିବାପାଇଁ ପରଶୁରାମ ଗଳ୍ପଟି ବିଚାର କରାଯାଇପାରେ । ରାମାୟଣ ବା ମହାଭାରତ ବିଭିନ୍ନ ଜନମାନସକୁ ସମୃଦ୍ଧ କରିଥିଲେ ହେଁ ବିଭିନ୍ନ ଅଚଂଳରେ ଏହାର ବିଭିନ୍ନ ରୂପାନ୍ତର ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ପରଶୁରାମ ବାପାଙ୍କ ଆଦେଶରେ ମା'ଙ୍କ ମୁଣ୍ଡ କାଟି ପୁଣି ବାପାଙ୍କ ସନ୍ତୋଷରୁ ମା'ଙ୍କୁ ଜୀବନ୍ୟାସ ଦେଇଥିବା ଗପ ବହୁବିଦିତ । କିନ୍ତୁ ତାମିଲ୍ ଲୋକ ମନରେ ଏହାର ରୂପାନ୍ତର ଦେଖିବାର ଅଛି । ପରଶୁରାମ ଯେତେବେଳେ ତାଙ୍କ ମା'ଙ୍କୁ ହାଣିବାକୁ ବାହାରିଲେ ଗୋଟିଏ ପାରିଆ (ନୀଚ କୁଳର) ସ୍ତ୍ରୀ ତାଙ୍କୁ ଆଗୋଳି ରଖିବାକୁ ଚେଷ୍ଟାକଲା । ପରଶୁରାମ ଏକା ଚୋଟେକେ ଦି' ଜଣଙ୍କ ମୁଣ୍ଡ ଉଡେଇଦେଲେ । ଯେତେବେଳେ ସେ ବାପାଙ୍କଠାରୁ ମୃତ ସଞ୍ଜିବନୀ ପାଣିଧରି ଆସିଲେ ସେତେବେଳେ ଘୋର ମାନସିକ ଉଦ୍‌ବେଗ ହେତୁ ସେ ପାରିଆ ସ୍ତ୍ରୀ ବେକଟି ଆପଣା ମା' ବେକରେ ଓ ଆପଣା ମା' ମୁଣ୍ଡଟି ପାରିଆ ସ୍ତ୍ରୀ ବେକରେ ଲଗାଇ ଉଭୟଙ୍କୁ ଜୀବନ୍ୟାସ ଦେଲେ । ସେଇଦିନୁ ସେ ଦୁହେଁ ମରିମ୍ମା ଓ ଏ୍ୱେନ୍ନିମ୍ମା ନାଁରେ ଲୋକଦେବୀ ହିସାବରେ ପୂଜା ପାଉଛନ୍ତି । ଏଇ କଥାଟିର ସାରମର୍ମ ହେଉଚି ସେ ଗତ ହଜାର ହଜାର ବର୍ଷର ଭାବ ବିନିମୟ ଫଳରେ ଆମେ ଏପରି ଏକ ସଂସ୍କୃତି ଗଢିଚୁ ଯେଉଁଠି ଆର୍ଯ୍ୟ ଦ୍ରାବିଡ ଏପରି ଭାବରେ ମିଶି ଯାଇଚନ୍ତି । ଉଭୟଙ୍କୁ ନମାରି ସେମାନଙ୍କୁ ଅଲଗା କରିବା ଅସମ୍ଭବ । ଏଇ ଦୃଷ୍ଟିରୁ ଯେଉଁମାନେ ଆଜି ତାମିଲ୍ ଭାଷାରୁ ସଂସ୍କୃତ ଶବ୍ଦକୁ ଫୋପାଡି ଦେବାକୁ ଚେଷ୍ଟା କରୁଛନ୍ତି କିମ୍ବା ପରିବାର ର ଭିନ୍ନତା ଦର୍ଶାଇ ଭାଷାଭାଷା ମଧ୍ୟରେ ଗୋଷ୍ଠୀ ମଧ୍ୟରେ ଶତ୍ରୁତା ସୃଷ୍ଟି କରିବାକୁ ଚେଷ୍ଟା କରୁଛନ୍ତି, ହୁଏତ ସେମାନେ ଭାଷା ବିକାଶଧାରା ସମ୍ବନ୍ଧରେ ଅଜ୍ଞ କିମ୍ବା ସେମାନେ ଦେଶର ଶତ୍ରୁ । ବହୁ ଭାଷାଭାଷୀ ଓ ବହୁ ସଂସ୍କୃତିର ମିଳନ ଦ୍ୱାରା ଗଠିତ ମନୋଭୂମି ସହନଶୀଳତା ଉପରେ ହିଁ ଆଧାରିତ ହୋଇପାରେ । ଅସହନଶୀଳ ମନୋବୃତି ନେଇ ଏହାକୁ ଦେଖିଲେ ଏହାର ବିଖଣ୍ଡିତ ରୂପ ହିଁ ବଡହୋଇ ଦେଖାଯିବ । ସାମଗ୍ରିକ ଚିତ୍ରର ପରିଚୟ ମିଳିବ ନାହିଁ ।

ଭାରତୀୟ ସଂସ୍କୃତିର ଚାବି, ଭାରତୀୟ ଭାଷାମାନଙ୍କ ମଧ୍ୟରେ ଖୋଜିବାକୁ ହେବ । ପ୍ରାଚୀନ ଭାରତରେ ସଂସ୍କୃତ ଭାଷା ହିଁ ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ଭାଷା ଥିଲା । କିନ୍ତୁ ଭାରତୀୟ ଆର୍ଯ୍ୟ ଓ ଇରାନୀମାନଙ୍କର ପୂର୍ବଜମାନେ ଯେଉଁ ଭାଷା ସଙ୍କେତ ରଖି ଯାଇଛନ୍ତି ତାହାର ସ୍ୱରୂପ ଋକ୍‌ବେଦର ଭାଷା ମଧ୍ୟରେ ହିଁ ସୁରକ୍ଷିତ । ବୈଦିକ ସାହିତ୍ୟ କହିଲେ କେବଳ ଚାରୋଟି ବେଦ ନୁହେଁ, ବ୍ରାହ୍ମଣକୁ ମଧ୍ୟ ବୁଝାଏ । ଏହି ବୈଦିକ ସମ୍ପଦର ସୁରକ୍ଷା ଗୁରୁ ଶିଷ୍ୟ ପରମ୍ପରା କ୍ରମେ ମୌଖିକ ସୂତ୍ରରେ ହିଁ ହେଉଥିଲା । ତେଣୁ ଉଚ୍ଚାରଣରେ ପରିଚ୍ଛନ୍ନତା ଉପରେ ସେ କାଳରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଉଥିଲା । ବୀଜ ଅକ୍ଷର ଧାରଣ କରିଥିବା ମନ୍ତ୍ର, ସ୍ୱତନ୍ତ୍ର ଶକ୍ତି ନିହିତ ଥିବା ଶବ୍ଦ ଓ ବାକ୍ୟର ଉଚ୍ଚାରଣ ଅଭୀପ୍ସିତ ଫଳପ୍ରାପ୍ତି ନିମିତ୍ତ ଏକାନ୍ତ ଆବଶ୍ୟକ ରୂପେ ଗ୍ରହଣ କରାଯାଉଥିଲା । ଯଥାର୍ଥ ଭାବରେ ଉଚ୍ଚାରିତ ମନ୍ତ୍ର ଦେବତାଙ୍କର ଶକ୍ତିକୁ ମଧ୍ୟ ବାନ୍ଧିଆଣି ପାରୁଥିଲା । ଏହା ଉଭୟ ଉପକାର ଓ ଅପକାର କରିବାରେ ସମର୍ଥ । କୌଣସି ଏକ ଯଜ୍ଞରେ "ଇନ୍ଦ୍ରଶତ୍ରୁ" ଶବ୍ଦ ଯଥାର୍ଥ ଭାବରେ ଉଚ୍ଚାରିତ ହୋଇନଥିବାରୁ ଯଜ୍ଞଫଳ ଇନ୍ଦ୍ରଙ୍କ ପରିବର୍ତ୍ତେ ଇନ୍ଦ୍ରଶତ୍ରୁଙ୍କୁ ପ୍ରାପ୍ତ ହୋଇଥିବା ଗଳ୍ପ ସର୍ବବିଦିତ ।

ଜ୍ଞାନର ଏପରି କୌଣସି ବିଭାଗ ନାହିଁ, ଜୀବନରେ ଏପରି କୌଣସି ବିଭାଗ ନାହିଁ, ଯାହା ବିଷୟରେ ସଂସ୍କୃତରେ ବହିଲେଖା ହୋଇନାହିଁ । ଆଧୁନିକ କାଳ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ସଂସ୍କୃତରେ ସାହିତ୍ୟ ରଚନା ହୋଇଥିଲେ ସୁଦ୍ଧା ବୈଦିକ କାଳରୁ ଆରମ୍ଭକରି ଆଧୁନିକ ଭାରତୀୟ ଭାଷାମାନଙ୍କର ବିକାଶ ପର୍ଯ୍ୟନ୍ତ ସାମାଜିକ ପରିବର୍ତ୍ତନର ଗତି ଓ ସଂସ୍କୃତିର ରୂପାନ୍ତର ଭାରତୀୟ ସଂସ୍କୃତିର ଅବରୋଧ ପାଇଁ ଏକାନ୍ତ ପ୍ରୟୋଜନ । ସଂସ୍କୃତି ପ୍ରବାହର ପ୍ରତୀକ ଋକ୍‌ବେଦରେ "ମହୋ ଅର୍ଣ୍ଣବ ସରସ୍ୱତୀ" ବହୁ ବର୍ଣ୍ଣାଢ୍ୟ କନ୍ନଡ ଶିଳାଲେଖ ବର୍ଣ୍ଣିତ "ବହୁଭାଷା ସରସ୍ୱତୀ" ରୂପେ କିପରି ଆଧୁନିକ କାଳରେ ଆତ୍ମପ୍ରକାଶ କରେ ତାହାର ଗତିରେଖା ଅତ୍ୟନ୍ତ ଚିତାକର୍ଷକ । ବିକାଶର ପରିଣାମରେ ଋକ୍ ବେଦର ବନ୍ୟା କିପରି ଭାରତୀୟ ସଂସ୍କୃତିର ପ୍ରତୀକ ଗଙ୍ଗା ନଦୀରେ ରୂପାନ୍ତରିତ ହେଲେ ଓ ଭାରତର ବିଭିନ୍ନ ନଦୀ କିପରି ତାହାର ବନ୍ୟା କିମ୍ବା ସମକକ୍ଷ (କୂଳୌ ଚିତ୍ରୋତ୍ପଳା ଗଙ୍ଗା) ରୂପେ ବିବେଚିତ ହେଲେ, ପ୍ରତ୍ୟେକ ଜଳଧାର କିପରି ମାନସ ସରୋବର ର ସାରୂପ୍ୟ ଲାଭକଲା ଏହାର ଅଧ୍ୟୟନ ବିଚିତ୍ର ଓ ବର୍ଣ୍ଣାଢ୍ୟ । ଭାରତର ଏକ ହଜାର ରୁ ଊର୍ଦ୍ଧ୍ୱ ମାତୃଭାଷା କିପରି ସଂସ୍କୃତ ପୁଷ୍ଟହୋଇ ସଂସ୍କୃତି ପ୍ରତି ସ୍ପର୍ଦ୍ଧାରେ ଆପଣାକୁ ଗଢିବାକୁ ପ୍ରୟାସକଲେ ଓ ତହିଁରେ ସଫଳତା ଲାଭକଲେ ତାହାର ଇତିହାସ ମଧ୍ୟ ମନୋରଞ୍ଜକ

ଯେକୌଣସି ଭାଷାର ଜୀବନ କାଳ ମଧ୍ୟରେ ପ୍ରାଚୀନ ବ୍ୟାକରଣିକ କୋଟୀର ଲୋପ ଓ ନୂତନ କୋଟୀର ଉଦ୍ଭବ, ଅନିୟମିତତାର ଲୋପ ଓ ନିୟମିତତାର ଉଦ୍ଭବ ସାଧାରଣ କଥା । କିନ୍ତୁ ଥରେ ବ୍ୟାକରଣକାର ପ୍ରୟୋଗକୁ ନିୟମରେ ବାନ୍ଧିରଖିଲେ, ନୂତନ ପ୍ରୟୋଗ ବାରଣକଲେ ଏବଂ ସମସାମୟିକ କଥିତ ଭାଷାର ଏପରି ବ୍ୟାକରଣ ସିଦ୍ଧରୂପର ନାମହେଲା ସଂସ୍କୃତ । ରାମାୟଣରେ ହିଁ ଭାଷାର ଏହି ନାମ ଦେଖିବାକୁ ମିଳେ । ଯାସ୍କ, ପାଣିନି ଓ କାତ୍ୟାୟନ ସଂସ୍କୃତରେ ଆଚଂଳିକ ଭେଦ ଲକ୍ଷ୍ୟ କରିଛନ୍ତି । କିନ୍ତୁ ପାଣିନି ବ୍ୟାକରଣ ସୂତ୍ର ଦ୍ୱାରା ଆଖ୍ୟାତ ଭାଷା ହିଁ ସର୍ବମାନ୍ୟ ଏକଥା ପରବର୍ତ୍ତୀ ସମସ୍ତେ ସ୍ୱୀକାର କରିଛନ୍ତି । ଭାଷା ବୈଜ୍ଞାନିକ ମାତ୍ରେ ପାଣିନି ଙ୍କୁ ସ୍ୱୀକାର କରିବାକୁ ବାଧ୍ୟ । ତାଙ୍କର ଭାଷା ବିଶ୍ଳେଷଣ, ସୂତ୍ରାତ୍ମକ ନିୟମ ପ୍ରଣୟନ ଏବେ ବି ଭାଷା ବିଜ୍ଞାନୀଙ୍କର ବିସ୍ମୟର ବିଷୟ । ଭାଷାକୁ ସମ୍ପୂର୍ଣ୍ଣ କଳ୍ପନା ଜଳ୍ପନା ସ୍ତରରୁ ନିୟମ ବଦ୍ଧ ବ୍ୟବହାର ସ୍ତରକୁ ଆଣିବାପାଇଁ ପାଣିନୀ ହେଉଛନ୍ତି ଦାୟୀ । ପାଣିନୀ ତାଙ୍କ ପୂର୍ବର ସମସ୍ତ ବ୍ୟାକରଣିକ ଚିନ୍ତାକୁ ସୂତ୍ରବଦ୍ଧ କରି ଏପରି ନିୟମ ଉପସ୍ଥାପନ କଲେ, ଯାହା ବ୍ୟକ୍ତି ଓ ଗୋଷ୍ଠୀଗତ ପାର୍ଥକ୍ୟ ସତ୍ୱେ ସାଧାରଣ ଭାବରେ "ସଂସ୍କୃତ" ପ୍ରତି ପ୍ରଯୋଜ୍ୟ ।

ବହୁ ପ୍ରାଚୀନ କାଳରୁ ଭାରତବର୍ଷରେ ଏକ ପ୍ରକାର ଦ୍ୱିଭାଷିକ ସ୍ଥିତି ଚଳିଆସୁଚି । ଭାଷାର ସାହିତ୍ୟିକ ଓ ଚଳିତ ରୂପ ମଧ୍ୟରେ ପାର୍ଥକ୍ୟ ବହୁ ପ୍ରାଚୀନ । ପତଞ୍ଜଳି ତାଙ୍କର "ମହାଭାଷ୍ୟ" (ଖ୍ରୀ.ପୂ. ୧୫୦) ରେ ଲେଖିଛନ୍ତି ଯେ, "ଏକ ସମୟରେ ଏପରି ଅନେକ ଜ୍ଞାନୀ ଋଷିଥିଲେ, ଯେଉଁମାନେ ସାଧାରଣ ଚଳିତ କଥାରେ 'ଯଦ ବା ନସ୍ ତଦ୍ ବା ନଃ' ସ୍ଥାନରେ 'ଯର୍ ବା ଣସ୍ ତର୍ ବା ଣଃ' ବ୍ୟବହାର କରୁଥିଲେ । କିନ୍ତୁ ଯଜ୍ଞ ସମୟରେ ସମ୍ପୂର୍ଣ୍ଣ ନିର୍ଭୁଲ ଥିଲେ" । ଋକ୍ ବେଦ ସମୟରେ ଉଚ୍ଚାରଣ ଭ୍ରମଜନିତ ଦୋଷ ଦୂରକରିବା ପାଇଁ ସରସ୍ୱତୀ ଯଜ୍ଞର ବିଧାନ ଥିଲା । ସେ କାଳରୁ ପତଞ୍ଜଳି ଙ୍କ କାଳ ପର୍ଯ୍ୟନ୍ତ ଦୂରତା ସହଜେ ଲକ୍ଷ୍ୟ । ପତଞ୍ଜଳି ପୁଣି କହିଛନ୍ତି ଯେ, ସମାଜରେ କଥିତ ଭାଷା ମଧ୍ୟରେ ଅନ୍ତର ସୃଷ୍ଟିହେଲେ ଆଦର୍ଶ ରୂପେ ଶିଷ୍ଟମାନଙ୍କର ଭାଷାକୁ ହିଁ ଗ୍ରହଣ କରିବାକୁ ହେବ । ତାଙ୍କ ମତରେ ଯେଉଁମାନେ ଶିକ୍ଷା ବ୍ୟତୀତ ନିର୍ଭୁଲ ସଂସ୍କୃତ କହନ୍ତି ସେଇମାନେ ହେଉଛନ୍ତି ଶିଷ୍ଟ । ଅନ୍ୟ ଯେଉଁମାନେ ଶଶ ସ୍ଥାନରେ ଷଷ, କୃଷି ସ୍ଥାନରେ କଷ, ଗୌ ସ୍ଥାନରେ ଗାଭୀ, ଗୋଣୀ, ଗୋଟା, ଗୋପତଳିକା ଆଦି ବ୍ୟବହାର କରନ୍ତି, ସେମାନେ ଶିଷ୍ଟଙ୍କଠାରୁ ଭାଷା ଶିକ୍ଷାକରିବା ଉଚିତ୍ ।

ପାଣିନି ସେ କାଳର ଚଳିତ ଭାଷାକୁ ଏପରି ଏକ ମାନ୍ୟରୂପ ଦେଲେ ଯେ, ତାହା କ୍ରମେ ଆଦର୍ଶ ରୂପେ ଗୃହୀତ ହୋଇଗଲା । ଋକ୍ ବେଦର ଛନ୍ଦ ନିୟମ ସହିତ ପାଣିନୀୟ ଭାଷାକୁ ମିଳେଇ ଦେଖିଲେ ଉଭୟ ମଧ୍ୟରେ ପାର୍ଥକ୍ୟ ସହଜେ ବାରିହୋଇ ପଡିବ । ପାଣିନୀୟ ସନ୍ଧି ନିୟମ ଋଗ୍ ବେଦର ଇୟ, ଉୱ ପରିବର୍ତ୍ତେ ୟ, ୱ ପ୍ରୟୋଗକୁ ସିଦ୍ଧ କଲା, "ର" ପରିବର୍ତ୍ତେ "ଲ" ର ବ୍ୟବହାର ଓ ମୂର୍ଦ୍ଧଣ୍ୟ ବର୍ଣ୍ଣମାନଙ୍କର ବ୍ୟବହାରରେ ମଧ୍ୟ ଉଭୟର ବ୍ୟବଧାନକୁ ମପାଯାଇପାରେ । ସେହିପରି ରୂପତତ୍ୱ ବିଚାରରେ ମଧ୍ୟ ପ୍ରାଚୀନ ପ୍ରୟୋଗର ଲୋପ (ଆ, ଏନ ପରି ଯୋଡା ପ୍ରୟୋଗର ଲୋପ, ଅସସ୍ ଆସ ଇତ୍ୟାଦି) ଓ ନୂତନ ପ୍ରୟୋଗର ଉଦ୍ଭବ ଦେଖିବାର ଅଛି । ପୁଣି ବ୍ରାହ୍ମଣ ଓ ପୁରାଣର ଭାଷା ବିଚାରକଲେ ଦେଖାଯିବ ଯେ, ବିଭିନ୍ନ କାଳରେ କଥିତ ସଂସ୍କୃତ ଓ ଲିଖିତ ସଂସ୍କୃତ ମଧ୍ୟରେ ଏହି ଦ୍ୱିଭାଷିକ ସ୍ଥିତି ସୁଶୋଭିତ ରୂପେ ପ୍ରକାଶ ପାଇଛି । ପାଲି ଭାଷାକୁ ବୌଦ୍ଧ ଧର୍ମଗ୍ରନ୍ଥ ଲେଖନପାଇଁ ଚଳିତ ପ୍ରାକୃତ ଭାଷାମାନଙ୍କର ଏକ ନିୟମବଦ୍ଧ ମାନ୍ୟରୂପ ଭାବରେ ଗ୍ରହଣ କରାଯାଇପାରେ । ବୌଦ୍ଧ ଶାସ୍ତ୍ରମାନଙ୍କରୁ ଦେଖିବାକୁ ମିଳେ ଯେ, "ଲୋକପଂକ୍ତି" ବା "ଲୋକଶିକ୍ଷା" ବ୍ରାହ୍ମଣର କର୍ତ୍ତବ୍ୟର ଅଙ୍ଗୀଭୂତ ଥିଲା । ଜାତକ କଥାରୁ ଦେଖିବାକୁ ମିଳେ କିପରି ସବୁ ଜାତିର ଲୋକେ ଆପଣା ପିଲାମାନଙ୍କୁ ଶିକ୍ଷାପାଇଁ

ଉତର ଦେଶୀୟ ବ୍ରାହ୍ମଣମାନଙ୍କ ନିକଟକୁ ପଠାଉଥିଲେ । ଅଶ୍ୱଘୋଷ ଙ୍କ ସମୟରେ ମତଂରେ ସଂସ୍କୃତ ବ୍ୟବହାର ସପକ୍ଷରେ ଏପରି ଦୃଢ ମତଥିଲା ଯେ, ବୌଦ୍ଧଗନ୍ଥ ପାଇଁ ମଧ୍ୟ ସଂସ୍କୃତ ବ୍ୟବହାର କରିବାକୁ ସେ କୁଣ୍ଠିତ ନଥିଲେ । ଏହି ସମ୍ପର୍କରେ ବୁଦ୍ଧ ଆପଣା ବଚନପାଇଁ ସଂସ୍କୃତ ବ୍ୟବହାରକୁ ନାପସନ୍ଦ କରିବାର କଥା (ଚୁଲ୍ଲବଗ୍ଗ-୩୩୧) ମଧ୍ୟ ଦେଖାଯାଇପାରେ ।

ଲୋକ ବ୍ୟବହାରରେ ଭାଷା ଆଚଂଳିକ ଓ ସାମାଜିକ ଭେଦରେ କିପରି ପ୍ରାକୃତ, ଅପଭ୍ରଂଶ ଦେଇ ଆଧୁନିକ ଭାରତୀୟ ଭାଷାମାନଙ୍କରେ ରୂପାନ୍ତରିତ ହେଲା, ଦେଖିବାକୁ ଅଛି । ପଦମର୍ଯ୍ୟାଦା ଓ ଲିଙ୍ଗଭେଦରେ ମଧ୍ୟ ଭାଷା ବ୍ୟବହାର ର ଭିନ୍ନତା ସଂସ୍କୃତ ନାଟକରେ ଭାଷା ବ୍ୟବହାର ରୁ ଦେଖାଯାଇପାରେ । "କୁମାରସମ୍ଭବ" ରେ ସରସ୍ୱତୀ ଶିବଙ୍କୁ ସଂସ୍କୃତରେ ଓ ପାର୍ବତୀ ଙ୍କୁ ପ୍ରାକୃତରେ ସମ୍ବୋଧନ କରିଛନ୍ତି । ପୁଣି ଅନ୍ୟାନ୍ୟ ସଂସ୍କୃତ ନାଟକମାନଙ୍କରେ ଲିଙ୍ଗ, ପଦମର୍ଯ୍ୟାଦା ଓ ବାସ୍ତବ କାର୍ଯ୍ୟଭିତିରେ କେବଳ ସଂସ୍କୃତ ନୁହେଁ, ବିଭିନ୍ନ ପ୍ରାକୃତ ବ୍ୟବହାର ପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ସଂସ୍କୃତି ଓ ଭାଷା ଉଭୟର ଅଧ୍ୟୟନ ଆଗ୍ରହୀ ବ୍ୟକ୍ତି ପକ୍ଷରେ ଗୋଟିଏ କଥା ସର୍ବଦୌ ମନେରଖିବା ପ୍ରୟୋଜନ, ତାହା ହେଉଛି ସଂସ୍କୃତି ଓ ଭାଷାର ବହୁତା । ବ୍ୟକ୍ତି ତଥା ଗୋଷ୍ଠୀର ବହୁମୁଖୀ ପ୍ରକାଶର ସମ୍ଭାବନା ଓ ବାସ୍ତବତା ମଧ୍ୟରେ ବିଭିନ୍ନ ସାଂସ୍କୃତିକ ଗୋଷ୍ଠୀ ଯେପରି ମାନବିକ ସଚାଂର ବ୍ୟବସ୍ଥାରେ ଧ୍ୱନି ଓ ଅର୍ଥର ଅସୀମ ସମ୍ଭାବନା ଓ ବିଭିନ୍ନ ମାତୃଭାଷା ମଧ୍ୟରେ ତାହାର ବିଚିତ୍ର ପରିପ୍ରକାଶ ସେହିପରି ଗୋଟିଏ ଗୋଟିଏ ବିନ୍ଦୁ । ଏକଦେଶଦର୍ଶୀ ବିଚାରକ, ଭାଷା ଓ ସଂସ୍କୃତିର ବିଚିତ୍ର, ବହୁବିଧ ପ୍ରକାଶର ସାମଗ୍ରିକ ଦୃଷ୍ଟି ହରାଇଲେ ଆପଣା ସଂସ୍କୃତିର ମାନଦଣ୍ଡରେ ଇତର ସଂସ୍କୃତିକୁ ମାପିବାକୁ ଯାଇ ଯେପରି ଭ୍ରମରେ ପଡିଥାନ୍ତି, ଆପଣା ଭାଷାର କୋଟୀକୁ ମାନ୍ୟବିଚାରି ଅନ୍ୟଭାଷାର ସମୃଦ୍ଧି, ପ୍ରୟୋଗ କୁଶଳତା ଆଦି ସମ୍ବନ୍ଧରେ ମତଦେବାକୁ ଯାଇ ଠିକ୍ ସେହିପରି ଭ୍ରମରେ ପଡିଥାନ୍ତି ।

ସଂସ୍କୃତି ଓ ଭାଷା ଉଭୟ କ୍ଷେତ୍ରରେ ଅଭିବ୍ୟକ୍ତିକୁ ଧରି "ସାମର୍ଥ୍ୟ" ବିଚାର କରାଯାଇଥାଏ । ନୃତତ୍ୱର ଛାତ୍ର ସ୍ୱତନ୍ତ୍ର ସମାଜର ଚଳଣିକୁ ଧରି "ସମାଜ" ର ବୈଜ୍ଞାନିକ ବିଶ୍ଳେଷଣ କଲାପରି ଭାଷା ବିଜ୍ଞାନର ଛାତ୍ର ଏକ ପକ୍ଷରେ ବିଭିନ୍ନ ବୟକ୍ତିକ ଭାଷାକୁ ଧରି କୌଣସି ଏକ ଭାଷାର ଗଢଣ ଏବଂ ଅନ୍ୟପକ୍ଷରେ ବିଭିନ୍ନ ଭାଷାର ଗଢଣକୁ ଧରି "ଭାଷା" ର ସାର୍ବଜନୀନ ବିଭବ ଅନୁସନ୍ଧାନ କରିଥାଏ । ଭାଷା ଯେପରି ମଣିଷର ବୈଶିଷ୍ଟ୍ୟ, ସୀମାହୀନ ସାମର୍ଥ୍ୟର ବିଚିତ୍ର ଓ ବିଭିନ୍ନ ପରିପ୍ରକାଶ ସେହିପରି ମଣିଷର ଅନ୍ୟଏକ ବୈଶିଷ୍ଟ୍ୟ ।

## ସାହିତ୍ୟ ସମାଲୋଚକ
## ପ୍ରଫେସର ବୈଷ୍ଣବଚରଣ ସାମଲ

ବୈଷ୍ଣବଚରଣ ସାମଲ - ୨୭ ଫେବୃୟାରୀ, ୧୯୩୯ ମସିହାର ଅବିଭକ୍ତ କଟକ ଜିଲ୍ଲାର କେନ୍ଦ୍ରାପଡା ନିକଟବର୍ତ୍ତୀ ଚାରିଗାଁ ଠାରେ ଜନ୍ମଗ୍ରହଣ କରିଥିଲେ । ବାପାଙ୍କ ନାମ - ଶ୍ରୀବସ୍ତ ସାମଲ ଓ ମା' ଥିଲେ - ଜେମାମଣି ଦେବୀ । ଧର୍ମପତ୍ନୀ - ଯଶୋଦା ସାମଲ ଓ ତିନିଝିଅ ଓ ୩ ପୁଅକୁ ନେଇ ତାଙ୍କର ସଂସାର । ସମ୍ପ୍ରତି ସେ କଟକ ସହର ର ଚାଉଳିଆଗଞ୍ଜ ଠାରେ ସ୍ଥାୟୀ ଭାବରେ ରହୁଥିଲେ ।

ଓଡିଆ ସାହିତ୍ୟ ର ବିଭିନ୍ନ ବିଭାଗରେ କଲମ ଚାଳନା କରି ସେ ସମାଲୋଚନା, ରମ୍ୟ ରଚନା, ପ୍ରବନ୍ଧ, ଗଳ୍ପ ଓ ଶିଶୁ ସାହିତ୍ୟ ଆଦି ରଚନା କରିଅଛନ୍ତି । ସେ ମଧ୍ୟ ଅନେକ ଗ୍ରନ୍ଥ ଓ ପ୍ରାଚୀନ ସାହିତ୍ୟ ସମାଲୋଚକ ଭାବରେ ସେ ସୁପ୍ରତିଷ୍ଠିତ । ଏଯାବତ୍ ତାଙ୍କର ୧୨୦ ଖଣ୍ଡ ପୁସ୍ତକ ରହିଛି ।

ଗାଁରେ ପ୍ରାଥମିକ, ମାଧ୍ୟମିକ ଶିକ୍ଷା ସମାପ୍ତକରି ଉଚ୍ଚଶିକ୍ଷା ଲାଭ କରିଥିଲେ - ଓଡିଆ ଭାଷା ଓ ସାହିତ୍ୟରେ ।

ନିଜର କର୍ମମୟ ଜୀବନ କାଳରେ ୧୯୬୬ ମସିହାରେ ବୈଷ୍ଣବଚରଣ ବାଲେଶ୍ୱର ଫକୀରମୋହନ କଲେଜରେ ଓଡିଆ ଅଧ୍ୟାପକ ଭାବରେ ଯୋଗଦାନ କରିଥିଲେ ଓ ପରବର୍ତ୍ତୀ ସମୟରେ ରେଭେନ୍ସା କଲେଜରେ ଅଧ୍ୟାପକ ଭାବରେ ଓଡିଆ ଭାଷା ଓ ସାହିତ୍ୟର ଜଣେ ପ୍ରବୀଣ ଅଧ୍ୟାପକ ଭାବରେ ସୁନାମ ଅର୍ଜନ କରିଥିଲେ । ଏହାପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଭାବରେ ୨୦୦୬ ମସିହାରେ କଲିକତାର ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରୁ ପ୍ରଫେସର ଭାବରେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ ।

ଓଡିଆ ସାହିତ୍ୟର ଜଣେ ଅଧ୍ୟାପକ, ସାହିତ୍ୟିକ ସର୍ବୋପରି ଗବେଷକ ଭାବରେ ବୈଷ୍ଣବଚରଣଙ୍କ ସୁନାମ ରହିଅଛି । ସେ ଛାତ୍ରବତ୍ସଳ ଅଧ୍ୟାପକ, ଜ୍ଞାନ ବିତରକ ଗବେଷକ ଓ ଜ୍ଞାନପିପାସୁ ସାହିତ୍ୟିକ । ତାଙ୍କ ଅଧୀନରେ ଅନେକ ଶିକ୍ଷାର୍ଥୀ ଗବେଷଣା କରି ଡକ୍ଟରେଟ୍ ଉପାଧି ପାଇଅଛନ୍ତି ।

### ସାହିତ୍ୟସ୍ରଷ୍ଟା ବୈଷ୍ଣବଚରଣ -

ବୈଷ୍ଣବଙ୍କ ସାହିତ୍ୟର ଧାରା ବିକଶିତ ହୋଇଥିଲା ୧୯୫୫ ରୁ, ମାତ୍ର ୧୬ ବର୍ଷ ବୟସରେ ପ୍ରଥମ କବିତା ଲେଖିଥିଲେ - "ନେତା କିଏ" । ୧୯୬୪-୬୫ ମସିହାରୁ ସେ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟ ଲେଖିବା ଆରମ୍ଭ କରିଥିଲେ । ତାଙ୍କ ପ୍ରଥମ ପ୍ରବନ୍ଧ ଥିଲା - "ସାହିତ୍ୟ ଓ ବାସ୍ତବବାଦ", ତାଙ୍କ ଲେଖା ସେ ସମୟରେ ବହୁ ସାରସ୍ୱତ ପତ୍ରିକାରେ ପ୍ରକାଶ ପାଇ ପାଠକୀୟ ଆଦୃତି ଲାଭ କରିଥିଲା । ସେ ସର୍ବପ୍ରଥମେ ୧୯୬୭ ରୁ ୧୯୮୦ ମସିହା ମଧ୍ୟରେ ଆଧୁନିକ କବିତା ଓ ଆଧୁନିକ ଗଳ୍ପରେ ପ୍ରତିଫଳିତ । ତତ୍ତ୍ୱ ଭାବ ଭାବନା ଉପରେ ସମାଲୋଚନା ଓ ଗଳ୍ପ ସମ୍ପର୍କିତ ଆଲୋଚନା ୧୯୭୪ ମସିହାରେ । ପରେ ଏହା "ଓଡିଆ ଗଳ୍ପ : ଉନ୍ମେଷ ଓ ଉତରଣ" ନାଁରେ ପ୍ରକାଶପାଇ ଏପର୍ଯ୍ୟନ୍ତ ତିନୋଟି ସଂସ୍କରଣ ସରିଯାଇଛି । ପୂର୍ବରୁ ସାହିତ୍ୟର ବିଭିନ୍ନ ଦୃଷ୍ଟି ଓ ଦର୍ଶନ ଉପରେ ଯେତେକ ପ୍ରବନ୍ଧ ରଚନା କରିଥିଲେ, ତାହା ୧୯୭୧ ମସିହାରେ "କଳା ସଂସ୍କୃତି ଓ ସାହିତ୍ୟ" ନାମରେ ପ୍ରକାଶ ପାଇଥିଲା ଓ ଏହାକୁ ଜଗନ୍ନାଥ ରଥ ପ୍ରକାଶନ ସଂସ୍ଥା ପ୍ରକାଶ କରିଥିଲେ ।

ସେହିବର୍ଷ ତାଙ୍କର ପ୍ରଥମ କବିତା ପୁସ୍ତକ - "ସମୟର ଲିପି" ପ୍ରକାଶିତ ହୋଇଥିଲା ।

ବୈଷ୍ଣବଚରଣ ଙ୍କ ରଚନାବଳୀ ମଧ୍ୟରେ ଅନେକ ସମାଲୋଚନା ସାହିତ୍ୟ ପ୍ରବନ୍ଧ ରହିଛି । ୮ ଗୋଟି କବିତା ସଂକଳନ, ୯ ଗୋଟି ରମ୍ୟ ରଚନା ଓ ୮ ଗୋଟି ଶିଶୁ ସାହିତ୍ୟ ପୁସ୍ତକ ରଚନା କରିଅଛନ୍ତି । ଅନେକ ପୁସ୍ତକ ମଧ୍ୟ ସେ ସମ୍ପାଦନା କରିଅଛନ୍ତି । ଗଳ୍ପ ମଧ୍ୟ ରଚନା କରିଛନ୍ତି ଓ ତାଙ୍କର ରହିଛି ଦୁଇଟି ଗଳ୍ପ ପୁସ୍ତକ ।

### ସମାଲୋଚନା -

ଓଡିଆ ଗଳ୍ପ - ଗତି ଓ ପ୍ରକୃତି (୧୯୭୪)
ଓଡିଆ କ୍ଷୁଦ୍ରଗଳ୍ପ - ସ୍ରଷ୍ଟା ମାନସ (୧୯୭୮)
ଓଡିଆ କ୍ଷୁଦ୍ରଗଳ୍ପର ଇତିହାସ (୨ଟି ଭାଗ)
ଓଡିଆ କ୍ଷୁଦ୍ରଗଳ୍ପ ଉନ୍ମେଷ ଓ ଉତରଣ
ଦୃଷ୍ଟି ଓ ଦିଗନ୍ତ
ସମାଲୋଚନା : ସ୍ୱର ଓ ସ୍ୱାକ୍ଷର
ସମୀକ୍ଷା ଲୋକ
ସମାଲୋଚନା : ମଧୁପର୍ବ
ସମାଲୋଚନା : ପାଞ୍ଚଜନ୍ୟ
ଗଣତନ୍ତ୍ର ସାହିତ୍ୟ ସମୀକ୍ଷା
ସଂସ୍କୃତିର ମହକ ସାହିତ୍ୟର ଚମକ

ଭୂତି ଭକ୍ତି ବିଭୂତି

ଇତ୍ୟାଦି ୫୦ ଖଣ୍ଡ ।

**ସମ୍ପାଦନା -**

ମହାପୁରୁଷ ହାଡି ଦାସ ଗ୍ରନ୍ଥାବଳୀ

ଗଣକବି ଗୋପାଳ ଦାସ ଗ୍ରନ୍ଥାବଳୀ ( ୨ଟି ଭାଗ)

ପଲ୍ଲୀକବି ନନ୍ଦକିଶୋର ଗ୍ରନ୍ଥାବଳୀ

ସାହିତ୍ୟ-ସମ୍ବାଦ

ଭିନ୍ନ ଇଲକା ଭିନ୍ନ ଦୃଷ୍ଟ

ମହାପୁରୁଷ ହାଡ଼ି ଦାସ ଚଉତିଶାବଳୀ

ଗଣକବି ଗୋପାଳ ଦାଶ ଗୀତାବଳୀ

ସନ୍ତମଣି ଦାସ ରଚନାବଳୀ

ମହାପୁରୁଷ ବାହୁଡ଼ା ଦାସ ରଚନାବଳୀ

ଚନ୍ଦ୍ରଶେଖର ନନ୍ଦଙ୍କ ଗଳ୍ପ ସମଗ୍ର

ଶାନ୍ତନୁ ଆଚାର୍ଯ୍ୟଙ୍କ ଶ୍ରେଷ୍ଠଗଳ୍ପ

ଗୋଦାବରୀଶ ମହାପାତ୍ରଙ୍କ ଶ୍ରେଷ୍ଠଗଳ୍ପ

ଇତ୍ୟାଦି ଅନେକ ।

**ଗଳ୍ପ -**

ଏକା ଏକା ନକ୍ଷତ୍ର

ଶେଷ ଶୃଙ୍ଗାର

**କବିତା -**

ସମୟର ଲିପି

ପୁନଶ୍ଚ ମଣିଷ

ଆଲୋକିତ ଅନ୍ଧକାର

ଏକାକୀ ଈଶ୍ୱର

ଅନ୍ୟଏକ ପୃଥିବୀ

ବିକଳ୍ପ ସତା

ବିବର୍ତ୍ତିତ ପୃଥ୍ୱୀ

ଅସ୍ତଲାଲ୍‌ର କବିତା

**ରମ୍ୟ ରଚନା -**

ଆଜ ଦେଖିଲିରେ

କହିବାକୁ ଲାଜ

ଇଚ୍ଛନ୍ତି ଦାମ୍ଭିକେ

ନାରୀର ମୁହଁ

ସଂଜୟ ଉବାଚ

ରଙ୍ଗସଭା

ମାରୀଚ ବାଣୀ ଓ ଅନ୍ୟାନ୍ୟ ପ୍ରବନ୍ଧ

ଚଦୂର ବାଣୀ ଓ ଅନ୍ୟାନ୍ୟ ପ୍ରବନ୍ଧ

ଗୋପଦାଣ୍ଡ ଓ ଅନ୍ୟାନ୍ୟ ପ୍ରବନ୍ଧ

**ଅନ୍ୟାନ୍ୟ ସାରସ୍ୱତ କୃତି -**

ବିଶ୍ୱବିଦ୍ୟାଳୟ ପ୍ରବନ୍ଧମାଳା

ପ୍ରବନ୍ଧ ରତ୍ନାବଳୀ

ଧର୍ମ ସାହିତ୍ୟ, ଶିଶୁ ସାହିତ୍ୟ

**ଆତ୍ମଚରିତ -**

ଜଣେ ବଣା ବାଟୋଇର କାହାଣୀ

**ସମ୍ମାନ ଓ ପୁରସ୍କାର -**

ପ୍ରଫେସର ବୈଷ୍ଣବଚରଣ ସାମଲ ନିଜର ସାରସ୍ୱତ କୃତିପାଇଁ ଅନେକ ସାରସ୍ୱତ ଅନୁଷ୍ଠାନରୁ ସମ୍ମାନିତ ଓ ପୁରସ୍କୃତ ମଧ୍ୟ, ଯାହାକି ତାଙ୍କୁ ଅଧିକରୁ ଅଧିକ ସାହିତ୍ୟ ସୃଷ୍ଟିପାଇଁ ପ୍ରେରଣା ଯୋଗାଇଥିଲା ।

"ଭିନ୍ନ ଇଲାକା ଭିନ୍ନ ଦୃଷ୍ଟି" - ପୁସ୍ତକ ପାଇଁ ବୈଷ୍ଣବଚରଣ ଓଡିଶାର ସର୍ବୋଚ୍ଚ ସାରସ୍ୱତ ଅନୁଷ୍ଠାନ - ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ - ୨୦୦୨ ମସିହାରେ ।

୧୯୯୦ ମସିହାରେ ବୈଷ୍ଣବଚରଣ - ଝଙ୍କାର ପୁରସ୍କାର - ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା ପାଇଁ ପାଇଥିଲେ । "ପ୍ରଜାତନ୍ତ୍ର" ର ମାସିକ ସାହିତ୍ୟ ପତ୍ରିକା ଝଙ୍କାର - ପ୍ରକାଶନ ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ - ଏହି ପୁରସ୍କାର ପ୍ରଦାନ କରାଯାଇଥାଏ ।

୨୦୧୮ ମସିହାରେ ସେ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ଆୟୋଜିତ ବିଷୁବ ମିଳନ ଅବକାଶରେ ସର୍ବୋଚ୍ଚ ପୁରସ୍କାର - "ବିଷୁବ ପୁରସ୍କାର" ପାଇଥିଲେ ।

ସାରଳା ସମ୍ମାନ - ଓଡିଶାର ଏକ ଉଚ୍ଚକୋଟୀର ସାରସ୍ୱତ ପୁରସ୍କାର - ସାରଳା ସମ୍ମାନ - କନକ ସାରଳା ସାହିତ୍ୟ ପରିଷଦ ତରଫରୁ ପାଇଥିଲେ ।

ଉତ୍କଳ ସାହିତ୍ୟ ସମାଜର ସାରସ୍ୱତ ସମ୍ମାନ - ଓଡିଶାର ଶତାୟୁ ସାରସ୍ୱତ ଅନୁଷ୍ଠାନ ପକ୍ଷରୁ - ସାରସ୍ୱତ ସମ୍ମାନ ପ୍ରଦାନ କରାଯାଇଥିଲା ବୈଷ୍ଣବଚରଣ ଙ୍କ ସାହିତ୍ୟ ସମାଲୋଚନା ପାଇଁ ।

କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର - ଓଡିଶାର ଏକ ଲବ୍ଧ ପ୍ରତିଷ୍ଠିତ ଗବେଷଣା ସଂଗଠନ ଭିତିକ ସାରସ୍ୱତ ସଂସ୍ଥା - ଓଡିଆ ଗବେଷଣା ପରିଷଦ ପ୍ରତିଷ୍ଠାତା - ସଭାପତି - ଡକ୍ଟର କୃଷ୍ଣଚରଣ ବେହେରା ଓ ପ୍ରତିଷ୍ଠାତା - ସମ୍ପାଦକ - ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଦ୍ୱାରା ପରିଚାଳିତ । କ୍ଷେତ୍ରବାସୀ ଙ୍କ ସାହିତ୍ୟ କୃତିକୁ ସମ୍ମାନପୂର୍ବକ - ପ୍ରତିବର୍ଷ ଓଡିଶାର ଜଣେ ବିଶିଷ୍ଟ ସାହିତ୍ୟିକ ଓ ଗବେଷକ ଙ୍କୁ କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ପ୍ରଦାନ କରାଯାଇଥାଏ । ଏ ପୁରସ୍କାର ବୈଷ୍ଣବଚରଣ ପାଇଥିଲେ ତାଙ୍କର ସାରସ୍ୱତ କୃତିପାଇଁ ।

ସେ ମଧ୍ୟ ନିଖିଳ ଉତ୍କଳ ବାଗ୍ମୀ ପୁରସ୍କାର, ଦୈନିକ ଭାସ୍କର ପୁରସ୍କାର, କେନ୍ଦ୍ରାପଡ଼ା ସ୍ୱୟଂ ଶାସିତ କଲେଜ ତରଫରୁ ଦୀନବନ୍ଧୁ ସାହୁ ସ୍ମୃତି ପୁରସ୍କାର ଓ ଅନ୍ୟାନ୍ୟ ଶତାଧିକ ସମ୍ମାନ ପାଇଛନ୍ତି ।

ପ୍ରଫେସର ବୈଷ୍ଣବଚରଣ ସାମଲ ଙ୍କ ସାରସ୍ୱତ ସୃଷ୍ଟିର ଏକ ଝଲକ -

## ସାକ୍ଷୀ-ସାହିତ୍ୟ

ସାହିତ୍ୟ କାଳେକାଳେ ହୁଏ ନରନାରୀଙ୍କ ଅଶ୍ରୁ ଓ କାରୁଣ୍ୟର ସାକ୍ଷୀ, ଶୋଷଣ ଓ ପୀଡନର ସାକ୍ଷୀ, ନୈରାଶ୍ୟ ଓ ଶୋଚନୀୟତାର ସାକ୍ଷୀ । କେବଳ ସାକ୍ଷୀ ହୁଏନାହିଁ; ଶୋଷିତ ଓ ନିଷ୍ପେଷିତ ମଣିଷଙ୍କ ଭିତରେ ଦୁର୍ମଦ ଶକ୍ତିର ଜାଗରଣ ପାଇଁ ପ୍ରେରଣାଦିଏ, ଅନ୍ୟାୟ-ଅନୀତି-ସ୍ୱେଚ୍ଛାଚାର ବିରୋଧରେ ଲଢିବା ପାଇଁ ଆହ୍ୱାନଦିଏ । ସାହିତ୍ୟ ର ଲକ୍ଷ୍ୟହୁଏ ସବୁ ମଣିଷଙ୍କୁ ଗୋଟିଏ ଧରା ତଳକୁ ଆଣି ସେମାନଙ୍କ ଭିତରେ ସମଭାବ ଓ ସମଦୃଷ୍ଟି ସୃଷ୍ଟିକରିବା, ଜୀବନ-ଜିଇବାର ଏକ ମଧୁମୟ ରାଗିଣୀ ତୋଳିବା । ମାନବ-ମନୀଷାରୁ ଯେତେଯେତେ ବିଦ୍ୟା ପ୍ରକାଶ ପାଇଛି ସେମାନଙ୍କୁ ସାହିତ୍ୟ ତା' କୋଳକୁ ସ୍ୱାଗତ କରିନିଏ, ସବୁକୁ ସନ୍ତୁଳିତ କରି ଏପରି ଭାବରେ ରୂପଦିଏ ଯାହାହୁଏ ମାନବାତ୍ମାର ଆବେଗଦୀପ୍ତ ଧ୍ୱନି ଓ ପ୍ରତିଧ୍ୱନି ।

ସାହିତ୍ୟ ତ ସାହିତ୍ୟ । ସେଥିରେ ପୁଣି ସାକ୍ଷୀ-ସାହିତ୍ୟ କ'ଣ ? ସାହିତ୍ୟ କ'ଣ ସାକ୍ଷ୍ୟ ପ୍ରଦାନକରେ ? ଏଥିପାଇଁ କ'ଣ ସାହିତ୍ୟ ସାକ୍ଷୀ ପାଲଟିଯାଏ ? କାହାର ସେ ସାକ୍ଷୀହୁଏ ? କ'ଣ ବ୍ୟକ୍ତି ବିଶେଷଙ୍କର ନା ସମଗ୍ର ମଣିଷ ଜାତିର ? ସାହିତ୍ୟ ତ ଅକ୍ଷର ଆଉ ଶବ୍ଦମାନଙ୍କର ସମନ୍ୱିତ ବିଗ୍ରହ । ତାହା ପୁଣି ନିର୍ଜୀବ । ସିଏ ପୁଣି ସାକ୍ଷ୍ୟଦେବ କିପରି ? କୋର୍ଟ କଚେରୀ ତ ଆମ ଦେଶକୁ ଇଂରେଜ ଶାସନର ବିଶିଷ୍ଟ ବରଦାନ । ଏହି ବ୍ୟବସ୍ଥାରେ ସାକ୍ଷୀମାନଙ୍କର ଭୂମିକାଟି ଗୁରୁତ୍ୱପୂର୍ଣ୍ଣ । କାଠଗଡାରେ ଛିଡାହୋଇ ସାକ୍ଷ୍ୟଦେବାକୁ ଜୀବିକା ବା ବ୍ୟବସାୟ କରିଥିବା ଅଭ୍ୟସ୍ତ ସାକ୍ଷୀମାନେ ଧର୍ମାବତାର ବିଚାରକ ଙ୍କ ଆଗରେ ଗୀତା, ଭାଗବତ, ବାଇବେଲ, କୋରାନ ଆଦି ଧର୍ମଶାସ୍ତ୍ର ଛୁଇଁ ଯାବତ ମିଛକୁ ଡଗଡଗ ହୋଇ ଏପରି କହିଯାଆନ୍ତି ଯେ ସତେ ଯେମିତି ସେମାନେ ସବୁ ଦେଖିଛନ୍ତି, ଜାଣିଛନ୍ତି । ଏପରି ସାକ୍ଷ୍ୟ ତ ସାହିତ୍ୟ ଦେଇପାରେ ନାହିଁ । ଦେବା ମଧ୍ୟ ଆଦୌ ସମ୍ଭବ ନୁହେଁ । ତେବେ ସାହିତ୍ୟ ଆମର ସାକ୍ଷୀହେବ କିପରି ? ସାହିତ୍ୟ କେବେ ମିଛ କହେନାହିଁ । ମିଛ କହିବା ତା' ଜାତକରେ ନାହିଁ । ବାହାରକୁ ମିଛପରି ଜଣାଯାଉଥାଏ, କଳ୍ପନା ପରି ଜଣାଯାଉଥାଏ; ଅଥଚ ଭିତରେ ଥାଏ ସତ । ସତଟାକୁ ଠିକ୍ ସେଇମିତି କହିଦେଲେ ତାହା ସାହିତ୍ୟ ହୁଏନାହିଁ । ସୁନାକୁ ଠିକ୍ ସେଇମିତି ନେଇ ଗଢିବାକୁ ଚେଷ୍ଟାକଲେ ଅଳଙ୍କାରଟିଏ ହୁଏନାଇଁ; ମିଶାଇବାକୁ ହୁଏ ଖାଦ । ଖାଦ ମିଶିଲେ ହିଁ ହୁଏ ଚିକ୍‌ଚିକ୍ ଅଳଙ୍କାର । ଠିକ୍ ସେଇମିତି ସାହିତ୍ୟ । ସେଥିରେ ଖାଟିଂ ସତ୍ୟଥାଏ । ସେଥିରେ ମିଛ ବା କଳ୍ପନାକୁ ମିଶାଇ ଏପରି ଅନୁରଞ୍ଜିତ କରି ଦିଆଯାଏ ଯେ ତାହା ଆଉ ଏକ ସହିତ ଏକ ମିଶି ଦୁଇ ନହୋଇ ଅନେକ ହୋଇଯାଏ ଓ ସେହି ଅନେକ ଭିତରୁ ଏକକୁ ବାହାରକରିବା ଏତେ ସହଜ ହୁଏନାଇଁ ।

ସାହିତ୍ୟ ମଣିଷ-ଜୀବନର ଭାଷ୍ୟ । ଜୀବନ ତ ଏତେ ସହଜ ନୁହଁଇ ଯେ ଜଣେ ଜୀବନକୁ ଜାଣିଯାଇଛି ବୋଲି କହି ଦେଇପାରିବ । ଜନ୍ମରୁ ମରଣ ପର୍ଯ୍ୟନ୍ତ ଯେଉଁ ଜଟିଳ ଓ ବନ୍ଧୁର ପଥଦେଇ ମଣିଷ ଗତି କରୁଥାଏ ତାହା ହିଁ ଜୀବନ । ସେହି ଜୀବନର ଯେତିକି ଅଂଶ ଦେଖାଯାଉଥାଏ ତାହାର ତିନି ଚତୁର୍ଥାଂଶ ନିମଜ୍ଜିତ ହୋଇ ରହିଥାଏ । ଜୀବନ ପୁଣି ଏକ କ୍ରମ ପ୍ରବାହଧାରା । ମରଣରେ ଶେଷ ହୋଇଯାଏ ବୋଲି ଜଣା ପଡୁଥିଲେ ମଧ ତାହା ଶେଷ ହୁଏନାହିଁ । ପୁଣି ଆଉ କେଉଁଠି କେଉଁ ରୂପରେ ଆତ୍ମପ୍ରକାଶ କରୁଥାଏ । ଯେତେବେଳେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ଙ୍କୁ କହିଲେ ଯେ ସେ ପ୍ରଥମେ ସୂର୍ଯ୍ୟଙ୍କୁ ଯେଉଁ ଯୋଗ କଥା କହିଥିଲେ ପରେ ସୂର୍ଯ୍ୟ ତାହାକୁ ମନୁଙ୍କୁ ଓ ମନୁ ଇକ୍ଷାଙ୍କୁ କହିଥିଲେ । ଅର୍ଜ୍ଜୁନଙ୍କର ଏଥିରେ ସନ୍ଦେହ ହେବାରୁ ସେ କହିଲେ ସୂର୍ଯ୍ୟ ତ କେଉଁ ଅନାଦି କାଳାର, ଅଥଚ ଶ୍ରୀକୃଷ୍ଣ ଏବର, ତାଙ୍କ ସାଙ୍ଗର, ସିଏ କେମିତି ସୂର୍ଯ୍ୟଙ୍କୁ ଯୋଗ କଥା କହିଲେ । ଶ୍ରୀକୃଷ୍ଣ ଉତରଦେଲେ ଯେ ତାଙ୍କର ଓ ଅର୍ଜ୍ଜୁନଙ୍କର ବହୁତ ଜନ୍ମ ବିତିଗଲାଣି । ତାକୁ ସେ ମନେ ରଖିଛନ୍ତି ମାତ୍ର ଅର୍ଜ୍ଜୁନ ମନେରଖି ନାହାଁନ୍ତି । ଏଥିରୁ ଜଣାଯାଉଛି ଯେ ଜୀବନ ଗୋଟିଏ ଜନ୍ମରେ ଶେଷ ହୋଇଯାଏ ନାହିଁ । କେତେକେତେ ଜନ୍ମଦେଇ ଗତି କରୁଥାଏ । ସାହିତ୍ୟ ଏହି କଥା ସୂଚାଇଦିଏ । ସାହିତ୍ୟ ର ଆଧାର ହେଉଛି ଭୂମିରୁ ଭୂମା, ଅଣୁରୁ ଅନ୍ତରୀକ୍ଷ ପର୍ଯ୍ୟନ୍ତ ବ୍ୟାପ୍ତ । ବିପୁଳ ଜଗତ । ତା' ଭିତରେ ମଣିଷ ହୁଏ ଶ୍ରେଷ୍ଠ ଓ ମଣିଷର ଜୀବନକୁ ନେଇ ତାହାହୁଏ ରଦ୍ଧିମନ୍ତ । ସାହିତ୍ୟ ଏମିତି ଗୋଟାଏ ଭାବମୟ ବ୍ରହ୍ମାଣ୍ଡ ଯେ, ସେଠି ଦେବତା ଦାନବଠାରୁ ଆରମ୍ଭକରି ମଣିଷ, ଜୀବଜନ୍ତୁ, ଗଛଲତା ସବୁକିଛି ଜୀବନ୍ତ ହୋଇଉଠନ୍ତି । ଯେତେଯେତେ ବିଦ୍ୟାଅଛି, ସବୁ ସାହିତ୍ୟ ଭିତରକୁ ଆସିଯାଆନ୍ତି । ସାହିତ୍ୟ-ଗୃହର ଦରଜା ନାହିଁ କିମ୍ବା ଝରକା ନାହିଁ । ସବୁ ଖୋଲା । ବାହାର ପବନ ତା' ଭିତରକୁ ଆସେ ଓ ଭିତର ପବନ ମଧ ବାହାରକୁ ଯାଏ । ତେଣୁ ସାହିତ୍ୟରେ ସଂକୀର୍ଣ୍ଣତାର ସ୍ଥାନ ନାହିଁ । ତାହା ପ୍ରକୃତରେ ଏକ ମିଳନ ଭୂମି । ଭାବ-ସତ୍ୟ ହିଁ ସେଠି ମୁଖ୍ୟ । ଆଧାତ୍ମିକ ଭାବହେଉ ବା ଦାର୍ଶନିକ, ଅତୀନ୍ଦ୍ରିୟ ଭାବହେଉ ବା ବିଦ୍ରୋହ ବା ବୈପ୍ଲବିକ ଭାବହେଉ, ରୋମାଟିଂକ, ବାସ୍ତବତାବାଦୀ, ଜାତୀୟତାବାଦୀ ବା ସ୍ୱଦେଶ ପ୍ରେମମୂଳକ ହେଉ ସବୁ ମଣିଷକୁ ନେଇ ଓ ସାହିତ୍ୟ ସବୁକୁ ଆପଣାର ଅଙ୍ଗୀଭୂତ କରିନିଏ । ସକଳ ବିଦ୍ୟାର ସନ୍ତୁଳିତ ରୂପ ସାହିତ୍ୟରେ ହିଁ ପ୍ରକାଶପାଏ । ଖାଲି ପ୍ରକାଶପାଏ ନାହିଁ; ଯୁଗରୁ ଯୁଗକୁ ଗତି କରୁଥାଏ ଓ ମଣିଷମାନଙ୍କୁ ଅତୀତ ସମ୍ପର୍କରେ ସାକ୍ଷ୍ୟ ଦେଉଥାଏ, ବର୍ତମାନ ପାଇଁ ମଧ ଜୀବନ୍ତ ସାକ୍ଷୀ ପାଲଟି ଯାଉଥାଏ ।

ସାହିତ୍ୟ ର ସ୍ରଷ୍ଟା ମଣିଷ । ସିଏ ହିଁ କବି । ସିଏ ହିଁ ଲେଖକ । ଭାଷା ତା'ର ସମ୍ପଦ । କବିଙ୍କୁ ତେଣୁ କୁହାଯାଏ - "ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ ।" ପୁଣି ଉପନିଷଦରେ କୁହାଯାଇଛି - କବି ହିଁ କ୍ରାନ୍ତଦର୍ଶୀ । ସିଏ ସ୍ୱୟଂଭୂ, ପରିଭୂ । "ଈଶୋପନିଷଦ"ରେ ତେଣୁ ଉଲ୍ଲେଖ ଅଛି - "କବିର୍ମନୀଷୀ ପରିଭୂଃ ସ୍ୱୟଂଭୂଃ" । କବି ବା ଲେଖକ ପ୍ରଥମତଃ ଜଣେ ବ୍ୟକ୍ତି । ସେ ପରିବାର ଭିତରେ ନାନା ସମ୍ବନ୍ଧରେ ବାନ୍ଧି ହୋଇଥାଏ । ସେ ମଧ ସମାଜରେ ଥାଏ ଓ ଥାଏ ମଧ ରାଷ୍ଟ୍ରରେ । ସବୁ ଭିତରେ ଥାଇ ମଧ କେଉଁଠି ବାନ୍ଧିହୋଇ ରହିପାରେ ନାହିଁ । କାରଣ ସେ ମନରେ ଓ ଚିନ୍ତା ଚେତନାରେ ମୁକ୍ତ । କାହାରି ପାଖରେ ସେ ନତମାନୁ ନୁହେଁ । ସେ କେବଳ ସମ୍ମାନ ଜଣାଏଁ ସତ୍ୟକୁ, ମୂଲ୍ୟବୋଧକୁ, ମଣିଷପଣିଆକୁ । ଅନ୍ୟାୟ, ଅନୀତି, ଅନାଚାର, ସ୍ୱେଚ୍ଛାଚାର, ଭ୍ରାନ୍ତ ଅହଙ୍କାରକୁ ବିରୋଧ କରେ । ସେ ହୃଦୟର କଥାକହେ, ବିବେକକୁ ଛାଡେନାହିଁ । ତେଣୁ କବିଟିଏ ଆଦୌ ଏକାକୀ ନୁହେଁ, ନିଃସଙ୍ଗ ନୁହେଁ । କାରଣ ସେ ଲୋକଙ୍କ ପାଇଁ ହିଁ ଲେଖେ, ଲୋକଙ୍କ ଉତୋଳନ ପାଇଁ ହିଁ ପ୍ରେରଣାଦିଏ । ତା'ର ବ୍ୟକ୍ତିତ୍ୱ ଭିତରେ ସମଗ୍ର ସମାଜ-ସତା, ରାଷ୍ଟ୍ର-ସତା ଓ ବିଶ୍ୱ-ସତା ବିଦ୍ୟମାନ । ତେଣୁ କବି ସମଗ୍ରର ଜୀବନ୍ତ ପ୍ରତିଭୂ । କାବ୍ୟରେ ବା କବିତାରେ; ସାମଗ୍ରିକ ଭାବରେ ସାହିତ୍ୟରେ ଲେଖକ ସମଗ୍ର ବିଶ୍ୱକୁ ଗୋଟିଏ ଭାବ-ବିନ୍ଦୁକୁ ନେଇଆସେ । ସେଇଠାରେ ସେ ମିଳାଇଦିଏ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ ଦୂର ସହିତ ନିକଟକୁ, ନିକଟ ସହିତ ଦୂରକୁ, ଅନ୍ତର ସହିତ ବାହାରକୁ, ବାହାର ସହିତ ଅନ୍ତରକୁ । ବାହାରର ଜିନିଷକୁ, ସାଧାରଣ ଜିନିଷକୁ ନିଜର କରିନେଇ ପୁନର୍ବାର ତାହାକୁ ସାଧାରଣ କରିଦିଏ ଓ ତାହାରି ଭିତରେ ସମଗ୍ର ମଣିଷର ଭାବକୁ ପ୍ରତିଷ୍ଠା ଦେଇଦିଏ । ସାହିତ୍ୟ ମନର ବା ଜୀବନର ଦର୍ପଣ ନୁହେଁ । ପ୍ରାକୃତିକ ବସ୍ତୁ ମନ ଭିତରେ ପ୍ରତିଫଳିତ ହୁଏନାହିଁ; ପ୍ରତିସରିତ ହୁଏ । ପ୍ରକୃତିରେ ଯାହା ପ୍ରତ୍ୟକ୍ଷ, ସାହିତ୍ୟରେ ତାହା ଅପ୍ରତ୍ୟକ୍ଷ । ଅପ୍ରତ୍ୟକ୍ଷ ହେଲେ ହିଁ ସାହିତ୍ୟ ତାହାକୁ ଏପରି ରୂପଦିଏ ଯାହା ପ୍ରତ୍ୟକ୍ଷଠାରୁ ଆହୁରି ବ୍ୟାପକତର ହୋଇଯାଏ । ଏହି କାରଣରୁ ବୋଧହୁଏ ରବୀନ୍ଦ୍ରନାଥ କହିଥିଲେ - ଅନ୍ତର ର ଜିନିଷକୁ ବାହାର ର, ଭାବର ଜିନିଷକୁ ଭାଷାର, ନିଜର ଜିନିଷକୁ ବିଶ୍ୱମାନବର ଏବଂ କ୍ଷଣକାଳର ଜିନିଷକୁ ଚିରକାଳର କରିବା ହିଁ ସାହିତ୍ୟ ର କାର୍ଯ୍ୟ । ଏପରି କଲାବେଳେ ଲେଖକ ଭିତରେ ଯେଉଁ ମାନବତ୍ୱ ଥାଏ ତାହା ହିଁ ହୁଏ ପ୍ରକୃତରେ ସୃଜନ କର୍ତା । ସେତେବେଳେ ସେ ସତ୍ୟ ସହିତ ମଙ୍ଗଳ ଓ ସୌନ୍ଦର୍ଯ୍ୟର ମଧୁବିବାହ କରିଦିଏ । ଏପରି କ୍ଷେତ୍ରରେ ଲେଖକ ସକଳ ମଧରେ ନିଜକୁ ଦେଖେ, ନିଜ ମଧରେ ସକଳଙ୍କୁ ଉପଲବ୍ଧ କରେ । ମାନବାତ୍ମାର ଏହା ହିଁ ସ୍ୱାଭାବିକ ଧର୍ମ । ଏହାର ପ୍ରତିବନ୍ଧକ ହୁଏ ସ୍ୱାର୍ଥ ଓ ଅହଙ୍କାର । ଶ୍ରୀମଦ୍ ଭଗବତ ଗୀତାରେ ଏହି ପ୍ରତିବନ୍ଧକ ରୂପେ ଛଅଟି ଜିନିଷ କଥା କୁହାଯାଇଛି - "ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହଂ" । ସାହିତ୍ୟ ମାନବାତ୍ମାର ରୂପକାର ହୋଇଥିବାରୁ ଯେଉଁଠି ଏହି ଭାବଗୁଡିକୁ ଦେଖେ ତାହାକୁ ନିଜ ଭିତରକୁ ନେଇଆସେ ଓ ଏପରି ଭାବରେ ସେସବୁର କରୁଣ ପରିଣତିକୁ ଦେଖାଇଦିଏ ଯାହା ହୋଇଯାଏ ମଣିଷମାନଙ୍କ ପାଇଁ ଚେତାବନୀ । ଏପରି କ୍ଷେତ୍ରରେ ସାହିତ୍ୟ ହୋଇଯାଏ ନିତ୍ୟକାଳର ସାକ୍ଷୀ ।

ଉପରୋକ୍ତ ଦୃଷ୍ଟିରୁ ବିଚାରକଲେ ସ୍ପଷ୍ଟ ଜଣାଯାଏ ଯେ ସାହିତ୍ୟ ଯୁଗେଯୁଗେ ମଣିଷ ଜୀବନର ଉତରଣ ପାଇଁ ପ୍ରେରଣାର ଉତ୍ସ ହୋଇଆସିଛି । ପ୍ରାୟ ପାଂଚ ହଜାର ବର୍ଷପୂର୍ବେ ବେଦ ଓ ଉପନିଷଦ ରଚିତ ହୋଇଥିଲା । ତାହାର ପ୍ରଣେତା ଥିଲେ ଋଷି - କବି । ସେମାନେ ଥିଲେ ଦ୍ରଷ୍ଟା । ବୈଶ୍ୱାନର ଓ ତୈଜସ ଦୃଷ୍ଟିକୁ ମିଳାଇ ଯାହା ଦେଖୁଥିଲେ, ଅନୁଭବୁ ଥିଲେ, ତାହାକୁ ଶ୍ଳୋକ ଆକାରରେ ରୂପ ଦେଉଥିଲେ । ଯୁଗପରେ ଯୁଗ ବିତିଗଲାଣି; ଅଥଚ ସେସବୁ ଆମ ପାଖରେ ଚିରନ୍ତନ ସାକ୍ଷୀରୂପେ ବିଦ୍ୟମାନ । ରାଷ୍ଟ୍ରଧର୍ମ, ରାଜଧର୍ମ, ପ୍ରଜାଧର୍ମ, ସ୍ତ୍ରୀଧର୍ମ,

ଦାମ୍ପତ୍ୟ-ଧର୍ମ, ଅତିଥି-ଧର୍ମ, ସଦାଚାର-ଧର୍ମ, ମାତୃଭୂମି-ପ୍ରୀତି, ବିଶ୍ୱ-ଦୃଷ୍ଟି, ସତ୍ୟ ଓ ପବିତ୍ରତା ପ୍ରତି ଅନୁରକ୍ତି, ମିତ୍ର-ଦୃଷ୍ଟି, ବିଦ୍ୟାପ୍ରତି ଅନୁରାଗ ଇତ୍ୟାଦିର ଶାଶ୍ୱତ ସାକ୍ଷ୍ୟ ବହନକରେ ବେଦ ଓ ବେଦାନ୍ତ । ଏବେ ମଧ ବେଦ ଓ ବେଦାନ୍ତର ବାଣୀକୁ ସାକ୍ଷ୍ୟ ପ୍ରମାଣରୂପେ ଗ୍ରହଣ କରାଯାଇଥାଏ । ଯେତେବେଳେ ଋକବେଦ କହନ୍ତି - "ସଂ ଗଚ୍ଛଧ୍ୱମ୍", "ସଂ ବଦଧ୍ୱମ୍", "ସମାନୋ ମନ୍ତ୍ରଃ ସମିତିଃ ସମାନୀ" ଇତ୍ୟାଦି, ସେତେବେଳେ ଆମେ କ'ଣ ଉପଲବ୍ଧି କରୁନା ମଣିଷ ଜାତିପାଇଁ ଏସବୁ ଚିରନ୍ତନ ସାକ୍ଷ୍ୟ ପ୍ରଦାନକାରୀ ବାଣୀ ? ବେଦ ହିଁ ସର୍ବପ୍ରଥମେ ଘୋଷଣା କରିଥିଲେ ଯେ ସକଳ ମଣିଷ ମିଳିମିଶି ଚଳିବା, ମିଳିମିଶି ଆଳାପ ଆଲୋଚନା କରିବା, ସମାନ ବିଚାର ଓ ବିଚାରସ୍ଥଳ ହେବା ଉଚିତ୍ ତାହା ନିଶ୍ଚୟ ଆଜିର ପଥଭ୍ରଷ୍ଟ ଓ ଅଲଗା ଅଲଗା ହୋଇଯାଉଥିବା ମଣିଷମାନଙ୍କ ପାଇଁ ଆହ୍ୱାନ ନୁହେଁ କି ? ଯେପରି "ମନୁର୍ଭବ ଜନୟା ଦୈବ୍ୟଂ ଜନମ୍" (ମନୁଷ୍ୟ ହୁଅ ଓ ଦିବ୍ୟପ୍ରଜାଙ୍କୁ ଉତ୍ପନ୍ନକର) ବୋଲି ଋକବେଦରେ କୁହାଯାଇଛି ତାହା ଆଜିର ଅମଣିଷ ପାଲଟି ଯାଉଥିବା ମଣିଷମାନଙ୍କ ପାଇଁ କ'ଣ କିଛି ସାକ୍ଷ୍ୟଦିଏ ନାହିଁ ? ଯେପରି ଭାବରେ ସମଗ୍ର ପୃଥିବୀକୁ ମାଆ ଭାବରେ ଗ୍ରହଣ କରାଯାଇଛି, ଯେପରି ଭାବରେ ମାତୃଭୂମିର ମଙ୍ଗଳପାଇଁ ଆହ୍ୱାନ ଦିଆଯାଇଛି, ମାତୃଭୂମିର ସେବାପାଇଁ ଓ ମାତୃଭୂମିର ବହୁଭାଷୀ ତଥା ବହୁ ମତାବଲମ୍ବୀଙ୍କ ଭିତରେ ଏକ ପାରିବାରିକ ଭାବ ସୃଷ୍ଟିପାଇଁ ପ୍ରେରଣା ପ୍ରଦାନ କରାଯାଇଛି, ଗ୍ରାମସଭା ଓ ରାଷ୍ଟ୍ରସଭା ମଧରେ ସମନ୍ୱୟ ପାଇଁ କୁହାଯାଇଛି, ଯେପରି ଶାସକ ଓ ପ୍ରଜାଗଣଙ୍କ ମଧରେ ସୁସମ୍ପର୍କ ପାଇଁ ଉଦ୍‌ବୋଧନ ଦିଆଯାଇଛି, ରାଷ୍ଟ୍ରଦ୍ରୋହୀ ଓ ବ୍ରତହୀନ ଲୋକକୁ ଦଣ୍ଡଦେବା ପାଇଁ ଓ ସଦାଚାରୀ, ଜିତେନ୍ଦ୍ରିୟ ବ୍ରହ୍ମଦେ । ବିଦ୍ୱାନମାନଙ୍କୁ ସମ୍ମାନଦେବା ପାଇଁ କୁହାଯାଇଛି ତାହା ନିତ୍ୟକାଳର ସାକ୍ଷ୍ୟ ପ୍ରଦାନକରେ । ଏହି ବେଦବାଣୀ ବ୍ୟାସକୃତ ମହାଭାରତର ଭୀଷ୍ମପର୍ବରେ ଶର ଶଯ୍ୟାଶାୟୀ ପିତାମହଙ୍କ ମୁଖରେ ଉପଦେଶ ଆକାରରେ ପ୍ରକାଶପାଇଛି ଧର୍ମରାଜ ଯୁଧିଷ୍ଠିର ଙ୍କ ଉଦ୍ଦେଶ୍ୟରେ ।

କବିଟିଏ ବା ସାହିତ୍ୟିକଟିଏ ଜଣେ ବ୍ୟକ୍ତିହେଲେ ମଧ ଅନ୍ୟାନ୍ୟ ଅନେକ ବ୍ୟକ୍ତିଙ୍କ ପରି ସେ ନୁହେଁ । ସେ ଏକ ଭିନ୍ନ ଉପାଦାନରେ ଗଢା । ତା' ବ୍ୟକ୍ତି-ସତା ଭିତରେ ବିନର୍ତିତ ହେଉଥାଏ ସମଗ୍ର ସମାଜ-ସତା, ରାଷ୍ଟ୍ର-ସତା ଓ ବିଶ୍ୱ-ସତା । ତେଣୁ ସେ ଯେଉଁ କାବ୍ୟ କବିତା ବା ସାହିତ୍ୟ ସୃଷ୍ଟିକରେ ତାହା ତା'ର ବ୍ୟକ୍ତିଗତ ସ୍ୱାର୍ଥପାଇଁ ନୁହେଁ, ଏକାନ୍ତ ବ୍ୟକ୍ତିଗତ ଆନନ୍ଦପାଇଁ ନୁହେଁ । ତାହା ଭିତରେ ଫୁଟିଉଠେ ପରାର୍ଥ ଭାବନା । ତା'ର ଲକ୍ଷ୍ୟହୁଏ ସମାଜର ହିତ, ରାଷ୍ଟ୍ର ର ହିତ ଓ ବିଶ୍ୱର ହିତ । ସମଗ୍ର ଉତୋଳନ ତା'ର ଉଦ୍ଦେଶ୍ୟ । ତାହାରି ଭିତରେ ପ୍ରବାହିତ ହେଉଥାଏ ଆମର ସଂସ୍କୃତି, ଆମର ଘାତ ପ୍ରତିଘାତମୟ ଜୀବନ, ଆମର ଚାହାଁଣି, ଚଳଣି ଓ ଚମକ । ସମକାଳୀନତାକୁ ସେ ରୂପଦିଏ; ତାହାରି ଭିତରେ ସେ ଚିରକାଳୀନତାକୁ ଏପରି ରୂପଦିଏ ଯାହା ଯୁଗପରେ ଯୁଗ ବିତିଗଲେ ମଧ ତାହା ଗୋଟିଏ ଜାତିର ସାକ୍ଷୀହୋଇ ରହିଯାଏ । ଯେତେବେଳେ ବସ୍ତୁ-ତୃଷ୍ଣା, ଉପଭୋଗ-ତୃଷ୍ଣା, ଭ୍ରାନ୍ତ ଅହଙ୍କାର ପ୍ରବଳ ହୋଇଉଠେ, ମୂଲ୍ୟବୋଧ ଲୋପପାଇ ମୂଲ୍ୟ ପ୍ରାଧାନ୍ୟ ଲାଭକରେ, ଭୂଇଁଫୋଡ ବୁଦ୍ଧିଜୀବୀଏ ଭୂଇଁଛାଡି ଶୂନ୍ୟଚାରୀ ହୋଇଯାଆନ୍ତି ସେତିକିବେଳେ ଚିରକାଳର ବାର୍ତାବହନ କରିଥିବା ସାହିତ୍ୟ ତା'ର ପ୍ରେରଣାହୁଏ, ଅବକ୍ଷୟରୁ ରକ୍ଷାପାଇବା ପାଇଁ ମାର୍ଗ ଦେଖାଇଦିଏ । ସାହିତ୍ୟ ଏହି ଭୂମିକାଟି ନିଏ, ଭ୍ରଷ୍ଟହୋଇ ଯାଉଥିବା ବିବେକର ଜାଗରଣ ପାଇଁ ଆହ୍ୱାନଦିଏ । ସେହି ସାହିତ୍ୟର ମାନବିକ ମୂଲ୍ୟବୋଧଟି ଏତେ ଶାଣିତ ଓ ସୁଗଭୀର ହୋଇଥାଏ ଯାହା ମଣିଷମାନଙ୍କୁ ଭାଷା, ଜାତି, ଧର୍ମ, ସୀମା ଓ ଆଚଂଳିକତାକୁ ଅତିକ୍ରମ କରି ସମ-ଦୃଷ୍ଟି, ସମ-ଭାବ ଓ ସମ-ଚେତନା ଅଭିମୁଖରେ ଆଗେଇ ଯିବାକୁ ପ୍ରେରଣାଦିଏ ।

ଏପରି ସାହିତ୍ୟ ହୋଇଯାଏ ଗୋଟାଏ ଜାତିର ଚିରକାଳର ସାକ୍ଷୀ । ଛାନ୍ଦୋଗ୍ୟ ଉପନିଷଦରେ ବର୍ଣ୍ଣିତ ତଳିଆବର୍ଗର ମଣିଷ ଶଗଡିଆ ରୈକ୍ୱର ପ୍ରଶ୍ନ ବାଣରେ ଜର୍ଜରିତ କ୍ଷମତାଧର ରାଜା ଜାଣଶ୍ରୁତିର ପରିବର୍ତନ, ଅହଙ୍କାର ବିମୁକ୍ତି କ'ଣ ଆଜି ମଧ କ୍ଷମତାଧରମାନଙ୍କୁ ଚେତାବନୀ ଶୁଣାଏ ନାହିଁ ? ଜାବାଳର ସ୍ୱାତନ୍ତ୍ୟବୋଧ କ'ଣ ଆଜିର ନାରୀବାଦର ପ୍ରଚ୍ଛନ୍ନ ପ୍ରେରଣା ନୁହେଁ? ଜାତକ କାହାଣୀ, ପଚଂତନ୍ତ୍ର ଓ ମିତ୍ରଲାଭର କାହାଣୀଗୁଡିକର ଅନ୍ତର୍ନିହିତ ଓ ଚିନ୍ତନ କ'ଣ ନରନାରୀଙ୍କର ଭୋଗ-ତୃଷ୍ଣା, ଛଦ୍ମତା, ଛଳନା ଓ ପ୍ରକୃତ ମଣିଷପଣିଆର ବାର୍ତାବହନ କରେନାହିଁ? ବାଲ୍ମୀକି କୃତ ରାମାୟଣ ଓ ବ୍ୟାସ କୃତ ମହାଭାରତ, ଭାଗବତ କ'ଣ ଅତୀତ ଯୁଗରୁ ଆରମ୍ଭକରି ବର୍ତମାନ ଯୁଗ ପର୍ଯ୍ୟନ୍ତ ଜୀବନ୍ତ ସାକ୍ଷୀ ହୋଇରହି ନାହିଁ କି ? ଏସବୁ ଉପଜୀବ୍ୟ ମହାକାବ୍ୟରୁ ଉପାଦାନ ନେଇ ପରବର୍ତୀ ଯୁଗରେ; ଏପରିକି ଆଧୁନିକ ଯୁଗରେ କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ ଆଦି ରଚିତ ହୋଇ ନାହିଁ କି ? ଆମେ କ'ଣ ସେସବୁ ଗ୍ରନ୍ଥରୁ ଉଦାହରଣ ଦେଇ ଏବେ ମଧ ଆମର ଯୁକ୍ତିକୁ ବଳବତର କରୁନାହିଁ କି ? ବେଦବେଦାନ୍ତ ହେଉ, ଗୀତା ଭାଗବତ ହେଉ ଅଥବା ବାଇବେଲ, କୁରୁଆନ ହେଉ ସେଥିରୁ ପ୍ରମାଣଦେଇ ଆମର ମାନବିକ ଓ ସାରସ୍ୱତ ମୂଲ୍ୟବୋଧକୁ ସାବ୍ୟସ୍ତ କରିବାକୁ ଚେଷ୍ଟାକରୁ ନାହିଁ କି ? ଏହା ସତ୍ୟ ଯେ ଅତୀତ ଯୁଗରେ ଯେଉଁ ପୁରାଣ, ଗୀତା, ସଂହିତା ଆଦି ରଚିତ ହୋଇଥିଲା ତାହାର ମୁଖ୍ୟ ଆଧାର ଧର୍ମ ହୋଇଥିଲେ ହେଁ କେଉଁଠି ମଣିଷଙ୍କୁ ଅସ୍ୱୀକାର କରାଯାଇ ନାହିଁ । ଧର୍ମର ଖୋଳପା ଭିତରୁ ପ୍ରକୃତ ମଣିଷ ଓ ମଣିଷପଣିଆକୁ ଆମେ କ'ଣ ଆବିଷ୍କାର କରିପାରିବା ନାହିଁ ? ଆମ ଓଡିଆ ସାହିତ୍ୟରେ ଆଦିକବି ସାରଳା ଦାସ ଯେଉଁ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କା ରାମାୟଣ ଆଦି ରଚନା କରିଗଲେ ବା ଜଗନ୍ନାଥ ଦାସ ଯେଉଁ ଭାଗବତ, ଅଚ୍ୟୁତାନନ୍ଦ ଦାସ ଯେଉଁ ହରିବଂଶ ବା ଗୀତା, ସଂହିତା, ମାଳିକା, ବଳରାମ ଦାସ ଯେଉଁ ଲକ୍ଷ୍ମୀ ପୁରାଣ, ଜଗମୋହନ ରାମାୟଣ, ଭାବ ସମୁଦ୍ର ଆଦି ରଚନା କରିଗଲେ ତାହା କ'ଣ ଆମର ସାକ୍ଷୀହୋଇ ରହିନାହିଁ କି ? ସାରଳା ଦାସ ଚଣ୍ଡୀପୁରାଣରେ ଯେଉଁ ଅମ୍ବିକା ଚଣ୍ଡାଳ କାହାଣୀଟି ଯୋଡିଦେଲେ ତାହା ରାଜଧର୍ମ, ଜାତିପ୍ରଥାର ବିଲୋପ, ଦୁର୍ଭିକ୍ଷ ପୀଡିତ ଲୋକଙ୍କୁ ସହାୟତା ପ୍ରଦାନ ଇତ୍ୟାଦି ବିଷୟରେ ଆମକୁ ଯେପରି ସେକାଳ ସମ୍ପର୍କରେ ସାକ୍ଷ୍ୟ ପ୍ରଦାନକରେ ତାହା କ'ଣ ଏ କାଳପାଇଁ ପ୍ରଯୁଜ୍ୟ ନୁହେଁ କି ? ବଳରାମ ଦାସଙ୍କ "ଲକ୍ଷ୍ମୀ ପୁରାଣ" ଛୁଆଁଅଛୁଆଁ ଭେଦର ଦୂରୀକରଣ, ନାରୀର ସ୍ୱାଭିମାନ ଓ ସ୍ୱାତନ୍ତ୍ୟ ପ୍ରତିଷ୍ଠା ଦିଗରେ ଏକ ଆହ୍ୱାନ

କେବଳ ନୁହେଁ; ଜଗନ୍ନାଥ-ଧର୍ମରେ ମାନବ ମୈତ୍ରୀବୋଧ ପାଇଁ ଏକ ସର୍ବକାଳୀନ ସାକ୍ଷ୍ୟ ପ୍ରଦାନକରେ ନାହିଁ କି ? ଜଗନ୍ନାଥ ଦାସଙ୍କ ଭାଗବତର କେତେକେତେ ଅମୃତ ପଦାବଳୀ ଏବେ ମଧ୍ୟ ଉଦାହରଣ ଭାବରେ ଦିଆଯାଇ ଲୋକଙ୍କ ଭିତରେ ଉପୁଜୁଥିବା ଗଣ୍ଡଗୋଳକୁ ସମାଧାନ କରାଯାଉ ନାହିଁ କି ?

କେବଳ ପ୍ରାଚୀନ ସାହିତ୍ୟ ନୁହେଁ; ଆଧୁନିକ ଯୁଗର ସାହିତ୍ୟ ମଧ୍ୟ ଆମର ସାକ୍ଷ୍ୟ ବହନ କରିଥାଏ । ଇଂରାଜୀ ସାହିତ୍ୟରେ ସେକ୍ସପିୟର ଙ୍କ ନାଟକାବଳୀ ତାଙ୍କ ଯୁଗରେ ଶେଷ ହୋଇଗଲା ନାହିଁ । ଏବେ ମଧ୍ୟ କ୍ଷମତା ଲୋଭୀ, ବିଶ୍ୱାସଘାତକ, ପ୍ରତାରକମାନଙ୍କର କାର୍ଯ୍ୟକଳାପର ସାକ୍ଷୀହୋଇ ରହିଛି । ଗତ ଉନବିଂଶ ଶତାବ୍ଦୀରେ ଯେଉଁ ନିର୍ମମ ଦାସପ୍ରଥା ଆମେରିକାରେ ଚାଲିଥିଲା ତାହାର ତୀବ୍ର ପ୍ରତିକ୍ରିୟାରେ ଔପନାସିକା ମିସେସ୍ ଷ୍ଟୋ ଯେଉଁ "ଟମକକାଙ୍କ କୁଟୀର" (Uncle Tom's Cabin) ଉପନ୍ୟାସ ଲେଖିଥିଲେ ତାହା ଏପରି ପରିବେଶ ସୃଷ୍ଟିକଲା ଯାହାଫଳରେ ଆମେରିକାରୁ ଦାସପ୍ରଥାର ଉଚ୍ଛେଦ ହୋଇଗଲା । ଏହା କ'ଣ ସେ କାଳର ନିଷ୍ଠୁର ଦାସପ୍ରଥାର ସାକ୍ଷ୍ୟ ପ୍ରଦାନକରେ ନାହିଁ କି ? ମାକ୍ସିମ୍ ଗୋର୍କିଙ୍କର ମା' (The Mother) ଉପନ୍ୟାସ ରୁଷିଆରେ ଶ୍ରମିକ ଓ ସର୍ବହରାଙ୍କ ଭିତରେ ଯେଉଁ ଜାଗରଣ ସୃଷ୍ଟି କରିଥିଲା, ଜାର ଶାସନର ବିଲୋପ ପାଇଁ ଯେଉଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା ତାହା ତ ଏବେ ମଧ୍ୟ ଦଳିତ ନିଷ୍ପେଷିତ ମଣିଷମାନଙ୍କ ପାଇଁ କେବଳ ସାକ୍ଷ୍ୟନୁହେଁ; ପ୍ରେରଣା ହୋଇରହିଛି ମଧ୍ୟ । ସେହିପରି ଆମ ଓଡ଼ିଆ ସାହିତ୍ୟରେ ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବକବି ଗଙ୍ଗାଧର ମେହେର, ସତ୍ୟବାଦୀ ଗୋଷ୍ଠୀର ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସାହିତ୍ୟ ଆମର ସାକ୍ଷୀହୋଇ ରହିଛି ଓ ରହିଥିବ ମଧ୍ୟ । ଫକୀରମୋହନ ଙ୍କ "ଛ' ମାଣ ଆଠଗୁଣ୍ଠ" ଉପନ୍ୟାସ ଯେପରି ଶୋଷକ ସଇତାନର ପୈଶାଚିକ ଉଲ୍ଲାସ, ସାଧାରଣ ମୂକ ଲୋକଙ୍କ ଅଶ୍ରୁ ଓ କାରୁଣ୍ୟ, ଶୋଷିତଙ୍କ ଆର୍ତବିଳାପକୁ ରୂପଦେଇଛି, ପାପ ଧନର ପରିଣତି ଯେ କେତେ ଭୟଙ୍କର ଦର୍ଶାଇ ଦେଇଛି ତାହା କ'ଣ ଶୋଷକ ଓ ଶୋଷିତଙ୍କ ସମ୍ପର୍କରେ ସାକ୍ଷ୍ୟ ପ୍ରଦାନକରେ ନାହିଁ କି ? ବିଚାର ବିଭାଗ ଓ ପୁଲିସ୍ ତଦନ୍ତର ପ୍ରହସନକୁ ଯେପରି ସୂଚାଇଛି ତାହା କ'ଣ ଏନର ବିଚାର ଓ ପୁଲିସ୍ ବିଭାଗ ପ୍ରତି ବ୍ୟଞ୍ଜନା ପ୍ରକାଶକରେ ନାହିଁ କି ? କବିବର ରାଧାନାଥ ରାୟଙ୍କର "ଧିକ ଏ ସଂସାର ପ୍ରବଳର ଯହିଁ ସବୁ କଥାରେ ସୁଯୋଗ / ଦୁର୍ବଳର ଯହିଁ ଲଲାଟ ଲିଖନ ନୀରବେ ଲାଞ୍ଛନା ଭୋଗ", "ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟ ଡୋରି / ନିଜ ଭାଗ୍ୟ ଡୋରି କାଳ ହସ୍ତେ ବନ୍ଧା ପକାନ୍ତି ହେଲେ ପାସୋରି" ଭକ୍ତି ପ୍ରକାଶପାଇଛି ଓ ତାଙ୍କର "ଦରବାର" କାବ୍ୟରେ ଯେପରି ଉପାଧି ଲାଳସୀ ବ୍ୟକ୍ତିଙ୍କ ପାଇଁ ତଥା ତୋଷାମୋଦକାରୀଙ୍କ ପ୍ରତି ବ୍ୟଙ୍ଗୋକ୍ତି ପ୍ରକାଶପାଇଛି ତାହା ଏବେ ମଧ୍ୟ ଆମ ସମାଜର ପ୍ରବଳ, ଦାମ୍ଭିକ ଓ ତୋଷାମୋଦକାରୀଙ୍କ ସମ୍ପର୍କରେ ସାକ୍ଷ୍ୟ ପ୍ରଦାନକରେ । କୁଳବୃଦ୍ଧ ମଧୁସୂଦନ ଦାସଙ୍କର "ଜାତି-ପ୍ରେମ-ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୁତି", ଉତ୍କଳମଣି ଗୋପବନ୍ଧୁ ଦାସଙ୍କର "ଉତ୍କଳେ ନେତାର ନାହିଁ ପ୍ରୟୋଜନ / ଉତ୍କଳର ନେତା ସ୍ୱୟଂ ନାରାୟଣ", "ଭାରତର ପ୍ରତି ବୃକ୍ଷ କଳ୍ପବଟ / ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ", ସ୍ୱଭାବ କବି ଗଙ୍ଗାଧର ମେହେରଙ୍କର "ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର" ଇତ୍ୟାଦି କ'ଣ ଆମପାଇଁ ପ୍ରେରଣାପ୍ରଦ ନୁହେଁ ? ଆଜି ମଧ୍ୟ ରାଧାନାଥ, ଗଙ୍ଗାଧର, ଫକୀରମୋହନ କେବଳ ନୁହଁନ୍ତି; କୁଳବୃଦ୍ଧ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସ ଆମ ଜାତୀୟ ବିବେକର ଜୀବନ୍ତ ସାକ୍ଷୀହୋଇ ରହିଛନ୍ତି । ଏବେ ମଧ୍ୟ ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ, ଚନ୍ଦ୍ରଶେଖର ରଥ, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ ଆଚାର୍ଯ୍ୟ, କବି ସଚ୍ଚିଦାନନ୍ଦ ରାଉତରାୟ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ବିତି ଯାଇଥିବା ସମୟର ଜୀବନ୍ତ ସାକ୍ଷୀହୋଇ ରହି ନାହାଁନ୍ତି କି ?

ମୋଟ ଉପରେ ଆମେ ଦେଖୁ ପ୍ରାଚୀନ କାଳରୁ ଆଧୁନିକ କାଳ ପର୍ଯ୍ୟନ୍ତ ରଚିତ ସାହିତ୍ୟ ହିଁ ଆମକୁ ପରିଚୟ କରାଇଦିଏ ଘଟି ଯାଇଥିବା ବିଭିନ୍ନ ଘଟଣା ସମ୍ପର୍କରେ । ସମୟର କୁକ୍ଷୀ ଭିତରେ ମିଳାଇ ଯାଇଥିବା କେତେକେତେ ରାଜା, ମହାରାଜା, ଜମିଦାର, କେତେକେତେ ଅହଙ୍କାର ପ୍ରମ ଓ ମଣିଷ, କେତେକେତେ ଅସହାୟ ନରନାରୀଙ୍କ ଅଶରୀରୀ ବ୍ୟକ୍ତିତ୍ୱ ସହିତ ଆମକୁ ପରିଚୟ କରାଇଦିଏ । ଗୋଟାଏ ମାନବିକ ମୂଲ୍ୟବୋଧ, ଯାହାସବୁ ସମୟରେ ସମାଜ-ମଣିଷମାନଙ୍କ ଭିତରେ ପ୍ରଭାବ ବିସ୍ତାର କରିଆସିଛି ତାହା ସମ୍ପର୍କରେ ଆମକୁ ଚେତେଇ ଦିଏ । ସାହିତ୍ୟ କାଳେକାଳେ ହୁଏ ନାରନାରୀଙ୍କ ଅଶ୍ରୁ ଓ କାରୁଣ୍ୟର ସାକ୍ଷୀ, ଶୋଷଣ ଓ ପୀଡନର ସାକ୍ଷୀ, ନୈରାଶ୍ୟ ଓ ଶୋଚନୀୟତାର ସାକ୍ଷୀ । କେବଳ ସାକ୍ଷୀ ହୁଏନାହିଁ; ଶୋଷିତ ଓ ନିଷ୍ପେଷିତ ମଣିଷଙ୍କ ଭିତରେ ଦୁର୍ମଦ ଶକ୍ତିର ଜାଗରଣ ପାଇଁ ପ୍ରେରଣାଦିଏ, ଅନ୍ୟାୟ-ଅନୀତି-ସ୍ୱେଚ୍ଛାଚାର ବିରୋଧରେ ଲଢିବାପାଇଁ ଆହ୍ୱାନଦିଏ । ସାହିତ୍ୟ ର ଲକ୍ଷ୍ୟହୁଏ ସବୁ ମଣିଷଙ୍କୁ ଗୋଟିଏ ଧରା ତଳକୁ ଆଣି ସେମାନଙ୍କ ଭିତରେ ସମଭାବ ଓ ସମଦୃଷ୍ଟି ସୃଷ୍ଟିକରିବା, ଜୀବନ-ଜିଇବାର ଏକ ମଧୁମୟ ରାଗିଣୀ ତୋଳିବା । ମାନବ-ମନୀଷାରୁ ଯେତେଯେତେ ବିଦ୍ୟା ପ୍ରକାଶପାଇଛି ସେମାନଙ୍କୁ ସାହିତ୍ୟ ତା' କୋଳକୁ ସ୍ୱାଗତ କରିନିଏ, ସବୁକୁ ସନ୍ତୁଳିତ କରି ଏପରି ଭାବରେ ରୂପଦିଏ ଯାହାହୁଏ ମାନବାତ୍ମାର ଆବେଗଦୀପ୍ତ ଧ୍ୱନି ଓ ପ୍ରତିଧ୍ୱନି । ତେଣୁ ଯୁଗେଯୁଗେ ସାହିତ୍ୟ ହିଁ ହୋଇଯାଏ ମଣିଷ-ସମାଜ ପାଇଁ ସାକ୍ଷୀ, ସାନ୍ତ୍ୱନା ଓ ସମ୍ବେଦନାର ରମ୍ୟ ବାଙ୍ମୟ ଉଚ୍ଚାରଣ ।

## ଓଡିଆ ସାହିତ୍ୟ ର
## ଗାଳ୍ପିକ ପ୍ରଫେସର ରାମଚନ୍ଦ୍ର ବେହେରା

ରାମଚନ୍ଦ୍ର ବେହେରା (ଜନ୍ମ - ୨ ନଭେମ୍ବର, ୧୯୪୫) କେନ୍ଦୁଝର ଜିଲ୍ଲା ଘଟଗାଁ ନିକଟସ୍ଥ ବାରହାଟି ପୁରୀ ଗାଁରେ । ପରବର୍ତ୍ତୀ ସମୟରେ ନିଜର କର୍ମ ସାଧନା ବଳରେ ଓଡିଆ ସାହିତ୍ୟ ର ଜଣେ ସାହିତ୍ୟିକ ଭାବରେ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କ ଲେଖନୀରେ ପରିସ୍ଫୁଟିତ ହେଇଥିଲା - ଗଳ୍ପ, ଉପନ୍ୟାସ ଓ ନାଟକ ।

ଅନେକ ସାଧାରଣ ଘଟଣା ଓ ଚରିତ୍ର ରେ ଲୁଚି ରହିଥିବା ଦାର୍ଶନିକ ଓ ପ୍ରତୀକାତ୍ମକ ବିଶ୍ଳେଷଣ, ସମବେଦନା ଓ ମନନଶୀଳତାକୁ ନିଜର ରଚନା ମାଧ୍ୟମରେ ସେ ପ୍ରକାଶ କରିଥାନ୍ତି ।

ରାମଚନ୍ଦ୍ର ବୃତିରେ ଥିଲେ ଜଣେ ଅଧ୍ୟାପକ । ଇଂରାଜୀ ଭାଷା ଓ ସାହିତ୍ୟ ରେ ରେଭେନ୍ସା କଲେଜ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ସେ ଡିଗ୍ରୀ ଧରିଥିଲେ । ୧୯୬୯ ମସିହାରେ କେନ୍ଦ୍ରାପଡା କଲେଜରେ ଅଧ୍ୟାପକ ଭାବରେ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ ।

ଜଣେ ଇଂରାଜୀ ଅଧ୍ୟାପକ ତାଙ୍କର ବୃତି ଥିଲେ ମଧ ନିଜର ମାତୃଭାଷା ଓଡିଆ ସାହିତ୍ୟ ସୃଷ୍ଟିକରିବା ଥିଲା ତାଙ୍କ ପ୍ରବୃତି । ତାଙ୍କର ପ୍ରଥମ ଗଳ୍ପ - "ଶେଷ ସୂର୍ଯ୍ୟର ବହ୍ନି" - ୧୯୭୧ ମସିହାରେ ପ୍ରକାଶ ପାଇଥିଲା - ନଭେମ୍ବର ମାସରେ "ନବରବି" ପତ୍ରିକାରେ । ସେହିଠାରୁ ତାଙ୍କ ସାରସ୍ୱତ ଜୟଯାତ୍ରା ଆରମ୍ଭ ହୋଇଥିଲା ।

ନିଃସଙ୍ଗତା ବୋଧର ସର୍ବଶ୍ରେଷ୍ଠ ସୂଚନା ହେଉଛି - ବିଛିନ୍ନତା ବୋଧ । ଅସ୍ତିତ୍ୱବାଦୀ ମାନେ ମଣିଷର ଏହି ଏକାକୀ ଅନୁଭୂତିକୁ ବେଶ୍ ନିବିଡତାର ସହ ଲକ୍ଷ୍ୟ କରିଅଛନ୍ତି । ରାମଚନ୍ଦ୍ର ଙ୍କ ଗଳ୍ପଗୁଡିକରେ ତୀବ୍ର ନିଃସଙ୍ଗତା ପରିଲିକ୍ଷିତ ।

### ରାମଚନ୍ଦ୍ର ଙ୍କ ରଚନାବଳୀ -

ଓଡିଆ ସାହିତ୍ୟ ର ବିକାଶ ଦିଗରେ ରାମଚନ୍ଦ୍ର ସର୍ବଦା କଲମ ଚାଳନା କରିଥିଲେ । ତାଙ୍କ ଲେଖନୀରେ ଫୁଟି ଉଠିଥିଲା ଅନେକ କ୍ଷୁଦ୍ରଗଳ୍ପ, ଉପନ୍ୟାସ, ନାଟକ (ଉଭୟ ରେଡିଓ ଓ ମ ) ।

**ଉପନ୍ୟାସ -**

ଅଭିନୟର ପରିଧି (ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କୃତ) - ୧୯୯୧ - ବିଦ୍ୟାପୁରୀ, କଟକ
ମୁକ୍ତିର ରୂପରେଖ (୧୯୯୩) - ବିଦ୍ୟାପୁରୀ, କଟକ
ଧୂସର ସୂର୍ଯ୍ୟାସ୍ତ - ୧୯୯୬ - ବିଦ୍ୟାପୁରୀ, କଟକ
ମୁଁ ଫେରି ଆସିଛି - ୧୯୯୬ - ଗ୍ରନ୍ଥ ମନ୍ଦିର, କଟକ
ମନିକା ଏବେ କେଉଁଠି - ୨୦୦୦ - ବିଦ୍ୟାପୁରୀ, କଟକ
ଦୁଆର ଟପିଲେ ବାଟ - ୨୦୦୦ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ
କପର ନିଆଯାଏ ନିଷ୍ପତି - ୨୦୦୨ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ
ପାଦ ତଳର ମାଟି - ୨୦୦୩ - କାଦମ୍ବିନୀ, ଭୁବନେଶ୍ୱର
ରାତିର ଶେଷ ପୃଷ୍ଠା - ୨୦୦୨ - କାଦମ୍ବିନୀ, ଭୁବନେଶ୍ୱର
ଚିହ୍ନା ଅଚିହ୍ନା - ୨୦୦୯ - ଅଗ୍ରଦୂତ, କଟକ
ନିଖୋଜ ଅପରାଧୀ - ୨୦୧୦ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ
ମରୀଚିକାର ମହକ - ୨୦୧୦ - ଅଗ୍ରଦୂତ, କଟକ
ଏଇଠି ଆକାଶ - ୨୦୧୨ - ଦିବ୍ୟଦୂତ, କଟକ
ଜୀବନ ପାତ୍ର - ୨୦୨୦ - ବିଦ୍ୟାପୁରୀ, କଟକ

**ଗଳ୍ପ -**

ଦ୍ୱିତୀୟ ଶ୍ମଶାନ - ୧୯୭୬ - ଅଗ୍ରଦୂତ, କଟକ
ଅଚିହ୍ନା ପୃଥିବୀ - ୧୯୭୯ - ଅଗ୍ରଦୂତ, କଟକ
ଅବଶିଷ୍ଟ ଆୟୁଷ - ୧୯୮୬ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ
ଓଁକାର ଧ୍ୱନି (ଶାରଳା ପୁରସ୍କାରପ୍ରାପ୍ତ) - ୧୯୮୭ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ
ବଚିଂ ରହିବା - ୧୯୯୦ - ଅଗ୍ରଦୂତ, କଟକ
ଭଗ୍ନାଂଶର ସ୍ୱପ୍ନ - ୧୯୯୩ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ
ମହାକାବ୍ୟର ମୁହଁ - ୧୯୯୬ - ବିଦ୍ୟାପୁରୀ, କଟକ
ଫଟାକାନ୍ଥର ଗଛ - ୨୦୦୦ - ବିଦ୍ୟାପୁରୀ, କଟକ
ଅସ୍ଥାୟୀ ଠିକଣା - ୨୦୦୨ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ

ଗୋପପୁର (କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ) - ୨୦୦୩ - ଫ୍ରେଣ୍ଡର୍ସ ପବ୍ଲିସର୍ସ, କଟକ
ସବୁଜିମାର ପରମାୟୁ - ୨୦୦୬ - ଗ୍ରନ୍ଥ ମନ୍ଦିର, କଟକ
ବଟ ବୈକୁଣ୍ଠ - ୨୦୦୯ - କାହାଣୀ, କଟକ
ବଡ ମାୟାବୀ ଜୀବ - ୨୦୦୯ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ
ଶୁଭାନନ୍ଦର ଗୀତ - ୨୦୧୦ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ
କୋଟି ବସ୍ତ୍ର - ୨୦୧୨ - ପକ୍ଷୀ ଘର, ଭୁବନେଶ୍ୱର
ବିପର୍ଯ୍ୟୟର ନକ୍ସା - ୨୦୧୫ - ପକ୍ଷୀ ଘର, ଭୁବନେଶ୍ୱର
ନିର୍ବାସିତ ନାନାବାୟା - ୨୦୧୦ - ଅଗ୍ରଦୂତ, କଟକ

<u>ନାଟକ -</u>

ପ୍ରାୟ କୋଡିଏଟି ବେତାର ନାଟକ ଆକାଶବାଣୀ, କଟକ ଦ୍ୱାରା ପ୍ରସାରିତ ।
କୁହୁଡି ଓ ତୃଷ୍ଣା
ମଧ୍ୟାହ୍ନର ଛାଇ
ଅବଲମ୍ବନ
ଘର
ଯନ୍ତ୍ରା
ସବୁଜ ସକାଳ
ଛବି
ଇତ୍ୟାଦି ।

<u>ମଚଂ ନାଟକ -</u>

ସକାଳର ରଙ୍ଗ
ଧୂସର ପୃଥିବୀ
କୁରୁକ୍ଷେତ୍ରର ଠିକଣା
ଅସ୍ଥାୟୀ ଠିକଣା
ଡାକ ବଙ୍ଗଳା
ନିର୍ବାସିତ ନାନାବାୟା
ଛବି
ଓଡିଶାର ପ୍ରମୁଖ ସହରରେ ଏକାଧିକ ବାର ମଚଂସ୍ଥ ।

<u>ପ୍ରମୁଖ ପୁରସ୍କାର -</u>

୧୯୮୧ - ଝଙ୍କାର ପୁରସ୍କାର, ପ୍ରଜାତନ୍ତ୍ର, କଟକ
୧୯୯୧ - ଶାରଳା ପୁରସ୍କାର, ଭୁବନେଶ୍ୱର
୧୯୯୩ - ଓଡିଶା ସାହିତ୍ୟ ଏକାଡେମୀ
୧୯୯୯ - ବିଷୁବ ପୁରସ୍କାର, କଟକ
୨୦୦୦ - କଥା ପୁରସ୍କାର, ନୂଆଦିଲ୍ଲୀ
୨୦୦୫ - କେନ୍ଦ୍ର ସାହିତ୍ୟ ଏକାଡେମୀ
୨୦୦୯ - ପ୍ରତିଭା ସମ୍ମାନ, ଭାରତୀୟ ପୃଷ୍ଠା ପରିଷଦ, କୋଲକାତା
୨୦୧୯ - ଡି.ଲିଟ୍. ସମ୍ମାନ ସୂଚକ ଉପାଧି, ନର୍ଥ ଓଡିଶା ୟୁନିଭର୍ସିଟି, ବାରିପଦା
ଅନେକ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ, ସମ୍ବର୍ଦ୍ଧିତ, ସମ୍ମାନିତ ।

ଗାଳ୍ପିକ ରାମଚନ୍ଦ୍ର ବେହେରା ଙ୍କ ଭାବ ଓ ଭାଷା ଓଡିଆ ଗଳ୍ପ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିଅଛି ।

ଆଜିର ମଣିଷ ନିଷଙ୍ଗ । ସେ ନିଃସଙ୍ଗତାକୁ ଅନୁଭବ କରେ । ଆଧୁନିକ ମଣିଷ ନେତିବାଦୀର ସ୍ୱର ବା ଶୂନ୍ୟତା ର ଅନୁଭବକୁ ତୀବ୍ର ଅନୁଭବ କରିଅଛି । ପାର୍ଥୀବ ଜୀବନର ସମସ୍ତ ପ୍ରାପ୍ତି ମଧରେ ହରାଇବାର ଏକ ବିକଳ କାରୁଣ୍ୟ ବ୍ୟକ୍ତି ମଣିଷକୁ ଯେଉଁ ଗଭୀର ଉଦାସୀନତା ମଧ୍ୟକୁ ଠେଲି ଦେଇଅଛି, ତାହାର ଏକ ଉଦାସ ବ୍ୟାପ୍ତି ଜୀବନକୁ ନିରସ କରିଅଛି । ମୂଲ୍ୟବୋଧ ହୀନ ଜୀବନ, ଗତିହୀନ ପ୍ରାଣ, ଶୃଙ୍ଖଳା ଅନୁଭବ, ନିଛାଟିଆ ବେଳା ସବୁଥିଲେ ଏକ ନାହିଁ ଆଉ ମଧ ନାହିଁ ଭାବ ।

ଆଜିର ଜୀବନ ତା'ର ସକଳ କ୍ରିୟାକର୍ମ, ନିପୁଣତା ଓ ଆନ୍ତରିକତା ସତ୍ୱେ କିପରି ନିଜ ଭିତରେ ନିଜକୁ ହରାଇ ବସିଛି, ସେଥିପାଇଁ କୁହାଯାଇଛି - ସେ ଏକାକୀ, ଏକେଲା, ନିଛାଟିଆ, ତା'ପାଇଁ ସମସ୍ତେ ଅଛନ୍ତି - କେହି ନାହାଁନ୍ତି । ଶୂନ୍ୟତା ତା' ଆଗେ ଆଗେ ଓ ପଛେ ପଛେ । ନିଜର ଅପୂର୍ଣ୍ଣତା ଭୁଲି ବ୍ୟକ୍ତି ମଣିଷଟି ଯେତେବେଳେ ଅବା ସ୍ୱପ୍ନିଳ ଓ ଗୀତି ହେବାକୁ ଚେଷ୍ଟା କରିଛି, ସେତେବେଳେ ତାହାର ଦୁଃସ୍ଥିତି ତାକୁ ଉପହାସ କରିଛି ।

ନିଃସଙ୍ଗବୋଧତାର ସର୍ବଶ୍ରେଷ୍ଠ ସୂଚନା ହେଉଛି - ବିଛିନ୍ନତା ବୋଧ । ଏହାକୁ ସାମାଜିକ ନ୍ୟାୟରେ ବିଚାର କରିବାକୁ ହେବ । ନିଃସଙ୍ଗତା ମଣିଷର ବିଭିନ୍ନ ସ୍ତରରେ ଘଟିଥାଏ, ତାହା ସାମାଜିକ, ମାନସିକ, ଆଧାତ୍ମିକ ଏପରି ଦୈହିକ ସ୍ତରରେ ମଧ୍ୟ ଘଟିଥାଏ । ରାମଚନ୍ଦ୍ର ବେହେରା ଙ୍କ କଥା ସାହିତ୍ୟରେ ସାମାଜିକ ନିଃସଙ୍ଗତାର ଚିତ୍ର ପରିସ୍ଫୁଟିତ ହୋଇଅଛି ।

ରାମଚନ୍ଦ୍ର ଙ୍କ ପ୍ରଥମ ଗଳ୍ପ ସଂକଳନରେ ଏକ ଗଳ୍ପ - "ଶେଷ ସୂର୍ଯ୍ୟର ବହ୍ନି" ବେଳକୁ ତାଙ୍କୁ ୨୬ ବର୍ଷ ବୟସ ହୋଇଥିଲା । ଏହି ବୟସରେ ସେ ଜଣେ ପୌଢ ବୟସର ବ୍ୟକ୍ତିର ଅନୁଭୂତିକୁ ଆତ୍ମିକ କରି ଶକ୍ତିଶାଳୀ ରୀତିରେ ଉପସ୍ଥାପନା କରିଅଛନ୍ତି । ଏହି ଗଳ୍ପରେ ଅବିନାଶ ବାବୁ ଜୀବନର ଦୀର୍ଘ ୩୦ ବର୍ଷଧରି ସେକ୍ରେଟେରୀଏଟ୍ ଚାକିରୀ କାଳରେ କ୍ଷମତା, ପ୍ରତିଗତି ଓ ପ୍ରତିଷ୍ଠା ପାଇଛନ୍ତି, ମାତ୍ର ଅବସର ପରେ ସେ ନିଜକୁ ଅସହାୟ ମନେ କରିଅଛନ୍ତି । ପୂର୍ବ ପ୍ରତିଷ୍ଠା ଓ ସରକାରୀ କ୍ୱାଟର ର ମୋହ ତାଙ୍କୁ ଅଧିକ ଅସ୍ଥିରକରି ପକାଇଛି

କ୍ୱାଟରରେ ସବୁଦିନ ଭଳି ନୀରବତା ଓ ଶୃଙ୍ଖଳା ନେସି ହୋଇ ରହିଥିଲା, ସେଇଟା ସତେ ଯେପରି ସବୁଦିନ ପାଇଁ ଆଶ୍ରୟ ନେବାକୁ ବାଟକୁ ଚାହିଁ ବସିଛି । ତାଙ୍କ ପାଇଁ ସେକ୍ରେଟେରୀଏଟ୍ର ସବୁଦିନ ନିମନ୍ତେ ରୁଦ୍ଧଦ୍ୱାର ଓ କ୍ୱାଟରରେ ତାଙ୍କ ପାଇଁ ଉତ୍କଣ୍ଠିତ ପ୍ରତୀକ୍ଷା । ଅବିନାଶ ବାବୁ ନିଜ ଭିତରୁ ଏକ କରୁଣ ମୂର୍ଚ୍ଛନାର ଧ୍ୱନି ଶୁଣିବାକୁ ପାଇଛନ୍ତି । କ୍ୱାଟର୍ସର ଗୋଟିଏ ଖୁମ୍ବକୁ ଆଉଜି, ତାହାରି ଉପରେ ସେ ନିଜର ଦୁଇହାତ ପାପୁଲି ଜୋର୍‌ରେ ଘସିବାକୁ ଲାଗିଲେ ଏବଂ ତାଙ୍କପ୍ରତି କ୍ୱାଟର ର ରହିଥିବା ଅବ୍ୟକ୍ତ ମମତା ଓ ସ୍ନେହ ଅନୁଭବ କରିବାକୁ ଚେଷ୍ଟାକଲେ ।

ରାମଚନ୍ଦ୍ର ଙ୍କ ପ୍ରଥମ ଗଳ୍ପ - "ଶେଷ ସୂର୍ଯ୍ୟର ବହ୍ନି" (୧୯୭୧) - ତାଙ୍କ ପ୍ରଥମ ଗଳ୍ପ ସଂକଳନ - "ଦ୍ୱିତୀୟ ଶ୍ମଶାନ" (୧୯୭୬) ପୁସ୍ତକରେ ଏକ ଗଳ୍ପ । ଏହି ପୁସ୍ତକର ଅନ୍ୟାନ୍ୟ ଗଳ୍ପଗୁଡ଼ିକ ମଧ୍ୟରେ ଘର, ମଧ୍ୟାହ୍ନର ଛାୟା, ଆରୋହଣ, ପଞ୍ଜୁରା, କୁହୁଡି ଓ ତୃଷ୍ଣା, ବର୍ଣ୍ଣବୋଧ ପାଠ, ଭୟ, ଦ୍ୱିତୀୟ ଶ୍ମଶାନ ପ୍ରଭୃତି ଗଳ୍ପ ସନ୍ନିବେଷ୍ଟିତ । ଏହି ଗଳ୍ପଗୁଡ଼ିକରେ ତୀବ୍ର ନିଃସଙ୍ଗତା ପରିଲିଖିତ ମଧ୍ୟରେ ଅବା କାରୁଣ୍ୟର ଅକୁହା ହା ହତାଶମୟ ଯନ୍ତ୍ରଣା ମଧ୍ୟରେ ।

ଗୋପପୁର (୨୦୦୩) ଗଳ୍ପ ସଂକଳନଟି ରାମଚନ୍ଦ୍ର ବେହେରା ଙ୍କୁ ଆଣି ଦେଇଥିଲା - ସର୍ବ ଭାରତୀୟ ସ୍ୱୀକୃତି । ଓଡିଆ ଗଳ୍ପ ସାହିତ୍ୟ କାହିଁକି ଭାରତୀୟ ଗଳ୍ପ ସାହିତ୍ୟରେ ମଧ୍ୟ ଏହା ବେଶ୍ ପ୍ରତିଷ୍ଠା ଲାଭ କରିଥିଲା । ଏହି ଗଳ୍ପ ସଂକଳନ ପାଇଁ ୨୦୦୫ ମସିହାରେ ଗାଳ୍ପିକ ରାମଚନ୍ଦ୍ର ବେହେରା ପାଇଥିଲେ - ସମ୍ମାନଜନକ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ।

ଗୋପପୁର ଗଳ୍ପ ସଂକଳନରେ "ଭୂମିକା" ଗଳ୍ପଟି ବେଶ୍ ହୃଦୟସ୍ପର୍ଶୀ, କରୁଣ ଓ ମାର୍ମିକ । ସାମ୍ପ୍ରତିକ ଜୀବନ ଚାର୍ଯ୍ୟାରେ ଯେଉଁ ନିଃସଙ୍ଗତା ଦେଖାଦେଇଛି, ତାହାର ଏକ ନିସ୍କପଟ ଅଭିବ୍ୟକ୍ତି ଘଟିଛି ଗଳ୍ପରେ । ଏହି ଗଳ୍ପରେ ମୁଖ୍ୟନାୟକ ଶ୍ରୀକାନ୍ତ ଜଣେ ବୟସ୍କ ବ୍ୟକ୍ତି । ଆଖି ଅପରେସନ୍ ପାଇଁ ଡାକ୍ତରଖାନାରେ ଆଡମିଶନ୍ ହୋଇଅଛି - ଦୀର୍ଘ ୧୬ ବର୍ଷ ପ୍ରବାସରେ ରହୁଥିବା ପୁଅ ସୁବୋଧ ପାଇଁ ତାଙ୍କ ଭିତରେ ଆକୁଳତା, କାରୁଣ୍ୟ, ଆବେଗ ସମଗ୍ର ଗଳ୍ପଟିକୁ ପ୍ରଭାବିତ କରିଅଛି ।

ଜଣେ ଶିଳ୍ପୀର ସ୍ଥାନ, କାଳ, ପାତ୍ର ନିର୍ବିଶେଷରେ ମଣିଷ ପ୍ରାଣର କଥା ଓ ବେଦନା କୁ ଗାଳ୍ପିକ ଚିତ୍ରଣ କରିଅଛନ୍ତି - ନିଜ ଗଳ୍ପ ମାଧ୍ୟମରେ । ନିଃସଙ୍ଗତା, ଶୂନ୍ୟତା ର ସର୍ବଗ୍ରାସୀ କ୍ଷୁଧା ଭିତରେ ପୋଡ଼ିହୋଇ ପଡିଛି ଅତୀତର ସମସ୍ତ ମଧୁର ସ୍ମୃତି, ଦମ୍ପିଲାପଣ, ପ୍ରାପ୍ତି ଓ ପ୍ରାଚୁର୍ଯ୍ୟ ର ବୃଥା ଅହମିକା ଓ ଅର୍ଥର ଅମେଘ ଶକ୍ତି । ଯେଉଁ ଆଜିର ସଭ୍ୟତାର ଏକାନ୍ତ ଆପଣାର ବିଷୟ ହୋଇଛି, ଶୂନ୍ୟତା ଓ ନିଃସଙ୍ଗତା, ଯାହା ଜୀବନକୁ ବିବର୍ଣ୍ଣ କରିଦିଏ ଓ ବଚିଂବା ପାଇଁ ପଥରୁଦ୍ଧ କରେ ।

ଶ୍ରୀକାନ୍ତ ର ଶୂନ୍ୟତା ସତେକି ସଚାଂରିତ ହୋଇଅଛି ସମଗ୍ର ସତାକୁ । ସୁବୋଧ ନାମରେ ଅଭିନୟ କରୁଥିବା ବ୍ୟକ୍ତିଟିକୁ ଧରି ଶ୍ରୀକାନ୍ତ ପ୍ରାଣର ବ୍ୟାକୁଳତାରେ କହିଛି - ତୁ ସୁବୋଧ ନା ? ଆରେ ତୁ ମୋ ସୁବୋଧ ନା ନାହିଁ ବୋଲି କହନାହିଁ କହିଦେ ତୁ ମୋର ସୁବୋଧ ବୋଲି, କହି ଦେ ଥରେ, ଧନ୍ୟ ହେଇଯାଉ ଅନ୍ତତଃ ଏ କାନ ଦୁଇଟା । ଏ କାନ ଦୁଇଟା ଏଯାଏଁ ଶୁଣି ନାହାଁନ୍ତିରେ ବାବୁ, ପନ୍ଦର, ଷୋହଳ ବର୍ଷ ତୁ ସିଆଡେ ପଳାଇ ଗଲାପରେ ମୁଁ କିଛି ଶୁଣିନାହିଁ । ମନ୍ଦିର ର ଘଟିଂ, ପଡିଶା ଘରର ସ୍ତ୍ରୀ ଲୋକଙ୍କର ହୁଳହୁଳି, ଗାଈର ହମାରଡି, ମଟର ହର୍ଣ୍ଣ, ମୋ ନିଜ ଖୁଁ ଖୁଁ କାଶ, ଉଡାଜାହାଜର ଆବାଜ, ନାଁ ମୁଁ କିଛି ଶୁଣିନାହିଁ ଏଯାଏଁ, ଆରେ ତୁ ସୁବୋଧ ବୋଲି କହିଦେ, ଆଉକିଛି ଶୁଣିବା ମୋର ଦରକାର ନାହିଁ, ଆଉସବୁ ଶବ୍ଦ ଶୁଣି ଥାଆନ୍ତୁ ଅନ୍ୟମାନେ ଏ ଧରିତ୍ରୀ, ଏ ଆକାଶ ।

ବାସ୍ତବିକ୍ ଏ ଦୁନିଆଁରେ ବାପା ଓ ପୁଅର ଅନାବିଳ ସମ୍ପର୍କ କୁ ଗାଳ୍ପିକ ରାମଚନ୍ଦ୍ର ନିଖୁଣ ଭାବରେ ଏ ଗଳ୍ପରେ ବର୍ଣ୍ଣନା କରିଛନ୍ତି, ତା' ସହିତ ନିଃସଙ୍ଗତାକୁ ଗଳ୍ପ ମାଧ୍ୟମରେ ପ୍ରାଧାନ୍ୟ ଦେଇଛନ୍ତି ।

ସାହିତ୍ୟିକ ରାମଚନ୍ଦ୍ର ବେହେରା ଙ୍କ କଲମ ମୁନରେ ଗଳ୍ପ କାହିଁକି ଉପନ୍ୟାସ, ନାଟକ ଓ ମଚଂ ନାଟକ ଖୁବ୍ ପ୍ରଭାବୀ ଢଙ୍ଗରେ ପରିପୁଷ୍ଟିତ ହୋଇ ଓଡିଆ ସାହିତ୍ୟକୁ ସମୃଦ୍ଧ କରିପାରିଅଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ରାମଚନ୍ଦ୍ର ବେହେରା - ତାଙ୍କର କାଳଜୟୀ ସୃଷ୍ଟିପାଇଁ ବହୁ ଅନୁଷ୍ଠାନରୁ ସମ୍ମାନୀତ ହୋଇ ପାରିଛନ୍ତି ।

ଉତର ଓଡିଶା ବିଶ୍ୱବିଦ୍ୟାଳୟ, ବାରିପଦାରୁ ସମ୍ମାନଜନକ ଡକ୍ଟରେଟ୍ - ଡକ୍ଟର ଅଫ୍ ସାଇନ୍ସ (ଡି.ଏସ୍‌ସି) ଓ ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) ଉପାଧି ପାଇଛନ୍ତି । ତାଙ୍କର ସାରସ୍ୱତ ସୃଷ୍ଟିପାଇଁ ରାମଚନ୍ଦ୍ର ବେହେରା ।

ଗଳ୍ପ ସଂକଳନ - "ଓଁକାର ଧ୍ୱନି" ପାଇଁ ଶାରଳା ପୁରସ୍କାର - ୧୯୯୧ ମସିହାରେ ପାଇଥିଲେ - ଗାଳ୍ପିକ ରାମଚନ୍ଦ୍ର ବେହେରା

ଉପନ୍ୟାସ - "ଅଭିନୟର ପରିଧି" ପାଇଁ ୧୯୯୩ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ - ଔପନ୍ୟାସିକ ରାମଚନ୍ଦ୍ର ବେହେରା ।

"ଗୋପପୁର" - ଗଳ୍ପ ସଂକଳନ ପାଇଁ ୨୦୦୫ ମସିହାରେ ଗାଳ୍ପିକ ରାମଚନ୍ଦ୍ର ବେହେରା - କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି ।

ସାହିତ୍ୟ କୃତିପାଇଁ ପଣ୍ଡିତ ଗୋଦାବରୀଶ ସମ୍ମାନ - ୨୦୧୦ ରେ ପାଇଛନ୍ତି - ରାମଚନ୍ଦ୍ର ବେହେରା ।

ଜଣେ ସଫଳ ନାଟ୍ୟକାର ଭାବରେ ରାମଚନ୍ଦ୍ର ବେହେରା - ନାଟ୍ୟ ସମ୍ମାନ - ୨୦୧୦ ମସିହାରେ ପାଇଛନ୍ତି ।

ଅନେକ ପୁରସ୍କାର ଓ ସମ୍ମାନ ରାମଚନ୍ଦ୍ର ଙ୍କ ସାରସ୍ୱତ ପ୍ରତିଭାକୁ ଅମ୍ଳାନ କରିଅଛି । ଏତଦ୍‌ବାଦ ସେ ଥିଲେ - ଜଣେ ସଂଗଠକ, ସାହିତ୍ୟାନୁରାଗୀ । ଓଡିଶା ସାହିତ୍ୟ ଏକାଡେମୀର ସଭାପତି ଭାବରେ ରାମଚନ୍ଦ୍ର ବେହେରା ଦକ୍ଷତାର ସହିତ କାର୍ଯ୍ୟକରି ଓଡିଆ ସାହିତ୍ୟ ର ବିକାଶ ଦିଗରେ ସଦାସର୍ବଦା ନିଜ ଜୀବନକୁ ଉତ୍ସର୍ଗୀକୃତ କରିପାରିଛନ୍ତି । ତାଙ୍କ ସଭାପତିତ୍ୱ ସମୟରେ ସାହିତ୍ୟ କ୍ଷେତ୍ରରେ ଯୁବ ସାହିତ୍ୟିକ ଙ୍କ ପ୍ରତିଭାକୁ ସେ ଚିହ୍ନି ପାରିଥିଲେ ଓ ଅନେକ ଗୁଡିଏ ପୁସ୍ତକ ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ କରାଇ ପାରିଥିଲେ ।

ମା', ମାଟି ମଣିଷର ମଣିଷ - ସାହିତ୍ୟିକ ରାମଚନ୍ଦ୍ର ବେହେରା ବୟସର ଅପରାହ୍ନରେ ଓଡିଆ ସାହିତ୍ୟ ର ବିକାଶ ଦିଗରେ ନିଜର କଲମ ମୁନକୁ ଋଦ୍ଧିମନ୍ତ କରୁଥାନ୍ତୁ - ଏତିକି ମହାପ୍ରଭୁ ଜଗନ୍ନାଥ ଙ୍କ ନିକଟରେ ପ୍ରାର୍ଥନା ।

---

## ଓଡ଼ିଆ ସାହିତ୍ୟ ର ବିଶିଷ୍ଟ କବି ଓ ସମାଲୋଚକ, ପ୍ରଶାସକ - ଡକ୍ଟର ହରପ୍ରସାଦ ଦାସ

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଓ ଉମର ଖୟାମ ଙ୍କ ରୁବାୟତରେ ଓଡ଼ିଆ ଅନୁବାଦ କରିବା ସହିତ ଓଡ଼ିଆ ଜନଜୀବନର ପ୍ରତୀକ - ଶ୍ରୀମଦ୍ ଭାଗବତ ଗୀତାକୁ ଯିଏ ଓଡ଼ିଆ ନବାକ୍ଷରୀ ଛନ୍ଦରେ ରଚନା କରିଛନ୍ତି, ସେ ହେଉଛନ୍ତି - ହରପ୍ରସାଦ ଦାସ ।

୧୫ ଜାନୁୟାରୀ, ୧୯୪୬ ମସିହାରେ ବାଣପୁର ଠାରେ ଏହି ପ୍ରସିଦ୍ଧ କବି ହରପ୍ରସାଦ ଜନ୍ମଗ୍ରହଣ କରିଥିଲେ । ଜଣେ ଓଡ଼ିଆ ସାହିତ୍ୟିକ ତଥା ଜଣେ ଭାରତୀୟ ପ୍ରଶାସକ ଭାବରେ ସେ ପ୍ରତିଷ୍ଠା ଲାଭ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା (ସ୍ନାତକୋତର) ଗ୍ରହଣକରି ହରପ୍ରସାଦ ୧୯୬୮ ମସିହାରେ ଯୋଗଦାନ କରିଥିଲେ - ଭାରତୀୟ ପ୍ରଶାସନିକ ସେବା (ଆଇ.ଏ.ଏସ୍.) ଅଧିକାରୀ ଭାବରେ ନିଜର କର୍ମମୟ ଜୀବନରେ ।

ଓଡିଶା, ପଶ୍ଚିମବଙ୍ଗ, ବିହାର, ମଧ୍ୟପ୍ରଦେଶ, ଜାମ୍ମୁ ଓ କାଶ୍ମୀର ତଥା ଦିଲ୍ଲୀରେ କାର୍ଯ୍ୟକରି ସେ ଅବସରପ୍ରାପ୍ତ । ଭାରତ ସରକାରଙ୍କ ଶ୍ରମ ମନ୍ତ୍ରଣାଳୟରେ ସେ ସର୍ବାଧିକ କାଳ କାର୍ଯ୍ୟ କରିଥିଲେ । ସେ ଓଡିଶାର ଆକାଉଟାଂଟଂ ଜେନେରାଲ ଓ ବିହାର ର ପ୍ରମୁଖ ଆକାଉଟାଂଟଂ ଜେନେରାଲ ଭାବରେ କାର୍ଯ୍ୟ କରିବା ସହିତ ମିଳିତ ଜାତିସଂଘରେ ପରାମର୍ଶ ଦାତା ଓ ବିଶେଷଜ୍ଞ ଭାବରେ କାର୍ଯ୍ୟ କରିଛନ୍ତି ।

କର୍ମମୟ ଜୀବନରେ ଜଣେ ପ୍ରଶାସକ ଭାବରେ ବିଭିନ୍ନ ଅଚଂଳ ବୁଲି ସେଠାକାର ଲୋକମାନଙ୍କର ଚାଲିଚଳନକୁ ଦେଖି ସେ ନିଜକୁ ନିମଗ୍ନ କରିଥିଲେ - ସାହିତ୍ୟ ସାଧନାରେ । ମାତୃଭାଷା ଓଡ଼ିଆ ସାହିତ୍ୟ ର ବିକାଶ ଦିଗରେ ସେ ନିଜର କଲମ ଚାଳନା କରିଥିଲେ

ତାଙ୍କର ସାରସ୍ୱତ ସୃଷ୍ଟି ମଧ୍ୟରେ -

ହାର୍ମୋନିଅମ୍‌ରେ ତୋଡ଼ି
ଗର୍ଭଗୃହ (୩ୟ)
ମନ୍ତ୍ରପାଠ
ବଂଶ
ଲୁବ୍ଧକର ତିନି ପ୍ରହର
ଖୁଣୀ ଅପ୍ସରା
ନାସ୍ତିକର ଭକ୍ତି କବିତା
ନିର୍ବାଚିତ କବିତା
ଦେଶ
ପର୍ବ
ନର୍କରେ ଗୋଟିଏ ଋତୁ
ସ୍ଥଳ ପୁରାଣ
ଅପାର୍ଥୀବ ପ୍ରେମ କବିତା
ଓଘର ଖୟାମ ରୁବୟତ
ସାଇ ଚିନ୍ତାମଣି
ଆଧୁନିକତାର ପରମ୍ପରା
ଆଧୁନିକତାର ସମକାଳ
ସଭ୍ୟତା ଓ ସାହିତ୍ୟ
ଓଡ଼ିଆ ଜାତିର ଜୀବନ କଥା
ଅର୍ଥ ସେ ଦ୍ରୋହ (ହିନ୍ଦୀ)
ପ୍ରାର୍ଥନା କୋଲେୟେ ଜରୁରୀ ଶବ୍ଦ (ହିନ୍ଦୀ)
ଆଲୋକିତ ବନବାସ (କବିତା)

ହରପ୍ରସାଦ ଦାସ ଥିଲେ - ଓଡ଼ିଆ କବିତା ଓ ଗଦ୍ୟ ରଚନାର ଜଣେ ଧାରା ପ୍ରବର୍ତକ । ଅନେକ ସମୟରେ ଅନେକ କାରଣରୁ ସେ ବିବାଦୀୟ, ତେବେ ତରୁଣ କବିମାନଙ୍କ ପାଇଁ ସେ ଯାହି କରିଛନ୍ତି ଅନ୍ୟ କୌଣସି ପ୍ରବୀଣ ଓଡ଼ିଆ କବି ସେଭଳି କିଛି କରିନାହାଁନ୍ତି, ଏହା ନିଃସନ୍ଦେହ ।

### ସମ୍ମାନ ଓ ସମ୍ବର୍ଦ୍ଧନା -

ନିଜର ସାରସ୍ୱତ ସାଧନା ପାଇଁ ସାହିତ୍ୟିକ ହରପ୍ରସାଦ ଦାସ ସମାଜର ବିଭିନ୍ନ ଅନୁଷ୍ଠାନ ସର୍ବୋପରି ଉଚ୍ଚ ସାରସ୍ୱତ ଅନୁଷ୍ଠାନରୁ ନିଜର ସାରସ୍ୱତ କୃତିପାଇଁ ସମ୍ମାନୀତ, ଯାହାକି ତାଙ୍କୁ ସାହିତ୍ୟ ରଚନା କରିବାପାଇଁ ଅଧିକରୁ ଅଧିକ ପ୍ରେରଣା ଯୋଗାଇଥିଲା

**ସାରଳା ସମ୍ମାନ -**

ଓଡିଆ ସାହିତ୍ୟରେ ଆଦିକବି ସାରଳା ଦାସଙ୍କ ନାମାନୁସାରେ ଏହି ପୁରସ୍କାର ଓଡିଆ ସାହିତ୍ୟ ର ଏକ ମର୍ଯ୍ୟାଦାବନ୍ତ ପୁରସ୍କାର, ଏହାକୁ କବି ହରପ୍ରସାଦ ଦାସଙ୍କୁ ପ୍ରଦାନ କରାଯାଇଥିଲା - ତାଙ୍କର ସାମଗ୍ରୀକ ସାରସ୍ୱତ କୃତିପାଇଁ ।

**ମୂର୍ତିଦେବୀ ପୁରସ୍କାର -**

କେନ୍ଦ୍ର ଜ୍ଞାନପୀଠ ସଂସ୍ଥା ଦ୍ୱାରା ଏହା ଏକ ମର୍ଯ୍ୟାଦାବନ୍ତ ରାଷ୍ଟ୍ରୀୟ ସାରସ୍ୱତ ସମ୍ମାନ "ବଂଶ" - କବିତା ପୁସ୍ତକ ପାଇଁ କବି ହରପ୍ରସାଦ ଦାସଙ୍କୁ ଏହି ପୁରସ୍କାର ପ୍ରଦାନ କରାଯାଇଥିଲା ।

**ଗଙ୍ଗାଧର ଜାତୀୟ ସମ୍ମାନ -**

ଓଡିଶାର ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ସମ୍ମାନାର୍ଥେ କବିତା କ୍ଷେତ୍ରରେ ଏହା ଏକ ରାଷ୍ଟ୍ରୀୟ ପୁରସ୍କାର - ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡିଆ ଭାଷା ଓ ସାହିତ୍ୟ ବିଭାଗ ଦ୍ୱାରା ଏ ପୁରସ୍କାର ପ୍ରତିବର୍ଷ ପ୍ରଦାନ କରାଯାଇଥାଏ ।

କବି ହରପ୍ରସାଦ ଦାସଙ୍କ ସାମଗ୍ରୀକ କବିତା ସୃଷ୍ଟିପାଇଁ ଏହି ରାଷ୍ଟ୍ରୀୟ ପୁରସ୍କାର ପ୍ରଦାନ କରାଯାଇଥିଲା ।

**କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର -**

କବି ହରପ୍ରସାଦ ଦାସଙ୍କୁ ଭାରତୀୟ ସାହିତ୍ୟ ର ସର୍ବୋଚ୍ଚ ଅନୁଷ୍ଠାନ - କେନ୍ଦ୍ର ସାହିତ୍ୟ ଏକାଡେମୀ - ୧୯୯୯ ମସିହାରେ ତାଙ୍କର କବିତା ସଂକଳନ - "ଗର୍ଭଗୃହ" ପାଇଁ ପ୍ରଦାନ କରାଯାଇଥିଲା । ଏହି ସମ୍ମାନ ତାଙ୍କୁ ସର୍ବଭାରତୀୟ ସ୍ତରରେ ଜଣେ ପ୍ରତିଷ୍ଠିତ କବିର ମାନ୍ୟତା ପ୍ରଦାନ କରିଅଛି ।

**ସାରଳା ପୁରସ୍କାର -**

ବିଶିଷ୍ଟ ଶିଳ୍ପପତି ବଂଶୀଧର ପଣ୍ଡାଙ୍କ ଦ୍ୱାରା ଇମ୍ପା ଚାରି ଟେବୁଲ୍ ଟ୍ରଷ୍ଟ୍ ପକ୍ଷରୁ ଏହା ଏକ ରାଷ୍ଟ୍ରୀୟ ସାରସ୍ୱତ ସମ୍ମାନ । ୧୯୯୫ ମସିହାରେ ହରପ୍ରସାଦ - ତାଙ୍କ ପୁସ୍ତକ - "ହାରମୋନିଅମ୍‌ରେ ତୋଡି" ପାଇଁ ଏ ସମ୍ମାନ ପାଇଥିଲେ ।

ଜୀବନ ତମାମ ଜଣେ ପ୍ରଶାସକ ଭାବରେ ଜନସାଧାରଣଙ୍କ ନିକଟତର ହୋଇଥିବା ହରପ୍ରସାଦ ଦାସ କଦାପି ସାରସ୍ୱତ ସାଧନାକୁ ଭୁଲି ପାରିନଥିଲେ ତାଙ୍କ ଲେଖନୀ ତାଙ୍କୁ ଓଡିଆ ସାହିତ୍ୟ କାହିଁକି ଭାରତୀୟ ସାହିତ୍ୟରେ ଜଣେ ପ୍ରଖ୍ୟାତ କବିର ମାନ୍ୟତା ତାଙ୍କୁ ପ୍ରଦାନ କରିଅଛି ।

**ସାରସ୍ୱତ ସୃଷ୍ଟି -**

"ଓଡିଆ ଜାତିର ଜୀବନ ଚିନ୍ତା" - ନାମରେ ତାଙ୍କର ସ୍ତମ୍ଭଗୁଡିକୁ ଯଥେଷ୍ଟ ପାଠକୀୟ ସ୍ୱୀକୃତି ହାସଲ କରିଅଛି ।

**କବିଙ୍କ ଦୃଷ୍ଟିରେ ପ୍ରେମ -**

ସବୁ ପ୍ରେମ ମଧ୍ୟରେ ଦାମ୍ପତ୍ୟ ପ୍ରେମ ଶ୍ରେଷ୍ଠ । କେବଳ ଦାମ୍ପତ୍ୟ ସମ୍ପର୍କ, ଦାମ୍ପତ୍ୟ ପ୍ରେମ ନୁହେଁ । ପ୍ରେମ ଏକ ଅନୁମାନ, ଥିଲେ ଅଛି ନଥିଲେ ନାହିଁ । ବିନା ସମ୍ମାନରେ ପ୍ରେମ ନାହିଁ । ପ୍ରେମ ସବୁ ସମ୍ପର୍କରେ ଉତ୍କର୍ଷର ଅନୁଭବ । ପ୍ରେମ ଏକ ସୌନ୍ଦର୍ଯ୍ୟବୋଧ । ଏହା ଏଭଳି ଏକ ସୌନ୍ଦର୍ଯ୍ୟବୋଧ, ଯେଉଁଥିରେ କର୍କଶତମ ଏବଂ ନିଷ୍ଠୁରତମ ମଧ୍ୟ ନାନ୍ଦନିକ ଦୀପ୍ତି ପ୍ରାପ୍ତ ହୁଅନ୍ତି । କୌଣସି ଏକତରଫା ପ୍ରେମ, ପ୍ରେମ ନୁହେଁ । ଇନ୍ଦ୍ରିୟବୋଧ ନଥିଲେ ପ୍ରେମ ନାହିଁ । ଅଯୋଗ୍ୟର ପ୍ରେମରେ ଅଧିକାର ନାହିଁ; ପ୍ରେମ ପାଇଁ ଯୋଗ୍ୟ ହେବାକୁ ହୁଏ ।

## ମୃଗନାଭି

ସବୁବେଳେ ନୁହେଁ
ବେଳେ ବେଳେ -

ବେଳେ ବେଳେ
ମୋ ନାକରେ ବାଜେ
ଗୋଟେ ଗନ୍ଧ ।

ଯନ୍ତାରୁ ଫିଟିଆସି
ଦିଗ୍‌ବିଦିଗ ଛୁଟିଥିବା
ଗୋଟେ ଜନ୍ତୁର
ରକ୍ତମିଶା
ମାଟିଆ ଗନ୍ଧ ।

ମୁଁ ଅତର୍କିଆ
ଛୁଇଁଦେଇ
ଶୁଙ୍ଘିପକାଏ
ମୋର ଛାତି, ପେଟ, ଗାଲ ଓ କପାଳ ।

ସବୁଠି ସେଇ ଗନ୍ଧ !

ଉତେଜନାରେ
କମ୍ପେ ମୋ ଦେହ
ମୁଁ ଆଉ ପାଦେ
ଆଗେଇ ଯାଏ
ବିପଦ ଭିତରକୁ ।

ସବୁଠି
ସେଇ ଗନ୍ଧ ।
ସବୁଠି
ଅରାଏ ରକ୍ତଭିଜା ମାଟି ଉପରେ
ଲୋଟି ପଡ଼ିଥିବା
ଜ୍ୟୋସ୍ନାର
ମୁକୁଳା ଦେହ
ଯାହାକୁ
ପବନ ଆଉଁଶି ଲାଗିଥାଏ
ଆସ୍ତେ, ଆସ୍ତେ
ଯାହାକୁ
ମୁଁ ଝୁଣି ଚାଲିଥାଏ
ମୁନିଆ ଦାନ୍ତ ଲଗାଇ ।

ମୋର ଖିଆଲ୍ ନଥାଏ ।
ସେତେବେଳକୁ
ମୋର ସବୁ ସନ୍ଧି ଜାଗାରେ
ଭୁଜି ସାରିଥାଏ
ଛୁରୀ ।
କସ୍ତୁରୀ ! କସ୍ତୁରୀ !
ଡାକ ଛାଡୁଥାଏ ।
ଦୁନିଆ ।

ମୋର ଏ ଲଙ୍ଗଳା ଦେହରେ ଯଦି କସ୍ତୁରୀ, ତେବେ
କିଏ ସେ ମୃଗ
ଯାହା ପାଇଁ ଏତେ ଉପମା କବିତାରେ ?

ଦୁନିଆର ଏ ମଇଳା ହାତରେ ଯଦି କସ୍ତୁରୀ,
ତେବେ
ଶିକାର ନାଁରେ

ମୃଗୀ ନଚାଏ କିଏ ?
ଏ ପ୍ରଶ୍ନ
ମୁଁ ପଚାରେ ମୋ ନିଜକୁ,
କାରଣ
ସେତେବେଳକୁ
ସରିଯାଇଥାଏ ପ୍ରାର୍ଥନା ପାଇଁ
ମୁଁ ଜମାକରି ରଖିଥିବା
ମୋର ସବୁ ଶବ୍ଦ,
କିନ୍ତୁ
ଥାଏ ଦୀପଗର୍ଭରେ
କୁହୁଳିବା ପାଇଁ
ସଳିତା ପାଖରେ
ଆଉ ଘଡ଼ିଏ ଦି' ଘଡ଼ିର
ବେଳ ।

---

## ଓଡିଆ ସାହିତ୍ୟ ର
## ନାଟ୍ୟକାର ପ୍ରଫେସର ନୀଳାଦ୍ରି ଭୂଷଣ ହରିଷ୍ଚନ୍ଦନ

ଓଡିଆ ନାଟ୍ୟ ସାହିତ୍ୟ ର ଜଣେ ଉଚ୍ଚାରିତ ନାମ - ନୀଳାଦ୍ରି ଭୂଷଣ ହରିଶ୍ଚନ୍ଦନ । ନାଟକ, କବିତା ଓ ସମାଲୋଚନା ସାହିତ୍ୟରେ ସେ ନିଜର କଲମ ଚାଳନା କରିଅଛନ୍ତି । ବୃତିରେ ଜଣେ ଅଧ୍ୟାପକ ଓ ପ୍ରବୃତିରେ ସାହିତ୍ୟିକ ।

୪ ଡିସେମ୍ବର, ୧୯୪୬ ମସିହାରେ ଖୋର୍ଦ୍ଧା ଜିଲ୍ଲା (ଅବିଭକ୍ତ ପୁରୀ ଜିଲ୍ଲା) ବାଣପୁର ର ଗମ୍ଭାରୀମୁଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବାପା ଥିଲେ - ପର୍ଶୁରାମ ହରିଶ୍ଚନ୍ଦନ ଓ ମା' ଥିଲେ - ପଦ୍ମାଳୟା ରାୟସିଂହ । ତାଙ୍କ ପରିବାର ଥିଲା - ଆଭିଜାତ୍ୟ ସଂସ୍କୃତି ସମ୍ପର୍ଣ୍ଣ ପରିବାର । ସେମାନେ ୯ ଜଣ ଭାଇ-ଭଉଣୀ (ପାଚଂଭାଇ-ଚାରିଭଉଣୀ) । ବିଶ୍ୱଭୂଷଣ ହରିଶ୍ଚନ୍ଦନ - ତାଙ୍କ ଅଗ୍ରଜ ଥିଲେ, ସେ ଓଡିଶାର ପୂର୍ବତନ ମନ୍ତ୍ରୀ ତଥା ଆନ୍ଧ୍ରପ୍ରଦେଶର ବର୍ତମାନ ରାଜ୍ୟପାଳ ଅଛନ୍ତି ।

ନୀଳାଦ୍ରି ଭୂଷଣ ଗାଁ ସ୍କୁଲର ପ୍ରାଥମିକ ଶିକ୍ଷା (ଗୋଡିଝରେ ପ୍ରାଥମିକ ବିଦ୍ୟାଳୟ) ଶେଷକରି ବାଣପୁର ର ଗୋଦାବରୀଶ ବିଦ୍ୟାପୀଠରୁ ଏକାଦଶ ଶ୍ରେଣୀ (ମାଟ୍ରିକ୍) ପାସ୍ କରିଥିଲେ । ତା'ପରେ ସେ ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜ ଓ କଟକର ଖ୍ରୀଷ୍ଟ କଲେଜରୁ ଓଡିଆ ଅନର୍ସ ରଖି ସ୍ନାତକ ଶିକ୍ଷାଗ୍ରହଣ କରିଥିଲେ । ୧୯୬୯ ମସିହାରେ ଐତିହାସିକ ରେଭେନ୍ସା କଲେଜରୁ ଓଡିଆ ଭାଷା ଓ ସାହିତ୍ୟରେ ସ୍ନାତକୋତର (ଏମ୍.ଏ.) ପାସ୍ କରିଥିଲେ । ଏମ୍.ଏ. ପାସ୍ କରିବାର ମାତ୍ର କୋଡିଏ ଦିନ ମଧ୍ୟରେ ସେ ୧୯୬୯ ମସିହା ନଭେମ୍ବର ମାସରେ ରେଭେନ୍ସା କଲେଜର ଓଡିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । କର୍ମମୟ ଜୀବନରେ ଦେଢବର୍ଷ ପରେ ଭଦ୍ରକ କଲେଜକୁ ବଦଳି ହୋଇଥିଲେ । ଭଦ୍ରକରେ କିଛିବର୍ଷ ଅଧ୍ୟାପନା କରିବା ପରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଙ୍କ ପ୍ରତିଷ୍ଠିତ କଲିକତା ଶାନ୍ତି ନିକେତନ - "ବିଶ୍ୱଭାରତୀ" ରେ ଓଡିଆ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ପରେ ପ୍ରାଧ୍ୟାପକ ଓ ପ୍ରଫେସର ପଦବୀରୁ ଦୀର୍ଘ ୩୬ ବର୍ଷର ଶିକ୍ଷାଦାନ ପରେ ଅବସର ଗ୍ରହଣ କରିଥିଲେ ।

ନୀଳାଦ୍ରି ଭୂଷଣ ଓଡିଆ ସାହିତ୍ୟ ର ଅଧ୍ୟାପକ ସହିତ ଭାଷା ଓ ସାହିତ୍ୟ ର ଜଣେ ଦକ୍ଷ ଗବେଷକ ଅଟନ୍ତି । ୧୯୭୮ ମସିହାରେ "ଓଡିଆ ନାଟକରେ ଇତିହାସର ପ୍ରତିଧ୍ୱନି" ପ୍ରସଙ୍ଗରେ ଥେସିସ୍ ଲେଖି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ (ପିଏଚ୍.ଡି.) ଉପାଧି ପାଇଥିଲେ । ସେହିପରି ୧୯୯୨ ମସିହାରେ "ବିଶ୍ୱଭାରତୀ" ବିଶ୍ୱବିଦ୍ୟାଳୟରୁ ସେ ଉଚ୍ଚତର ଗବେଷଣା ଡକ୍ଟର ଅଫ୍ ଲିଟରେଚର୍ (ଡି.ଲିଟ୍.) ଉପାଧି ପାଇଛନ୍ତି । ତାଙ୍କର ଗବେଷଣା ସନ୍ଦର୍ଭ ଥିଲା - ଆଧୁନିକ ଓଡିଆ ନାଟକରେ ବାସ୍ତବ ଓ ଉଦ୍ଭଟ ଚେତନା । ଅନେକ ଶିକ୍ଷାର୍ଥୀ ତାଙ୍କଦ୍ୱାରା ଡକ୍ଟରେଟ୍ ଉପାଧିପ୍ରାପ୍ତ ।

ଅଧ୍ୟାପନା, ଗବେଷଣା ସହିତ ନୀଳାଦ୍ରି ଭୂଷଣ ସାହିତ୍ୟ ରଚନାରେ ମଧ୍ୟ ସିଦ୍ଧିହସ୍ତ ଥିଲେ । ସେ ସ୍କୁଲ ସ୍ତରରୁ ସାହିତ୍ୟ ସର୍ଜନାରେ ମନନିବେଶ କରିଥିଲେ । ତାଙ୍କର କୋଡିଏ ଗୋଟି ସମାଲୋଚନା, ଦଶଗୋଟି କବିତା, ଦଶଗୋଟି ଅନୁବାଦ ଓ ପଚିଶ ଗୋଟି ନାଟକ ପୁସ୍ତକ ପ୍ରକାଶିତ ହୋଇ ସାରିଅଛି । ତତ୍‌ସହିତ ତାଙ୍କର ଲେଖାମାନ ବିଭିନ୍ନ ପତ୍ର ଓ ପତ୍ରିକାରେ ନିୟମିତ ପ୍ରକାଶହୋଇ ପାଠକୀୟ ଆଦୃତି ଲାଭ କରିଅଛି ।

### ସାରସ୍ୱତ ସୃଷ୍ଟି -

ନୀଳାଦ୍ରି ଭୂଷଣ ଓଡିଆ ସାହିତ୍ୟରେ ମୁଖ୍ୟତଃ ଜଣେ ନାଟ୍ୟକାର ଭାବରେ ସୁପ୍ରତିଷ୍ଠିତ ଥିଲେ ମଧ୍ୟ ଜଣେ କବି, ସମାଲୋଚକ, ଅନୁବାଦକ ଭାବରେ ମଧ୍ୟ ପରିଚିତ ।

#### ନାଟକ -

୧. ସତ୍ୟ ସଂଶୟ ସାଲବେଗ - ୧୯୮୧
୨. ପାହାଡର ଅନ୍ୟରୂପ - ୧୯୮୧
୩. ଅନ୍ଧ ଦ୍ୱିପହର - ୧୯୮୧
୪. ନିରାପଦ ଭବିଷ୍ୟତ (୩ଟି ନାଟକ) - ୧୯୮୩
୫. ସ୍ୱର୍ଗାରୋହ (୨ଟି ନାଟକ) - ୧୯୮୭
୬. ଭୀମଭୋଇ ର ସନ୍ଧାନରେ (ନାଟକାବଳୀ) - ୧୯୮୯
୭. ୪ କଲମ୍ବସ୍ - ୧୯୯୦
୮. ମୁଣ୍ଡ ଉପରେ ଛାତ - ୧୯୯୨
୯. ଶୂନ୍ୟଘର (ନାଟକାବଳୀ)
୧୦. ଜଟାୟୁର ଛିନ୍ନ ଡେଣା (୩ଟି ନାଟକ) - ୧୯୯୯
୧୧. ରାସ୍ତାନାହିଁ (ନାଟକାବଳୀ) - ୨୦୦୪
୧୨. ପଥ ବହୁଦୂର (ନାଟକାବଳୀ) - ୨୦୦୯
୧୩. ଭାରତୀ କୁନ୍ତଳା ଓ ସରସ୍ୱତୀ ନଗେନ୍ଦ୍ର ବେଲୀ (୨ଟି) - ୨୦୧୦

୧୪. ବନ୍ଦୀଶାଳାରେ ବିଶ୍ୱପତି (ନାଟକାବଳୀ) - ୨୦୧୨
୧୫. ଯେତିକି ଦୃଶ୍ୟ ହୁଏ (୯ଟି ନାଟକ) - ୨୦୧୮
୧୬. ଅଚିହ୍ନା ରାଜ୍ୟରେ ଅବାକ ରାଜପୁତ୍ର - ୨୦୧୮
୧୭. ଅଶ୍ୱିନୀ କୁମାର ଙ୍କ ଶେଷଦିନ - ୨୦୧୯

**କବିତା -**

୧. ପାହାଚ - ୧୯୭୨
୨. ନୀଳ ଚନ୍ଦନର ଭୁଲ ଠିକଣା - ୧୯୭୨
୩. ସମ୍ବୋଧନ ହୀନ - ୧୯୭୮
୪. ଅଚାନକ ବୃହନାଳ - ୧୯୯୧
୫. ନିର୍ବୋଧ ଲୋକର ପୃଥିବୀ - ୧୯୯୬
୬. ସମୁଦ୍ର ନିରୋତର - ୧୯୯୭
୭. ଇତିହାସ ଲେଖିବାର ମୁହୂର୍ତ୍ତ - ୨୦୦୨
୮. ଆଉ ଗୋଟିଏ ଜନ୍ମର ଅପେକ୍ଷା - ୨୦୦୮
୯. ଉପୁଡ଼ି ପଡିଥିବା ଗଛ - ୨୦୧୨
୧୦. ସୌନ୍ଦର୍ଯ୍ୟ ଖୋଜିଖୋଜି ଈଶ୍ୱର - ୨୦୧୪

**ସମାଲୋଚନା -**

୧. ସମାଲୋଚନା ଦୃଷ୍ଟିରୁ - ୧୯୭୧
୨. ସାହିତ୍ୟରେ ରୂପରେଖ - ୧୯୭୧
୩. ଐତିହାସିକ ନାଟକର ମୂଳସୂତ୍ର - ୧୯୮୦
୪. ଓଡିଆ ଭାଷାର ବ୍ୟାକରଣ - ୧୯୮୧
୫. ଓଡିଆ ନାଟକରେ ଇତିହାସର ପଦଧ୍ୱନି - ୧୯୮୨
୬. ନୂତନ ନାଟ୍ୟଚିନ୍ତା - ୧୯୮୩
୭. ଆଧୁନିକ ଓଡିଆ ନାଟକରେ ବାସ୍ତବ ଓ ଉଦ୍ଭଟ ଚେତନା - ୧୯୮୮
୮. ଓଡିଆ ନାଟକର ଇତିହାସ - ୧୯୮୯
୯. ଭିନ୍ନ ସମୟ ଭିନ୍ନଦୃଷ୍ଟି - ୧୯୯୦
୧୦. Aspects of Odia Drama (English) - ୧୯୯୧
୧୧. ପ୍ରାଚୀନ ମଧ୍ୟଯୁଗୀୟ ସାହିତ୍ୟର ନବମୂଲ୍ୟାୟନ - ୧୯୯୪
୧୨. ଭାବନା ବିଭାବନା - ୧୯୯୪
୧୩. ନିଭୁଲି ଲେଖାର ମୂଳସୂତ୍ର - ୨୦୧୩
୧୪. ପ୍ରାଚୀନ ମଧ୍ୟଯୁଗ ସାହିତ୍ୟ - ନୂତନ ପ୍ରେକ୍ଷାପଟ - ୨୦୧୭
୧୫. ଓଡିଆ ବନାନ ଅଭିଧାନ - ୨୦୧୭
୧୬. ସାରଳା ଶବ୍ଦକୋଷ (ଅଭିଧାନ) - ୨୦୧୬
୧୭. ସୃଜନ ସମୀକ୍ଷା ଓ ଚିନ୍ତନ ଦୀକ୍ଷା - ୨୦୧୮
୧୮. ଓଡିଆ ନାଟକରେ ସମୀକ୍ଷାତ୍ମକ ଇତିହାସ (ଯୁଗ୍ମ) - ୨୦୧୮
୧୯. ଓଡିଆ ଭାଷା ଦୀପିକା - ୨୦୧୯

**ଅନୁବାଦ ପୁସ୍ତକ (ଓଡିଆ ଭାଷାରେ) -**

୧. ଶଙ୍କର ଦେବ - ୧୯୭୨
୨. କବିର - ୧୯୮୬
୩. ସାରଳା ମହାଭାରତର ଆଦିପର୍ବ (ହିନ୍ଦୀରୁ) - ୧୯୯୫
୪. ସାରଳା ମହାଭାରତର ମଧ୍ୟପର୍ବ (ହିନ୍ଦୀରୁ) - ୧୯୯୫
୫. ସକ୍ରେଟିସ୍ ଙ୍କ ଯବାନ ବନ୍ଦୀ - ୧୯୯୭
୬. ପାରମ୍ପରିକ ଭାରତୀୟ ନାଟ୍ୟକଳା - ୨୦୦୨
୭. ରବୀନ୍ଦ୍ର କବିତା ଗୁଚ୍ଛ - ୨୦୦୨

୮. ନବନୀତା - ୨୦୦୫
୯. ଗୀତାଞ୍ଜଳୀ (ଓଡିଆ ଭାଷାରେ) - ୨୦୧୫
୧୦. ସମ୍ପୂର୍ଣ୍ଣ ସାରଳା ମହାଭାରତ (ହିନ୍ଦୀରୁ) - ୨୦୧୬

**ସଂକଳନ ପୁସ୍ତକ -**

୧. କିଛିପତ୍ର ଓ କିଛିଫୁଲ - ୧୯୭୮
୨. ବୈଷ୍ଣବ ପଦାବଳୀ - ୧୯୮୨
୩. ଯେ ପକ୍ଷୀ ଉଡେ ଯେତେ ଦୂର - ୧୯୮୨
୪. ଭାଷା ଓ ସାହିତ୍ୟରେ ବର୍ଣ୍ଣବିଭା - ୧୯୯୪
୫. ନାଟିକା ବଟିକା - ୧୯୯୬
୬. ସାରଳା ଦାସ ଚୟନ - ୨୦୦୭
୭. ଏକାଙ୍କିକା ଓ ଛୋଟ ନାଟକ ସଂଗ୍ରହ (ଯୁଗ୍ମ) - ୧୯୧୪
୮. ସାରଳା ଦାସଙ୍କ ଶ୍ରେଷ୍ଠ କାବ୍ୟକୃତି - ଶ୍ରୀ ମହାଭାରତ ଯେ ଅମିୟ ରସବାଣୀ - ୧୯୧୮

**ନୀଳାଦ୍ରି ଭୂଷଣ ଙ୍କ କୃତି ସୟଳିତ ପୁସ୍ତକ -**

୧. ନୀଳାଦ୍ରି ଭୂଷଣ ଙ୍କ ନାଟ୍ୟ ଜିଜ୍ଞାସା
ସମ୍ପାଦନା - ଡକ୍ଟର ଆଲୋକ କୁମାର ବରାଳ
ଡକ୍ଟର ପ୍ରଦୋଷ କୁମାର ସ୍ୱାଇଁ
ଅଗ୍ରଦୂତ ପ୍ରକାଶନୀ, କଟକ - ୨୦୧୮

୨. ନୀଳାଦ୍ରି ଭୂଷଣ ଙ୍କ କବିତା ବର୍ଣ୍ଣାଳୀ
ସମ୍ପାଦନା - ଡକ୍ଟର ଦିଲ୍ଲୀପ୍ କୁମାର ସ୍ୱାଇଁ
ବିଦ୍ୟାପୁରୀ ପ୍ରକାଶନୀ, କଟକ - ୨୦୧୯

ନୀଳାଦ୍ରି ଭୂଷଣ ହରିଶ୍ଚନ୍ଦନ ଙ୍କ ସ୍ୱରଚିତ ଅନେକ ପୁସ୍ତକ - ନାଟକ, କବିତା, ସମାଲୋଚନା ସାହିତ୍ୟ କିମ୍ବା ଅନୁବାଦ ସାହିତ୍ୟ ହେଉ ସେ ସବୁ ସୃଷ୍ଟି ବସ୍ତୁତଃ ତାଙ୍କର କର୍ମକ୍ଷେତ୍ର ବିଶ୍ୱଭାରତୀ, ଶାନ୍ତି ନିକେତନରେ ଓଡିଆ ଭାଷା ଓ ସାହିତ୍ୟ ର ପ୍ରଫେସର ଥିବା ସମୟରେ ପରି ପ୍ରକାଶିତ ଘଟିଥିଲା ।

**ସମ୍ମାନ ଓ ପୁରସ୍କାର -**

ନୀଳାଦ୍ରି ଭୂଷଣ ହରିଶ୍ଚନ୍ଦନ ନିଜର ସାରସ୍ୱତ ସୃଷ୍ଟିପାଇଁ ଅନେକ ଅନୁଷ୍ଠାନରୁ ସମ୍ମାନୀତ ଓ ପୁରସ୍କୃତ । ଏହା ତାଙ୍କୁ ତାଙ୍କର ସାହିତ୍ୟ ରଚନାରେ ପ୍ରତିଷ୍ଠିତ କରାଇ ପାରିଥିଲା । ପୁରସ୍କାର ଓ ସମ୍ମାନ ତାଙ୍କୁ ଆଣି ଦେଇଥିଲା ଏକ ଚାଲେଞ୍ଜ୍, ଯାହାକି ସେ ଗ୍ରହଣକରି ସାରସ୍ୱତ ସାଧନାରେ ନିମଗ୍ନ ରହିଥିଲେ ।

**କବିତା ପାଇଁ -**

୧. ପଦ୍ମଚରଣ ପଟ୍ଟନାୟକ - କବିତା ପୁରସ୍କାର
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର
୨. ଜୀବନରଙ୍ଗ କବିତା ପୁରସ୍କାର - ଜୀବନରଙ୍ଗ - କଟକ
୩. ଭାନୁଜୀ ରାଓ - କବିତା ପୁରସ୍କାର
ଗଙ୍ଗାଧର ରଥ ଫାଉଣ୍ଡେସନ୍, କଟକ

**ନାଟକ ପାଇଁ -**

୧. ବିଷୁବ ମିଳନ - ଜଷ୍ଟିସ୍ ହରିହର ମହାପାତ୍ର - ନାଟକ ପୁରସ୍କାର
ପ୍ରଜାତନ୍ତ୍ର ପ୍ରଚାର ସମିତି - କଟକ
୨. ଉତ୍କଳ ସାହିତ୍ୟ ସମାଜ - ନାଟକ ପୁରସ୍କାର
ଉତ୍କଳ ସାହିତ୍ୟ ସମାଜ - କଟକ
୩. ଆକାଶବାଣୀ - ନାଟକ ପୁରସ୍କାର
ଆକାଶବାଣୀ - କଟକ
୪. ନାଟ୍ୟାଚାର୍ଯ୍ୟ ଉପାଧି
ଥିଏଟର ମୁଭ୍‌ମେଂଟ - କଟକ

୫. ନାଟ୍ୟଭୂଷଣ ଉପାଧି

ଥିଏଟର ଅଲିମ୍ପାଡ - କଟକ

୬. ଆଦି ନାଟ୍ୟକାର ସମ୍ମାନ

ଆଦି ନାଟ୍ୟକାର ଜଗମୋହନ ଲାଲ - ସ୍ମୃତି ସଂସଦ - କଟକ

**ସାହିତ୍ୟ ସମାଲୋଚନା ପାଇଁ -**

୧. ବିଷୁବ ମିଳନ ଝଙ୍କାର ପୁରସ୍କାର

ପ୍ରଜାତନ୍ତ୍ର ପ୍ରଚାର ସମିତି - କଟକ

୨. ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର

ଓଡିଶା ସାହିତ୍ୟ ଏକାଡେମୀ - ଭୁବନେଶ୍ୱର

୩. ଉତ୍କଳ ସାହିତ୍ୟ କଳା ପରିଷଦ ସମ୍ମାନ - କଟକ

୪. ନିରନ୍ତର ଗବେଷଣା ସମ୍ମାନ

ସୁରେନ୍ଦ୍ର ମହାନ୍ତି ଟ୍ରଷ୍ଟ - ଚାନ୍ଦୋଳ, କେନ୍ଦ୍ରାପଡା

**ସାମଗ୍ରିକ କୃତିପାଇଁ -**

୧. ଉତ୍କଳ ସାହିତ୍ୟ ସମାଜ ସମ୍ମାନ

ଉତ୍କଳ ସାହିତ୍ୟ ସମାଜ - କଟକ

୨. ସାରଳା ସମ୍ମାନ

ସାରଳା ସାହିତ୍ୟ ସଂସଦ - କଟକ

୩. ଭାରତୀୟ ଭାଷା ପରିଷଦ - ରଜତ ଜୟନ୍ତୀ ସମ୍ମାନ

ଭାରତୀୟ ଭାଷା ପରିଷଦ - କୋଲକାତା

୪. ଗୋକର୍ଣ୍ଣିକା ସମ୍ମାନ

ଗୋକର୍ଣ୍ଣିକା ସାହିତ୍ୟ ସଂସଦ - ଧର୍ମଶାଳା, ଯାଜପୁର

୫. ପୁନଃର୍ନବା ସମ୍ମାନ

ପୁନଃର୍ନବା ସାହିତ୍ୟ ସଂସଦ - ଚାନ୍ଦୋଳ, କେନ୍ଦ୍ରାପଡା

୬. ଦୀନକୃଷ୍ଣ ସମ୍ମାନ

ଦୀନକୃଷ୍ଣ ସାହିତ୍ୟ ସମ୍ମାନ - ଦଳେଶ୍ୱର, ବାଲେଶ୍ୱର

୭. ମାନସିଂହ ସମ୍ମାନ

ସାରଳା ସାହିତ୍ୟ ସଂସଦ - କଟକ

୮. ସହକାର ସମ୍ମାନ

ସହକାର - କଟକ

୯. ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଓଡିଆ ବିଭାଗ ସମ୍ମାନ - ବ୍ରହ୍ମପୁର

୧୦. ଅତିବଡି ଜଗନ୍ନାଥ ଦାସ ସମ୍ମାନ

ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ - ପୁରୀ - ୨୦୧୫

୧୧. ଉତ୍କଳ ସାହିତ୍ୟ ସମାଜ

ବରିଷ୍ଠ ସଦସ୍ୟ ସମ୍ମାନ - କଟକ - ୨୦୧୬

୧୨. ଭଗବତୀ ବିକାଶ ପରିଷଦ ସମ୍ମାନ

ଭୁବନେଶ୍ୱର - ୨୦୧୬

୧୩. ଶ୍ୱେତ ସଙ୍କେତ ସମ୍ମାନ

ଶ୍ୱେତ ସଙ୍କେତ - ଭୁବନେଶ୍ୱର - ୨୦୧୬

୧୪. ସମାରୋହ ସମ୍ମାନ

ସମାରୋହ - ଭୁବନେଶ୍ୱର - ୨୦୧୬

୧୫. ବିଜୟା ଦଶମୀ ସମ୍ମାନ

ଭଦ୍ରକ - ୨୦୧୭

୧୬. ପଣ୍ଡିତ ଗୋଦାବରୀଶ ମିଶ୍ର ପୁରସ୍କାର
ସାରଳା ସାହିତ୍ୟ ସଂସଦ - କଟକ - ୨୦୧୮

## ସାରସ୍ୱତସ୍ରଷ୍ଟା ନୀଳାଦ୍ରି ଭୂଷଣ ହରିଶ୍ଚନ୍ଦନ ଙ୍କ ସୃଷ୍ଟି -

ନୀଳାଦ୍ରି ଭୂଷଣ ଙ୍କ କବିତା ସଂକଳନ -
"ସୌନ୍ଦର୍ଯ୍ୟ ଖୋଜିଖୋଜି ଈଶ୍ୱର" ର
ଏକ କବିତା - 'ଟେଲିଫୋନ୍‌ର ଅପେକ୍ଷା'

ମୁଁ ନିଶ୍ଚିତ ଯେ
ଦେହ ମୋର ନିସ୍ତେଜ ହେବା ପୂର୍ବରୁ
ହାତ ପାହାନ୍ତାରେ ଥୁଆ ହେଇଥିବା ଟେଲିଫୋନ୍
ହଠାତ୍ ବାଜି ଉଠିବ ଏବଂ
କାନ ପାଖରେ ମୋର ଗୁଞ୍ଜରି ଉଠିବ
ତୁମରି କଣ୍ଠସ୍ୱର ॥

ସେହି ସ୍ୱରଧ୍ୱନିର ଆକାଶରେ
ରୂପେଲି ମେଘଖଣ୍ଡ ହୋଇ
ଭାସି ବୁଲିବ ତୁମର ସହସ୍ର ଛବି ॥

ମୋ ଆଡକୁ ହାତ ବଢାଇ ରହିଥିବା
କୃଷ୍ଣଚୂଡା ଗଛଟି
ଛୁଇଁଯିବ ଦେହକୁ ମୋର
ଘରଚଟିଆ ମାନେ ଫେରିଆସିବେ ଘରକୁ ।
ତୁମର କହିଲା କହିଲା, ଆଖି ଦୁଇଟିର ଆଲୋକର
ଉଜଳି ଉଠିବ ମୋର ଅଭ୍ୟନ୍ତର
ଅଥଚ ସବୁକିଛି ଘଟୁଥିବ ନୀରବରେ, ନିଃଶବ୍ଦରେ ॥

ମୋର ଧାରଣା ହେଇଯିବ ଯେ -
ଛାତିଏ ଭଲପାଇବା ନେଇ ବଚିଂ ରହିଥିବା ଲୋକଟି
କେବେ ବି ମରିବ ନାହିଁ, ମୃତ୍ୟୁହୀନ ପ୍ରାଣ
କାନଡେରି ଅପେକ୍ଷାରେ ରହିଥିବ ଶୁଣିବାକୁ ଟେଲିଫୋନ୍‌ରେ
ତମ ସ୍ୱରର ମଧୁର ଗୁଞ୍ଜରଣ ॥

ବାସ୍ତବିକ୍ କବି ନୀଳାଦ୍ରି ଭୂଷଣ ଙ୍କ କବିତା - "ଟେଲିଫୋନ୍‌ର ଅପେକ୍ଷା" ବେଶ୍ ଭାବ ଉଦ୍ଦୀପକ ସହ ଶବ୍ଦ ସଂଜ୍ଞାନାଜଳାରେ ଭରପୂର ହୃଦୟସ୍ପର୍ଶୀ କବିତାଟିଏ ।

ଡଃ ନୀଳାଦ୍ରି ଭୂଷଣ ହରିଶ୍ଚନ୍ଦନ ଙ୍କ ଏକାଙ୍କିକା ଗୁଡିକ ହେଲା ପୁଣ୍ୟଭୂମି ଭାରତ, ବତାସ ନିସ୍ତବ୍ଧ ଆଜି, ମଇଁଷିର ପାଶ ନଯାଅ ଦନାଇ, ରତ୍ନାକର ର ରାସ୍ତା, ଆଶ୍ଚର୍ଯ୍ୟ ମଣିଷ, ବରଗଛ, ରାସ୍ତାନାହିଁ, ଦିନଦିନ ଶେଷଦିନ, ନିରୁତାପ ବିଷ୍ଣୁକଳା, ଶୂନ୍ୟଘର, ମୂକମୈନାକ, ଅରଣ୍ୟର ଅଶ୍ରୁ ପ୍ରଭୃତି । ଇତିହାସ ପୁରାଣ ଓ କିମ୍ବଦନ୍ତୀ ସହ ଆଧୁନିକ ଜୀବନ ଚର୍ଯ୍ୟାକୁ ଯୋଡିଦେବାର ପ୍ରଚେଷ୍ଟା ତାଙ୍କର କେତେକ ଏକାଙ୍କିକାରେ ଲକ୍ଷଣୀୟ ।

ଅନୁଶାସନ ଏକାଙ୍କିକାର ପୃଷ୍ଠଭୂମି ହେଉଛି ମହାଭାରତର ଅନୁଶାସନ ପର୍ବ । ଭୀଷ୍ମ ଶରଶଯ୍ୟାରେ ଥାଇ ଯୁଧିଷ୍ଠିର ଙ୍କୁ ଅନୁଶାସନ ସମ୍ପର୍କରେ ଉପଦେଶମାନ ପ୍ରଦାନ କରିଛନ୍ତି । ଉକ୍ତ ବିଷୟଟି ପୌରାଣିକ ଚରିତ୍ର ଓ ଘଟଣା ଆଧାରିତ ହେଲେ ମଧ ଏଥିରେ ଆଧୁନିକ ମୂଲ୍ୟବୋଧର ସନ୍ଧାନ କରିଛନ୍ତି ନାଟ୍ୟକାର ।

## ଏକାଙ୍କିକାର ସାରମର୍ମ -

ଶରଶଯ୍ୟାରେ ଶାୟିତ ପିତାମହ ଭୀଷ୍ମ ଯୁଧିଷ୍ଠିର ଙ୍କୁ ଉପଦେଶ ଦେଇ ଚାଲିଛନ୍ତି । ଉଭୟଙ୍କ କଥୋପକଥନ ମଧରେ ଫ୍ଲାସ୍ ବ୍ୟାକ୍ ଟେକନିକ୍ ମାଧମରେ ଦୃଶ୍ୟଗୁଡିକ ଅଭିନୀତ ହୋଇଛି । ଭୀଷ୍ମ ଆତ୍ମଗ୍ଲାନିରେ ଜର୍ଜରିତ ହୋଇଛନ୍ତି ଯେତେବେଳେ ସେ ସ୍ମରଣ

କରିଛନ୍ତି ତାଙ୍କ ଉପସ୍ଥିତିରେ ଓ ସଭାଜନମାନଙ୍କ ଗହଣରେ କୁଳନାରୀ ଦ୍ରୌପଦୀ ଙ୍କୁ ବିବସ୍ତ୍ର କରାଯିବାର ବୃତାନ୍ତ । ଏଥିପାଇଁ ସେ ନିଜକୁ ଧିକାର କରିଛନ୍ତି । ସେହିପରି ଯୁଧିଷ୍ଠିର ମଧ୍ୟ ଦ୍ରୋଣାଚାର୍ଯ୍ୟ ଙ୍କ ନିଧନରେ ।

ଆପଣାକୁ ଦୋଷୀବୋଲି ମନେ କରିଛନ୍ତି ଓ ଧିକାର କରିଛନ୍ତି । ଗୁରୁ ଦ୍ରୋଣାଚାର୍ଯ୍ୟ କୌରବମାନଙ୍କ ପାଇଁ, ଏକଲବ୍ୟ ପାଇଁ ଏପରିକି ପାଣ୍ଡବମାନଙ୍କ ପାଇଁ ଯେଉଁ ଅନ୍ୟାୟ କରିଥିଲେ ତାହା ସ୍ଥାନପାଇଛି ଭୀଷ୍ମ ଓ ଯୁଧିଷ୍ଠିର ଙ୍କ କଥୋପକଥନ ମଧ୍ୟରେ । ଭୀଷ୍ମ ଏକାଙ୍କିକା ପରିସମାପ୍ତିରେ ଯାହା କହିଛନ୍ତି ତାହାହିଁ ପ୍ରକୃତ ସତ୍ୟ । ସେ ମତ ଦେଇଛନ୍ତି ଯେ ସବୁକ୍ଷେତ୍ରରେ ଅନ୍ୟାୟର ଭାଗହିଁ ବେଶୀ । ଯେଉଁ ଦିଗରେ ସ୍ୱାର୍ଥ ନିହିତ ସେଇ ଆଡକୁ ଗତିକରେ ବିଚାର । ପୁଣି ସ୍ୱାର୍ଥକୁ ଛାଡି ବାସ୍ତବ ପୃଥିବୀର କଳ୍ପନା କରିବା ସମ୍ଭବ ନୁହେଁ । କେହି ପ୍ରକୃତରେ ଧର୍ମ ପାଳନ କରନ୍ତି ନାହିଁ ଯଦି ଓ ସମସ୍ତେ ନିଜକୁ ବୋଲାନ୍ତି ଏ ସଂସାରରେ ଧର୍ମଧ୍ୱଜୀ ବୋଲି । ତେଣୁ ଅନୁଶାସନ ଛଳରେ ଯାହା ଭୀଷ୍ମ କହିଛନ୍ତି ତାକୁ ଭୁଲିଯିବା ପାଇଁ ସେ ଯୁଧିଷ୍ଠିର କୁ କହିଛନ୍ତି । ଅନ୍ଧକାରରେ ବୃଥା ଆଲୋକର ସନ୍ଧାନ ନକରି ମୂଲ୍ୟବୋଧକୁ ହତ୍ୟାକରି ସ୍ୱାର୍ଥରକ୍ଷା କରିବା ହେଉଛି ଆଜିର ଅନୁଶାସନ । ପୁରାଣର ପଟ୍ଟଭୂମିରେ କାଳଜୟୀ ସତ୍ୟର ଅବତାରଣା ହେଉଛି ଅନୁଶାସନ ଏକାଙ୍କିକାର ଗୌରବ ।

## ନାଟ୍ୟକାର ନୀଳାଦ୍ରି ଭୂଷଣ ହରିଚ୍ଛନ୍ଦନ ଙ୍କ
## ଏକ ଏକାଙ୍କିକା ବା ନାଟକ
## "ଅନୁଶାସନ"

(ଅନୁଶାସନ ପର୍ବ । ଶରଶଯ୍ୟାରେ ଭୀଷ୍ମ । ନିକଟରେ ଅନୁଶାସନ ଶ୍ରବଣରତ ଯୁଧିଷ୍ଠିର)

ଭୀଷ୍ମ : ତୁମେ କ୍ଳାନ୍ତି ଅନୁଭବ କରୁନାହଁ ତ ଯୁଧିଷ୍ଠିର ?

ଯୁଧିଷ୍ଠିର : କ୍ଳାନ୍ତି ? କାହିଁକି ପିତାମହ ?

ଭୀଷ୍ମ : ଏତେ ସମୟ ଅନୁଶାସନ ଶୁଣିବା ପରେ ବି ତୁମର କ୍ଳାନ୍ତି ନାହିଁ ? ଆଶ୍ଚର୍ଯ୍ୟ !

ଯୁଧିଷ୍ଠିର : ବରଂ ଆହୁରି ବେଶୀ ବେଶୀ ଆଗ୍ରହ ଜନ୍ମୁଛି ।

ଭୀଷ୍ମ : ଅନୁଶାସନ, ଉପଦେଶ - ଏ ସବୁରେ ଆଗ୍ରହ ଦେଖାଇ ନିଜକୁ ପ୍ରତାରିତ କରନାହିଁ ଯୁଧିଷ୍ଠିର ।

ଯୁଧିଷ୍ଠିର : ମୁଁ ତ ନିଜକୁ କେବେ ପ୍ରତାରଣା କରିନାହିଁ ପିତାମହ ଭୀଷ୍ମ ।

ଭୀଷ୍ମ : ତମେ ସତ୍ୟ କହୁଛ ?

ଯୁଧିଷ୍ଠିର : ସତ୍ୟ ଛଡା ତ ଅନ୍ୟ କିଛି ମୁଁ କହେ ନାହିଁ ।

ଭୀଷ୍ମ : ତୁମେ ସତ୍ୟ କହିପାର; କିନ୍ତୁ ସତ୍ୟକୁ ତୁମେ ଚିହ୍ନିପାରିଛ, ସେଥିରେ ମୋର ଘୋର ସନ୍ଦେହ ରହିଛି ।

ଯୁଧିଷ୍ଠିର : ପିତାମହ !

ଭୀଷ୍ମ : ସତ୍ୟ ବଡ ନିଷ୍ଠୁର ଯୁଧିଷ୍ଠିର । ପାହାଡ ଚୂଡାର ଶେଷ ସୂର୍ଯ୍ୟାଲୋକ ପରି ସତ୍ୟ କେତେବେଳେ ହଜିଯାଏ ଛାଇ ଆସୁଥିବା ଅନ୍ଧକାର ପରି । ମିଥ୍ୟାଟି ହିଁ ସତ୍ୟହୋଇ ଠିଆ ହୋଇଯାଏ ।

ଯୁଧିଷ୍ଠିର : ଆପଣଙ୍କ ବକ୍ତବ୍ୟ ମୁଁ ବୁଝିପାରୁ ନାହିଁ ପିତାମହ ।

ଭୀଷ୍ମ : ବୁଝିବାକୁ ଚେଷ୍ଟାକର । ପାରିବ । ଅବଶ୍ୟ ପାରିବ ।

ଯୁଧିଷ୍ଠିର : ମୁଁ ?

ଭୀଷ୍ମ : ତୁମେ ଯାହାକୁ ସତ୍ୟ ବୋଲି ମାନି ନେଇଚ, ହୃଦୟର ଅର୍ଘ୍ୟଦେଇ ପୂଜାକରି ଆସିଛ, ତାହା ପ୍ରକୃତରେ ସତ୍ୟ ନୁହେଁ ।

ଯୁଧିଷ୍ଠିର : ତା'ହେଲେ ସତ୍ୟ କ'ଣ ?

ଭୀଷ୍ମ : ତୁମ ସହିତ ଛାଇପରି ଯେଉଁ ବାସ୍ତବତାଟି ଜଡିତ ହୋଇ ରହିଛି ।

ଯୁଧିଷ୍ଠିର : ତା'ର ସ୍ୱରୂପ ?

ଭୀଷ୍ମ : ତୁମେ ଦେଖିପାରନା ତା'ର ସ୍ୱରୂପ ? ସତ କହୁଛ, ନାଁ ସୁବୋଧ ବାଳକ ପରି ଅଭିନୟ କରୁଛ ?

ଯୁଧିଷ୍ଠିର : ମୋର ତ କୌଣସି ଅପରାଧ ନାହିଁ ପିତାମହ । ଆପଣ ବିନା ଦୋଷରେ ମୋତେ ବାକ୍ୟ ବାଣରେ ବିଦ୍ଧ କରୁଛନ୍ତି ।

ଭୀଷ୍ମ : ସେଇଥିପାଇଁ ତ କହୁଛି ତୁମେ ଗୋଟିଏ ସୁବୋଧ ବାଳକ । ଗୁରୁଜନଙ୍କ ପ୍ରତି ଅସୀମ ଭକ୍ତି । ସେମାନଙ୍କର ମୁଖ ନିସୃତ ବାଣୀ ତ ତୁମପାଇଁ ଅମୃତ । ତା' ନହେଲେ ତୁମେ କ'ଣ ମୋ ପାଖକୁ ଆସିଥାନ୍ତ, ଯେ ତୁମ ସହିତ ଆଜି ପର୍ଯ୍ୟନ୍ତ ଶତ୍ରୁତା ହିଁ କରିଆସିଛି ।

ଯୁଧିଷ୍ଠିର : ଆପଣ ଶତ୍ରୁ ପକ୍ଷରେ ଥିଲେ ସତ୍ୟ, କିନ୍ତୁ ଆପଣ ଯେ ମୋର ପରମ ହିତକାଂକ୍ଷୀ, ନମସ୍ୟ ପିତାମହ । ଆପଣ ଚିରଦିନ ମୋତେ ଅନ୍ତଃକରଣରେ ଆଶୀର୍ବାଦ ଦେଇ ଆସିଛନ୍ତି । ଏହା କ'ଣ ମୁଁ ଅସ୍ୱୀକାର କରିପାରିବି ?

ଭୀଷ୍ମ : କିନ୍ତୁ ଗୋଟିଏ କଥା ଯେ ତୁମେ ସ୍ୱୀକାର କରିପାରୁ ନାହିଁ ।

ଯୁଧିଷ୍ଠିର :କ'ଣ ?

ଭୀଷ୍ମ : ଉପଦେଶ, ଆଶୀର୍ବାଦ, ଏତସବୁ ଗୁରୁଜନମାନଙ୍କର କର୍ତବ୍ୟ । ସେମାନେ କେବଳ ଆଶୀର୍ବାଦ ଦିଅନ୍ତି । ଅନ୍ତରରେ କିନ୍ତୁ ସଫଳତା ଚାହାଁନ୍ତିନି । ସେମାନେ ଯେଉଁ ଉପଦେଶ ଦିଅନ୍ତି, ତାକୁ କେତେବେଳେ ନିଜ ଜୀବନରେ ପରୀକ୍ଷା କରି ଦେଖନ୍ତିନି । ସେମାନେ ତ କୁହନ୍ତି ମୁଁ ଯାହା କହୁଛି କର, ଯାହା କରୁଛି କରନାହିଁ ।

ଯୁଧିଷ୍ଠିର :ଗୁରୁଜନମାନଙ୍କର ଆଶୀର୍ବାଦରେ ମୁଁ ତ କେବେ ଆନ୍ତରିକତାର ଅଭାବ ଲକ୍ଷ୍ୟ କରିନି ।

ଭୀଷ୍ମ : ମୁଁ କ'ଣ ତା'ହେଲେ ମିଥ୍ୟା କହୁଛି ଯୁଧିଷ୍ଠିର ?

ଯୁଧିଷ୍ଠିର :ମତେ ଭୀଷଣ ପରୀକ୍ଷାରେ ପକାଉଛନ୍ତି କାହିଁକି ପିତାମହ ..... ମୁଁ କ'ଣ ତା' କହିପାରିବି ?

ଭୀଷ୍ମ : ତା'ହେଲେ ସ୍ୱୀକାର କରୁଛ ନିଶ୍ଚୟ ।

ଯୁଧିଷ୍ଠିର :ପିତାମହ !

ଭୀଷ୍ମ : ତୁମେ କିଛି କହିପାରିବନି ମୁଁ ଜାଣେ । ତୁମର କୌଣସି ଜିଜ୍ଞାସା ନାହିଁ, ତୁମର କୌଣସି ଯୁକ୍ତିନାହିଁ । ତୁମେ ଜଣେ ଭକ୍ତି ବିହ୍ୱଳ ଶ୍ରୋତା ମାତ୍ର ।

ଯୁଧିଷ୍ଠିର :ଆପଣମାନଙ୍କ ଉପଦେଶ ଶ୍ରବଣ କରିବା ତ ମୋର ପରମ କର୍ତବ୍ୟ ।

ଭୀଷ୍ମ : ହଁ । ତୁମେ ଜଣେ ବାଧ ଅନୁଗତ ଛାତ୍ର । ତୁମପରି ପ୍ରତିକ୍ରିୟାହୀନ ମଣିଷ ତ ଛାତ୍ର ହେବାପାଇଁ ଉପଯୁକ୍ତ । ହଁ, ପୂର୍ଣ୍ଣମନ ଯୋଗଦେଇ ଆଚାର୍ଯ୍ୟମାନଙ୍କ ବକ୍ତୃତା ଶୁଣିବା ତ ତମର ପରମ ଅଭୀଷ୍ଟ ।

ଯୁଧିଷ୍ଠିର :ସେ ସବୁକୁ ବିଶ୍ୱସ୍ତ ଭାବରେ ଅନୁସରଣ କରିବା -

ଭୀଷ୍ମ : ବକ୍ତୃତା ଦେବା ତ ଆମମାନଙ୍କ ଜୀବିକା । ବକ୍ତୃତା ଦେବାରେ ଆମର କ୍ଳାନ୍ତିନାହିଁ । ଗୁରୁ ଆଉ ଗୁରୁଜନମାନଙ୍କ ବକ୍ତୃତା କେତେବେଳେ ବନ୍ଦହୁଏ, ଯେତେବେଳ ପର୍ଯ୍ୟନ୍ତ ଶ୍ରୋତାମାନଙ୍କର ଧୈର୍ଯ୍ୟଚ୍ୟୁତି ନଘଟେ ।

ଯୁଧିଷ୍ଠିର :ବଚନାମୃତ କ'ଣ କେବେ ଧୈର୍ଯ୍ୟଚ୍ୟୁତି ଘଟାଏ ?

ଭୀଷ୍ମ : ଯେତେବେଳେ ତା' ଅନ୍ତଃସାରଶୂନ୍ୟ ମନେହୁଏ, ସେତେବେଳେ ତ ପ୍ରତାରଣାପୂର୍ଣ୍ଣ ବିବେଚିତ ହୁଏ ।

ଯୁଧିଷ୍ଠିର :ଏହା କ'ଣ କେବେ ହୁଏ ?

ଭୀଷ୍ମ : ମୋର ମନେହୁଏ, ବକ୍ତୃତା ହିଁ ସେୟା । ମୋର ଆଜି କୌଣସି ସ୍ୱାର୍ଥନାହିଁ, ସେଥିପାଇଁ ଏପରି ଉପଦେଶ ପୂର୍ଣ୍ଣ ବକ୍ତୃତା ଦେବାକୁ ମୁଁ ପ୍ରଗଳ୍‌ଭ । କିନ୍ତୁ ତୁମେ ମନେ କରିପାରୁଛ, ଯେଉଁଦିନ ମୁଁ ସମ୍ପୂର୍ଣ୍ଣ ନୀରବ ଥିଲି ? ଅଥଚ ସେଦିନ କିଛି କହିବା ହିଁ ମୋର ଉଚିତ୍ ଥିଲା ।

ଯୁଧିଷ୍ଠିର :ମୁଁ ତ ସ୍ମରଣ କରିପାରୁ ନାହିଁ ।

ଭୀଷ୍ମ : ଏତେଶୀଘ୍ର ତୁମେ ସବୁ ଭୁଲିଗଲ ଯୁଧିଷ୍ଠିର ! ହଁ, ତୁମେ ଯେ ବର୍ତମାନ ରାଜଚକ୍ରବର୍ତୀ । ବିଶାଳ ଭାରତ ଭୂଖଣ୍ଡର ଏକାଧିପତି ସମ୍ରାଟ । ତୁମ ପକ୍ଷରେ ଭୁଲିଯିବା ତ ସ୍ୱାଭାବିକ । ମୁଁ କିନ୍ତୁ ଭୁଲିନାହିଁ । କଦାପି ଭୁଲିପାରିବି ନାହିଁ । ମୋତେ ପ୍ରଶ୍ନ କରାଗଲା, ମୁଁ ଉତର ଦେଇପାରିଲି ନାହିଁ । କାହିଁକି କୁହ ତ ।

ଯୁଧିଷ୍ଠିର :କାହିଁକି ?

ଭୀଷ୍ମ : ଉତର ଜଣାନଥିଲା ବୋଲି ନୁହେଁ । ମୋର ସ୍ୱାର୍ଥହାନୀର ଭୟରେ । କେବଳ ସ୍ୱାର୍ଥହାନୀର ଭୟରେ ପୃଥିବୀର ଚରମତମ ଅନ୍ୟାୟକୁ ରାଜପୁରୀର ଅଳଙ୍କୃତ ପାଷାଣ ସ୍ତମ୍ଭପରି ନିର୍ବାକ୍ ହୋଇ ସହ୍ୟ କରିଗଲି ।

(ଦୃଶ୍ୟାନ୍ତରରେ ଉଦ୍‌ଭାସିତ ହେଲା ଦ୍ରୌପଦୀ ବସ୍ତ୍ର ହରଣର ଦୃଶ୍ୟ)

ଦ୍ରୌପଦୀ : ମୋର ଗୋଟିଏ ମାତ୍ର ଅନୁରୋଧ ଦୁଃଶାସନ, ମୋର ଗୋଟିଏ ମାତ୍ର ଅନୁରୋଧ, ମୋତେ ରାଜସଭା ଭିତରକୁ ଟାଣିନିଅନି । ସମସ୍ତଙ୍କ ଆଗରେ ମୁଁ କଦାପି ଠିଆହୋଇ ପାରିବିନି ।

ଦୁଃଶାସନ : ତା'ହେଲେ ଏତେ ପରିଶ୍ରମ କ'ଣ ମିଛରେ କଲି ଦ୍ରୌପଦୀ ? ତୁମେ ବିଜିତା ହୋଇଛ । ବର୍ତମାନ ତୁମେ ଆମର ଦାସୀ । ପାଣ୍ଡବମାନଙ୍କୁ ଛାଡି ଆମକୁ ଭଜନକର । କୁରୁପତି ଦୁର୍ଯ୍ୟୋଧନ ଙ୍କ ଆଦେଶ ନେଇଆସିଛି । ବର୍ତମାନ ତାଙ୍କ ନିକଟକୁ ତୁମକୁ ନନେବା ଛଡା ତ ମୋର ଅନ୍ୟ ଉପାୟ ନାହିଁ ।

ଦ୍ରୌପଦୀ : ଦୁଃଶାସନ, ଧର୍ମ ଲଙ୍ଘନ କରନା । କୁଳବଧୂକୁ ସଭା ମଧ୍ୟରେ ପ୍ରବେଶ କରାଇ ତୁମମାନଙ୍କର ବଂଶର ଅମର୍ଯ୍ୟାଦା କରନା । ଗୋଟାଏ ଉଜ୍ଜ୍ୱଳ ପରମ୍ପରାକୁ କଳଙ୍କିତ କରନା ।

ଦୁଃଶାସନ : ମୋତେ ଏସବୁ ଉପଦେଶ ଶୁଣାଉଛ କାହିଁକି ଦ୍ରୌପଦୀ ? ଏଥିରେ ଆମର ବଂଶ କଦାପି କଳଙ୍କିତ ହେବନାହିଁ । ବରଂ ହେବ ଆହୁରି ଉଜ୍ଜ୍ୱଳ । ପୁରୁଷର ପୌରୁଷ କ'ଣ କେତେବେଳେ ହୁଏ ଅଗୌରବ ?

ଦ୍ରୌପଦୀ : ଏଇ କି ତୁମମାନଙ୍କର ପୌରୁଷ ? ଅସହାୟ ନାରୀର କେଶାକର୍ଷଣ କରି ସର୍ବ ସମ୍ମୁଖରେ ଲାଞ୍ଛିତ କରିବା -

ଦୁଃଶାସନ : ତୁମେ ଅସହାୟ କାହିଁକି ହେବ ଦ୍ରୌପଦୀ ? ବର୍ତମାନ ତ ତୁମେ ପ୍ରତାପୀ କୌରବମାନଙ୍କର ପ୍ରାଣର ପ୍ରିୟତମା ।

ଦ୍ରୌପଦୀ : ଏପରି ଜଘନ୍ୟ ପାପକୁ ଉଚ୍ଚାରଣ କରିବା ପାଇଁ କୌଣସି ଦ୍ୱିଧାହୁଏ ନାହିଁ ତୁମର ? ତୁମେ ନା କ୍ଷତ୍ରୀୟ ? ତୁମର ଲଜ୍ଜା ହୁଏନାହିଁ ? ତୁମେ କ'ଣ ଭାବିପାରୁ ନାହଁ, ତୁମର ଏ କାର୍ଯ୍ୟରେ ସମଗ୍ର କ୍ଷତ୍ରୀୟ କୁଳର ହେବ ଚରମ ଅପମାନ !

ଦୁଃଶାସନ : ମାନ ଅପମାନ ମୋତେ ଶିଖାଅନା ଦ୍ରୌପଦୀ । ମୋତେ ମୋର କର୍ତ୍ତବ୍ୟ କରିବାକୁ ଦିଅ ।

ଦ୍ରୌପଦୀ : ଏଇ ତୁମର କର୍ତ୍ତବ୍ୟ ? ବୀରର କର୍ତ୍ତବ୍ୟ ? ସକଳ ନୀତିକୁ ବିସର୍ଜନ ଦେଇ -

ଦୁଃଶାସନ : ଅନେକ ହୋଇଛି ଦ୍ରୌପଦୀ । ମୁଁ ଆଉ ଗୋଟିଏ କଥା ବି ଶୁଣିବାକୁ ପ୍ରସ୍ତୁତ ନୁହେଁ ।

ଦ୍ରୌପଦୀ : ଦୁଃଶାସନ ! ତୁମେ କ'ଣ ପାଷାଣ ? ମୋର କାତର ଅନୁରୋଧ ତୁମ ହୃଦୟରେ ସାମାନ୍ୟ ମାତ୍ର ତରଙ୍ଗ ସୃଷ୍ଟି କରିପାରୁନି । ତୁମେ ଯାହା ହୁଅ ପଛେ ଦୁଃଶାସନ, ଶେଷଥର ପାଇଁ ମୋର ପ୍ରାର୍ଥନା; ମୁଁ ଏକବସ୍ତ୍ରା । ମୋତେ ଛାଡିଦିଅ .....

ଦୁଃଶାସନ : ନିଜକୁ ଆଉ ହାସ୍ୟାସ୍ପଦ କରନା । ତୁମେ ଏକବସ୍ତ୍ରା ହୁଅ କି ବିବସ୍ତ୍ରା ହୁଅ ସେ କଥା ମୋ ପାଇଁ ଅର୍ଥହୀନ । ଆସ ଚାଲିଆସ ।

ଦ୍ରୌପଦୀ : ଉଃ, ନିଷ୍ଠୁର !

ଦୁଃଶାସନ : କୁରୁପତି ! ଆପଣଙ୍କ ଆଦେଶରେ ଏ ଦାସୀକୁ ସଭା ମଧ୍ୟରେ ଉପସ୍ଥିତ କରାଇଲି ବର୍ତ୍ତମାନ ମୋର କର୍ତ୍ତବ୍ୟ ?

ଦୁର୍ଯ୍ୟୋଧନ : ଅପେକ୍ଷା କର ଦୁଃଶାସନ । ପ୍ରଥମେ ସଭାସଦ୍ ବର୍ଗ ଆମର ଏ ଦାସୀର ସୌନ୍ଦର୍ଯ୍ୟ ଉପଭୋଗ କରନ୍ତୁ ।

ଦୁଃଶାସନ : ହାଃ, ହାଃ, ଦେଖିଲ ଦ୍ରୌପଦୀ । କୌରବ ରାଜସଭାରେ ତୁମର କେତେ ସମ୍ମାନ ।

ଦ୍ରୌପଦୀ : ଦୁଃଶାସନ : ତୁମେମାନେ ଯେଉଁ ଜଘନ୍ୟ ପାପ କରୁଛ, ଏ ପୃଥିବୀରେ ତା'ର କ୍ଷମାନାହିଁ । ଇନ୍ଦ୍ରାଦି ଦେବଗଣ ତୁମର ସହାୟ ହେଲେ ବି ପାଣ୍ଡବମାନେ ତୁମକୁ ନିଶ୍ଚୟ ନିଧନ କରିବେ ।

ଦୁଃଶାସନ : ଓଃ - ଆମର ଭୃତ୍ୟମାନେ ଆମକୁ ନିଧନ କରିବେ, ନାଁ ?

ଦ୍ରୌପଦୀ : ନିଜକୁ ଏତେ ଶକ୍ତିଶାଳୀ ମନେ କରନା ଦୁଃଶାସନ । ଅବସ୍ଥାଚକ୍ରରେ ଆଜି ଆମର ଏ ବିପର୍ଯ୍ୟୟ । ତେଣୁ ତମେ ଉପହାସ କରିବାକୁ ସାହସ କରୁଛ । ନହେଲେ -

ଦୁଃଶାସନ : ନହେଲେ କ'ଣ କରିଥାନ୍ତ ? ଓଃ, ବର୍ତ୍ତମାନ ଯେ ତୁମେ ଆମର କୁରୁ ସମ୍ରାଟଙ୍କ ଅଙ୍କଶାୟିନୀ ହେବାକୁ ଯାଉଛ । ମୋର ତ ସତକୁ ସତ ତୁମକୁ ଭୟ କରିବା ଉଚିତ୍ ।

ଦ୍ରୌପଦୀ : ଗୋଟାଏ ବର୍ବର ସହିତ କଥା କହିବାକୁ ମୁଁ ଘୃଣାକରେ । (ନୀରବ) କିନ୍ତୁ ଏ କ'ଣ ? ମୋର ଚରମ ଲାଞ୍ଛନା ଦେଖି କୁରୁ ବୃଦ୍ଧଗଣ ନୀରବ କାହିଁକି ? ଭୀଷ୍ମ, ଦ୍ରୋଣ, ବିଦୂର, ରାଜା ଧୃତରାଷ୍ଟ୍ର ସମସ୍ତେ ତ ନିର୍ଜୀବ ପୁତଳିକା ପରି ବସିଛନ୍ତି । କେହି କିଛି କହୁନାହାଁନ୍ତି ।

ଦୁର୍ଯ୍ୟୋଧନ : କିଏ କହିବ ? ତୁମକୁ ଯେ ମୋ ଆଦେଶରେ ଏଠାକୁ ଅଣାଯାଇଛି । ଏକଥା କ'ଣ ସମସ୍ତେ ଜାଣନ୍ତିନି ବୋଲି ମନେ କରୁଛ ? ତା'ଛଡା ଗୋଟାଏ ଦାସୀ ପାଇଁ ସମ୍ଭ୍ରାନ୍ତ ଲୋକମାନଙ୍କର କ'ଣ କେବେ ମୁହଁ ଖୋଲେ ?

ଦ୍ରୌପଦୀ : କୁରୁ ବୃଦ୍ଧଗଣ ! ଆପଣମାନେ ମୋର ଗୁରୁଜନ, ମାନନୀୟ । ମୁଁ ଭାବିପାରୁ ନାହିଁ, ଏ ଦାରୁଣ ଅଧର୍ମାଚାର ଦେଖି ଆପଣମାନେ କିପରି ନୀରବରେ ବସିଛନ୍ତି ? ଆପଣମାନେ ନୀତିଶାସ୍ତ୍ରବତା ହୋଇ ମଧ୍ୟ ଏ ଚରମ ଅନ୍ୟାୟକୁ କିପରି ସହ୍ୟକରି ଯାଉଛନ୍ତି ? ଭାରତ ବଂଶର ଧର୍ମ ଓ ମର୍ଯ୍ୟାଦା କ'ଣ ଆଜିଠାରୁ ଶେଷ ହୋଇଗଲା ?

ଦୁଃଶାସନ : ଦାସୀ ପୁଣି ଶୁଣାଉଛି ଧର୍ମ ଓ ମର୍ଯ୍ୟାଦାର କଥା । ହାଃ, ହାଃ -

ଦ୍ରୌପଦୀ : ସମସ୍ତେ ନୀରବ ଯେ ଆପଣମାନେ କ'ଣ ପ୍ରତିଜ୍ଞା କରିଛନ୍ତି କିଛି କହିବେନି ବୋଲି ? ନାରୀ ଜାତିର ଚରମ ଲାଞ୍ଛନା ଦେଖି ଆପଣମାନଙ୍କ ବିବେକ କ'ଣ କୌଣସି ପ୍ରତିକ୍ରିୟା ସୃଷ୍ଟି କରୁନାହିଁ ? ଆପଣମାନଙ୍କ ବିବେକ କ'ଣ ଚିରଦିନ ପାଇଁ ଅବଲୁପ୍ତ ହୋଇଯାଇଛି ? ହଁ, ହେବନାହିଁ ? ଆପଣମାନଙ୍କର ପୁଣି ଭିନ୍ନ ଧର୍ମ କ'ଣ ଅଛି ? ଏଇ ପାପିଷ୍ଠ ପ୍ରଭୁର ଇଚ୍ଛା ପାଳନ କରିବା ତ ଆପଣମାନଙ୍କର ଧର୍ମ ।

ଭୀଷ୍ମ : କଲ୍ୟାଣୀ, ଏ କ୍ଷେତ୍ରରେ ଆମେ କ'ଣ କହିପାରିବୁ ? ଆମେମାନେ ଯେ ଅନ୍ନଦାସ । କିପରି ବୁଝାଇବୁ ଧର୍ମ କ'ଣ ? ଧର୍ମର ତତ୍ତ୍ୱ ଯେ ଅତି ସୂକ୍ଷ୍ମ । ଏଇ ଧର୍ମ ଯୋଗୁଁ ହିଁ ତୁମର ଏ ନିର୍ଯ୍ୟାତନା - ଯୁଧିଷ୍ଠିର ସର୍ବସ୍ୱ ତ୍ୟାଗ କରିଛନ୍ତି ସତ୍ୟ, କିନ୍ତୁ ଏପର୍ଯ୍ୟନ୍ତ ଧର୍ମକୁ ଛାଡିନାହାଁନ୍ତି । ଧର୍ମ ପାଶରେ ଆବଦ୍ଧ ହୋଇ ସେ ଦ୍ୟୁତକ୍ରୀଡା କରିଛନ୍ତି । ବର୍ତ୍ତମାନ ସେଇ ଧର୍ମକୁ ଆନ୍ତରିକତାର ସହିତ ପାଳନକରି ଚାଲିଛନ୍ତି । ଏଇକଥା ଭାବି ତୁମେ ଆଉ ବ୍ୟସ୍ତ ହୁଅନାହିଁ ।

ଦ୍ରୌପଦୀ : ପିତାମହ ! ଆପଣଙ୍କର ଏ ଉତର ଶୁଣି ମୋର ହୃଦୟ ବିଦୀର୍ଣ୍ଣ ହୋଇଯାଉଛି । ଆପଣମାନେ ମୋର ଗୁରୁଜନ, ମୋର ନମସ୍ୟ ତେବେ ବି ଆପଣମାନଙ୍କର ଏ ବିଚାରକୁ ଧନ୍ୟ କହିବାକୁ ଇଚ୍ଛାହୁଏ ।

ଦୁର୍ଯ୍ୟୋଧନ : କାହିଁକି ଆଉ ଅକାରଣେ ଚିତ୍କାର କରୁଛ ଦ୍ରୌପଦୀ ? କିଏ ଶୁଣିବ ତୁମର ଏ ଚିତ୍କାର ?

ଦ୍ରୌପଦୀ : ଆଚ୍ଛା, ସଭାଜନମାନଙ୍କୁ ମୁଁ ଗୋଟିଏ ପ୍ରଶ୍ନ କରିପାରେ ?

ଦୁର୍ଯ୍ୟୋଧନ : ଗୋଟିଏ କାହିଁକି ଦଶଟା କରିପାର ।

ଦ୍ରୌପଦୀ : ମୁଁ ଜାଣେ, ଯୁଧିଷ୍ଠିର ସ୍ୱେଚ୍ଛାରେ ଦ୍ୟୁତକ୍ରୀଡାରେ ଆସିନାହାଁନ୍ତି । ଏଇ ଧୂର୍ତ୍ତ ଦୁଷ୍ଟ ଲୋକମାନେ କପଟତା କରି ତାଙ୍କୁ ସଭାକୁ ଡାକି ଆଣିଛନ୍ତି । ମୁଁ ବର୍ତମାନ ଜାଣିବାକୁ ଚାହୁଁଛି, ମୋତେ ହରାଇବା ପୂର୍ବରୁ ଯୁଧିଷ୍ଠିର ନିଜେ ବିଜିତ ହୋଇଥିଲେ କି ନାଁ ? ଯଦି ବିଜିତ ହୋଇଥାନ୍ତି ତେବେ ମୋତେ ପଣ ରଖିବା ସମୟରେ ମୋ ଉପରେ ତାଙ୍କର ଅଧିକାର ଥିଲା ତ ? (ସମସ୍ତେ ନୀରବ) ନୀରବ କାହିଁକି ? ମୁଁ ଆପଣମାନଙ୍କ ଠାରୁ ସୁବିଚାର ଚାହେଁ, କୁହନ୍ତୁ ମୁଁ ବିଜିତା ହୋଇଛି କି ନାଁ ? (ସମସ୍ତେ ନୀରବ)

ଦ୍ରୌପଦୀ : ପଥର ପରି ସମସ୍ତେ ନୀରବ, ନିଶ୍ଚଳ । ଆପଣମାନଙ୍କର ଏ ନୀରବତା ଦେଖି ମୋର କିନ୍ତୁ ଦୟାହୁଏ । ଏଇ ମୁହୂର୍ତରେ ମୁଁ ହୁଏତ ପୃଥିବୀର ସବୁଠାରୁ ଅସହାୟା ନାରୀ । କିନ୍ତୁ ମୋ ଅପେକ୍ଷା ଆପଣମାନେ ଯେ ଆହୁରି ବେଶୀ ଅସହାୟ । ସତ୍ୟ କ'ଣ ତାହା ଆପଣମାନେ ହୃଦୟଙ୍ଗମ କରିଛନ୍ତି ନିଶ୍ଚୟ । ସତ୍ୟକୁ ଜାଣି ମଧ ଆପଣମାନେ ସତ୍ୟକୁ ନ ଜାଣିବାର ଛଳନା କରିଛନ୍ତି । ଆପଣମାନେ ଯୂପବନ୍ଧ ପଶୁପରି ଭୀରୁ, କାପୁରୁଷ । ସତ୍ୟକୁ ସ୍ୱୀକାର କରିବାର ସାହସ ଆପଣମାନଙ୍କର ନାହିଁ ।

ଭୀମ : ସଭା ମଧରେ ଦ୍ରୌପଦୀର ଏ ଅପମାନ ମୁଁ କଦାପି ସହ୍ୟ କରିପାରିବି ନାହିଁ । ମୁଁ କୌରବଗଣଙ୍କୁ ଧ୍ୱଂସ କରିବି । ମହାରାଜ ଯୁଧିଷ୍ଠିର ମୋତେ ଆଦେଶ ଦିଅନ୍ତୁ ।

ଦୁଃଶାସନ : ଦାସହୋଇ ପ୍ରଭୁମାନଙ୍କ ସମ୍ମୁଖରେ ଏପରି ଚିତ୍କାର କରିବା ଶୋଭନୀୟ ନୁହେଁ ଭୀମ ।

ଭୀମ : ଏ କ'ଣ ? ଆପଣ ଆଦେଶ ଦେଉନାହାଁନ୍ତି କାହିଁକି ? ପାପିଷ୍ଠ ଶତ୍ରୁମାନଙ୍କର ଏପ୍ରକାର କଟୂକ୍ତି ଆପଣ ନୀରବରେ ସହ୍ୟକରି ଯାଉଛନ୍ତି ?

ଯୁଧିଷ୍ଠିର :ଦ୍ୟୁତକ୍ରୀଡାରେ ମୁଁ ମୋର ରାଜ୍ୟର ଧନ ସମ୍ପଦ ସବୁ ହରାଇଛି । ମୋତେ ଏବଂ ମୋର ଭାଇମାନଙ୍କୁ ହରାଇଛି । ଧର୍ମପତ୍ନୀକୁ ମଧ ହରାଇଛି । ବର୍ତମାନ ମୁଁ ସତ୍ୟ ଲଙ୍ଘନ କରିବି କିପରି ?

ଭୀମ : ଦ୍ୟୁତକ୍ରୀଡାରେ କେହି ବେଶ୍ୟାକୁ ମଧ ପଣରଖନ୍ତି ନାହିଁ । କିନ୍ତୁ ଆପଣ ପାଣ୍ଡବମାନଙ୍କର ଧର୍ମପତ୍ନୀକୁ ପଣ ରଖିଛନ୍ତି । ବିନା ଅପରାଧରେ ସେ ଆଜି ଆମ ସମ୍ମୁଖରେ ଲାଞ୍ଛିତା । ଏଥିରେ କ'ଣ ଆମର କର୍ତବ୍ୟ ନାହିଁ ?

ଯୁଧିଷ୍ଠିର :ଶାନ୍ତ ହୁଅ । କୌଣସି କର୍ତବ୍ୟ ନାହିଁ ଭୀମ ।

ଭୀମ : ନାଁ, ଆପଣ ଏତେ ନିଷ୍ଠୁର ହୁଅନ୍ତୁ ନାହିଁ । ଏହି ଶଠ ଦ୍ୟୁତମାନଙ୍କ ମୁହଁକୁ ମୁଁ ଚୂର୍ଣ୍ଣୀଭୂତ କରିବି ।

ଯୁଧିଷ୍ଠିର :ଧର୍ମରକ୍ଷା ଯେ ଆମର ପ୍ରଥମ କର୍ତବ୍ୟ ।

ଭୀମ : ଧର୍ମରକ୍ଷା ନାଁରେ ଆପଣ ଯେ ଚିରଦିନ ଆମମାନଙ୍କୁ ମରଣାନ୍ତକ ମାନସିକ ଯନ୍ତ୍ରଣା ଦେଇ ଚାଲିଛନ୍ତି । ଆମମାନଙ୍କର ଆନୁଗତ୍ୟର ସୁଯୋଗରେ ଆମ ଉପରେ ଅତ୍ୟାଚାର କରି ଚାଲିଛନ୍ତି ।

ଯୁଧିଷ୍ଠିର :ଭୀମ ! ଏ କ'ଣ କହୁଛ ଭୀମ । ତୁମମାନଙ୍କ ଉପରେ ମୁଁ ଅତ୍ୟାଚାର କରୁଛି ?

ଭୀମ : ହଁ ନିଶ୍ଚୟ ?

ଯୁଧିଷ୍ଠିର :ଏକଥା କହିପାରିଲ ଭୀମ ? ତୁମେ କ'ଣ ଚିହ୍ନିପାରିନ ମୋର ହୃଦୟ ?

ଭୀମ : ଆଜି ମୁଁ କୌଣସି କଥା ଶୁଣିବାକୁ ଚାହେଁନା । ଆପଣ ଯେଉଁ ହାତରେ ଦ୍ୟୁତକ୍ରୀଡା କରି ଆମର ଏ ସର୍ବନାଶ ଡାକି ଆଣିଛନ୍ତି, ଆମମାନଙ୍କୁ ଶୃଙ୍ଖଳିତ କରିଛନ୍ତି ମୁଁ ସେ ହାତକୁ ଦଗ୍ଧ କରିବି ।

ଦ୍ରୌପଦୀ : ଶାନ୍ତ ହୁଅନ୍ତୁ ଭୀମସେନ । ମୋର ଚରମ ଦୁର୍ଭାଗ୍ୟ । ତା' ନହେଲେ ଭୁବନ ବିଜୟୀ ପଚ୍ଚଂପାଣ୍ଡବଙ୍କୁ ସ୍ୱାମୀ ରୂପେ ପାଇ ମୋତେ ଏ ଦଶା ଭୋଗିବାକୁ ପଡିନଥାନ୍ତା । ମୋର ସତ୍ୟବଦ୍ଧ ସ୍ୱାମୀମାନେ ଆଜି ଫାଶବଦ୍ଧ ସିଂହପରି ଶକ୍ତିହୀନ । ନୀରବରେ ସେମାନେ ଦେଖି ଚାଲିଛନ୍ତି ଜଣେ ଅସହାୟ ଅଗ୍ରହଣୀୟା ନାରୀର ନିର୍ଯ୍ୟାତନା ।

ବିକର୍ଣ୍ଣ : ମୁଁ ରାଜ ସଭାର ସମସ୍ତ ସୁଧୀବର୍ଗଙ୍କୁ ପ୍ରଶ୍ନ କରୁଛି -

ଦୁର୍ଯ୍ୟୋଧନ : କ'ଣ ପ୍ରଶ୍ନ କରିବ ବିକର୍ଣ୍ଣ ?

ବିକର୍ଣ୍ଣ : ପାଚାଂଳୀ ଯେଉଁ ପ୍ରଶ୍ନ କରିଛନ୍ତି ଆପଣମାନେ ତା'ର ଯଥାଯଥ ଉତର ଦିଅନ୍ତୁ । କୌଣସି ଉତର ନଦେଇ ନୀରବରେ ବସିଛନ୍ତି କାହିଁକି ? କୁଳବୃଦ୍ଧ ଭୀଷ୍ମ, ମହାରାଜ ଧୃତରାଷ୍ଟ୍ର, ମହାମତି ବିଦୂର, ଆଚାର୍ଯ୍ୟ ଦ୍ରୋଣ, ଆଚାର୍ଯ୍ୟ କୃପା - ଆପଣମାନେ ଯଦି ଏହାର ସୁବିଚାର ନକରନ୍ତି ତେବେ ଆମ ସମସ୍ତଙ୍କର ନରକଗତି ହେବ । (ସମସ୍ତେ ନୀରବ)

ବିକର୍ଣ୍ଣ : ପୁଣି ନୀରବତା । ଆପଣମାନଙ୍କ ମନରେ ଏ ପ୍ରଶ୍ନ ନିଶ୍ଚୟ ଆଲୋଡନ ସୃଷ୍ଟି କରିଛି । ଆପଣମାନେ କିଛି କହିବେ କହିବେ ବୋଲି ଭାବୁଛନ୍ତି, କିନ୍ତୁ କିଛି କହିପାରୁ ନାହାଁନ୍ତି । ମୁଁ ଜାଣେ କାହା ଭୟରେ ଆପଣମାନଙ୍କର ଏ ଦଶା । ନିଜର ଭବିଷ୍ୟତ ନିରପତା ହିଁ ଆଜି ବଡ ହୋଇ ଉଠିଛି । ସେଥିପାଇଁ ତ ଆପଣମାନେ ବିବେକକୁ ବିସର୍ଜନ ଦେଇ ପାରିଛନ୍ତି । ଏହି ଆପଣଙ୍କର ପୌରୁଷ ?

ଦୁର୍ଯ୍ୟୋଧନ : ବିକର୍ଣ୍ଣ ! ତୁମେ ବାଳକ । ଏ ଭିତରେ ତୁମେ ମୁଣ୍ଡ ଭର୍ତି କରୁଛ କାହିଁକି ? ଗୁରୁଜନମାନଙ୍କୁ ଅପମାନିତ କରିବା ତୁମ ପକ୍ଷରେ ଅନୁଚିତ୍ । ତୁମର ପରିସର ଲଙ୍ଘନକରି ମୋତେ ଉତେଜିତ କରନାହିଁ ।

ବିକର୍ଣ୍ଣ : ମୁଁ ତ କାହା ବିରୁଦ୍ଧରେ କିଛି କହିନାହିଁ । ଯାହା ନ୍ୟାୟ ମନେକରିଛି, ତାହାହିଁ କହୁଛି । କେହି ଯେତେବେଳେ ଉତର ଦେଉନାହାଁନ୍ତି, ମୋତେ ତ କିଛି କହିବାକୁ ହେବ ।

ଦୁର୍ଯ୍ୟୋଧନ : କିଏ କହିଛି ତୁମକୁ କିଛି କହିବାକୁ ?

ବିକର୍ଣ୍ଣ : ବିବେକକୁ ଲଙ୍ଘନକରି ମୁଁ ନୀରବ ରହିପାରୁ ନାହିଁ । ଶୁଣନ୍ତୁ ଆପଣମାନେ, ସମସ୍ତେ ଜାଣନ୍ତି, ବ୍ୟସନାକ୍ତ ବ୍ୟକ୍ତି ଧର୍ମରୁ ବିଚ୍ୟୁତ ହୁଏ । ଏହି ସମୟରେ ତା'ର କାର୍ଯ୍ୟଗୁଡିକ ଅକାର୍ଯ୍ୟ ବୋଲି ବିବେଚିତ । ତେଣୁ ଦ୍ୟୁତକ୍ରୀଡାରେ ବ୍ୟସନାକ୍ତ ହୋଇ ଯୁଧିଷ୍ଠିର ଯେଉଁ ପଣ ରଖିଛନ୍ତି, ତାହା ଅକାର୍ଯ୍ୟ, ଧର୍ମ ବିରୋଧୀ । ଦ୍ୱିତୀୟତଃ ଦ୍ରୌପଦୀ ପଚୁଂ ପାଣ୍ଡବଙ୍କ ପତ୍ନୀ । ଏକା ଯୁଧିଷ୍ଠିର ତାଙ୍କୁ ପଣ ରଖିପାରିବେ ନାହିଁ । ତୃତୀୟତଃ ଯୁଧିଷ୍ଠିର ନିଜେ ବିଜିତ ହେବାପରେ ଦ୍ରୌପଦୀ ଙ୍କୁ ପଣ ରଖିଛନ୍ତି । ସେତେବେଳେ ଦ୍ରୌପଦୀ ଙ୍କ ଉପରେ ତାଙ୍କର କୌଣସି ଅଧିକାର ନଥିଲା । ବର୍ତମାନ ଆପଣମାନେ ବିଚାର କରନ୍ତୁ, ଦ୍ରୌପଦୀ ବିଜିତା ହୋଇଛନ୍ତି କି ନାଁ ?

ଦୁର୍ଯ୍ୟୋଧନ : ଆଉ ନିର୍ବୋଧତା କରନା । ତୁମେ କ'ଣ ବୁଝିପାରୁ ନାହଁ ଯେ ଦ୍ରୌପଦୀ ବିଜିତା ବୋଲି ସଭାସଦ୍‌ମାନେ ମୌନ ସମ୍ମତି ଜଣାଉଛନ୍ତି । ଯୁଧିଷ୍ଠିର ଯେଉଁ ସର୍ବସ୍ୱ ପଣ କରିଛନ୍ତି, ସେଥିରେ ଦ୍ରୌପଦୀ ଅନ୍ତର୍ଭୁକ୍ତା । ଦ୍ରୌପଦୀ ଙ୍କୁ ପଣ ରଖିବା ସମୟରେ ତ କୌଣସି ପାଣ୍ଡବ ଆପତି କରିନଥିଲେ । ପୁଣି ପଚଂପତିର ପତ୍ନୀ ବାରାଙ୍ଗନା ଛଡା ଆଉ କ'ଣ ହୋଇପାରେ ? ବର୍ତମାନ ପାଣ୍ଡବମାନଙ୍କ ସହିତ ଦ୍ରୌପଦୀ ବିଜିତା । ଏଥିରେ କୌଣସି ସନ୍ଦେହ ଅଛି ? ଦୁଃଶାସନ ଆଉ ବିଳମ୍ବ କରନାହିଁ । ତୁମେ ବର୍ତମାନ ପାଣ୍ଡବମାନଙ୍କର ଓ ଦ୍ରୌପଦୀ ର ବସ୍ତ୍ର ହରଣ କର ।

ଯୁଧିଷ୍ଠିର : ଏଇ ନେଇଯାଅ ଆମମାନଙ୍କର ବସ୍ତ୍ର । ଆମେ ଫୋପାଡି ଦେଉଛୁ ।

ଦୁଃଶାସନ : ଦ୍ରୌପଦୀ, ତୁମେ ତ ବସ୍ତ୍ର ଫୋପାଡିଲ ନାହିଁ । ତା'ହେଲେ ମୁଁ ତୁମକୁ ବିବସ୍ତ୍ର କରିବି ।

ଦ୍ରୌପଦୀ : ପାପିଷ୍ଠ, ଆଉ ଅଗ୍ରସର ହୁଅନାହିଁ । ଶେଷଥର ପାଇଁ କହି ରଖୁଛି, ତୁମର ଏଇ ଦୁଷ୍କୃତିକୁ ପାଣ୍ଡବମାନେ କଦାପି କ୍ଷମା କରିବେ ନାହିଁ ।

ଦୁଃଶାସନ : ଆଚ୍ଛା ! ଏଇ ବିବସ୍ତ୍ର କଲି ।

ଦ୍ରୌପଦୀ : ଓଃ, ଛାଡିଦିଅ । ଛାଡିଦିଅ କହୁଛି ।

ଦୁଃଶାସନ : କାହିଁ କେହିତ କିଛି କହୁନାହାଁନ୍ତି । ଦାସଦାସୀମାନଙ୍କ ଉପରେ ଅତ୍ୟାଚାର କରିବା ତ ଆମର ନ୍ୟାଯ୍ୟ ଅଧିକାର । ଆମର ବିଳାସ ।

ଦ୍ରୌପଦୀ : ହେ କେଶବ, ରକ୍ଷାକର ପ୍ରଭୁ । ଏ ନିରାଶ୍ରୟାର ତୁମେ ହିଁ କେବଳ ସହାୟ । ତୁମଛଡା ଏ ବିପଦରୁ ମୋତେ ରକ୍ଷା କରିବାକୁ କେହିନାହିଁ ପ୍ରଭୁ, କେହିନାହିଁ ।

ଦୁଃଶାସନ : ଆଶ୍ଚର୍ଯ୍ୟ, ଏ କି ମାୟା କେଉଁଠୁ ଆସୁଛି ରାଶି ରାଶି ବସ୍ତ୍ର । ଏ ଯେ ବସ୍ତ୍ରର ଗୋଟାଏ ପାହାଡ ହୋଇଯାଇଛି ତେବେ ବି ବସ୍ତ୍ରର ଶେଷନାହିଁ । ମୁଁ ଯେ କ୍ଲାନ୍ତି ଅନୁଭବ କରୁଛି ।

ଭୀମ : ମୁଁ ଆଜି ସର୍ବ ସମକ୍ଷରେ ପ୍ରତିଜ୍ଞା କରୁଛି । ମୁଁ ଯଦି ଏ ଅପମାନର ପ୍ରତିଶୋଧ ନ ନେଇପାରେ, ଏହି ନରାଧମ ଦୁଃଶାସନ ର ବକ୍ଷ ବିଦୀର୍ଣ୍ଣ କରି ରକ୍ତପାନ ନ କରିପାରେ, ତେବେ ମୋର ଗତିନାହିଁ ।

ଦ୍ରୌପଦୀ : ପ୍ରଭୁ ଦୟାମୟ । କରୁଣାସାଗର ।

ଭୀଷ୍ମ : କଲ୍ୟାଣି ! ଦେଖ ଭଗବାନ ଶ୍ରୀକୃଷ୍ଣ ଙ୍କ କରୁଣାରେ ତୁମର କେହି କ୍ଷତି କରିପାରି ନାହାଁନ୍ତି । ଧର୍ମର ତତ୍ୱ ଅତି ଦୁର୍ବୋଧ । ତେଣୁ ମୁଁ ଉତର ଦେଇପାରୁ ନାହିଁ । ତୁମେ କିନ୍ତୁ କିଛି ମନେକରନା । ଏ ପ୍ରଶ୍ନର ଉତର କେବଳ ଦେଇପାରନ୍ତି ଏକମାତ୍ର ଯୁଧିଷ୍ଠିର ।

ଦୁର୍ଯ୍ୟୋଧନ : ଦ୍ରୌପଦୀ ! ତୁମ ଦାସୀତ୍ୱ ମୋଚନର ଗୋଟିଏ ମାତ୍ର ଉପାୟ ମୁଁ ଦେଖିପାରୁଛି । ଭୀଷ୍ମ, ଅର୍ଜୁନ, ନକୁଳ, ସହଦେବ ସମସ୍ତେ କହନ୍ତୁ, ଯୁଧିଷ୍ଠିର ହିଁ ସ୍ୱୀକାର କରନ୍ତୁ ।

ଦ୍ରୌପଦୀ : ହା' ଧର୍ମ !

ଭୀମ : ଧର୍ମରାଜ ଯୁଧିଷ୍ଠିରଙ୍କର ପ୍ରଭୁତ୍ୱ ସ୍ୱୀକାର କରି ଆଜି ଆମେମାନେ ନିରୁପାୟ । ତା'ନହେଲେ ଆଜି ପାପିଷ୍ଠ କୌରବମାନଙ୍କୁ ମୁଁ ବିନାଶ କରିଥାନ୍ତି । ଯୁଧିଷ୍ଠିର ଙ୍କର ଆଦେଶ ଥିଲେ ଚପେଟ ଘାତରେ ପାପୀମାନଙ୍କୁ ଧରାଶାୟୀ କରି ଦେଇଥାନ୍ତି । ମୁଁ ବୁଝିପାରୁନି, ଶକ୍ତିଧର ହୋଇ ଶକ୍ତିହୀନ ପରି କାହିଁକି ମୁଁ ଅଭିନୟ କରିଚାଲିଛି ।

ଦୁଃଶାସନ : ବୃଥା ଅସ୍ଫାଳନ କରନାହିଁ ଭୀମ । ତୁମମାନଙ୍କ ଜ୍ୟେଷ୍ଠ ଭ୍ରାତାଙ୍କୁ ସତ୍ୟଭ୍ରଷ୍ଟ କରନାହିଁ ।

ଦୁର୍ଯ୍ୟୋଧନ : ଦ୍ରୌପଦୀ ବୁଝିଲ ତ, ତମ ପ୍ରଶ୍ନର କୌଣସି ଉତର ନାହିଁ । ତୁମେ କ'ଣ ଭାବିପାରୁଛ ଯେ ତୁମର ଏଠି କେହି ସହାୟ ଅଛନ୍ତି ? ତୁମେ ଯେଉଁମାନଙ୍କୁ ସ୍ୱାମୀବୋଲି ମାନିଆସିଛ ସେମାନଙ୍କର ସ୍ୱରୂପ ଦେଖିଲ ତ ! ବର୍ତମାନ ମୋତେ ହିଁ ଭଜନକର । ମୋର ମନୋହାରିଣୀ ହୋଇ ଐଶ୍ୱର୍ଯ୍ୟ ଭୋଗକର । ଏଇଦେଖ କି ସୁନ୍ଦର କଦଳୀ କାଣ୍ଡତୁଲ୍ୟ ମୋର ଉରୁ । ଚାହିଁଦେଖ ।

ଭୀମ : ତୁମ ପାପର ଶେଷନାହିଁ ଦୁର୍ଯ୍ୟୋଧନ । ତୁମର ଏଇ ହୀନ ଆଚରଣ ପ୍ରତିଶୋଧ ମୁଁ ନିଶ୍ଚୟ ନେବି । ଯୁଦ୍ଧ କ୍ଷେତ୍ରରେ ତୁମର ଏଇ ବାମ ଉରୁକୁ ଯଦି ମୁଁ ଭାଙ୍ଗିନପାରେ, ତା'ହେଲେ ମୋର ପିତୃଲୋକରେ ଗତିନାହିଁ । (ଦୃଶ୍ୟପଟ୍ଟ ପରିବର୍ତ୍ତିତ ହୋଇଛି । ଭୀଷ୍ମ ଯୁଧିଷ୍ଠିର କୁ କହି ଚାଲିଛନ୍ତି) ।

ଭୀଷ୍ମ : ମନେ କରିପାରୁଛ ଯୁଧିଷ୍ଠିର, ସେଦିନ କୁରୁ ସଭାରେ ଯେଉଁ ହୃଦୟ ବିଦାରକ ନାଟକଟି, ଅଭିନୀତ ହୋଇଗଲା ।

ଯୁଧିଷ୍ଠିର :ଆଉ ସେସବୁ ଭାବି ଲାଭ କ'ଣ ? ବର୍ତ୍ତମାନ ତ ଆମେ ସେ ଅପମାନର ପ୍ରତିଶୋଧ ନେଇସାରିଛୁ । ଗୋଟିଏ ଆନନ୍ଦମୟ ମୁହୂର୍ତ୍ତରେ ଅତୀତକୁ ସ୍ମରଣକରି ଆଉ କଷ୍ଟ ପାଇବାକୁ ଯିବୁ କାହିଁକି ?

ଭୀଷ୍ମ : ହଁ, ତୁମ ନିକଟରେ ସେସବୁ ଅର୍ଥହୀନ ହୋଇପାରେ । ମୋ ନିକଟରେ ଯୁଦ୍ଧର ସକଳ ଘଟଣା ହୁଏତ ହଜିଯିବ । କିନ୍ତୁ ସେ ଦିନର ଘଟଣା ମୁଁ କୌଣସି ପ୍ରକାରେ ଛାଡିରୁ ଲିଭାଇ ଦେଇପାରୁ ନାହିଁ । ପବିତ୍ର ଭରତ ବଂଶର କୁଳବଧୂ - ନାଁ ! ନାଁ । ଜଣେ ଅସହାୟା ନାରୀ - କୁରୁ ସଭାରେ ଲାଞ୍ଛିତା ହେଲା, ତା'ର ତୁଳନା ଇତିହାସରେ ନାହିଁ ।

ଯୁଧିଷ୍ଠିର :ଏ ଜଘନ୍ୟତାର କ'ଣ ଶେଷଅଛି ପିତାମହ ? ଇତିହାସରେ କ'ଣ ପୁନରାବୃତି ଘଟେନାହିଁ ? ଦୁଷ୍କୃତି ଚିରଦିନ ମଥା ଉଚ୍ଚକରି ରହିନପାରେ । ତା'ର ଧ୍ୱଂସ ଅବଶ୍ୟ ହେବ ।

ଭୀଷ୍ମ : ତୁମେ ମୂଳ ପ୍ରଶ୍ନଟି କିନ୍ତୁ ଏଡାଇ ଯାଉଛ । ପାପୀମାନଙ୍କ ପକ୍ଷରେ ପାପ କରିବା ତ ସ୍ୱାଭାବିକ । ତା'ର ପ୍ରତିରୋଧ ତ ଦିନେ ନିଶ୍ଚୟ ହେବ । କିନ୍ତୁ ଯେଉଁଠି ପୃଥିବୀର ଜଘନ୍ୟତମ ପାପ ସର୍ବ ସମକ୍ଷରେ ଘଟିଯାଏ, ସେଠାରେ ନୀରବ ଦର୍ଶକହୋଇ ବସିରହିବା ଠାରୁ ଆଉ ଅଧିକ ପାପ କ'ଣ ହୋଇପାରେ ? ତୁମେ ହୁଏତ ସତ୍ୟବଦ୍ଧ ହୋଇ କିଛି କହିପାରିଲ ନାହିଁ । ମୁଁ ଏ କ'ଣ କଲି ?

ଯୁଧିଷ୍ଠିର :ପିତାମହ !

ଭୀଷ୍ମ : ବର୍ତ୍ତମାନ ବି ସେକଥା ଭାବି ହୃଦୟ ମୋର ବିଦୀର୍ଣ୍ଣ ହୋଇଯାଉଛି । ଯୁଧିଷ୍ଠିର ଆତ୍ମାର ଏ ଚରମ ଅପମାନ ମୁଁ ସହ୍ୟ କରିପାରୁ ନାହିଁ । ହୀନସ୍ୱାର୍ଥ ମଣିଷକୁ କେତେ ତଳକୁ ଓହ୍ଲାଇ ଦିଏ । ଉପଜୀବୀ ହୋଇ ବଞ୍ଚିରହିବା ପରି ପାପ ଆଉ କ'ଣ ହୋଇପାରେ

ଯୁଧିଷ୍ଠିର :ସେସବୁ ଭୁଲିଯାଆନ୍ତୁ ପିତାମହ । ବର୍ତ୍ତମାନ ତ ସେ ପରିସ୍ଥିତି ନାହିଁ ।

ଭୀଷ୍ମ : ଆଚ୍ଛା ଯୁଧିଷ୍ଠିର, ତୁମକୁ ସମସ୍ତେ ଧର୍ମରାଜ କହନ୍ତି, ନାଁ ?

ଯୁଧିଷ୍ଠିର :ହଁ, ପିତାମହ ।

ଭୀଷ୍ମ : ତମେ ସବୁ ସମୟରେ ଧର୍ମାଚରଣ କରି ଆସିଛ, ନାଁ ?

ଯୁଧିଷ୍ଠିର :ମୁଁ ଯାର କି ଉତର ଦେଇପାରିବି ?

ଭୀଷ୍ମ : ବର୍ତ୍ତମାନ କ'ଣ ତୁମେ ଦ୍ରୋଣାଚାର୍ଯ୍ୟ ଙ୍କ ନିଧନ ଘଟଣାକୁ ସ୍ମରଣ କରିପାର ?

ଯୁଧିଷ୍ଠିର :କାହିଁକି ପିତାମହ ?

ଭୀଷ୍ମ : କେମିତି ବୁଝେଇବି ମୋର ସେହି ଦୁଃଖକୁ ? ଭିତରେ ଭିତରେ ଗୋଟାଏ ଅନୁତାପର କୀଟ ଯେମିତି ହୃଦୟକୁ ମୋର କୋରିଖାଏ । ମୁଁ ବହୁବାର ଚେଷ୍ଟାକରିଛି ଭୁଲିଯିବାକୁ; କିନ୍ତୁ ଭୁଲିପାରିନି ।

ଭୀଷ୍ମ : କାହିଁକି ଭୁଲିପାରିନ ?

ଯୁଧିଷ୍ଠିର :ଏକଥା କ'ଣ ଭୁଲିଯିବା ପରି ?

ଭୀଷ୍ମ : ନାଁ, ସେକଥା ଠିକ୍ ନୁହେଁ । ଏ କଳଙ୍କିତ ଘଟଣାଟି ତୁମକୁ ଧର୍ମରାଜ ରୂପେ ପ୍ରତିଷ୍ଠିତ କରିବାରେ ପ୍ରତିବନ୍ଧକତା ସୃଷ୍ଟିକରିଚି ବୋଲି । ତୁମର ଯଶର ମଳୟ ଉପଦ୍ରୁତ ହୋଇଛି ବୋଲି ।

ଯୁଧିଷ୍ଠିର :ପିତାମହ ! ମୁଁ ଅପରାଧୀ । ମୋର ପରମ ପୂଜ୍ୟ ଗୁରୁଦେବଙ୍କ ସହିତ ନିଷ୍ଠୁର ପ୍ରବଂଚନା କରିଛି । ଜଣେ ପୁତ୍ରଶୋକ ଅଧୀର ବୃଦ୍ଧକୁ ଆତତାୟୀ ପରି ହତ୍ୟାକରିଛି । ଯେ ଗଭୀର ବିଶ୍ୱାସ ନେଇ -

ଭୀଷ୍ମ : ଦୁଃଖ କାହିଁକି ? ସବୁ ସତ୍ତ୍ୱେ ତ ଧର୍ମରାଜ । (ଦୃଶ୍ୟପଟ୍ଟ ପରିବର୍ତ୍ତିତ ହୋଇଛି)

ଶ୍ରୀକୃଷ୍ଣ : ଦ୍ରୋଣାଚାର୍ଯ୍ୟ ଙ୍କ ହାତରୁ ଆମର ଆଉ ନିସ୍ତାର ନାହିଁ ଧର୍ମରାଜ । ଦେଖୁଛନ୍ତି ତାଙ୍କର ପ୍ରବଳ ଶର ବୃଷ୍ଟିରେ ପାଣ୍ଡବ ସେନା କିପରି ଛିନ୍ନଭିନ୍ନ ହୋଇ ଯାଉଛନ୍ତି । ଅସଂଖ୍ୟ ସେନା କଦଳୀ ବୃକ୍ଷପରି ପ୍ରତି ମୁହୂର୍ତ୍ତରେ ଲୋଟି ପଡୁଛନ୍ତି । ଦ୍ରୋଣାଚାର୍ଯ୍ୟ ଙ୍କ ହାତରୁ ଇନ୍ଦ୍ରାଦି ଦେବଗଣଙ୍କର ମଧ୍ୟ ମୁକ୍ତିନାହିଁ । ଏ ପରିସ୍ଥିତିରେ କ'ଣ କରାଯିବ କୁହ ?

ଯୁଧିଷ୍ଠିର :ଆମର ପରାଜୟ ତା'ହେଲେ କ'ଣ ନିଶ୍ଚିତ ହୃଷୀକେଶ ?

ଶ୍ରୀକୃଷ୍ଣ : ଆଉ ତ କିଛି ଉପାୟ ଦେଖୁନି । ଆମର ଶୌର୍ଯ୍ୟ, ବୀର୍ଯ୍ୟ, ପରାକ୍ରମ ସବୁ ବ୍ୟର୍ଥ ହୋଇଯାଉଛି ।

ଯୁଧିଷ୍ଠିର :ଆମର ଅଭିଳାଷ କ'ଣ ତା'ହେଲେ ପୂର୍ଣ୍ଣହେବ ନାହିଁ ? ତା'ହେଲେ ଶେଷରେ ପାପର ହିଁ ଜୟହେଲା ?

ଶ୍ରୀକୃଷ୍ଣ : ଆପଣ କିଛି ଉପାୟ ଚିନ୍ତାକରି ପାରୁଛନ୍ତି ?

ଯୁଧିଷ୍ଠିର :ମୁଁ ? ମୁଁ ତ କେତେବେଳେ କିଛି ଚିନ୍ତା କରିପାରିନି ? ଆପଣଙ୍କର ବୁଦ୍ଧି, ଆପଣଙ୍କର ପରାମର୍ଶ ହିଁ ତ ଆମକୁ ଏ ପର୍ଯ୍ୟନ୍ତ ବିଜୟୀକରି ଆଣିଛି । ବର୍ତ୍ତମାନ ଆପଣ ଯଦି କୌଶଳ ପ୍ରୟୋଗକରି ଆମକୁ ରକ୍ଷା ନକରନ୍ତି ତା'ହେଲେ ଆମର ଯେଉଁ

ଶୋଚନୀୟ ଦଶାହେବ, ତାହା ଆପଣ ସହ୍ୟ କରିପାରିବେ ତ ?

ଶ୍ରୀକୃଷ୍ଣ : ସେ କଥା ତ ଭାବୁଛି । ତେବେ ହଁ, ଗୋଟାଏ ଉପାୟ ଅଛି ।

ଯୁଧିଷ୍ଠିର :କୁହନ୍ତୁ କି ଉପାୟ ?

ଶ୍ରୀକୃଷ୍ଣ : ଏଇ ପରିସ୍ଥିତିରେ କିନ୍ତୁ ଧର୍ମର ଆଶ୍ରୟ ଛାଡିବାକୁ ପଡିବ । ନଚେତ୍ ବିଜୟ ଅସମ୍ଭବ । ମୋର ମନେହୁଏ ଦ୍ରୋଣ ଅବିଳମ୍ବେ ଆମ ସମସ୍ତଙ୍କୁ ବଧକରିବେ ।

ଯୁଧିଷ୍ଠିର :ମୁଁ କ'ଣ ଧର୍ମର ଆଶ୍ରୟ ଛାଡିପାରେ ?

ଶ୍ରୀକୃଷ୍ଣ : ନହେଲେ ମୃତ୍ୟୁ ତ ସୁନିଶ୍ଚିତ । ଯୁଦ୍ଧ ନୀତିରେ ଧର୍ମ ଅଧର୍ମ ବୋଲି କିଛିନାହିଁ । ଜୀବନ ସଙ୍କଟାପନ୍ନ ହେବା ସମୟରେ କିଏ ଧର୍ମାଚରଣ କରେ ?

ଯୁଧିଷ୍ଠିର :କ'ଣ କରିବାକୁ ହେବ ଆମକୁ ?

ଶ୍ରୀକୃଷ୍ଣ : ଆମକୁ ନୁହଁ, ଆପଣଙ୍କୁ । ଅଶ୍ୱତ୍ଥମାର ମିଥ୍ୟା ମୃତ୍ୟୁ ସମ୍ବାଦ ପ୍ରଚାର କରିବାକୁ ହେବ । ଏକମାତ୍ର ଏଇପରି ଦାରୁଣ ସମ୍ବାଦ ହିଁ ତାଙ୍କୁ ଅସ୍ତ୍ର ତ୍ୟାଗ କରାଇପାରେ ।

ଯୁଧିଷ୍ଠିର :ଏହା କ'ଣ ସମ୍ଭବ ?

ଭୀମ : ସମ୍ଭବ ମହାରାଜ, ଅସମ୍ଭବ ସମ୍ଭବ କରିବାକୁ ହେବ । ପରମ ହିତାକାଂକ୍ଷୀ ଶ୍ରୀକୃଷ୍ଣ ଙ୍କ ପରାମର୍ଶ ଆମେସବୁ ସମୟରେ ଗ୍ରହଣକରି ଆସିଛୁ । ଆଜି ଏଥିରୁ ବିଚ୍ୟୁତ ହେବାର କୌଣସି ପ୍ରଶ୍ନ ରହିନପାରେ ।

ଶ୍ରୀକୃଷ୍ଣ : ଧନ୍ୟ ଭୀମସେନ । ଠିକ୍ ବୀରୋଚିତ୍ କଥା ହିଁ କହିଛ ।

ଭୀମ : ଆପଣ ଚିନ୍ତାକରିବେ ନାହିଁ । ମୁଁ ସେ ଦାୟିତ୍ୱ ନେଲି ।

ଶ୍ରୀକୃଷ୍ଣ : ମାଳବରାଜ ଇନ୍ଦ୍ରବର୍ମାର ଅଶ୍ୱତ୍ଥମା ନାମକ ହସ୍ତୀକୁ ପ୍ରଥମେ ନିହତ କରିବାକୁ ହେବ ।

ଭୀମ : ହଁ, ହଁ, ଠିକ୍ କହିଛନ୍ତି, ତାହା କରିବି । ତା'ପରେ ଆଚାର୍ଯ୍ୟ ଦ୍ରୋଣଙ୍କୁ ଯାଇକହିବି, ଅଶ୍ୱତ୍ଥମା ହତ ହୋଇଛି ।

ଶ୍ରୀକୃଷ୍ଣ : ଠିକ୍ ବୁଝିଛ । ଏଇ ତ ମୋର ପରାମର୍ଶ । ମୁଁ ତୁମକୁ ଏଇକଥା କହିବି ବୋଲି ସ୍ଥିର କରିଥିଲି । ତେବେ ଯୁଧିଷ୍ଠିର ଙ୍କ ମୁହଁରୁ କଥାଟା ନ ବାହାରିଲେ -

ଭୀମ : ମୁଁ ଆଗ ଚେଷ୍ଟାକରେ ଦେଖାଯାଉ ।

ଶ୍ରୀକୃଷ୍ଣ : ମୋର ମନେ ହୁଏନା, ଭୀମଙ୍କ କଥାରେ ସେ ବିଶ୍ୱାସ କରିବେ । ଯଦି ଅବିଶ୍ୱାସ କରନ୍ତି; ଆପଣଙ୍କୁ କିନ୍ତୁ ଅଶ୍ୱତ୍ଥମା ହତଃ, ଏଇ ଅସତ୍ୟଟି କହିବାକୁ ପଡିବ ।

ଯୁଧିଷ୍ଠିର :ମୁଁ ? ମୋତେ ? ହଁ ହଁ - କହିବି - କହିପାରେ - କହିବି -

ଶ୍ରୀକୃଷ୍ଣ : ନିଜକୁ ଦୃଢ କରନ୍ତୁ । ଦୁଃସମୟକୁ କୌଣସି ପ୍ରକାରେ ଅତିକ୍ରମ କରିବାକୁ ହେବ ।

ଯୁଧିଷ୍ଠିର :କିନ୍ତୁ -

ଶ୍ରୀକୃଷ୍ଣ : ଦ୍ୱିଧା କରିବେ ନାହିଁ । ଦ୍ରୋଣାଚାର୍ଯ୍ୟ ଆପଣଙ୍କର ଗୁରୁଦେବ ହୋଇପାରନ୍ତି, କିନ୍ତୁ ସେ ପାପୀ । ଯେଉଁମାନେ ପାପ କରନ୍ତି, ସେମାନଙ୍କର ବିନାଶ ଅବଶ୍ୟମ୍ଭାବୀ, ସେ ବେଦବିତ୍ ଧର୍ମ ନିରତ ବ୍ରାହ୍ମଣ; କିନ୍ତୁ ବ୍ରାହ୍ମଣ ବୃତିର ଅସମ୍ମାନ କରି କ୍ରୁର କ୍ଷତ୍ରୀୟ ବୃତିକୁ ଗ୍ରହଣକରି ନେଇଛନ୍ତି । ବ୍ରହ୍ମାସ୍ତ୍ର ସମ୍ପର୍କରେ ଅନଭିଜ୍ଞ ଯୋଦ୍ଧାମାନଙ୍କୁ ବ୍ରହ୍ମାସ୍ତ୍ର ଦ୍ୱାରା ହତ୍ୟା କରୁଛନ୍ତି । ବର୍ତମାନ ବିଂଶ ସହସ୍ର ପାଚାଂଳ ରଥୀ, ପଚାଂଶତ ମସ୍ୟ ସୈନ୍ୟ, ଷଟ ସହସ୍ର ସୃଞ୍ଜୟ ସୈନ୍ୟ, ଦଶ ସହସ୍ର ହସ୍ତୀ, ଦଶ ସହସ୍ର ଅଶ୍ୱ, ବ୍ରହ୍ମାସ୍ତ୍ରରେ ଭୂଲୁଣ୍ଠିତ ହୋଇଛନ୍ତି । ଏହା କ'ଣ ନୀତିହୀନତା ନୁହେଁ ।

ଯୁଧିଷ୍ଠିର :ଗୁରୁଦେବଙ୍କ ପ୍ରତି ଆମର ଅସୀମ ଶ୍ରଦ୍ଧା, ଅସୀମ ଭକ୍ତି । କିନ୍ତୁ ଯୁଦ୍ଧ କ୍ଷେତ୍ରରେ ସେ କିପରି ଆମକୁ ଧ୍ୱଂସ କରିବାକୁ ଆଗେଇ ଆସନ୍ତି, ମୁଁ ଆଶ୍ଚର୍ଯ୍ୟ ହୁଏ ।

ଶ୍ରୀକୃଷ୍ଣ : ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଆଚାର୍ଯ୍ୟ ଦ୍ରୋଣ ତ ଦୁର୍ଯ୍ୟୋଧନ ର ଅନ୍ନରେ ପ୍ରତିପାଳିତ । ପ୍ରଭୁର ଆଦେଶ ତାଙ୍କୁ ପାଳନ କରିବାକୁ ପଡିବ ? ସେ ଯାହା କରୁଛନ୍ତି, ସବୁ କେବଳ ସ୍ୱାର୍ଥରକ୍ଷା ପାଇଁ, ନିଜର ନିରାପଦ ଭିବଷ୍ୟତ ପାଇଁ ।

ଯୁଧିଷ୍ଠିର :ଆମ ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି, ଯେଉଁ ଅବିଚାର କରିଛନ୍ତି ସବୁ ଭୁଲିଯିବାକୁ ଚେଷ୍ଟାକରିଛି । ତାଙ୍କର ଅସହାୟତା କଥା ଚିନ୍ତାକରି କେବେ ତାଙ୍କର ନିନ୍ଦା କରିନି ।

ଶ୍ରୀକୃଷ୍ଣ :ସେଇଟା ହିଁ ଆପଣଙ୍କର ଅପରାଧ । ଯେ ଅନ୍ୟାୟକୁ ନୀରବରେ ସହ୍ୟ କରିଯାଏ, ତା' ଉପରେ ତ ବାରମ୍ବାର ଅନ୍ୟାୟ ହୁଏ । ଆଜି କିନ୍ତୁ ଆପଣଙ୍କର ସମୟ ଆସିଛି, ସେ ସମସ୍ତ ଅନ୍ୟାୟକୁ ସ୍ମରଣ କରିବା ପାଇଁ ।

ଯୁଧିଷ୍ଠିର :ମୁଁ ସମସ୍ତ ସ୍ମରଣ କରିପାରେ ହୃଷୀକେଶ । ଏ ହେଉଛି ଆମର ପରମ ପୂଜ୍ୟ ଆଚାର୍ଯ୍ୟ । ଯିଏ ସକଳ ନୀତି ଧର୍ମକୁ ଅନାୟାସରେ ଲଙ୍ଘନ କରିପାରନ୍ତି । କୁରୁ ସଭାରେ ଦ୍ରୌପଦୀ ର ଚରମ ଲାଞ୍ଛନା ଦେଖି ମଧ ଏ ନୀରବରେ ବସି ରହିଥିଲେ । ସ୍ୱାର୍ଥହାନୀର ଭୟରେ ଦ୍ରୌପଦୀ ଙ୍କ ସେହି ପ୍ରଶ୍ନର ଉତର ଦେଇପାରିଲେ ନାହିଁ । ଏ ଆମର ଶିଶୁପୁତ୍ର ସମର ଅନଭିଜ୍ଞ ଅଭିମନ୍ୟୁ କୁ କପଟ ଯୁଦ୍ଧରେ ହତ୍ୟା କରିଛନ୍ତି । ପରିଶ୍ରାନ୍ତ ଅର୍ଜ୍ଜୁନ କୁ ବିନାଶ କରିବାକୁ ଦୁର୍ଯ୍ୟୋଧନ କୁ ଅକ୍ଷୟ କବଚ ଦେଇଛନ୍ତି ।

ଶ୍ରୀକୃଷ୍ଣ : ତା'ହେଲେ ଆପଣ ବର୍ତମାନ ବୁଝି ପାରୁଛନ୍ତି, ଗୁରୁଦେବ ତାଙ୍କର ପ୍ରିୟ ଶିଷ୍ୟମାନଙ୍କୁ କେତେଦୂର ଶ୍ରଦ୍ଧା କରନ୍ତି ।

ଯୁଧିଷ୍ଠିର :ଆପଣଙ୍କ ଯୁକ୍ତି ସମ୍ମୁଖରେ ମୁଁ ପରାଜିତ ହୃଷୀକେଶ ।

ଶ୍ରୀକୃଷ୍ଣ : ତା'ହେଲେ ଆପଣଙ୍କର ସାହସ ହୋଇଛି ଦେଖୁଛି । ମନକୁ ଦୃଢ କରନ୍ତୁ । ବରଂ ସମ୍ପୂର୍ଣ୍ଣ ମିଥ୍ୟା କହିବାରେ ଅସୁବିଧା ଥାଏ, ତେବେ ଅନ୍ତତଃ କିଛିଟା ମିଥ୍ୟା କହିପାରନ୍ତି । ଧରନ୍ତୁ ଦ୍ରୋଣ ଯେତେବେଳେ ତାଙ୍କର ପୁତ୍ର ସମ୍ପର୍କରେ ପ୍ରଶ୍ନ କରିବେ, ଆପଣ ଉଚ୍ଚ ସ୍ୱରରେ କହିବେ - "ଅଶ୍ୱତ୍ଥମା ହତ୍ୟ", ଅସ୍ପଷ୍ଟ ଭାବେ କହିବେ, ଇତି "କୁଞ୍ଜରମ୍", ଯୁଦ୍ଧଭୂମିରେ କୋଳାହଳ ଭିତରେ ଏଇ ଟିକକହିଁ ଯଥେଷ୍ଟ । (ପୁଣି ଦୃଶ୍ୟପଟ୍ଟ ପରିବର୍ତିତ ହୋଇଛି । ପୂର୍ବପରି ଭୀଷ୍ମ ଓ ଯୁଧିଷ୍ଠିର ଙ୍କ କଥୋପକଥନ)

ଭୀଷ୍ମ : ବର୍ତମାନ ଅବଶ୍ୟ ତୁମର ଅପରାଧ ସ୍ୱୀକାର କରୁଛ, କିନ୍ତୁ ସେତେବେଳେ କ'ଣ କରିଥିଲ ? ସେତେବେଳେ ତ ତୁମର ସତ୍ୟ କଥନ ଅପେକ୍ଷା ଯୁଦ୍ଧ ଜୟ ଆଉ ରାଜ୍ୟ ଲାଭ ହିଁ ବଡହୋଇ ଠିଆ ହୋଇଥିଲା । ମୁଁ ସତ୍ୟ କହୁଛି ତ ଯୁଧିଷ୍ଠିର ?

ଯୁଧିଷ୍ଠିର :ଆଉ ଲଜ୍ଜା ଦେବେନାହିଁ ପିତାମହ ।

ଭୀଷ୍ମ : ଏଥିରେ ଲଜ୍ଜା କରିବାର କ'ଣ ଅଛି ?

ଯୁଧିଷ୍ଠିର :ସାରା ଜଗତର ନିନ୍ଦାକୁ ହୁଏତ ମୁଁ ମଥାପାତି ନେବି । କିନ୍ତୁ ଦ୍ରୋଣାଚାର୍ଯ୍ୟ ଯେ ଥିଲେ ଆମମାନଙ୍କର ବିପକ୍ଷ । ପୁଣି କ୍ଷତ୍ରୀୟ ପରି ଅସ୍ତ୍ରଧାରୀ ।

ଭୀଷ୍ମ : ତା'ବୋଲି -

ଯୁଧିଷ୍ଠିର :ମୁଁ ହୁଏତ ସ୍ୱାର୍ଥପରବଶ ହୋଇ ଅନ୍ୟାୟ କରିଛି । ସେ କ'ଣ ଅନ୍ୟାୟ କରିନାହାଁନ୍ତି ? ତାଙ୍କର ଅନ୍ୟାୟଟାକୁ ଆପଣ ଏଡେଇ ଯାଉଛନ୍ତି କାହିଁକି ?

ଭୀଷ୍ମ : ସେ ଯେଉଁ ଅନ୍ୟାୟ କରିଛନ୍ତି ତାହା ଯେ କେବଳ କୌରବମାନଙ୍କ ପାଇଁ ତା' ନୁହେଁ, ତୁମମାନଙ୍କ ପାଇଁ ମଧ୍ୟ ।

ଯୁଧିଷ୍ଠିର :ଆମମାନଙ୍କ ପାଇଁ ?

ଭୀଷ୍ମ : ହଁ, ଏକଲବ୍ୟ ର ଦକ୍ଷିଣାଙ୍ଗୁଷ୍ଠି ଛେଦନ କାହାର ସ୍ୱାର୍ଥପାଇଁ ? ଅର୍ଜୁନ କୁ ଶର ସନ୍ଧାନରେ ଅଦ୍ୱିତୀୟ କରି ରଖିବାକୁ ଗୋଟାଏ ଜଘନ୍ୟ ଆତତାୟୀର କାର୍ଯ୍ୟ କରିନାହାଁନ୍ତି ଦ୍ରୋଣାଚାର୍ଯ୍ୟ ?

ଯୁଧିଷ୍ଠିର :ମୋର କିନ୍ତୁ ଖୁବ୍ ଦୁଃଖହୁଏ ଏକଲବ୍ୟ ପାଇଁ । ନିଜର ଅସାଧାରଣ କୃତିତ୍ୱ ହିଁ ଶେଷରେ ଅଭିଶାପର ପାହାଡ ହୋଇ ଠିଆ ହୋଇଗଲା । କେତେ ଆଶାନେଇ ସାମାନ୍ୟ ସ୍ୱୀକୃତି ପାଇଁ ସେ ଦୌଡି ଆସିଥିଲା ଗୁରୁଙ୍କ ପାଖକୁ । କିନ୍ତୁ ହେଲା କ'ଣ ? କି ଅପରାଧ ସେ କରିଥିଲା ?

ଭୀଷ୍ମ : ହଁ, ତା'ର ଅପରାଧଟା ଥିଲା । ଅପରାଧ ହିଁ ହେଉଛି ଗୁରୁଭକ୍ତି । ଜଣେ ନିଷାଦ ବାଳକର ରାଜଶ୍ରିତ ଆଚାର୍ଯ୍ୟଙ୍କ ଭକ୍ତି କରିବାର କି ଅଧିକାର ଅଛି ? ରାଜପୁତ୍ର ଅର୍ଜୁନ ର ଭକ୍ତି ଆଉ ନିଷାଦ ବାଳକର ଭକ୍ତି କ'ଣ ଏକା କଥା ? ରାଜପୁତ୍ର ବିଶ୍ୱବିଜୟୀ ନହୋଇ ହେବ ଗୋଟାଏ ନିଷାଦ ବାଳକ ? ଏଇଟା କ'ଣ ଆମ ସମାଜରେ କେବେ ସମ୍ଭବ ହୋଇପାରେ ?

ଯୁଧିଷ୍ଠିର :ଏ ବିବେକ ବିରୋଧୀ । ଏ ଯେ ଅନ୍ୟାୟ ।

ଭୀଷ୍ମ : କେହି କଦାପି ବିବେକ ନେଇ କାର୍ଯ୍ୟକରେ ନାହିଁ ଯୁଧିଷ୍ଠିର । ସବୁ କ୍ଷେତ୍ରରେ ଅନ୍ୟାୟଟା ହିଁ ବେଶୀ ଭାଗହୁଏ । ଯେଉଁଠି ସ୍ୱାର୍ଥ, ସେଇଠି ତ ଅନ୍ୟାୟ । ଆଚାର୍ଯ୍ୟ ହେଲେ ବୋଲି ସେମାନେ କ'ଣ ମଣିଷ ନୁହଁନ୍ତି ? କେଉଁ ଦିଗରେ ସେମାନଙ୍କର ସ୍ୱାର୍ଥସିଦ୍ଧି ହେବ, ସେଇଟା ତ ଦେଖିବାକୁ ପଡିବ । ଯେଉଁ ଦିଗରେ ସ୍ୱାର୍ଥ, ସେହି ଦିଗରେ ବିଚାରର ଗତି ।

ଯୁଧିଷ୍ଠିର :ତା'ହେଲେ ଗୋଟାଏ ହୀନସ୍ୱାର୍ଥର ନିଷ୍ଠୁର ଚକ୍ରତଳୁ କ'ଣ ଆମର ମୁକ୍ତିନାହିଁ ?

ଭୀଷ୍ମ : ନାଁ ମୁକ୍ତିନାହିଁ । ସ୍ୱାର୍ଥକୁ ଛାଡି ଗୋଟାଏ ବାସ୍ତବ ପୃଥିବୀର ରୂପ କଳ୍ପନା ଅସମ୍ଭବ । ପ୍ରକୃତରେ କେହି ଧର୍ମ ପାଳନ କରନ୍ତି ନାହିଁ । ସମସ୍ତେ ଧର୍ମ ଧ୍ୱଜୀ । ତୁମେ, ମୁଁ; ଆଚାର୍ଯ୍ୟ ଦ୍ରୋଣ, ଆମପରି ଏ ପୃଥିବୀର ଆହୁରି ଅନେକ । କେହି ନ୍ୟାୟ ଦେଇପାରେନା; ନ୍ୟାୟ ଦେଇପାରେନା ।

ଯୁଧିଷ୍ଠିର :ପିତାମହ !

ଭୀଷ୍ମ : ଆଶ୍ଚର୍ଯ୍ୟ ହୁଅନାହିଁ । ଅନୁଶାସନ ଛଳରେ ମୁଁ ଯେଉଁ ସବୁକଥା କହିଛି, ସେସବୁ ଭୁଲିଯାଅ ଯୁଧିଷ୍ଠିର । ଅନ୍ଧକାରରେ ବୃଥା ଆଲୋକର ସନ୍ଧାନ କରିବାକୁ ଯାଇ ନିଜକୁ ହଜାଇ ଦିଅନା । ମୂଲ୍ୟବୋଧକୁ ହତ୍ୟାକରି ସ୍ୱାର୍ଥରକ୍ଷା ହିଁ ତ ଆଜିର ଅନୁଶାସନ ।

## ଓଡିଆ ସାହିତ୍ୟେ ର ସାହିତ୍ୟିକ
## ପ୍ରଫେସର ଆଦିକନ୍ଦ ସାହୁ

ପ୍ରଫେସର ଆଦିକନ୍ଦ ସାହୁ ମୁଖ୍ୟତଃ ଜଣେ ଗବେଷକ, ସାହିତ୍ୟ ସମାଲୋଚକ, ଓଡିଆ ସାହିତ୍ୟ ର ଅସ୍ତିତ୍ୱବାଦ ଚେତନାର ପ୍ରଭାବ ଶୀର୍ଷକରେ ଗବେଷଣା କରି ଲାଭ କରିଅଛନ୍ତି ପିଏଚ୍.ଡି. । ଅଦ୍ୟାବଧି ପ୍ରଫେସର ସାହୁଙ୍କର ଆଠଟିରୁ ଉର୍ଦ୍ଧ୍ୱ ସାହିତ୍ୟ ସମାଲୋଚନା ପୁସ୍ତକ ପ୍ରକାଶିତ । ସମାଲୋଚନା ସହ ସେ ମଧ ଲେଖନ୍ତି - ଗଳ୍ପ ଓ କବିତା ।

ପ୍ରଫେସର ଆଦିକନ୍ଦ ସାହୁ ମୁଖ୍ୟତଃ ଜଣେ ଓଡିଆ କଥା ସାହିତ୍ୟ ର ବରିଷ୍ଠ ସ୍ୱର । ଆଦିକନ୍ଦ ଙ୍କ ସାରସ୍ୱତ ସୃଷ୍ଟି ମଧରେ ରହିଛି - ଗଳ୍ପ, କବିତା, ପ୍ରବନ୍ଧ, ଜୀବନୀ ଓ ସମାଲୋଚନା । ତାଙ୍କ ସାରସ୍ୱତ ସୃଷ୍ଟିରେ ପରିସ୍ଫୁଟିତ ହୋଇଅଛି - ନାରୀ ଜୀବନକୁ କେନ୍ଦ୍ରକରି । ସେ ସାହିତ୍ୟ ପାଇଁ ଅନେକ ସ୍ଥାନରେ ସମ୍ମାନୀତ ଓ ସାହିତ୍ୟ ଅନୁଷ୍ଠାନର ପଦଯୁକ୍ତ ।

ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ଥାନାର କୁମାରପୁର ଗାଁରେ ଆଦିକନ୍ଦ ଙ୍କ ଜନ୍ମ - ୫ ଜୁଲାଇ, ୧୯୪୬ ମସିହାରେ । ପିତା - ପୁରୁଷୋତମ ସାହୁ ଓ ମାତା - କମଳାଦେବୀ । ଗାଁ ସ୍କୁଲ୍‌ରେ ପ୍ରାଥମିକ ଶିକ୍ଷା ଓ ଭଦ୍ରକରେ ହାଇସ୍କୁଲ୍ ଶିକ୍ଷାସହ ଭଦ୍ରକ କଲେଜରୁ ସ୍ନାତକ (ବି.ଏ.) ଓ ଐତିହାସିକ ରେଭେନ୍ସା କଲେଜରୁ ଓଡିଆ ଭାଷା ଓ ସାହିତ୍ୟ ରେ ସ୍ନାତକୋତର (ଏମ୍.ଏ.) ୧୯୭୧ ମସିହାରେ ପାସ୍ କରିଥିଲେ ଓ ପରେ କର୍ମମୟ ଜୀବନ ଆରମ୍ଭ କରିଥିଲେ - ସମ୍ବଲପୁର ର ଗଙ୍ଗାଧର ମେହେର ସରକାରୀ କଲେଜର ଅଧାପକ (ଓଡିଶା ଶିକ୍ଷା ସେବା) ପରେପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡିଆ ଭାଷା ଓ ସାହିତ୍ୟ ବିଭାଗର ଅଧାପକ, ପ୍ରାଧାପକ ଓ ପ୍ରଫେସର ପଦବୀରେ ଦୀର୍ଘ ୩୭ ବର୍ଷ ଶିକ୍ଷାଦାନ କରି କର୍ମମୟ ଜୀବନରୁ ୨୦୦୬ ମସିହାରେ ଅବସର ଗ୍ରହଣ କରିଥିଲେ ।

୧୯୮୩ ମସିହାରେ ପ୍ରଫେସର ସାହୁ ଓଡିଆ ସାହିତ୍ୟରେ ଅସ୍ତିତ୍ୱବାଦ ଚେତନାର ପ୍ରଭାବ ପ୍ରସଙ୍ଗରେ ପିଏଚ୍.ଡି. ଉପାଧିପ୍ରାପ୍ତ । ତାଙ୍କ ସହଧର୍ମିଣୀ ଚନ୍ଦ୍ରାବଳୀ ସାହୁ ସରକାରୀ ହାଇସ୍କୁଲ୍‌ର ଅବସରପ୍ରାପ୍ତ ପ୍ରଧାନଶିକ୍ଷୟତ୍ରୀ, ଦୁଇପୁଅ ଓ ଏକଝିଅକୁ ନେଇ ପ୍ରଫେସର ସାହୁଙ୍କ ସଂସାର । ବଡପୁଅ ସୁଦୂର ଆମେରିକାର କମ୍ପ୍ୟୁଟର ଇଞ୍ଜିନିୟର ଓ ବଡବୋହୂ ଓଡିଶା ପ୍ରଶାସନିକ ସେବା (OAS) ଅଧିକାରିଣୀ, ସାନପୁଅ ଜାତୀୟ ବୈଷୟିକ ପ୍ରତିଷ୍ଠାନ (NIT) - ରାଉରକେଲାର ଗଣିତ ବିଭାଗର ଆସୋସିଏଟ୍ ପ୍ରଫେସର ଓ ଉଚ୍ଚତର ଗବେଷଣା (ଡି.ଏସ୍.ସି.), ଭାରତ ସରକାରଙ୍କ ତରଫରୁ ନରୱେ ରାଷ୍ଟ୍ରରେ ଅଧୟନରତ ସାନବୋହୂ - ରାଜଧାନୀ ଭୁବନେଶ୍ୱର ରେ ଏକ ଘରୋଇ ଇଞ୍ଜିନିୟରିଙ୍ଗ କଲେଜରେ ଅଧାପିକା, ଏକମାତ୍ର ଝିଅ ଉଚ୍ଚଶିକ୍ଷିତା ଓ ବ୍ୟାଙ୍କର ଅଧିକାରୀ ଓ ବିବାହିତା ।

ସମୟର ସ୍ରୋତରେ ପ୍ରଫେସର ଆଦିକନ୍ଦ ସାହୁ ଓଡିଆ ଭାଷା ଓ ସାହିତ୍ୟ ର ପ୍ରଗତି ପଥରେ ନିଜକୁ ନିୟୋଜନ କରି ପାରିଅଛନ୍ତି । ଅଧାପକତ୍ୱ ଜୀବନ ସହିତ ସାହିତ୍ୟିକ ଓ ଗବେଷକ ଜୀବନ ତାଙ୍କର ବେଶ୍ ପରିଚିତ ରହିଅଛି । ଦୀର୍ଘ ୨୨ ବର୍ଷଧରି ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସାହିତ୍ୟ ପତ୍ର "ସପ୍ତର୍ଷି" ଏକ ଉଚ୍ଚାଙ୍ଗ ଗବେଷଣା ସାରସ୍ୱତ ପତ୍ରିକାର ସେ ପରିଚାଳନା ସମ୍ପାଦକ ଭାବରେ କାର୍ଯ୍ୟ କରିଅଛନ୍ତି । ୨୦୦ ରୁ ଅଧିକ ଗବେଷଣାତ୍ମକ ନିବନ୍ଧ ତାଙ୍କର ଜାତୀୟ ଓ ଆନ୍ତର୍ଜାତୀୟ ପତ୍ର ଓ ପତ୍ରିକା ରେ ପ୍ରକାଶିତ । ୩୩ ଜଣ ଗବେଷକ ତାଙ୍କ ଅଧିନରେ ଗବେଷଣା କରି ଡକ୍ଟରେଟ୍ ଉପାଧିପ୍ରାପ୍ତ ।

ଜଣେ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ ଭାବରେ ପ୍ରଫେସର ଆଦିକନ୍ଦ ସାହୁ ନିଜର ସ୍ୱତନ୍ତ୍ର ସ୍ୱର ଓ ଶୈଳୀ ପାଇଁ ଓଡିଆ ସାହିତ୍ୟ ସମୃଦ୍ଧ ପଥରେ ଅଗ୍ରସର କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଜଣେ ଓଡିଶାର ସାମାଜିକ ଓ ସାଂସ୍କୃତିକ ଜୀବନଧାରାର ସାର୍ଥକ ରୂପକାର । ତାଙ୍କ ଲେଖନୀରେ ପ୍ରେମ, କରୁଣା, ସମ୍ବେଦନଶୀଳତା ତଥା ଆତ୍ମିୟତାର ମାର୍ମିକତା ତାଙ୍କର ସମସ୍ତ ପୁସ୍ତକରେ ପରିସ୍ଫୁଟିତ । ମଣିଷର ସ୍ୱପ୍ନ ଓ ଆକାଂକ୍ଷା ରେ ଯାହା ଭରି ରହିଥାଏ, ତାହା ତାଙ୍କର ଲେଖନୀର ଚାତୁରତା । ଜଗତ ଓ ଜୀବନ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ଉଦାର ଓ ବିସ୍ତୀର୍ଣ୍ଣ । ତାଙ୍କ ସୃଜନଶୀଳ ଆତ୍ମାଟି ଭାରି ସମର୍ପିତ । ସବୁକିଛି ସନ୍ତାପ ଓ ବଚଂନା ଉର୍ଦ୍ଧ୍ୱରେ ମଣିଷ ଜୀବନର ଅମୃତମୟ ପ୍ରେମ ଓ ତା' ଆତ୍ମାର ଉଲ୍ଲାସକୁ ସେ ଖୋଜିଛନ୍ତି । ପ୍ରଫେସର ସାହୁଙ୍କର ଲେଖନୀଗୁଡିକ ଅଧିକାଂଶ ରୋମାଂଚମୟ । ମଣିଷ ଜୀବନର ଦୁଃଖ, ସୁଖ ଓ ଯନ୍ତ୍ରଣାବୋଧର ଚିତ୍ର ତାଙ୍କ ଲେଖନୀରେ ସ୍ଥାନ ପାଇପାରିଛି । ତାଙ୍କ ଲେଖନୀ ବହୁ ଭାବରେ ନାରୀ ଜୀବନ କେନ୍ଦ୍ରୀକ । ନାରୀମାନଙ୍କ ସ୍ୱରକୁ ଆଗକୁ ଆଣିବାପାଇଁ ସେ ଯେପରି ସଂକଳ୍ପବଦ୍ଧ । ତାଙ୍କ ଅଧିକାଂଶ ଲେଖନୀରେ ଭରି ରହିଛି - ନାରୀ ଜୀବନର ମୂଲ୍ୟବୋଧର ରୂପାୟନ । ମଣିଷ ଜାଣିଜାଣି କାହିଁକି ଗୋଟିଏ ମଣିଷ ଆତ୍ମାର ଉଲ୍ଲାସକୁ ଛଡାଇନିଏ, ସେହି ଅନୁଚାରିତ ପ୍ରଶ୍ନଟି ତାଙ୍କର ଅଧିକାଂଶ ପୁସ୍ତକରେ ପରିପ୍ରକାଶିତ ହୋଇଅଛି । ପ୍ରଫେସର ଆଦିକନ୍ଦ ଙ୍କ ଲେଖନୀଗୁଡିକ ବହୁ ଭାବରେ ବାସ୍ତବବାଦୀ । ମଣିଷ ଜୀବନ ବଚିଂବା ଚତୁଃପାର୍ଶ୍ୱରେ ଯେଉଁ ପିତା ଓ ପ୍ରବଚଂନା ସବୁ ରହିଛି, ସେଗୁଡିକୁ ବ୍ୟକ୍ତ କରିଅଛନ୍ତି । ଜାତି, ବଂଶ କୌଳିକ, ନାରୀ ପୁରୁଷ ଭେଦ, ଶ୍ରେଣୀ ଶୋଷଣ ମଣିଷର ସଇତାନୀ ଓ ତା'ର ପ୍ରବୃତି ଓ ପ୍ରବଣତା କୁ ସମସ୍ୟା କରି ଉପସ୍ଥାପନା କରିଥିଲେ ହେଁ ରୂପକାର ମଣିଷ ପ୍ରବୃତିକୁ ରୂପ ଦେଇଅଛନ୍ତି । ଜୀବନ ପରିଧିର ପ୍ରେମ ଓ ତତ୍‌ଜନିତ ସ୍ୱାଧିନତାର ଅନୁଷଙ୍ଗ ତାଙ୍କ ଲେଖନୀଗୁଡିକୁ ମାର୍ମିକ କରିଅଛି । ନାରୀ ପରିଚୟ ପାଇଁ କଲମ ବେଶ୍ ଶକ୍ତିଶାଳୀ । ବାନ୍ଧବୀକତା ଅପେକ୍ଷା ସାମାଜିକ ବାସ୍ତବତାକୁ ସେ ତାଙ୍କ ଲେଖନୀରେ ଆଦର୍ଶ କରିଅଛନ୍ତି ।

ତେଲ ଲୁଣର ସଂସାର ମଧରେ ନିଜକୁ ନିମଗ୍ନକରି ଥିଲେ ମଧ ଭୁଲି ଯାଇନଥିଲେ ସାରସ୍ୱତ ସାଧନାକୁ ପ୍ରଫେସର ଆଦିକନ୍ଦ ସାହୁ ।

ପ୍ରଫେସର ଆଦିକନ୍ଦ ସାହୁଙ୍କ ସାରସ୍ୱତ ସୃଷ୍ଟି -

**କବିତା -** ମାଇ ସଞ୍ଜର କବିତା

**ପ୍ରବନ୍ଧ -** କବିତାର ମୃତ୍ୟୁ ଓ ଅନ୍ୟାନ୍ୟ ନିବନ୍ଧ - ସମ୍ୱଲପୁରୀ ଭାଷା, ସାହିତ୍ୟ ଓ ସଂସ୍କୃତି ର ପ୍ରବନ୍ଧ ସଂକଳନ ।

ସୌନ୍ଦର୍ଯ୍ୟ ଓ ସୃଜନ ଦର୍ଶନ

ଶୃଙ୍କାର

**ଗଳ୍ପ -** କ୍ଷେତ ପାଚିବାର ବେଳ

କାଳିନ୍ଦୀଚରଣ ଙ୍କ ଶ୍ରେଷ୍ଠଗଳ୍ପ

**ସମାଲୋଚନା -** ଗଳ୍ପ ଓ ଉପନ୍ୟାସ ର ନବଦିଗନ୍ତ

ମୋ ମନ ପସନ୍ଦର କବି ଓ ଅନ୍ୟାନ୍ୟ ନିବନ୍ଧ

**ସାହିତ୍ୟ ସମାଲୋଚନା -** ଗଦ୍ୟ ଗୌରବ

ପଦ୍ୟ ଗୌରବ

କଳା ଗୌରବ

ସୋରେନ କିଡଗାଡ ଓ ସାହିତ୍ୟରେ ଅସ୍ତିତ୍ୱବାଦ

ସ୍ୱାଧାସ୍ୱାଧ୍ୱ ଗଙ୍ଗାଧର ଓ ଶୂନ୍ୟବାଣୀ ଭୀମଭୋଇ

**ଜୀବନୀ ଲେଖକ -** ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ

**ସମ୍ପାଦନା -** ରାଧାନାଥ ଗ୍ରନ୍ଥାବଳୀ

**ଅନୁବାଦ -** ସାହିତ୍ୟିକ କିରକେଗାଡି ଙ୍କ The Diary of Sedycer ଗ୍ରନ୍ଥର ଓଡିଆରେ ଅନୁବାଦ କାର୍ଯ୍ୟ

ପ୍ରଭୃତି ପୁସ୍ତକ ରଚନାକରି ପ୍ରଫେସର ଆଦିକନ୍ଦ ସାହୁ ଓଡିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଅଛନ୍ତି । ଏ ସମସ୍ତ ପୁସ୍ତକ ପାଠକୀୟ ଆଦୃତି ଲାଭକରି ଆଦିକନ୍ଦ ସାହୁଙ୍କ ଆମ ଓଡିଆ ସାହିତ୍ୟ ର ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଭାବରେ ମର୍ଯ୍ୟାଦା ପ୍ରଦାନ କରିଅଛି ।

ପ୍ରଫେସର ଆଦିକନ୍ଦ ସାହୁଙ୍କ ଓଡିଆ ସାହିତ୍ୟକୁ ବିକାଶପଥରେ ଅଗ୍ରସର ର ଭୂମିକା ସ୍ୱରୂପ - ସେ ବିଭିନ୍ନ ସାହିତ୍ୟ ଅନୁଷ୍ଠାନ ତରଫରୁ ପୁରସ୍କୃତ ଓ ସମ୍ମାନୀତ ହୋଇ ପାରିଛନ୍ତି । ଯାହାକି ତାଙ୍କୁ ବାସ୍ତବିକ୍ ସାହିତ୍ୟ ରଚନା କ୍ଷେତ୍ରରେ ଅଧିକରୁ ଅଧିକ ନିମଗ୍ନ ରଖିପାରିଛି କହିଲେ ଭୁଲ୍‌ହେବ ନାହିଁ ।

ଝଙ୍କାର ସାହିତ୍ୟ ପୁରସ୍କାର

ଭୁବନେଶ୍ୱର ବେହେରା ଗଳ୍ପ ସମ୍ମାନ

ଗଙ୍ଗାଧର ମେହେର ସାହିତ୍ୟ ସମ୍ମାନ

ସପ୍ତର୍ଷି ପୁରସ୍କାର - ସମ୍ୱଲପୁର ବିଶ୍ୱବିଦ୍ୟାଳୟରୁ

ଖଡିଆଳ ସାହିତ୍ୟ ସଂସଦ ପୁରସ୍କାର

ଗଦାଧର ସାହିତ୍ୟ ସମ୍ମାନ, କଳାହାଣ୍ଡି

ଆଦି ସମ୍ମାନ ତାଙ୍କ ସାହିତ୍ୟିକ ପ୍ରତିଭାକୁ ପରିଚୟ ପ୍ରଦାନ କରିପାରିଅଛି ।

ପ୍ରଫେସର ଆଦିକନ୍ଦ ସାହୁ - ସାହିତ୍ୟ ରଚନା ତଥା ଅଧ୍ୟାପନା ମଧ୍ୟରେ ନିମଗ୍ନ ରହି ମଧ୍ୟ ବିଭିନ୍ନ ସାରସ୍ୱତ ଅନୁଷ୍ଠାନର ସଦସ୍ୟ ଭାବରେ ସୂଚାର ରୂପେ କାର୍ଯ୍ୟ ତୁଲାଇ ଅଛନ୍ତି ।

କେନ୍ଦ୍ର ସାହିତ୍ୟ ଏକାଡେମୀ ସଦସ୍ୟ

ଓଡିଶା ସାହିତ୍ୟ ଏକାଡେମୀ ସଦସ୍ୟ

ନ୍ୟାସନାଲ ବୁକ୍ସ ଟ୍ରଷ୍ଟ ଓ ଇଣ୍ଡିଆର ସଦସ୍ୟ

ଓଡିଆ ଗବେଷଣା ପରିଷଦର ସଦସ୍ୟ

ଉତ୍କଳ ସାହିତ୍ୟ ସମାଜର ସଦସ୍ୟ

ସାରଳା ପୁରସ୍କାର ଚୟନ କମିଟିର ସଦସ୍ୟ

ସଦସ୍ୟ ଭାବରେ ନିଜର ସ୍ୱାକ୍ଷରକୁ ଅନୁଷ୍ଠାନରେ ପ୍ରତିପାଦନ କରିପାରିଛନ୍ତି - ବୟସର ଅପରାହ୍ଣରେ ପ୍ରଫେସର ଆଦିକନ୍ଦ ସାହୁଙ୍କ ଲେଖନୀ ସ୍ପର୍ଶ ବାସ୍ତବିକ୍ ଓଡିଆ ସାହିତ୍ୟକୁ ସମୃଦ୍ଧ କରିପାରିଅଛି ।

ଅଧ୍ୟାପନା, ସାହିତ୍ୟ ସାଧନା, ସର୍ବୋପରି ଗବେଷଣା ଆଦିକନ୍ଦ ସାହୁଙ୍କୁ ଓଡିଆ ସାହିତ୍ୟ ର ଜଣେ ଉଜ୍ଜ୍ୱଳ ପୁରୁଷ ଭାବରେ ପ୍ରତିଷ୍ଠା ଦେଇଅଛି । ଏଥିରେ ତିଳେମାତ୍ର ଅବକାଶ ନାହିଁ । ସେ ଯେପରି ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଠିକ୍ ସେହିପରି ଜଣେ ମାନବପ୍ରେମୀ

ସାରସ୍ୱତସାଧକ । ବାସ୍ତବିକ୍ କହିବାକୁ ଗଲେ ଓଡିଆ ସାହିତ୍ୟ ର ପ୍ରଗତିପଥରେ ପ୍ରଫେସର ଆଦିକନ୍ଦ ସାହୁଙ୍କ ଭୂମିକା ବେଶ୍ ପ୍ରଣିଧାନ ଯୋଗ୍ୟ ।

ପ୍ରଫେସର ଆଦିକନ୍ଦ ସାହୁଙ୍କ ସାରସ୍ୱତ ସୃଷ୍ଟି ମାନସରୁ ତାଙ୍କର ଗଳ୍ପ ସଂକଳନ - "କ୍ଷେତ ପାଚିବାର ବେଳ" ଚର୍ଚ୍ଚିତ ଗଳ୍ପ ଗ୍ରନ୍ଥରୁ - "ସକାଳ ହେବାର ଦୃଶ୍ୟ" ଏକ ଗଳ୍ପର ଏଠାରେ ଆଲୋକପାତ ।

## ଆଦିକନ୍ଦ ସାହୁଙ୍କ
## ସ୍ମରଣୀୟ ଗଳ୍ପ ସଂକଳନ
## "କ୍ଷେତ ପାଚିବାର ବେଳ" ର ଏକ "ସକାଳ ହେବାର ଦୃଶ୍ୟ"

ସେ ଝିଅଟି ସେମିତି ଥିଲା ସତେ ଯେପରି କେଉଁ ବେଟଂ ପୋଖରୀ ର କଳା ଘୁମର ଅକାତ କାତ ପାଣି । ଫୁଲ ଫୁଟା ସଞ୍ଜବେଳ ପରି ସୁନ୍ଦର ।

ଶଙ୍ଖପରି ତା' ବେକ । ପାହାଡପରି ତା'ର ସ୍ତନ । ଉପତ୍ୟକା ପରି ତା' ଛାତି । ଚଇତ ରାତିର କଅଁଳ ଜହ୍ନପରି ତା' ମୁହଁ । ବାଉଁଶ ବଣର ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାରପରି ତା' ମୁଣ୍ଡର ବାଳ ।

ସେ ଗାଁ ପାଖ ଝୋଲାରେ ଗାଧାଏ । ସେଇ ପାହାଡ଼ ଝୋଲାରେ ତା' ମୁଣ୍ଡବାଳ ଖୋଲିଦେଲେ ଚାରିଆଡ଼କୁ ଅନ୍ଧାର ଚହଟିଯାଏ ଯେପରି । ନିଶୂନ ଖରାବେଳେ ସେଇ ମାଟିଆଣୀ ଝିଅଟି ଈଷତ୍ ଅନ୍ଧାରିଆ ଝୋଲାରେ ବାରମ୍ବାର ନିଜକୁ ବିବସ୍ତ୍ର କରେ ଆଉ ମୁଗ୍ଧ ନେତ୍ରରେ ନିଜେ ନିଜକୁ ଦେଖେ ।

ସେତେବେଳେ ସେ ମୋହିନୀ ମାଟିଆଣୀ ଝିଅଟିର ପୃଥୁଳ ସ୍ତନ ଦୁଇଟି ମୋତେ ଜଗନ୍ନାଥ ଙ୍କ ଆଖିପରି ଦିଶେ ।

ଗାଁର ଟୋକାମାନେ ରସିକତା କରି ସେଇ ମାଟିଆଣୀ ଝିଅ ସ୍ତନର ଅତିରଞ୍ଜିତ ବିଶେଷଣ ସବୁକୁ ଅପରିପକ୍ୱ ହସ୍ତାକ୍ଷର ରେ କଟାଂରେ ଚିରି ଚିରି ସିଙ୍କୁ ବୂଦାରେ ଲେଖିଥାନ୍ତି । ସେଇ ମାଟିଆଣୀ ଝିଅ କମ ଥିଲା ସେଦିନ ଆମ ଗାଁର ସବୁ ନବ ଯୁବକମାନଙ୍କ ଉଦ୍ଦାମ କାମ ଭାବନାର ସହଜ ସୁନ୍ଦରୀ ।

ଗାଁର ବୁଢା, ଦର ବୁଢାମାନେ ବି କମକୁ ଦେଖି ପୁଲକିତ ହେଉଥିଲେ ଓ ସେମାନଙ୍କ ନବଯୁବା କାଳକୁ ଅତି ସନ୍ତର୍ପଣରେ ସ୍ମୃତିକୁ ଆଣୁଥିଲେ ।

ସେ ଛେଳିଟି ଆଖିର ନିରୀହତା ସତ୍ୱେ ଗୋଟିଏ ଦୁର୍ଦ୍ଧର୍ଷ ପୁରୁଷକାର ସେ କଳା ଛେଳିଟିର ଆଖି ଭିତରେ ସତେ ଯେପରି ଅଭାବିତ ବିନୟ ଭିତରେ ନୀରବିତ ହୋଇ ଯାଇଥିଲା ।

ଆମ ସାଇର ଲଙ୍ଗଳା ପୁଅଝିଅ ସବୁ ଆମ୍ବ ତୋଟାରେ ଉଜୁଡି ପଡିଥାନ୍ତି । ପାଚିବାକୁ ଥିବା ସିନ୍ଦୁରୀ ଆମ୍ବ ଭର୍ତ୍ତି ଗଛମୂଳେ ବର୍ଷାଭିଜା ମାଟିଖଣ୍ଡ ସବୁ ସେମାନଙ୍କ ପାଦରେ ଭାଙ୍ଗି ପଡୁଥିଲେ ବି ସେମାନେ ଅବଶ୍ୟ ସାନ ସାନ ଥିଲେ ।

ଛେଳିଟାକୁ ମାରିବାକୁ ଯାଇ ସେଦିନ ଓଦା ମାଟିରେ ସେଇ ମାଟିଆଣୀ ଝିଅଟି ସେଇ କଳା ଖାସି ପଟଟାକୁ ଧରି ପାଲେ ଗଡିଗଲା । କଳା ଅଣ୍ଡିରା ଛେଳିଟା ଖାସ୍ ମୋଟା ଓ ବଳୁଆ ଥିଲା । ଶକ୍ତ କଳା ମୁଗୁନି ପଥର ପରି ତା' ପିଚା ଯୋଡିକ ଦେଖା ଯାଉଥିଲା ।

କମ ମାଟିଆଣୀ ସେ ଛେଳିର ପେଟ ଉପରେ ଚଢିବସି ତା' ଗୋଡ ଚାରିଟାକୁ ହାତରେ ଓ ଆଉ ଗୋଟିଏ ହାତରେ ଛେଳିର ମୁହଁକୁ ଚାପି ଧରିଥିଲା, ତାକୁ ଅଣନିଃଶ୍ୱାସୀ କରି ମାରିଦେବା ପାଇଁ । ସେଦିନ ବର୍ଷାଭିଜା ଓଦା ଭୂଇଁରେ ସେ ଛେଳିଟାକୁ ସେ ଯୁଆନ ଟୋକି କମ ମାଡି ବସିଥିଲା । କମ ମାଟିଆଣୀର ପେଟ ଛାତି, ହାତଗୋଡ ସବୁ ସେ ବଳୁଆ ଅଣ୍ଡିରା ଛେଳିପଟକୁ ଯେମିତି ଏକବାରେ କାବୁକରି ଦେଇଥିଲା ।

ଅଣ୍ଡିରା ଛେଳିଟି କମ ମାଟିଆଣୀ ଦାଢ଼ରୁ ଓ କମ ମାଟିଆଣୀ ସେ ଛେଳିଟିର ଖାବଜରୁ ଖସିଯିବାର ଜୁ' ନଥିଲା ।

ସେତେବେଳକୁ ଦଳ ଗଡିଆରେ ଦି'ଟା ବଡ ଡମଣା ସାପ ଜଡ ପଡ଼ି ଯାଇଥିଲେ । ସାପ ଦି'ଟା ଫୁଲି ଫୁଲି ଉଠୁଥିଲେ ଓ ପରସ୍ପରକୁ ଭିଡିଧରି ସେଇ ଦଳ ଉପରେ ପୁଣି ଗଡି ପଡୁଥିଲେ ।

ଉ ର-ଗ୍ରୀଷ୍ମର ବର୍ଷାସ୍ନାତ ଅପରାହ୍ନଟି ଆହୁରି ଉଜ୍ଜ୍ୱଳି ଉଠୁଥିଲା ଯେପରି !

ଗାଁର ବଗୁଲିଆ ଟୋକାମାନେ ସେ ଜଡ ପଡିଥିବା ସାପ ଦି'ଟାଙ୍କୁ ଟେକା ଫିଙ୍ଗିଲେ ଯେ ପାପହେବ ବୋଲି ବୁଢ଼ା ବୁଢ଼ା ଲୋକମାନେ ସେମାନଙ୍କୁ ଗାଳିକଲେ ।

ସେଇ କଳା ଖାସି ପଟଟାକୁ ସେ ଶକ୍ତି ସ୍ୱରୂପିଣୀ ଯୁବତୀ ମାଟିଆଣୀ ଝିଅଟି ଯେତେ ଜୋର୍‌ରେ ଓଦାମାଟି ଉପରେ ମାଡି ବସୁଥିଲା ସେ ଖାସିଟା ତାକୁ ସେତେ ଓଲଟାଇ ପକାଉଥିଲା ।

ଝିଅଟା କାଦୁଅ ବଳବଳ ହୋଇ ଯାଇଥିଲା ଆଉ ତା' ଛାତିରେ ଲୁଗା ନଥିଲା କହିଲେ ଚଳେ । ଖାସିଟା ଉପରୁ ତା' ହାତ ଦୁଇଟିକୁ ଉଠାଇପାରୁ ନଥିଲା । ବଳିଲା ବଳିଲା କଦଳୀ ଗଛ ପରି ତା' ଜଙ୍ଘ ଦୁଇଟାରେ ସେ ଛେଳିର ତଳିପେଟକୁ ଠେସି ଧରିଥାଏ ।

ଏକ ବିହ୍ୱଳ ତନ୍ମୟତାରେ ରତିକାଂକ୍ଷିଣୀ ନବ ତରୁଣୀଟିଏ ବସ୍ତି ଇଲାକାର ଉପାନ୍ତରେ ତା'ର ଇପ୍‌ସିତ ପୁରୁଷକୁ ଆଲିଙ୍ଗନ କଲାପରି ସେଦିନ ସେଇ ମାଟିଆଣୀ ଝିଅଟି କଳା ଖାସି ପଟଟାକୁ ନିଜ ଦେହରେ ଯେପରି ଜଡ଼ାଇ ନେଇଥିଲା ।

ଅବଶ୍ୟ ଆମ ବସ୍ତିର କେହି ସେଦିନ ଭାବିପାରି ନଥିବେ ଯେ ସେ କଳା ଖାସି ପଟଟାକୁ ନିଜ ଦେହରେ ଜଡ଼ାଇ ନେବାରେ ମାଟିଆଣୀ ଝିଅ କମ ସେଦିନ କିପରି ଉଲ୍ଲସିତ ହୋଇଥିଲା । କିନ୍ତୁ ସବୁ ଲାଜତକ ଯାଇ ସେତେବେଳକୁ ତା' ଆଖିରେ ଭର୍ତି ହୋଇ ଯାଇଥିଲା । ସାରା ଦେହ ତା'ର ଝାଳରେ ବୁଡ଼ି ଯାଇଥିଲା ।

ଥରେ ଥରେ ଟିକିଏ ଦୂରରେ ଛିଡ଼ାହୋଇ ରହିଥିବା ସାଇବାଲାଙ୍କୁ ବିଶେଷତଃ ଅତି ଲୋଭିଲା ଆଖିରେ ତା' ଆଡକୁ ନଜର ପକାଉଥିବା କେତେକ ଟୋକାଙ୍କୁ କାକୁସ୍ଥ ହୋଇ ସେ ବଡ ବିକଳରେ ଚାହୁଁଥିଲା । ମାଟି କାଦୁଅରେ ମଇଳା ତା' ଶାଢୀ ଖଣ୍ଡିକୁ ସେ ଆଉ ସେତେବେଳେ ସଜାଡି ପାରୁନଥିଲା ।

କଳା ଖାସିଟା ବେଳେବେଳେ କମକୁ ଅକ୍ତିଆର କରି ନେଉଥିଲା । କମ ଯେମିତି ତା'ର ଅଶକତ ଦେହକୁ ସେ ଅଣ୍ଡିରା ଛେଳିର ଶକ୍ତ ଜାବ ଭିତରୁ ବାହାରକରି ପାରୁନଥିଲା ଆଉ । ସେ ମାଟିଆଣୀ ଝିଅଟି ସେ ଜନ୍ତୁଟିକୁ ଚାପଦେଇ ଓଦାମାଟି ଉପରେ ମାଡି ବସିଛି କେତେବେଳୁ ।

ଆଷାଢ଼ ଆସିବାକୁ ଆଉ ଦି' ତିନି ଦିନ ବାକିଥାଏ ସେ ତିଥିକୁ । କମ ମାଟିଆଣୀର ଖାଲି ଦେହ ଯେଉଁଠି ମାଟିକୁ ଛୁଇଁଥିଲା ସେଇପାଖ ଭିଜା ମାଟି ଉପରେ ଦି' ତିନିଟା ସାଧବବୋହୂ ବି ଚାଲୁଥିଲେ ।

କଳା ଛେଳିଟାର ଓସାରିଆ ପଞ୍ଜର ଉପରେ ସେଦିନ ସେ ମାଟିଆଣୀ ଝିଅଟି ଯେପରି ଲୋଟି ପଡିଥିଲା । ଛେଳିଟା ଖୁବ୍ ଜୋର୍‌ରେ ଛାଟିପିଟି ହେଉଥିଲା ।

ବଗୁଲିଆ ମାଧିଆ କେତେବେଳୁ କଟାଂ ବାଉଁଶ ବୁଦାମୂଳେ ଛିଡାହୋଇ ଏକ ଧ୍ୟାନରେ ଦେଖୁଥିଲା କମ ମାଟିଆଣୀର ଲୁଗାପଟା ନଥିବା ଅଧା ଲଙ୍ଗଳା ଦେହକୁ । ମାଧିଆ ତାଳ ବରଡା କାଟି ଆଗରୁ ରଖିଛି । ସେ ଯାଇ ଦିନ ଦି' ପହରୁ ଡାକି ଆଣିଥିଲା ଏ ମାଟିଆଣୀ ଝିଅଟିକୁ ଖାସି ପଟଟାକୁ ମାରିଦେବା ପାଇଁ ।

କଳା ଖାସିପଟଟା ଚାହୁଁ ଚାହୁଁ ମାଟିଆଣୀ ଝିଅ କମକୁ ଅଲଗଛ ଲଙ୍ଗଳା କରିଦେଇ ତା' ଶିଙ୍ଗରେ କମର ଛିଟ ଶାଢ଼ୀଟା ଧରି ଉଠିପଡିଲା ଓ ବୋବାଳି ଛାଡି ଦୌଡିଲା ।

ବଡ଼ମାନେ ଆଡ ହୋଇଗଲେ । ଯୁବତୀ ହେବାକୁ ଯାଉଥିବା ସାଇ ଝିଅମାନେ ଅଗତ୍ୟା ଆଖି ବୁଜିଦେଲେ । କମ ମାଟିଆଣୀର ନୀଳ ପରବତ ପରି ବାଳ ପେଣ୍ଡାଟି ସେତେବେଳକୁ ଫିଟି ପଡିଥିଲା । ଛେଳିଟି ବାରବାର ମୁହଁ କଚାଡି କମର ବାଳକୁ କାଦୁଅ କରି ଦେଇଥିଲା । ସେଇ ଲମ୍ବା ବାଳରେ ତା' ଛାତି ପେଟକୁ ଢାଙ୍କି ପକାଇଲା ।

କମ ମାଟିଆଣୀ ଆଡ଼ୁ ଆଡ଼ୁ ହୋଇଯାଇ ପାଖ ଦଳ ଗଡିଆରେ ପଶିଗଲା । ସେଇ ସାପ ଦୁଇଟାର ରତିକ୍ରୀଡା ତଥାପି ସମାପନ ହୋଇନଥିଲା । ସେମାନେ ଗଡିଆର କିଛିଦୂର କଳମଲଟା ଉପରେ ଯୁଗବନ୍ଦୀ ହୋଇ ପଡିଥିଲେ । ଖସି ଯାଇଥିବା ଖାସିଟାକୁ ଧରିବାପାଇଁ ଆପାତତଃ ନବଯୁବକ ହେବାକୁ ଯାଉଥିବା ତିନି-ଚାରି ଜଣ ଗ୍ରାମ୍ୟ ବାଳକ ତା' ପଛରେ ଦୌଡିଲେ ।

ଏସବୁ ଗାଁ ଅପେରା ର ପାହାନ୍ତି ପହର ର ଦୃଶ୍ୟପରି ମନେହେଲା । ଘଟଣାର ଏତେ ଦ୍ରୁତ ନାୟକୀୟତାକୁ ବିଶ୍ୱାସକରି ହେଉନଥାଏ ।

ସେତେବେଳକୁ ଇଶାଣ କୋଣରେ କଳା ହାଣ୍ଡିଆ ଭାରି ବଡ ମେଘ ଖଣ୍ଡେ ଉଠାଇ ଆସିଥିଲା ।

ସେ ଛେଳିଟାକୁ ଶେଷରେ ସେମାନେ ସେଇ ଦଳ ଗଡିଆ କଳମ ଶାଗ ଲଟା ଉପରେ ମାଡି ବସିଲେ । ସେ ମାଟିଆଣୀ ଝିଅର ଚିରା ଶାଢୀଟା ଆଣି ମାଧିଆ ଗଡିଆରେ ଛାତିଏ ପାଣିରେ ପଶି ଶରାହତ ମୃଗୁଣୀ ପରି କାକୁସ୍ଥ ହୋଇ ଚାହିଁଥିବା କମକୁ ଆଣି ଦେଇଥିଲା

କଳା ଛେଳିଟା ଗଡିଆ ଆଡିରେ ଛିଡାହୋଇ ଧଇଁସଇଁ ହେଉଥିଲା । ଆଉ ତା' ଆଖି ଲାଲ୍ ପଡି ଯାଇଥିଲା । ମାଧିଆ ଆଖି ବି ସେଦିନ ଭାରି ଲାଲ୍ ଦିଶୁଥିଲା ।

କେତେବେଳୁ ଗର୍ଭିଣୀ ଗାଈଟିଏ ପାଖ କରଞ୍ଜ ଗଛମୂଳେ ଶୋଇରହି ଭାରି କଷ୍ଟ ପାଉଥିଲା ସେଦିନ । କେତେବେଳେ ଭାରି ଗର୍ଜନ କରୁଥିଲା ଅତିଶୟ ଗର୍ଭ ଯନ୍ତ୍ରଣାରେ । ଦି' ମୁଣ୍ଡିଆ ମଲା ବାଛୁରୀଟାଏ ତା'ର ଜନ୍ମହେଲା । ହେଲେ ଏଯାଏଁ ଗାଈର ଫୁଲ ପଡିନି । ସେଇ ଗେଡ ଓ କାଳିଆ ଗଉଡ ବୁଢୀଟି ସେମିତି ଜଗିଛି । ଗାଁ ବାରିକ ତା' ଗାଈ କଥା ପକେଇଛି । ତା' ଗାଈ ଆଉ କାହିଁ ଏ ଦି' ସାଲ୍ ହେଲା ଫଳ ରଖୁନି ।

ଆକାଶରେ ପୁଣି କଳା ହାଣ୍ଡିଆ ମେଘ । ବୋଧହୁଏ ଆଉ ଟିକିଏ ପରେ ଝଡ ତୋଫାନ ହେବ ।

ଦଳେ ପିଲା ଛିଡାହୋଇ ତଥାପି ସେ ଦି' ମୁଣ୍ଡିଆ ମଲା ବାଛୁରୀଟିକୁ ଦେଖୁଛନ୍ତି ।

ରଘୁ ମାଟିଆର କୁଆଁରୀ ଝିଅ କମ ସେମିତି ଓଦାହୋଇ ଛିଡା ହୋଇଛି ମନ୍ଦିର ର ଏକ ଅଳସ କନ୍ୟାପରି । ତା' ଓଦା ଶାଢୀ ଭିତରୁ ତା'ର ସ୍ତନାଗ୍ର ବି ଦିଶି ଯାଉଥିଲା ।

ଫଳନ୍ତି ଗଛ ଯେପରି ଶୋଭାବନ୍ତ ଦିଶେ, ସେମିତି ସୁନ୍ଦର ଦିଶେ ନାରୀର ସ୍ତନ । ସବୁ ନଗ୍ରର ନାରୀମାନେ ସ୍ତନବତୀ, ଏଇଥିପାଇଁ ସେମାନେ ସମସ୍ତେ ମାଆ ହୁଅନ୍ତି ।

ଆଷାଢ଼ର କ୍ଷେତବାଡ଼ି ଶସ୍ୟ ଶ୍ୟାମଳା ହେଲାପରି କମ ହୁଏତ କାଲି ମାଆ ହେବ ।

କମ ସେମିତି ସଞ୍ଜ ପର୍ଯ୍ୟନ୍ତ ଛିଡାହୋଇ ରହିଥିଲା । ବହିରେ ଯେଉଁସବୁ ସୁନନ୍ଦା ଲାବଣ୍ୟବତୀମାନଙ୍କ କଥା ପଢିଥିଲି, ଆଉ ଗାଁ ସଂସ୍କୃତ ପଣ୍ଡିତଙ୍କ ଠାରୁ ଯେଉଁ ରସବତୀମାନଙ୍କ କଥା ଶୁଣିଥିଲି, ମୋତେ ମାଟିଆଣୀ ଝିଅ କମ ସେଦିନ ସେମିତି ସେଇ କ୍ଲାସିକ ନାୟିକା ଭଳି ମନେ ହୋଇଥିଲା, ଚଚଂଳାକ୍ଷି ବା ଇଚ୍ଛାବତୀ ପରି ।

ଉଙ୍କୁଡି ଯାଇଥିବା କ୍ଷେତରେ ବି ପୁଣି ଫଳ ଧରିବା ପାଇଁ ଫୁଲ ଫୁଟେ । ଆଉ ସେ ଫୁଲ ଫୁଟାବେଳ ସବୁ ଏମିତି ।

ସେଦିନ ତା'ର କିନ୍ତୁ ଆଉ କେହି ନଥିଲେ । ତା' ନିଜ ମାଆ ତ ଏଠିକି ତା' ବାପା ଆସିବା ପୂର୍ବରୁ କେଉଁ ତଳ ତେଲଙ୍ଗା ଦେଶରେ ମରି ଯାଇଥିଲା । ତା' କାନରେ ହଳଦୀ ଗରଗର ସୁନା ଦିପଟ ପିନ୍ଧିଥିବା ତା' ବାପା ରଘୁ ମାଟିଆ ବି ଚାରିବର୍ଷ ହେଲା ମରିଗଲାଣି । ଆଉ ଏ ଗଲା ଶୀତରେ କମର ବୁଢୀମାଆ ବି ଖସିଗଲା ।

ଅତି ଆଦର ର ତା' ଛେଳି ପଲକୁ ଆମ ଗାଁ କେଳାପଦୀରେ ଛାଡିଦେଇ ଧୁ ଧୁ ଖରାବେଳେ ସେଇ ଝିଅଟି ଖାସ୍ ଆମ ଗାଁ ବରଗଛ ମୂଳେ ବସିଥାଏ ନିରିମାଖି ତଅପୋଇ ପରି । ତା' କଳାବାଳ ସବୁ ନୀଳ ଢେଉପରି ଲହଡି ଭାଙ୍ଗୁଥାଏ । ତା' ଆଖି ଦୁଇଟି ନୀଳ କଇଁପରି ଥିଲା ।

କମ ଥିଲା ମୋ ବୟସର ନବ ଯୁବକମାନଙ୍କ ପାଇଁ ସନ୍ତାପିତ ନିଶୂନ ଦିପହର ପରି । କାରଣ ଆମେ କେହି ତା' ପ୍ରେମ ପାଇନଥିଲୁ କି ତା' ପ୍ରେମରେ ପଡି ମସଗୁଲ ହୋଇ ଯାଇନଥିଲୁ । ଅଥଚ ଫଗୁଣର ସକାଳ ପରି କମ ଭାରି ମନଲୋଭା ଥିଲା ।

ପ୍ରେମରେ କେବଳ ଏ ପୃଥିବୀ ପରିମଣ୍ଡଳ ପରି ମନେହୁଏ, ନହେଲେ ନାହିଁ ।

ଆମ ଗାଁରେ ଆଖଡା କରୁଥିବା ଟୋକାମାନେ କମକୁ ଯୋଡି ତା' ରୂପ ବର୍ଣ୍ଣନାପୂର୍ବକ ଅନେକ ବିମୁଗ୍ଧ ସଂଳାପ ନାନା ବିଶେଷଣ ଭିତରେ ପୂଜାମଣ୍ଡପ କାନ୍ଥରେ ଲେଖିଥାନ୍ତି । ଖରାବେଳେ ନୂଆକରି ନିଶ ଗଜୁରି ଆସୁଥିବା ଗାଁ ଟୋକାମାନେ ସେଇ କମ ମାଟିଆଣୀକୁ ଦେଖି ସାରା ଖରାବେଳ ତା'ରି କଥାରେ ହିଁ କଟାଇ ଦିଅନ୍ତି ।

ସେ ଆମ ଗାଁର ଜାନପଦିକ ପରିମଣ୍ଡଳ ଭିତରକୁ ଆସିପାରୁ ନଥିଲା କି ଆମେ କେହି ତା' ବରଡା ଛାତର ପଲାଘର ପରିସର ଭିତରକୁ ବି ଯାଇପାରୁ ନଥିଲୁ । ତା'ର ସୁନ୍ଦରପଣରେ ବାରବାର ମୁଗ୍ଧ ହୋଇ ଯାଉଥିବା ଆମେ ଯୁବକମାନେ ସବୁ ତାକୁ ଅତଳ ତଳ ଗଭୀର ପାଣିରେ ରହୁଥିବା ଜଳଦେବୀ ବୋଲି ଭାବୁ, ଯାହାକୁ କେହି ପାଇପାରିବେନି ।

ମୁଁ କିନ୍ତୁ ସେଇ ଶ୍ୟାମଳୀ ମାଟିଆଣୀ ଝିଅର ରୂପରେ ପାଗଳ ହୋଇ ଯାଇଥିଲି । ମୋ ମନ ଗହୀରରେ ସେ ହିଁ ଗୋଟିଏ ଫୁଲ ହୋଇ ଫୁଟିଥିଲା । ମୁଁ ଖାସ ନୀରବତାକୁ ଅନୁଭବ କରିବା ପାଇଁ ତା' ନାଁ ଗୋପନ କରି ରଖିଥିଲି ।

କମ ସେତେବେଳେ ତା' ବୁଢୀମାଆ ସାଙ୍ଗରେ ପ୍ରାୟ ସବୁଦିନ ଖରାବେଳେ ଆମ ଗାଁକୁ ଆସେ । ଆମ ଦକ୍ଷିଣ କଡ ବାଡିରେ ପଶି ଛେଳି ଚରାଏ । ଆମକୁ ବେତ କୋଳି ତୋଳିଦିଏ, ଆଉ କଟାଂବୁଦା ମୂଳେ ସେ କଇଁଛ ଧରେ । ଆର ବାଡି ଗଡିଆ ପାଣିରେ ପଶି ତା'ର କଙ୍କଡା ଓ କଇଁଛ ଧରିବାକୁ ଆମେ ଆମ ଗାଁର ନବକିଶୋର ସବୁ ଭାରି ଉପଭୋଗ କରୁଥିଲୁ । ଆମର ମନେଅଛି ସେ ଗଡିଆ ତୁଠକୁ କେହି ବଡ ମଣିଷ ଆସିଲେ କମ ଆଉ ଜମା ପାଣିରୁ ଉଠେନା ।

ତା' ଆଖିର ଲାଜରା ଲାଜରା ଚାହାଁଣିକୁ ଧରିପାରିଲା ବେଳକୁ ଆମେ ନବ ଯୁବକ ସବୁ ପ୍ରାୟ ଉଚ୍ଚତର ଶିକ୍ଷା କଚ୍ଚେ ଗାଁରୁ ସହରକୁ ନିର୍ବାସିତ ହୋଇଗଲୁ ।

ସେ ସାକ୍ଷାତ୍ ବାରୁଣୀ ପରି ପାଣିରୁ ଉଠି ଆସୁଥିବା ଶ୍ୟାମଳୀ ମାଟିଆଣୀ ଝିଅଟି ଆମ ଆଗରେ ଆଉ ପାଣିରେ ପଶିଲାନି ।

ସେଦିନ ରାତି ନ ପାହୁଣୁ ଗାଁ ତମାମ ହୁରି ପଡିଗଲା କମ ମାଟିଆଣୀକୁ ମାରି କିଏ ସମୁଦ୍ର ପନ୍ତାରେ ପୋତି ପକାଇଛି ।

ମାଧିଆ ସେଦିନ ତାକୁ କୁଆଡେ କାଦୁଅ ଭିତରୁ ଉପରକୁ ଟେକି ଆଣିଥିଲା । ଏକ ବିସର୍ଜିତ ଦେବୀ ପ୍ରତିମା ପରି ସେ ଦିଶୁଥିଲା । ତା' ଦେହରେ ଅବାକ୍ କିଛି ନଥିଲା । ସେଇ ସୁନାର ତାବିଜଟି ଛଡ଼ା, ଯାହାକୁ ସେ ତା' ଛୁଆଦିନୁ ସବୁଦିନେ ପିନ୍ଧୁଥିଲା ।

ତା' ଦେହ ଦିଶୁଥିଲା ଶ୍ରାବଣର ପୃଥିବୀ ପରି ସିକ୍ତ ଓ ପୂରିଲା ପୂରିଲା । ଗାଁର ସମସ୍ତଙ୍କ ମୁହଁରେ ଏକ ରୁନ୍ଧିରଖା ଦୁଃଖର ଛାଇ । କମ ମାଟିଆଣୀକୁ କେଉଁ ସଇତାନ ମହିଷାସୁର ମାରିଲା ? କିଏ ପାମର ତାକୁ ଦ୍ରୌପଦୀ କରି ବିବସନା କଲା ?

ତଳସାହି, ଉପରସାହି, ମଝିସାହିର ସବୁ ସାହିବାଲା କମ ମାଟିଆଣୀର ମୃତ୍ୟୁରେ ଯେମିତି ହଠାତ୍ ଗୋଟିଏ ସୁନ୍ଦର ଦେବୀ ପ୍ରତିମାଠାରୁ ଅଲଗା ଓ ଅସମ୍ପର୍କିତ ହୋଇଗଲେ ।

ସମସ୍ତେ ଅନୁଭବ କଲେ ଗାଁକୁ ସେ ଦେବୀ ପ୍ରତିମାଟି ଆପଦ ବିପଦରୁ ପରିତ୍ରାଣ କରିଦେବା ପାଇଁ ଜଗି ରହିଥିଲା ଯେପରି !

ପଦ୍ମ ପୋଖରୀ ଆଢ଼ିରେ କମ ମାଟିଆଣୀର ବରଡ଼ା ପଲା ସେମିତି ଖାଲି ପଡ଼ିଥିଲା ଓ ତା' ଛେଳିପଲ ସକାଳକୁ ସେଦିନ ନିରାଶ୍ରିତ ହୋଇ ଯାଇଥିଲେ । ତା' ଟିକିଟିକି ଛେଳିଛୁଆ, କୁକୁଡା ଛୁଆଙ୍କ ଆଖିରେ ବି କରୁଣତା ଭରି ଯାଇଥିଲା ।

ଗାଁର ଜନପୁଞ୍ଜ ଭିତରୁ ଆଲୁରୁ ବାଲୁରୁ ହୋଇ ଦଣ୍ଡେ ପରେ ବାହାରିଲା ଜଣେ ଶ୍ଲଥଚର୍ମା ବୁଢ଼ୀଟିଏ । ଅଶୀବର୍ଷ ଡେଇଁ ଆସିଥିବା ସେ ବୁଢ଼ୀଟି ବାଡିଟିଏ ଧରି ଅଭିସମ୍ପାତ ବର୍ଷଣକରି ଆଗକୁ ଆଗକୁ ଯେପରି ପହଁରି ଆସୁଥିଲା । ଆହା କମ ମାଟିଆଣୀର ମୃତ୍ୟୁରେ ତା' ଆଖିରୁ ଦି' ଧାର ତତଲା ଲୁହ ବହି ଆସୁଥିଲା । ବୁଢ଼ୀ ବାଡିଧରି ଦଣ୍ଡେ ଥକ୍କାମାରି ପୋଖରୀ ଆଢ଼ିଝିଙ୍କା ସାହାଡ଼ା ଗଛ ମୂଳେ ଛିଡ଼ାହେଲା

ସକାଳେ ସୂର୍ଯ୍ୟ ଦେବତା ଉପର ଆକାଶକୁ ଉଠିଲେ । ଏତେବଡ ପୃଥିବୀ ପ୍ରଦକ୍ଷିଣ କରୁଥିବା ସୂର୍ଯ୍ୟଦେବ କାହିଁକି ଏ ମାଟିଆଣୀ ଝିଅର ମୃତ୍ୟୁରେ ଉଇଁବାକୁ ବିଳମ୍ବ କରନ୍ତେ ? ଚଢ଼େଇ ସବୁ ଆକାଶକୁ ଉଡିଗଲେ । ଦୂର ଗାଁର ଅନ୍ଧାରିଆ ଦିଗ୍‌ବଳୟ କ୍ରମଶଃ ଉଜ୍ଜ୍ୱଳି ଉଠିଲା । ମାଟିଆଣୀ ଝିଅର ମୃତ୍ୟୁରେ କିଏ କାହିଁକି ସମ୍ପର୍କିତ ହେବ ?

ଧର୍ଷିତା ପୃଥିବୀ ପରି ନିଶ୍ଚଳ ହୋଇ ପଡି ରହିଥିଲା କମ ମାଟିଆଣୀ । ଏକ ସୁନ୍ଦର ଶସ୍ୟଶ୍ୟାମଳା କ୍ଷେତକୁ ଦୁର୍ବୃତମାନେ ରାତି ପାହିଲା ପୂର୍ବରୁ ଯେପରି ଉଜାଡ଼ି ଦେଇଛନ୍ତି ।

ପାଣି କାଦୁଅରେ ଭିଜି ଯାଇଥିବା ତା' ଚିରା ଛିଟ ଶାଢ଼ୀଟିରେ ରକ୍ତ ଲାଗିଥିଲା । ବନସ୍ତର ଛାଇପରି ତା' ବାଳ ଫିଟି ପଡିଥିଲା ପାଣି କାଦୁଅ ଉପରେ ।

ଦଶହରା ବାସିଦିନ ସକାଳ । କମ ମାଟିଆଣୀର ଶବ ଚାରିକଡ଼େ ଆହୁରି ଆହୁରି ପାଖ ଗାଁର ଲୋକ ଜମା ହୋଇଗଲେ । ଟୋକୀଟୋକାମାନେ କବିଙ୍କ ପରି ବିହ୍ୱଳ ହେଲେ । ବୁଢ଼ା ବୁଢ଼ୀମାନେ ଋଷିଙ୍କ ପରି ସମାଧିସ୍ଥ ହେଲେ ।

ଲୁହ ଭର୍ତି ଆଖିରେ ବୁଢ଼ୀ କହିଲା, ଏ ଝିଅଟି ସାକ୍ଷାତ ଦେବୀ ପ୍ରତିମା ଥିଲା । ଏ ଗାଁକୁ ବିପଦ ଆପଦରୁ ଉହାଡ଼କରି ରଖିଥିଲା । ରେ ଅଳପାଇଷେ ପାପୀ ! ତମମାନଙ୍କୁ ଧରମ ଛାଡିଗଲା । ଏ ରଘୁ ମାଟିଆର ନିଜ ଝିଅ ନଥିଲା । ସେଦିନର ସେ କାଳ ରାତି ପାହିଲା ବେଳକୁ ରଘୁ ମାଟିଆ ଏ ଝିଅଟିକୁ ତଳ ତେଲେଙ୍ଗା ଦେଶ କେଉଁ ନଈ ଦାଢ଼ରୁ ପାଇଥିଲା । ନଈର ସୁଅ ପଡ଼ିଥିଲା । ସାରା ରାତି ବର୍ଷାଖାଇ ବି ସେ ସକାଳକୁ ହାତଗୋଡ଼ କଚାଡ଼ି ଖେଳୁଥିଲା ।

ବୁଢ଼ୀ ଥମ୍‌କରି ଏତକ କହି ମାଟି ଉପରେ ବସିପଡ଼ିଲା ।

ଅଶିଣର ସକାଳରେ କମ ମାଟିଆଣୀର ଦେହ ଆହୁରି ତୋଫା ଆହୁରି ସୁନ୍ଦର ଦିଶୁଥିଲା ଯେପରି ! ଦେବୀ ପ୍ରତିମା ପରି ମାଟିକୁ ଛୁଇଁଲାରୁ ସେ ଆହୁରି ଜ୍ୟୋତିର୍ମୟୀ ଦିଶୁଛି ଯେପରି ! ମରଣ ତାକୁ ଆହୁରି ସୁନ୍ଦର ଓ ସୁଶ୍ରୀ କରିଛି ।

ମାଧିଆ ମାଇକିଆଙ୍କ ପରି କାନ୍ଦୁଥିଲା । ଆମେ ଦେଖିଛୁ ମାଧିଆ କେମିତି ବିମୁଗ୍ଧ ହୋଇଯାଏ ସେ ମାଟିଆଣୀ ଝିଅକୁ ଦେଖିଲେ । ବହ୍ନିବଳୟ ପରି ଏ ନବୀନା ମାଟିଆଣୀ ଝିଅର ପ୍ରେମ ମାଧିଆକୁ ନିଃସର୍ତ ଭାବେ ପ୍ଲାବିତ କରେ, ପୁଲକିତ କରେ । ମାଧିଆ ଖାସ୍ ସେ ମାଟିଆଣୀ ଝିଅ ପ୍ରେମରେ ମସ୍‌ଗୁଲ ହୋଇ ରହିଯାଇଛି । କଲିକତାରେ କାମ କରେ ସେ । ଏ ଝିଅର ପ୍ରେମରେ ପଡିଲାଠାରୁ ସେ ଆଉ କଲିକତା ଯାଉନି ।

ମାଧିଆ ଝିଅଙ୍କ ପରି ଦୁଃଖରେ କାନ୍ଦେ ବୋଲି ଆମ ଗାଁ ଟୋକାମାନେ ତାକୁ ଥଟ୍ଟା କରନ୍ତି । ଖରାବେଳେ ବି ଗଛ ପତରରେ ବା ପକ୍ଷୀର ଗୀତରେ କିଛି ପାହାନ୍ତ ପହର ର ଭାବ ଲାଖି ରହିଥିଲା ଭଳି ପୁରୁଷ ଭିତରେ ବି ବ୍ୟକ୍ତ ଅବ୍ୟକ୍ତ ହୋଇ କିଛି ନାରୀଭାବ ଥାଏ ।

ମାଧିଆ ମନ୍ଦାର ଫୁଲ ମାଳଟେ ଆଣି କମ ବେକରେ ପିନ୍ଧାଇଦେଲା । ଜମା ହୋଇଥିବା ବୁଢ଼ାବୁଢ଼ୀ ଲୋକମାନେ ହରିବୋଲ ଦେଲେ । ଗାଁର ସଧବା ସ୍ତ୍ରୀଲୋକମାନେ ହୁଳହୁଳି ଦେଲେ ।

ସେ ପଦ୍ମ ପୋଖରୀ ଆଡ଼ି ସେଦିନ ଦେବୀ ଯାତରା ପରି ମନେହେଲା ।

ଧର୍ଷିତା କମ ମାଟିଆଣୀର ମୃତଦେହ ସମ୍ପୂର୍ଣ୍ଣ ଅନାବୃତ ହୋଇ ଏ ମାଟି ଉପରେ ପଡ଼ି ରହିଥିଲା । ଗାଁରେ ସେ ଜନପୁଞ୍ଜ ଆଢୁଆଳରେ ଏ ବସୁନ୍ଧରାକୁ ଉଜାଡ଼ିଥିବା ପାପୀମାନେ ଏ କୁମାରୀ ମାଟିଆଣୀ ଝିଅର ରକ୍ତରେ ଭିଜିଥିବା ପୃଥିବୀ ଉପରେ ପାଦ ଥାପି ଛିଡା ହୋଇଥିବେ ନିଶ୍ଚୟ ।

ପାଖ ଗାଁ ଲୋକ ଦୂର ନଈପଠାରୁ ଫେରୁଥିଲେ ଦେବୀ ମେଢ଼ ବିସର୍ଜନ ସାରି ।

ସୂର୍ଯ୍ୟ ଉପର ଆକାଶକୁ ଉଠିଲେ, ଆଉ ସବୁଦିନ ପରି ସେଇ ପଦ୍ମ ପୋଖରୀ ଆଡ଼ିରେ ଖରା ଚହଟିଲା ।

ସେଇ ମାଟିଆଣୀ ଝିଅର ମୃତ ଯୋନିର ମୁକ୍ତିପାଇଁ ହରିବୋଲ ଦେଉଥିବା ଲୋକମାନେ ଅବାକ୍ ହୋଇ ଚାହିଁ ରହିଥିଲେ ସେ ପଦ୍ମ ପୋଖରୀ ଆଡ଼ିରେ ସକାଳ ହେବାର ଦୃଶ୍ୟକୁ ।

---

## ଓଡିଆ ସାହିତ୍ୟ ର ବିଶିଷ୍ଟ ସାହିତ୍ୟକାର

## ତରୁଣକାନ୍ତି ମିଶ୍ର

ଓଡିଆ ସାହିତ୍ୟ ର ଆଧୁନିକ ଗଳ୍ପଜଗତର ଏକ ବହୁ ପରିଚିତ ନାମ - ତରୁଣକାନ୍ତି ମିଶ୍ର । ଜଣେ ଭାରତୀୟ ପ୍ରଶାସନିକ ସେବା (ଆଇ.ଏ.ଏସ୍.) ଅଧିକାରୀ । ଓଡିଶା ସରକାରଙ୍କ ମୁଖ୍ୟ ଶାସନ ସଚିବ ପଦବୀରୁ ଅବସରପ୍ରାପ୍ତ ସହିତ ଓଡିଆ ସାରସ୍ୱତ ଜଗତର ଜଣେ ସ୍ରଷ୍ଟା । ଭାରତୀୟ ସାହିତ୍ୟ ର ଜଣେ ପ୍ରତିଷ୍ଠିତ ଗାଳ୍ପିକ ମଧ୍ୟ ।

ମଣିଷ ଜୀବନ ସହିତ ଗଭୀର ପରିଚିତ ଓ ସମ୍ପୃକ୍ତି ତାଙ୍କ ଗଳ୍ପରେ ସହଜଲଭ୍ୟ, ଯାହା ତାଙ୍କୁ ଜଣେ ବଳିଷ୍ଠ ମାନବବାଦୀ ଗାଳ୍ପିକର ସମ୍ମାନ ଦିଏ । ତାଙ୍କ ଗଳ୍ପରେ ମନସ୍ତାର୍ତ୍ତିକ ସୂକ୍ଷ୍ମତା ସହିତ ରହିଛି ବୌଦ୍ଧିକ ତାର୍ଯ୍ୟକତା । ଅନଥା - ବାକ ବିଳାସ, ବିବର୍ଜିତ ଶୈଳୀ, ଆବେଗଧର୍ମୀ ଭାବ ଓ ଚିତ୍ରକଳ୍ପର ସଫଳ ପ୍ରୟୋଗରେ ରୁଦ୍ଧିମନ୍ତ ତାଙ୍କ ଗଳ୍ପ ସ୍ୱକୀୟ ଦୀପ୍ତିରେ ଦୀପ୍ତିମାନ ।

ତରୁଣକାନ୍ତି ଙ୍କ ଜନ୍ମ - ୩ ଅଗଷ୍ଟ, ୧୯୪୯ ମସିହା, କେନ୍ଦୁଝରଗଡ (ଓଡିଶା)ରେ । ମା'ଙ୍କ ନାମ - ତିଳୋତମା ମିଶ୍ର, ବାପାଙ୍କ ନାମ - ଯୁଧିଷ୍ଠିର ମିଶ୍ର । କେନ୍ଦୁଝରରେ ପ୍ରାଥମିକ ଶିକ୍ଷାପରେ ପ୍ୟାରୀମୋହନ ଏକାଡେମୀ କଟକରେ ମାଟ୍ରିକ୍ (ହାଇସ୍କୁଲ ଶିକ୍ଷା) ପାସ୍ ପରେପରେ ପ୍ରାକ୍ ବିଶ୍ୱବିଦ୍ୟାଳୟ ଶିକ୍ଷା, ରେଭେନ୍ସା କଲେଜ, କଟକରୁ - ସ୍ନାତକ (ବି.ଏ.), ବିଜେବି କଲେଜ, ଭୁବନେଶ୍ୱର ରୁ ଓ ଆପ୍ଲାଏଡ୍ ଅର୍ଥନୀତିରେ ସ୍ନାତକୋତର (ଏମ୍.ଏ.), ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର ରୁ ତତ୍‌ସହିତ ଏମ୍.ଏ., ୟୁନିଭରସିଟି ଅଫ୍ ଇଷ୍ଟ ଆଙ୍ଗୋଲିଆ, ଇଂଲଣ୍ଡରୁ ଶିକ୍ଷାପ୍ରାପ୍ତ ।

କର୍ମମୟ ଜୀବନରେ -

ଭାରତୀୟ ପ୍ରଶାସନିକ ସେବା (ଆଇ.ଏ.ଏସ୍.) ୧୯୭୫ ମସିହାରେ ଓଡିଶା କ୍ୟାଡରରେ ଯୋଗଦାନ - ଜିଲ୍ଲାପାଳ, ସୁନ୍ଦରଗଡ, ରେଭ୍ୟୁନ୍ ଡିଭିଜନାଲ କମିଶନର, କଟକ - ଉପମୁଖ୍ୟ ପ୍ରଶାସକ - ଦଣ୍ଡକାରଣ୍ୟ ପ୍ରକଳ୍ପ ସହିତ ବିଭିନ୍ନ ବିଭାଗର ସଚିବ - ତନ୍ମଧ୍ୟରୁ -

ସ୍କୁଲ ଓ ଗଣଶିକ୍ଷା ବିଭାଗ, ସାଧାରଣ ପ୍ରଶାସନ ବିଭାଗ, ଯୋଜନା ଓ ସମନ୍ୱୟ ବିଭାଗ, ଅବକାରୀ ବିଭାଗ, ମହିଳା ଓ ଶିଶୁ କଲ୍ୟାଣ ବିଭାଗ, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ, ସ୍ୱରାଷ୍ଟ୍ର ବିଭାଗ, ଶକ୍ତି ବିଭାଗ ଓ ରାଜସ୍ୱ ବିଭାଗରେ ଓଡିଶାର ଜନସାଧାରଣଙ୍କ ସେବା କରିଅଛନ୍ତି ।

ଅତିରିକ୍ତ ମୁଖ୍ୟ ଶାସନ ସଚିବ ଓ ଓଡିଶାର ମୁଖ୍ୟ ଶାସନ ସଚିବ ପଦବୀରୁ ଅବସରପ୍ରାପ୍ତ ।

ବିପର୍ଯ୍ୟୟ ପରିଚାଳନା କ୍ଷେତ୍ରରେ ତାଙ୍କର ପ୍ରମୁଖ ଭୂମିକା ରହିଥିଲା - ରାଜସ୍ୱ ବିଭାଗର ସଚିବ ପଦବୀରେ କାର୍ଯ୍ୟ କରିବା ସମୟରେ ।

ମିନିମମ୍ ସପୋଟ୍ ପ୍ରାଇସ୍ (ଏମ୍.ଏସ୍.ପି.) କୃଷକମାନଙ୍କ ନିର୍ମିତ -

ଜନସାଧାରଣଙ୍କ ପାଇଁ ଖାଦ୍ୟ ସୁରକ୍ଷା ଆଇନ୍‌ରେ ସମସ୍ତଙ୍କୁ ଖାଦ୍ୟ ପ୍ରଦାନ ସହ ଓଡିଶାରେ ଅନାହାରକୁ ରୋକିବାପାଇଁ ତାଙ୍କର ମୁଖ୍ୟ ଭୂମିକା ରହିଥିଲା ।

୨୦୦୬ ମସିହାରେ ବିସ୍ଥାପିତମାନଙ୍କ ପୁନର୍ବାସ ନିମନ୍ତେ ସେ ଏକ ନୂତନ ନୀତି ନିର୍ଦ୍ଧାରଣ କରିବାରେ ପ୍ରମୁଖ ଭୂମିକା ନେଇଥିଲେ, ଯାହା ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଥିଲା ।

### ସାରସ୍ୱତସାଧକ ତରୁଣକାନ୍ତି -

ତରୁଣକାନ୍ତିଙ୍କର ସାରସ୍ୱତ ପ୍ରତିଭାର ବିକାଶ ଘଟିଥିଲା । ପିଲାଟି ଦିନରୁ ପଚଂମ ଶ୍ରେଣୀରେ ପାଠ ପଢୁଥିବା ସମୟରେ ମାତ୍ର ଦଶବର୍ଷ ବୟସରେ ଏକ ଗଳ୍ପ ରଚନା କରିଥିଲେ - ଏକ ମା' ଛେଉଣ ଶିଶୁଟିଏକୁ ନେଇ - ପ୍ରଥମ ପ୍ରକାଶିତ ଗଳ୍ପ - "ହେ ପୃଥିବୀର ନାଗରିକ" - ସେ ସେତେବେଳେ ହାଇସ୍କୁଲ୍ ଛାତ୍ରଥିଲେ, ସେ ଗଳ୍ପଟି ତାଙ୍କୁ ଅନେକ ପ୍ରଶଂସା ଦେଇଥିଲା । ତା'ପରଠାରୁ ତାଙ୍କର ସୃଷ୍ଟି ଆଗକୁ ମାଡି ଚାଲିଥିଲା ।

୧୯୬୮ ମସିହାରେ ତାଙ୍କ ପ୍ରଥମ ଗଳ୍ପ ସଂକଳନ ପ୍ରକାଶିତ ହୋଇଥିଲା । ସେତେବେଳେ ସେ ବିଜେବି କଲେଜରେ ସ୍ନାତକ (ବି.ଏ.) ଛାତ୍ରଥିଲେ, ତାଙ୍କ ସାରସ୍ୱତ ସୃଷ୍ଟିରେ କୋଡିଏରୁ ଅଧିକ ପୁସ୍ତକ ପ୍ରକାଶିତ ହୋଇ ପାଠକୀୟ ଆଦୃତ ଲାଭ କରିଅଛି ।

ଶତହର୍ଦ୍ଦ ଶତମ୍ (ଉପନ୍ୟାସ) - ୨୦୦୫ - ବିଦ୍ୟାପୁରୀ ପ୍ରକାଶନୀ

ଆବର୍ତ୍ତର ଦୁଇଟି ସ୍ୱର - ୧୯୬୮ - ଶ୍ରୀରାମ ପ୍ରେସ୍

ନିଃସଙ୍ଗତାର ସ୍ୱର - ୧୯୮୦ - କଟକ ଷ୍ଟୁଡେଟ୍‌ସ ଷ୍ଟୋର

କୋମଳ ଗାନ୍ଧାର - ୧୯୮୩ - ଫ୍ରେଣ୍ଡସ୍ ପବ୍ଲିର୍ସସ୍

ବହୁବ୍ରୀହି - ୧୯୮୮ - ଫ୍ରେଣ୍ଡସ୍ ପବ୍ଲିର୍ସସ୍

ପାରାଡାଇଜ ପକ୍ଷୀ ଓ ଜଣେ ନିରସ୍ତ୍ର ଆତତାୟୀ - ୧୯୯୪ - ବିଦ୍ୟାପୁରୀ

ବୀତାଂଶ - ୧୯୬୬ - ଫ୍ରେଣ୍ଡସ୍ ପବ୍ଲିଶର - ଏହି ଗଳ୍ପ ସଂକଳନ ପାଇଁ ୧୯୯୭ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ।

ପ୍ରଜାପତିର ଡେଣାନାହିଁ - ୧୯୯୭ - ଜ୍ଞାନଯୁଗ ପବ୍ଲିକେଶନ

ଆକାଶ ସେତୁ - ୧୯୯୯ - ବିଦ୍ୟାପୁରୀ - ଏହି ଗଳ୍ପ ସଂକଳନ ପାଇଁ ୨୦୦୧ ମସିହାର ଶାରଳା ପୁରସ୍କାରପ୍ରାପ୍ତ ।

ଇତନୀ ଦୂର - କ୍ଷୁଦ୍ରଗଳ୍ପର କିଛି ହିନ୍ଦୀରେ ଅନୁବାଦ - ଭାରତୀୟ ଜ୍ଞାନପୀଠ ପ୍ରକାଶିତ ।

ଲୁବ୍ଧକର ରାତି - ୨୦୦୨ - ଫ୍ରେଣ୍ଡସ୍ ପବ୍ଲିକେଶନ୍

ନିର୍ବାଚିତ ଗଳ୍ପ - ୨୦୦୩ - ଚତୁରଙ୍ଗ ପ୍ରକାଶନୀ, ଭୁବନେଶ୍ୱର

ଆଜିରାତିର ଗଳ୍ପ - ୨୦୦୫ - ଫ୍ରେଣ୍ଡସ୍ ପବ୍ଲିସର

ଜହ୍ନରାତିର ଗଳ୍ପ ସରିନାହିଁ - ୨୦୧୦ - ବିଦ୍ୟାପୁରୀ

ରଜନୀଗନ୍ଧା (ଟାଇମ୍ ପାସ୍) - ୨୦୧୦

ସକାଳର ମାନଚିତ୍ର - ୨୦୧୨ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ଭାସ୍ୱତୀ - ୨୦୧୪ - ବିଦ୍ୟାପୁରୀ - ଏହି ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ - ୨୦୧୯

ସଂବହନ - ୨୦୧୪ - ସମନ୍ୱୟ

କେହି ଜଣେ ଏକାଏକା - ୨୦୧୭ - ପକ୍ଷୀଘର ପ୍ରକାଶନୀ

ତରୁଣକାନ୍ତି ମିଶ୍ର - ଶ୍ରେଷ୍ଠଗଳ୍ପ (ଟାଇମ୍ ପାସ୍) - ପ୍ରକାଶନୀ - ୨୦୧୭

ଅଜଣା ତିଥିର ଜହ୍ନ - ୨୦୨୦ - ବ୍ଲାକ୍ ଇଗଲସ୍ ବୁକ୍ସ - ଓବଲିନ୍, ୟୁଏସ୍ଏ ପ୍ରକାଶିତ

**ସମ୍ମାନ ଓ ପୁରସ୍କାର -**

ସାରସ୍ୱତସାଧକ ତରୁଣକାନ୍ତି ମିଶ୍ର ତାଙ୍କର ସୃଷ୍ଟିପାଇଁ ଅନେକ ସମ୍ମାନ ଓ ପୁରସ୍କାରପ୍ରାପ୍ତ ।

ସାହିତ୍ୟ ଏକାଡେମୀ - ୨୦୧୯ - ନୂଆଦିଲ୍ଲୀ

ଓଡିଶା ସାହିତ୍ୟ ଏକାଡେମୀ - ୧୯୯୭ - ଭୁବନେଶ୍ୱର

ସାରଳା ସମ୍ମାନ - ୨୦୦୧

ଝଙ୍କାର ସମ୍ମାନ - ୧୯୯୭

ଉତ୍କଳ ସାହିତ୍ୟ ସମାଜ (ଫକୀରମୋହନ ଗଳ୍ପ ସମ୍ମାନ) - ୧୯୯୮

କଥା ସମ୍ମାନ - ୧୯୯୮ - ନୂଆଦିଲ୍ଲୀ

ରାଜଧାନୀ ପୁସ୍ତକ ମେଳା ସମ୍ମାନ - ୨୦୦୨

ବର୍ତ୍ତିକା ସମ୍ମାନ - ୨୦୦୨

ପ୍ରଜ୍ଞାଶ୍ରୀ ସମ୍ମାନ - ୨୦୦୩

ଚଳାପଥ ସମ୍ମାନ

ଆକାଶବାଣୀ କଟକ, ସମ୍ମାନୀତ - ୨୦୦୭

ଅକ୍ଷୟ ସମ୍ମାନ - ୨୦୦୮

ସୁଲେଖା ସମ୍ମାନ - ୨୦୦୮

କାଦମ୍ବିନୀ ସମ୍ମାନ - ୨୦୦୯

ଉତର ଓଡିଶା ବିଶ୍ୱବିଦ୍ୟାଳୟରୁ - ଭୂମିପୁତ୍ର ସମ୍ମାନ - ୨୦୦୯

ଟାଇମ୍ ପାସ୍ ବେଷ୍ଟ ସ୍କଲାର ଆୱାର୍ଡ - ୨୦୧୧

କେନ୍ଦୁଝର ବିକାଶ ମଚଂ ଆୱାର୍ଡ - ୨୦୧୨

ଧ୍ୱନି ପ୍ରତିଧ୍ୱନି ସାରସ୍ୱତ ସମ୍ମାନ - ୨୦୧୨

ତୀର ତରଙ୍ଗ ଆୱାର୍ଡ - ୨୦୧୩

ଉତର ଓଡିଶା ବିଶ୍ୱବିଦ୍ୟାଳୟ, ବାରିପଦା ପକ୍ଷରୁ ତାଙ୍କ ସାରସ୍ୱତ କୃତିକୁ ସମ୍ମାନ ଦେଖାଇ ସମ୍ମାନଜନକ ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) ଉପାଧିରେ ସମ୍ମାନୀତ ।

ତରୁଣକାନ୍ତି ଙ୍କ ସାରସ୍ୱତ ସୃଷ୍ଟିକୁ ଅନେକ ଭାରତୀୟ ଭାଷାରେ ଅନୁବାଦ କରାଯାଇଅଛି - ଯଥା - ଇଂରାଜୀ, ହିନ୍ଦୀ, ବେଙ୍ଗଲି, ଉର୍ଦ୍ଦୁ, ତେଲୁଗୁ, ମାଲାୟଲମ୍, ମରାଠୀ ଓ ଗୁଜୁରାଟୀ ଆଦି ଭାଷାରେ ଯାହାକି ତାଙ୍କୁ ଜଣେ ସର୍ବଭାରତୀୟ ସାହିତ୍ୟିକର ମର୍ଯ୍ୟାଦା ପ୍ରଦାନ କରିଅଛି ।

## ତରୁଣକାନ୍ତି ଙ୍କ ସାରସ୍ୱତ କୃତି -

ସାହିତ୍ୟସାଧକ ତରୁଣକାନ୍ତି ଙ୍କ ଗଳ୍ପ ସଂକଳନ "ଆକାଶ ସେତୁ" ର ଏକ ଗଳ୍ପ "ଅରଣ୍ୟ ଆଦିମ" ।

### ଅରଣ୍ୟ ଆଦିମ

ଅଦିନ ଝଡବର୍ଷାରେ ଭିଜିଭିଜି ବସ୍‌ଟି ଯେତେବେଳେ ଆସି ବସ୍‌ଷ୍ଟାଣ୍ଡରେ ଅଟକିଲା, ସେତେବେଳେ ସମୟ ପ୍ରାୟ ପାଚଂଟା । ମାର୍ଗଶୀର ମାସର ଆସନ୍ନ ସନ୍ଧ୍ୟା ।

ଛୋଟ ବସ୍‌ଷ୍ଟାଣ୍ଡ । ଗାଡିରେ ଉଠିବାକୁ କେହି ଯାତ୍ରୀ ନଥିଲେ । କେବଳ ଜଣେ ଗାଡିରୁ ଓହ୍ଲାଇ ଯିବାପରେ ବହଳିଆ ଡିଜେଲ୍ ଧୂଆଁ ଓ ଶବ୍ଦ ଭିତରେ କମ୍ପିକମ୍ପି ବସ୍ ଆଗକୁ ଚାଲିଲା । ଆଗରେ ଘାଟିରାସ୍ତା ନାହିଁ, ଧରମପାଲିଠୁ ବାଲିମେଳା ପର୍ଯ୍ୟନ୍ତ ରାସ୍ତା ଏବେ ସମତଳ, ଅପେକ୍ଷାକୃତ ମସୃଣ ବି ।

ଗାଡିରୁ ଯିଏ ଓହ୍ଲାଇଲା, ସେ ଗୋଟିଏ ଯୁବତୀ । ଏକଦମ୍ ଅଚିହ୍ନା ଅଜଣା ଜାଗାକୁ ସେ ଏଇ ପ୍ରଥମ ଆସିଚି, ତା'ର ନିର୍ଭୁଲ ପ୍ରମାଣ ଥିଲା ତା' ଚାଲିବା ଢଙ୍ଗରେ, ବାରମ୍ବାର ଏଣିକି ତେଣିକି ଚାହିଁବା ଭଙ୍ଗୀରେ ।

ମାର୍ଗଶିର ମାସର ଅଦିନ ବର୍ଷା । ପୁଣି ପାହାଡି ଇଲାକାରେ । ଶୀତ ଥିଲା ପ୍ରଚଣ୍ଡ । ଶୂନ୍ୟତା ବି ।

ଝିଅଟି ଦେଖିଲା, ବସ୍‌ଷ୍ଟାଣ୍ଡରେ କେହି ନାହିଁ, କେହି ଜଣେ ବି ନାହିଁ । ଦୁଇତିନିଟା ଚା' ଜଳଖିଆ ଦୋକାନ ଭିତରପଟୁ ବନ୍ଦ । ଗୋଟିକରେ ଖାଲି କୋଇଲା ଚୁଲିର ରଡନିଆଁ ଦାଉଦାଉ କରୁଚି । ଆସନ୍ନ ସନ୍ଧ୍ୟାକୁ ଧ୍ୟାନରେ ରଖି ଦୋକାନ ଦାରଟି ଲଣ୍ଠନ କାଚ ପୋଛୁଚି

ଯୁବତୀଟି ପାଖକୁ ଆସିଲା ।

କାଠ କ୍ୟାବିନ୍ ଦାଢରେ ପାଣିଛିଟିକା ତଳେ ଠିଆହୋଇ ପଚାରିଲା - ଥାନାକୁ ଯିବାକୁ ବାଟ କୁଆଡେ ?

ପତଳା ନିସ୍ତେଜ ସ୍ୱର ଝିଅଟିର ।

ଦୋକାନୀ ବେକ ଟେକି ଝିଅକୁ ଦେଖିଲା । ପାଟିର ସଚିଂତ ପାନଛେପ ସନ୍ତର୍ପଣରେ ନିଃସାରିତ କରି କହିଲା - ଥାନାକୁ ନା ପୋଲିସ୍ କଲୋନୀକୁ ? ପୋଲିସ୍ କଲୋନୀ ଯିବେ ତ ରାସ୍ତା ହେଇ ବାଁ ହାତି । ସାବଧାନରେ ଯିବେ, ଥାନା ବାବୁଙ୍କ ପୋଷା କୁକୁର ଏବେ ପାଗଳା ହୋଇଯାଇଛି .....

ଝିଅଟି କହିଲା, ମୃଦୁ ସ୍ୱରରେ - ନା, ମୁଁ ଥାନାକୁ ଯିବି ।

ସାମାନ୍ୟ ବିସ୍ମିତ ଆଖିରେ ଦୋକାନୀ ଦେଖିଲା ଆଗନ୍ତୁକାଟିକୁ ।

ବାଇଶ ତେଇଶ ବର୍ଷର ଯୁବତୀଟିଏ । କୋରାପୁଟର ଆଦିବାସୀ ଇଲାକାରେ ତା'କୁ ମୋଟାମୋଟି ଭାବେ ସମ୍ଭ୍ରାନ୍ତ ବୋଲି ଗ୍ରହଣ କରିନେବାକୁ ହେବ । ଦେହରେ ଛୋଟଛୋଟ ଫୁଲ ଫୁଟିଥିବା ସିନ୍ଥେଟିକ ଶାଢି, ହାତରେ ପ୍ଲାଷ୍ଟିକ୍ ବ୍ୟାଗ୍, ପାଦରେ ସରୁ ଷ୍ଟ୍ରାପ୍ ଥିବା ଚମଡା ଚଟି । ଦୋକାନୀଟି ଯା ବି ନଜରକରି ଦେଖିଲା ଯେ ଝିଅଟିର ମୁଣ୍ଡରେ ସିନ୍ଦୂର ନାହିଁ, କୁଙ୍କୁମ ଟୋପାଟେ ବି ନାହିଁ ।

ପଚାରିଲା - ଥାନାକୁ ଯିବେ ?

- ହଁ ।

ଲଣ୍ଠନର କୁଣ୍ଠିତ ଆଲୁଅକୁ ଚାହିଁ, ତାକୁ ସାକ୍ଷୀ ମାନିଲା ପରି ଦୋକାନୀଟି କହିଲା - କିନ୍ତୁ ଥାନାବାବୁ ତ ବସାରେ ଶୋଇଥିବେ, ପାଗ ଯେମିତି ଖରାପ କରିଚି ।

ତା'ପରେ ଏସବୁ ଅନଧିକାର ଚର୍ଚ୍ଚା ମନେକରି ଦୋକାନୀ ହାତଠାରି ରାସ୍ତା ଦେଖାଇଦେଲା । ଡାହାଣ ହାତି ରାସ୍ତାରେ ପାଏବାଟ ଗଲାପରେ, ଆଉଥରେ ଡାହାଣ ହାତି । ପୁଣି ପାଏ ରାସ୍ତା, ତା'ପରେ ଥାନା ।

ବର୍ଷା ଠିକ୍ ଅପେକ୍ଷାକରି ରହିଥିଲା । କ୍ୟାବିନ୍‌ର ଆଂଶିକ ନିରାପତାରୁ ଯୁବତୀଟି ବାହାରି ଆସିବା ପରେ ବର୍ଷା ପୁଣି ଝାମ୍ପିପଡିଲା ତା' ଦେହ ଉପରକୁ ।

ସୁଶାନ୍ତ କହେ - ନାନୀ, ବର୍ଷାରେ ଭିଜିଲେ କେମିତି ଗୋଟେ ଭଲ ଲାଗେ ନାହିଁ ? ଛମଛମ ଲାଗେ ଦେହସାରା । ସତେ ଯେମିତିକା ଭଗବାନ ସ୍ୱର୍ଗରୁ ଥାଇ ଦେହଟା ଆଉଁଶି ପକଉଛନ୍ତି ।

ସେହି ସୁଶାନ୍ତ ଦିନେ ରାତି ଅନ୍ଧାର ଭିତରେ ଆକାଶକୁ ଚାହିଁ ପଚାରିଥିଲା, ନାନୀ, ସତରେ କ'ଣ ଭଗବାନ ଅଛନ୍ତି ? ଅଛନ୍ତି ଯଦି, ପୃଥିବୀରେ ଏତେ ଅନ୍ୟାୟ ହେଉଛି କାହିଁକି ?

ସୁଶାନ୍ତ ର ଅଧିକାଂଶ ପ୍ରଶ୍ନର ଉତର ଆରତି ଆଦୌ ଦେଇପାରେ ନାହିଁ । ସାନଭାଇର ମୁଣ୍ଡରେ ସସ୍ନେହ ହାତଟିଏ ରଖିକହେ - ଏତେକଥା ମତେ ଜଣାନାହିଁରେ ସାନୁ । ଏତିକି ମତେ ଜଣାଅଛି, ଆମକୁ ଭଲ ହେବାକୁ ହେବ । ଆମକୁ ଭଲକାମ କରିବାକୁ ହେବ ।

- କୋଉ କାମଟା ଭଲ ନାନୀ, କୋଉ କାମଟା ଖରାପ ? ଭୋକରେ କଲବଲ ହୋଇ ମରିବାକୁ ଗଲାବେଳେ ଚୋରି କରିବାଟା ଭଲ ନା ଖରାପ ? କହିଲୁ ଦେଖି ?

ଏ ପ୍ରଶ୍ନର କି ଉତର ଦେବ ଆରତି ? ପଚାଶ ହଜାର ବର୍ଷର ଲମ୍ବା ମଣିଷ ଜାତିର ଇତିହାସରେ ଏ ପ୍ରଶ୍ନ ବାରମ୍ବାର ଉଠିଛି, ପୁଣି ପୋଛିହୋଇ ଯାଇଛି, ଲୁହରେ, ରକ୍ତରେ, ତହତହ ନିଃଶ୍ୱାସରେ ।

ଏବେ ଆରତି ର ମନେପଡିଲା, ଅନେକ ବେଳୁ ସେ କିଛି ଖାଇନାହିଁ । କାଲି ରାତି ଏଗାରଟାରେ ପାଣିକୋଇଲିରୁ ଛାଡିଥିବା ବସ୍ ଛଅଶହ କିଲୋମିଟର ଆସିବା ବାଟରେ ଅନେକ ଜାଗାରେ ରହିରହି ଆସିଛି, କିନ୍ତୁ ଆରତି ର ଥରେ ବି ଖିଆଲ ପଡିନାହିଁ, ତା'ର କିଛି ଖାଇବା ଦରକାର । ଅନ୍ତତଃ କପେ ଚାହା ।

କାଠ କ୍ୟାବିନ୍ ତଳୁ ବାହାରି ଆସିବା ପରେ ଆରତି ଭାବିଲା, କପେ ଚାହା ଏବେ ପିଇଥିଲେ ଭଲ ହୋଇଥାଆନ୍ତା । କିନ୍ତୁ ପରେ ଭାବିଲା, ନା, ଥାଉ । ଆଗକଥା ଆଗ ।

ପଛରୁ ଦୋକାନୀଟି ଚିତ୍କାରକରି କହିଲା - ଡାହାଣ ହାତି ଯାଅ, ଡାହାଣ ହାତି । ଆଗକୁ ଆଉ ରାସ୍ତା ନାହିଁ ।

ଆରତି ର ଅନ୍ୟମନସ୍କତା କଟିଗଲା । ବର୍ଷାର ଦୌରାତ୍ମ୍ୟ ବି ।

ଥାନା ପାହାଚ ଉପରେ ଅନିଶ୍ଚିତ ପାଦ ରଖୁରଖୁ ଆରତି ଚାରିଆଡକୁ ଚାହିଁ ଦେଖୁଥିଲା । କେବେ କ'ଣ ସେ ଦିନେ ସ୍ୱପ୍ନରେ ଭାବିଥିଲା, ତା'କୁ ଦିନେ ଏଠିକି ଆସିବାକୁ ପଡିବ ? ପାଣିକୋଇଲି ଠାରୁ ଛଅଶହ କିଲୋମିଟର ଦୂରରେ, କୋରାପୁଟର ଏକ ଅନାମଧେୟ ଜଙ୍ଗଲି ଇଲାକାକୁ, ସେ ଆସିବ ଏକାଏକା, ବର୍ଷା ଭିତରେ, ମାଟିକାଗଜରେ ଲେଖା ଖଣ୍ଡେ ଚିଠି ହାତରେ ଧରି ?

ଥାନା ଘରଟା ଖୁବ୍ ପୁରୁଣା, ଜରାଜୀର୍ଣ୍ଣ । ଖପରଛାତରେ ଅନାବନା ଗଛ, କାନ୍ଥରେ ଶିଉଳି ଓ ଶମ୍ବାଳୁଆ ଆଉ ଚଟାଣ ଗୋଟାକ ପାଣି ସନ୍ତସନ୍ତ ।

ଅଣଓସାରିଆ କାଠବେଚଂ ଉପରେ ନା-ବସା-ନା-ଶୁଆ ଅବସ୍ଥାରେ ଘୁମଉଥିଲା ସିପାହୀଟିଏ । ଓଦାମାଟିରେ ଆରତି ର ପାଦଶବ୍ଦ ଶୁଣି ସେ ଉଠି ବସିଲା ।

ଆଗରୁ ଦିନେ କେବେ ଲୋକଟି ଆରତି କୁ ଦେଖି ନଥିଲେ ସୁଦ୍ଧା ତା'ର ଚିହ୍ନିବାରେ ଭୁଲ୍ ହେଲାନାହିଁ । ସେ କହିଲା - ତମର କାଲି ଆସିବା କଥା ଥିଲା ନା ?

କ୍ଷୀଣସ୍ୱରରେ ଯୁବତୀଟି କହିଲା - ଆସି ହେଲାନି । ଛୁଟି ମିଳିଲା ନାହିଁ ।

ସିପେଇଟି କ୍ଷମାଦେଲା ନାହିଁ । କହିଲା - ବଡବାବୁ ଆଜି ସକାଳଟା ସାରା ଅପେକ୍ଷା କରିଥିଲେ ।

ଆରତି ପଚାରିଲା - ଘରୁ କେତେବେଳେ ଆସିବେ ?

- ଘରୁ ?

ସିପେଇଟି ବୁଝେଇଦେଲା ଥାନାବାବୁ ଘରେ ନାହାଁନ୍ତି କି ଥାନାରେ ନାହାଁନ୍ତି । ସେ ଯାଇଛନ୍ତି ପାଖ ଗୋଟେ ଆଦିବାସୀ ଗାଆଁକୁ । ଆଟିକାଏ ଖଜୁରି ରସ ପାଇଁ ଭାଇଭାଇ ଭିତରେ ମାରପିଟ ହୋଇ ଜଣେ ଜଖମ ହୋଇଛି । ଆରଜଣକ ଫେରାର୍ । ସେଇ ମାମଲା ବୁଝି ଥାନାବାବୁ ଫେରିବା ବେଳକୁ ରାତି କେତେହେବ ଭଗବାନଙ୍କୁ ଗୋଚର । ଯାହା ବୁଝାପଡୁଛି, ବାବୁ କାଲି ସକାଳେ ଥାନାକୁ ଆସିବେ ।

ଏବେ ଆରତି କ'ଣ କରିବ ? ଧରମପାଲିରେ କ'ଣ ଏମିତି ଗୋଟେ ଜାଗା ଅଛି, ଯୋଉଠି ସେ କାଟିଦେଇ ପାରିବ ରାତି ଗୋଟାକ, ନିରାପଦରେ, ଏକୁଟିଆ ?

ସିପାହୀଟି କହିଲା - ବଡ ଭୁଲ୍ କଲ ତୁମେ । ସକାଳ ବସ୍‌ରେ ଆସିଥାଆନ୍ତ, କାମ ଛିଡେଇ ଓର୍‌କେଲ୍ ବସ୍‌ଧରି ସଞ୍ଜସଞ୍ଜ ଫେରିଯାଇ ଥାଆନ୍ତ ଜୟପୁର ଟାଉନ୍‌କୁ । ଏବେ କ'ଣ କରିବ ବସି ଭାବ !

ବସି ଭାବିବାକୁ କିନ୍ତୁ ଆରତି ପାଇଁ ଜାଗା ନଥିଲା । ସିପାହୀଟି ଦିବ୍ୟ ଆରାମରେ ବସିପଡିଲା ତା'ର ସର୍ବସ୍ୱତ୍ୱ ସଂରକ୍ଷିତ ବେଚଂଟି ଉପରେ । ଗୋଟିଏ ଗୋଡ ଟେକିଦେଇ । ତା'ର ଢିଲା ଖ୍ୟାକି ପ୍ୟାଟଂର ଫାଙ୍କରୁ ଲୋମଶ ଜଙ୍ଘ ଭାରି ଅଶ୍ଳୀଳ ଦେଖାଗଲା ।

ହଠାତ୍ ଦୂରରେ କେଉଁଠି ଗୋଟିଏ ଶୀତସନ୍ତ୍ରସ୍ତ ଛେଳିଛୁଆର ଆର୍ତ ଚିତ୍କାର ଶୁଣାଗଲା ।

ସେଇ ଚିତ୍କାରକୁ କାନଡେରି ସିପାହୀ ମୁହଁରେ ଚିର ଅଭ୍ୟସ୍ତ ନିର୍ବିକାର ଭାବ ଫୁଟାଇ କହିଲା - ହେଇ, ଆଜି ବି ଗୋଟେ ଉଠେଇ ନେଇଗଲା ।

ତା'ପରେ ଆରତି ମୁହଁକୁ ଚାହିଁ ସିପେଇ କହିଲା - ବାଘ ମାତିଛି । ମଣିଷଖିଆ ବାଘ । ଶଳା କଂଜରଭେଟର୍‌କୁ ଦି' ଦି'ଟା ମେସେଜ୍ ଗଲାଣି, ବାଘ ମାରିବାର ନାଁ ଗନ୍ଧ ବି ନାହିଁ ।

ସିପେଇର ଅଭିଯୋଗ ବର୍ଷାର ଛମ୍‌ଛମ୍ ଆବାଜ୍ ଭିତରେ ମିଳେଇଗଲା, କିନ୍ତୁ ହତଭାଗା ଛେଳିଛୁଆର ବିକଳ କାନ୍ଦ ଶୁଣାଯାଉଥିଲା ଦୂର ବଣବୁଦା ଭିତରେ, ରହିରହିକା, ପବନର କ୍ଷୁଧିତ ସାଁ ସାଁ ଶବ୍ଦ ଭିତରେ ।

ସୁଶାନ୍ତ ଗୋଟିଏ ଆଙ୍ଗୁଠି ହଲେଇ ନାନୀକୁ ପଚାରେ - ତୁ କେମିତି କହୁଚୁ ନାନୀ, ଭଗବାନ ପୃଥିବୀରେ ଅଛନ୍ତି ? ଯଦି ସେ ଅଛନ୍ତି, ସେ କେମିତିକା ନିଷ୍ଠୁର ଭଗବାନ ? ସେ ଛେଳିକୁ ସୃଷ୍ଟିକଲେ, ପୁଣି ତାକୁ କଲବଲ କରି ମାରି ଖାଇବାପାଇଁ ବାଘକୁ ବି ଜନ୍ମଦେଲେ । ସତ କହୁଚି ନାନୀ, ସଂସାରରେ ସବୁଠୁ ଖରାପ ଭଗବାନ, ସେ ହିଁ ସବୁ ହିଂସା, ସବୁ ଅନ୍ୟାୟ ତିଆରି କରିଛନ୍ତି, ଇଚ୍ଛା କରି । ପାପପୁଣ୍ୟ, ସତମିଛ, ଏସବୁ ତାଙ୍କରି ଖେଳ, ତାଙ୍କରି ସଇତାନି ମଉଜ ।

ଏତେବଡ ତାତ୍ତ୍ୱିକ ପ୍ରଶ୍ନର ଜବାବ କେମିତି ଦେବ ଆରତି, ପ୍ଲସ୍-ଟୁ ପାସ୍‌କରି, କଟକ ବୃହତ୍ ବନ୍ଦୋବସ୍ତ ଅଫିସ୍‌ରେ ଅସ୍ଥାୟୀ ସଫେଇ ମୋହରି ର କାମକରି ପେଟ ପୋଷୁଥିବା, ତେଇଶ ବର୍ଷର ଗୋଟିଏ ଯୁବତୀ, ଆରତି ।

ଆରତି ତା'ର ଚିରାଚରିତ ଉତରଟି ଦୋହରାଇ ଥାଏ । କହେ - ଏତେକଥା ମତେ ଜଣାନାହିଁରେ ସୁଶାନ୍ତ, ଏତିକି ଜାଣେ ଆମକୁ ଭଲ ହେବାକୁ ପଡିବ, ଭଲ କାମ କରିବାକୁ ପଡିବ ।

- ଆଉ ମରିବାକୁ ପଡିବ ବାପାଙ୍କ ପରି ? ବିନା ଔଷଦରେ, ବିନା ଡାକ୍ତରୀ ଚିକିତ୍ସାରେ ? ଚୋରା ବେପାରୀଙ୍କ ପିଛା ଲାଗିଗଲେ ବୋଲି ତାଙ୍କୁ କଟକ ସପ୍ଲାଇ ଅଫିସ୍‌ରୁ ପଠେଇଦେଲେ ଗୁରୁଣ୍ଡିଆ ବ୍ଲକ୍‌କୁ, ସେଠି ତାଙ୍କୁ ମେଲେରିଆ ହେଲା, ସେରିବ୍ରାଲ୍ ମେଲେରିଆ, ଔଷଦ ନପାଇ ସେ ମରିଗଲେ ରାତାରାତି, ଆଉ ତୁ କହୁଚୁ କ'ଣ ନା - ଆମକୁ ଭଲ କାମ କରିବାକୁ ପଡିବ, ହୁଁ !

ସୁଶାନ୍ତ ର ସେଇ ଶାନ୍ତ ସୁଶୀଳ ମୁହଁଟି, ଯାହା କ୍ୟାଲେଣ୍ଡର ର କୁମାରକୃଷ୍ଣ ଛବିଟି ପରି କମନୀୟ, ତାହା ହଠାତ୍ କଳା ପଡିଯାଏ ଅତିରିକ୍ତ ବିଦ୍ୱେଷ ଓ ପ୍ରତିହିଂସାରେ ।

କାହା ପ୍ରତି ପ୍ରତିହିଂସା ? ବିଚାରବୋଧଶୂନ୍ୟ ସେଇ ଈଶ୍ୱରଙ୍କ ପ୍ରତି, ଯିଏ ସୁନ୍ଦର ହରିଣକୁ ଜୀବନ୍ୟାସ ଦେଇ ପୁଣି ହିଂସ୍ର କ୍ଷୁଧା ଭରିଦେଲା ମହାବଳ ବାଘର ପାଟିରେ, ନା ଏଇ ମଣିଷ ଜାତି ପ୍ରତି, ଯିଏ ସମାଜ ନାମରେ ପରିଚିତ ଗୋଟିଏ କାରାଗାର ତିଆରିକରି, ବନ୍ଦୀକରି ରଖିଲା ଭୋକକୁ ଆଉ ଭୂରି ଭୋଜନକୁ ପିନ୍ଧାଇଦେଲା ପ୍ରହରୀ ର ପୋଷାକ !

ଆରତି ଦୁର୍ବଳ ଯୁକ୍ତିକୁ ଆଶ୍ରୟକରି କହିବାକୁ ଚେଷ୍ଟାକରେ, ଭଲହେବା ଅର୍ଥ ଆରାମରେ ରହିବା ନୁହେଁ, ଭଲହେବା ଅର୍ଥ ଦୁଃଖସହି ପାରିବାର ସାମର୍ଥ୍ୟ ଥିବା । ଯିଏ ଭଲ, ତା'ପାଇଁ ସୁଖଦୁଃଖ ଦୁଇଟା ଏକାକଥା, ନିନ୍ଦା ପ୍ରଶଂସା ତା'ପାଇଁ ଏକାକଥା ।

ପିଲାଟି ଦିନୁ ସୁଶାନ୍ତ ଥିଲା ଶାନ୍ତ, ବିଚାରଶୀଳ ପୁଣି ଭାବପ୍ରବଣ । ଆକସ୍ମିକ ବାପା ମରିଗଲା ପରେ ସେ ଆଉ ଶାନ୍ତହୋଇ ରହିଲା ନାହିଁ । ଆଉ ଯେଉଁଦିନ ଆରତି ର ଅସ୍ଥାୟୀ ସଫେଇ ମୋହରି ର ଚାକିରିରେ ସୁଯୋଗ ନେଇ ଜଣେ ଉପରିସ୍ଥ ହାକିମ ବନ୍ଦୋବସ୍ତ ଅଫିସ୍‌ର ପ୍ରଶସ୍ତ ପେଟାଂଗ୍ରାଫ୍ ଟେବୁଲ୍ ଉପରେ ଆରତି ଉପରେ ବଳାତ୍କାର କରିଥିଲେ, ସେଦିନଠାରୁ ସୁଶାନ୍ତ ବିଚାରଶୂନ୍ୟ ହୋଇଗଲା ।

ପରଦିନ ରାତିରେ, ସୁଶାନ୍ତ ର ଅନଭ୍ୟସ୍ତ ହାତରୁ ଛୁରୀ ଠିକଣା ସ୍ଥାନରେ ବାଜିଲା ନାହିଁ, ଅଫିସର ଜଣକ ବଟିଂଗଲେ ଓ ସପ୍ତାହେ ଭିତରେ ବଲାଙ୍ଗୀର ବଦଳିହୋଇ ଚାଲିଗଲେ । କିନ୍ତୁ ସେଦିନଠାରୁ ନିଖୋଜ ହୋଇଗଲା ସୁଶାନ୍ତ ନାମକ ଅଠର ବର୍ଷର ତରୁଣ ଜଣେ, ଯେ ଏବେ ଶାନ୍ତ ନୁହେଁ, ବିଚାରଶୀଳ ନୁହେଁ, ଖାଲି ଭାବପ୍ରବଣ ।

ସିପାହୀଟି ଫିସ୍‌ଫିସ୍ କରି କହିଲା - ନମସ୍କାର କର, ଇମ ଆମ ବଡବାବୁ । ଭାରି ରାଗୀ ଅଫିସର ।

ଭାରି ରାଗୀ ଅଫିସର ଜଣକ କିନ୍ତୁ ଏତେ ବେଶୀ ନିଷ୍ଠୁର ଦେଖାଯାଉ ନଥିଲେ ବାହାରକୁ । ଦେହର ଖାକି ପୋଷାକ ନଥିଲେ ତାଙ୍କୁ ଅତି ସହଜରେ ମାଧମିକ ସ୍କୁଲ୍‌ର ଧୀରସ୍ଥିର ଡ୍ରଇଂ ଶିକ୍ଷକ ପରି ଲାଗିଥାଆନ୍ତା । ଆହୁରି ଭଲ ବି ଦେଖାଯାଉଥାଆନ୍ତା ତାଙ୍କ ଚେହେରାଟି

ବଡବାବୁ ମଟର ସାଇକେଲ୍‌ରୁ ଓହ୍ଲାଇ, ଦେହର ବର୍ଷାତି ଖୋଲୁଖୋଲୁ ଆରତି ଆଡକୁ ବିସ୍ମିତ ଆଖିରେ ଚାହିଁଲେ । ସଲାମ ଠୁକିସାରି ସିପେଇ ଘୋଷଣାକଲା - ଯା'ର କାଲି ଆସିବାର ଥିଲା, ଆସିଲା ନାହିଁ, ଆଜି ଆସିଛି ।

ଥାନାବାବୁଙ୍କୁ ଏକଥା ଅଜଣା ନଥିଲା । କିନ୍ତୁ ତାଙ୍କ ପ୍ରତ୍ୟାଶାରେ ଥିବା ସ୍ତ୍ରୀ ଲୋକଟି ଯେ ଏପରି ଯୁବତୀ ଝିଅଟିଏ, ତାହା ସେ ଭାବିନଥିଲେ ।

ଆରତି ହାତଯୋଡି ନମସ୍କାର କଲା ।

- ଭିତରକୁ ଆସନ୍ତୁ ।

ଜୋତା ମଚ୍‌ମଚ୍ ଶବ୍ଦକୁ ଅନୁସରଣ କରି ଆରତି ଅଫିସ୍ ଭିତରେ ପଶିଲା । ଦୁର୍ବଳ ଭୋଲ୍‌ଟେଜ୍ ହେତୁ କୋଠରୀ ର କୋଣମାନଙ୍କର ଅନ୍ଧାର ଝୁଲିରହିଛି ଅଳନ୍ଧୁ ସାଙ୍ଗରେ, ଫାଇଲ୍ ଓ ଗୁମୁଟି ଗନ୍ଧ ଭିତରେ । ଛାତରୁ ଯୋଉଠି ପାଣି ପଡୁଛି, ତା' ତଳେ, ଚଟାଣ ଉପରେ, ବିଷାଦର ମାନଚିତ୍ର ।

- ବସନ୍ତୁ ।

ଟେବୁଲ୍‌ର ଆରପାଖେ ଅଫିସର ବସିଲେ । ଆରତି ଚଉକି ଉପରେ ବସୁବସୁ କାଠଫଳକରେ ଲେଖାଥିବା ଅଫିସରଙ୍କ ନାମଟି ପଢିଲା : ସନାତନ ରାଜଗୁରୁ, ଉପଆରକ୍ଷୀ ନିରୀକ୍ଷକ । ତଳକୁ ଇଂରାଜୀରେ - ଏସ୍. ରାଜଗୁରୁ, ଏସ୍.ଆଇ ।

ଯେମିତି ନାଟକର ଦୁଇଟି ଚରିତ୍ର ପରସ୍ପର ର ସଂଳାପ ଜାଣିଥାଆନ୍ତି, କିନ୍ତୁ କହିବାକୁ ପଡେ ଅନ୍ତରାଳରେ ଲୁଚିଥିବା ସ୍ମାରକର ଇଂଗିତରେ, ସେହିପରି ଆରତି ଓ ଥାନାବାବୁଙ୍କ ଭିତରେ କଥାବାର୍ତା ଆରମ୍ଭହେଲା, ଏହିପରି :

- ଆପଣଙ୍କ ନାମ ଆରତି ପଟ୍ଟନାୟକ ?

- ହଁ ।

- ଭାଇର ନାମ -

- ସୁଶାନ୍ତ । ସ୍ୱର୍ଗତ ସୁଶାନ୍ତ ପଟ୍ଟନାୟକ ।

ଅଫିସର ଚୁପ୍ ହୋଇଗଲେ । ସଂଳାପ ଭୁଲିଯିବା ପରି । ସ୍ୱର୍ଗତ ଶବ୍ଦଟି ତାଙ୍କର ହିଁ କହିବାର ଥିଲା ।

ସେ ଟେବୁଲ୍ ଉପରେ ଜମିଥିବା ଫାଇଲ୍‌ର ସ୍ତୂପ ଅଣ୍ଡାଳିଲେ । ଦଶବାର ପୃଷ୍ଠାର ପତଳା ୟୁ.ଡି. କେଶ୍ ରେକର୍ଡଟି ପାଇବାକୁ ବେଶୀ ସମୟ ଲାଗିଲା ନାହିଁ । ଫାଇଲ୍‌ଟି ହାତରେ ଧରି ସେ ଆରତି ର ମୁହଁକୁ ଚାହିଁଲେ ।

ଶୃଙ୍ଖଳା, ନିଷ୍କରୁଣ ଦୁଇ ଆଖି । ଓଠ ଦୁଇଟା ନିସ୍ତେଜ, ନିଶ୍ଚୁପ୍ । ମୁଣ୍ଡବାଳ ଓଦା-ସରସର । ଦେହରେ ଭିଜା ଶାଢି ।

ଅଫିସରଙ୍କ ଆଖି ତା' ଦେହରେ ପଡିବା କ୍ଷଣି, ଆରତି ଛାତିଲୁଗା ସଜାଡି ନେଲା ।

ଅଫିସର ଡାକିଲେ - ଦଣ୍ଡପାଟ !

ସିପାହୀ ପାଖକୁ ଆସିଲା ।

- ଫ୍ଲାସ୍କରେ ଆଉ ଚାହା ଅଛି ?

- ଦୁଇଟା ହାଫ୍ କପ୍ ଅଛି ସାର୍ ।

- ନେଇଆସ ।

ଚାହା ଆସିଲା ।

ଅଫିସର କହିଲେ - ନିଅନ୍ତୁ ।

କପ୍ ଭର୍ତ୍ତି ଗରମ ଚାହାରୁ ଢୋକେ ପିଇସାରି ଆରତି ଅନୁଭବ କଲା ଶୀତ କ୍ରମଶଃ ବଢୁଛି । ପେଟ ଭିତର ର ଭୋକ ବି ।

ଅଫିସର ଛୋଟ ଫାଇଲ୍‌ର ପୃଷ୍ଠା ଓଲଟାଇବାରେ କିଛି ସମୟ ବ୍ୟୟକଲେ । ତା'ପରେ କହିଲେ - ଆପଣଙ୍କ ଭାଇର ଗୋଟେ ଛିଣ୍ଡା ଡାଏରୀ ଆମ ପାଖରେ ଅଛି । ଦି' ଚାରିଟା ବହି ଆଉ ପେଟାଂସାର୍ଟ ଦି' ହଳ ।

ଦଣ୍ଡପାଟ ଯେମିତି ଆଗରୁ ନିର୍ଦ୍ଦେଶ ପାଇଥିଲା । ସେ ଏ ସମସ୍ତ ଗୋଟିଗୋଟି କରି ଆଣି ପାଖ ଟୁଲ୍ ଉପରେ ରଖିଲା ।

ଧୂସର ରଙ୍ଗର ଗୋଟିଏ ଫୁଲ୍‌ପ୍ୟାଟଂ, ଆଉ ଦୁଇଟା ଚେକ୍‌ସାର୍ଟ । ମଇଳା, ଲୋଚାକୋଚା । ବହି ତିନୋଟିର ଅବସ୍ଥା ମଧ୍ୟ ଭଲ ନାହିଁ । ଆଉ ସୁଶାନ୍ତ ର ସେହି ଡାଏରୀ : ଗୋଟିଏ ଛ' ନମ୍ବରିଆ ମୋଟା ଏକ୍‌ସରସାଇଜ୍ ଖାତା ।

ଏ ଡାଏରୀଟି ଆରତି ନିକଟରେ ଅଚିହ୍ନା ନୁହେଁ । ଏ ଖାତାରେ ପ୍ରଥମ କୋଡିଏ ପଚିଶ ପୃଷ୍ଠାରେ କ'ଣ ଲେଖା ଅଛି, ତାହା ବି ତାକୁ ଜଣା । ସୁଶାନ୍ତ ନିଜେ ତାକୁ ପଢି ଶୁଣାଇଛି । ଅନ୍ୟ ମହାପୁରୁଷଙ୍କ ବାଣୀ, ନାନା ଚମକପ୍ରଦ ଘଟଣାର ସଂକ୍ଷିପ୍ତସାର, ପୁଣି ତା' ନିଜର ନାନା ବିକ୍ଷିପ୍ତ ଅନୁଭୂତି ଓ ଚିନ୍ତା ।

ତା' ନିଜ ଚିନ୍ତାର ସାରାଂଶ କେତୋଟି ଅମୀମାଂସିତ ପ୍ରଶ୍ନକୁ ନେଇ । ଭଗବାନ ମଣିଷକୁ ତିଆରି କଲେ କାହିଁକି ? ମଣିଷ ଯେ ପାପକରେ, ଅନ୍ୟାୟ କରେ, ସେଇଟା କ'ଣ ଭଗବାନଙ୍କ ଇଚ୍ଛା ମୁତାବକ ହୁଏ ନାହିଁ ? ମଣିଷ ଯଦି ଭଗବାନଙ୍କ ସନ୍ତାନ, ତେବେ ପିତା ପୁତ୍ରକୁ ଏତେ କଷ୍ଟ କାହିଁକି ଦିଏ ? ଶେଷ ପ୍ରଶ୍ନ, ପୁଣି ପ୍ରଥମ ପ୍ରଶ୍ନ - ଭଗବାନ ସତରେ କ'ଣ ଅଛନ୍ତି ?

ଯେଉଁଦିନ ଗୁରୁଣ୍ଡିଆ ବ୍ଲକ୍‌ରେ, ଏକ ଭଙ୍ଗାଟୁଟା କ୍ୱାଟର ଭିତରେ ସେରିବ୍ରାଲ୍ ମେଲେରିଆରେ କଲବଲ ହୋଇ ବାପା ମରିଯାଇଥିବା ଖବର ଆସି ପହଚିଂଥିଲା, ଆଉ ଯେଉଁଦିନ ସେଟ୍‌ଲ୍‌ମେଟଂ ଅଫିସ୍ ଭିତରେ ଆରତି ଉପରେ ତା' ଉପରିସ୍ଥ ହାକିମ ବଳାତ୍କାର କରିବା ସୁଯୋଗ ନେଇଥିଲେ, ସେ ଦୁଇଦିନ ସୁଶାନ୍ତ ରାତି ଅଧରେ ବିଛଣାରୁ ଉଠିବସି ତା' ଡାଏରୀରେ କ'ଣ ସବୁ ଲେଖିଥିଲା ତାହା ଆରତି ଜାଣେ ନାହିଁ । ତାହା ପଢିବାକୁ ସେ କେବେ ଚେଷ୍ଟା ବି କରିନାହିଁ ।

ପରବର୍ତ୍ତୀ କେତେଟା ଦିନ ସୁଶାନ୍ତ ଭାରି ଚୁପ୍‌ଚାପ୍ ଥିଲା । ନିସ୍ପୃହ ଉଦାସୀନ ।

ଆରତି କିଛି ନକହି ଥିଲେ ବି ସୁଶାନ୍ତ ଜାଣିଥିଲା, ଦିନେ ସଞ୍ଜରେ, ବନ୍ଦୋବସ୍ତ ଅଫିସର ଗୋଟିଏ ପେଟାଂଗ୍ରାଫ୍ ଟେବୁଲ୍ ଉପରେ, ଆରତି କୁ କି ନିର୍ଯ୍ୟାତିତ ଅପମାନ ସହ୍ୟ କରିବାକୁ ପଡିଛି ।

ସହକର୍ମୀ ଓ ଶୁଭେଚ୍ଛୁମାନେ ତାକୁ ଅନେକ ପ୍ରଶ୍ନ ପଚାରିଥିଲେ । ସେହି ସମୟ ଓ ସନ୍ତାପର ଟିକିନିଖି ବର୍ଣ୍ଣନା ଶୁଣିବାକୁ ଚାହିଁଥିଲେ । କିନ୍ତୁ ଆରତି କିଛି କହିପାରିନଥିଲା । ସତକଥା କହିବାକୁ ଗଲେ ତା'ର କିଛିକଥା ଠିକ୍‌ଠାକ୍ ମନେ ହିଁ ପଡୁନଥିଲା । ମୁଠାଏ ତାସ୍‌ପରି ଫେଟିଂହୋଇ ଯାଇଥିଲା ସେହି ଅଭିଜ୍ଞତା ଓ ସମୟ ତା'ର ସ୍ମୃତିକୋଷ ଭିତରେ ।

- ଏଇ ଦେଖ ଏଇ .....

ଦଣ୍ଡପାଟ ଗୋଟିଏ ଅପରିଚ୍ଛନ୍ନ କଳାଧଳା ଫଟୋ ରେକର୍ଡ ଭିତରୁ କାଢି ଆରତି କୁ ଦେଖାଇବାକୁ ଚେଷ୍ଟାକଲା ।

ଯା' ଭିତରେ ଭୋଲ୍‌ଟେଜ୍ ଟିକିଏ ବଢିଥିଲା, ଏଣୁ ଫଟୋଟିକୁ ଟିକିନିଖି ଦେଖିବାରେ ଅସୁବିଧା ହେଲାନାହିଁ ।

ଫଟୋଟିରେ, ଏକ ଧ୍ୟାନମଗ୍ନ ତପସ୍ୱୀ ପରି ବସି ରହିଥିଲା ମଣିଷଟିଏ । ନା ମଣିଷ ନୁହେଁ, ଗୋଟିଏ କଙ୍କାଳ । ଓସ୍ତଗଛ ତଳ କୁଢକୁଢ ପତ୍ର ଓ ଆବର୍ଜନା ଭିତରେ କଙ୍କାଳଟି ଦେଖାଯାଉଥିଲା ଏକ ପ୍ରହରୀ ପରି । ମହାକାଳ ଓ ମହାକ୍ରାନ୍ତିର ବିନିଦ୍ର ପ୍ରହରୀ ।

- ଟୋକାକୁ ମୁଁ ଏଇଠି ଆଗ ଦେଖିଲି, ନଭେମ୍ବର ସାତ ତାରିଖ ସକାଳେ । ତା'ପରେ ବାଙ୍ଗୁରୁ ଜାନିର ଭଣଜା ଦେଖିଲା, ଶେଷକୁ ଆସିଲେ ସାର୍ । ନଭେମ୍ବର ସାତ ତାରିଖ ସକାଳେ ।

ଦଣ୍ଡପାଟ ଏତିକି କହି ରାଜଗୁରୁଙ୍କୁ ଅନାଇଲା, ପରିପୂରକ ସମର୍ଥନ ଆଶାରେ ।

ଆରତି ଫଟୋଟି ଆଡକୁ ଚାହିଁଲା । ଖୋଲାଦିହରେ, ସମ୍ଭବତଃ ପୂରା ଲଙ୍ଗଳା ହୋଇ ବସିଥିବା ସୁଶାନ୍ତ ର ଫଟୋ । ତପସ୍ୟାସୀନ ଦେହଟି ଭୋକଉପାସରେ ଧ୍ୱସ୍ତବିଧ୍ୱସ୍ତ ହୋଇଯିବାକୁ କେତେଦିନ ଲାଗିଥିବ ! ସପ୍ତାହେ, ଦୁଇ ସପ୍ତାହ, ମାସଟିଏ ନା କେତେଦିନ ?

ସୁଶାନ୍ତ ନିଖୋଜ ହୋଇଯିବାର ଦିନଟି ଥିଲା ବୁଦ୍ଧଜୟନ୍ତୀ ବାସିଦିନ, ମେ ମାସ ବାଇଶ ତାରିଖ । ମଲାଦେହଟି ମିଳିଲା ନଭେମ୍ବର ସାତ ତାରିଖରେ, ସମ୍ଭବତଃ ସେଦିନ ଥିଲା ଭ୍ରାତୃଦ୍ୱିତୀୟା । କେହି ଜାଣିବେ ନାହିଁ ସେ ଏଠାକୁ ଆସିଲା କେଉଁଦିନ, ଏଠାକୁ ଆସି କ'ଣ କରୁଥିଲା, କ'ଣ ଭାବୁଥିଲା ଓ କ'ଣ ଥିଲା ତା'ର ଶେଷ ଇଚ୍ଛା ।

ପୋଲିସ୍ ଜବତ କରିଥିବା ଚେକ୍‌ସାର୍ଟ ଓ ଗୋଟିଏ ଫୁଲ୍‌ପ୍ୟାଟଂ ଆଡକୁ ଚାହିଁଲା ଆରତି । କେମିତି ଗୋଟେ କଟୁ ଗନ୍ଧ ବାହାରୁଥିଲା ସେଥିରୁ । ଅଧାଅଧି ଉଇ ଖାଇଯାଇଥିବା ବହି ତିନୋଟିରୁ ଝଡି ପଡୁଥିଲା ମେଚାଂମେଚାଂ ଧୂଳି ଓ ଜରାଜୀର୍ଣ୍ଣ ପୃଷ୍ଠା । ଡାଏରୀଟିର ଅବସ୍ଥା ବି ବିଶେଷ ଭଲ ନଥିଲା ।

ଆରତି ହାତ ବଢେଇ ଆସ୍ତେକିନା ଛୁଇଁଲା ସେ ଡାଏରୀକୁ । ତା'ପରେ ହାତ ଫେରେଇ ଚାହିଁଲା ଥାନାବାବୁଙ୍କ ଆଡକୁ ।

- ତା' ଭିତରେ ଲେଖା କିଛି ପ୍ରାୟ ପଢି ହେଉନାହିଁ । ବର୍ଷା କାକରରେ ନଷ୍ଟ ହୋଇଯାଇଛି । କିନ୍ତୁ ଶେଷପୃଷ୍ଠାଟି ମୋଟାମୋଟି ପଢିହେଲା ।

ରାଜଗୁରୁ କହିଲେ ଚଟାଣ ଉପରେ ଲମ୍ବିଥିବା ଅସ୍ଥିର ଅନ୍ଧାର ଆଡକୁ ଚାହିଁ ।

କ'ଣ ଲେଖାଥିଲା ସେ ପୃଷ୍ଠାରେ ? ଜୀବନଠୁ ନିଜର ବନ୍ଧନ ଓ ବିଶ୍ୱାସ ଫେରେଇ ଆଣିଥିବା ଅଠର ବର୍ଷର ଜଣେ ତରୁଣର ଶେଷକଥା କ'ଣ ଥିଲା ?

ହାତର ଆଙ୍ଗୁଠିକୁ ମଟମଟ କରି ଫୁଟାଉ ଫୁଟାଉ ଦଣ୍ଡପାଟ କହିଲା - ଏ.ୟୁ.ଡି. କେଶ୍ ଲାଗି ଆମେ କମ୍ ହର୍‌କତ୍ ହେଇଛୁ ! କିଏ କହିଲା ମର୍ଡର୍ କେଶ୍, କିଏ କହିଲା ନକ୍‌ସାଲାଇଟ୍ ସୁଇସାଇଡ୍ କରିଛି, କିଏ କହିଲା ନଙ୍ଗୁଳିବାବା ତା' ସମାଧିରୁ ଉଠିଆସି ଏଇଠି ବସିଚି, ଗେଙ୍ଗୁଟି ବାବାର ଆତ୍ମା ସଙ୍ଗେ ରୀତିମତ ଝଗଡା କରି ।

କିଛି ଶୁଣିପାରି ନଥିବା ପରି ଥାନାବାବୁ କେଶ୍ ରେକର୍ଡ ଓଲଟାଇ ଲାଗିଲେ । ତା'ପରେ ଗୋଟିଏ ପୃଷ୍ଠାରେ ହାତରଖି କହିଲେ - ଏଇ ସେ ଶେଷପୃଷ୍ଠାରେ ଫଟକପି । ଏଇଟା ପଢି ହେଉଛି ସହଜରେ ।

ଆରତି ସେ ପୃଷ୍ଠାଟି ପଢିଲା । ପାଚଂଧାଡିର ବକ୍ତବ୍ୟ । ଶେଷ ଧାଡିଟି ପଢିଲାବେଳକୁ ତା' ଆଖିରେ ଲୁହଭର୍ତି ହୋଇଯାଇଥିଲା । ପୃଷ୍ଠାଟି ମିଳେଇଗଲା ସେ ଲୁହବୁନ୍ଦା ଭିତରେ ।

ଜିଲ୍ଲା ପୋଲିସ୍ ଦପ୍ତରରୁ ପ୍ରାୟ ମାସଟିଏ ତଳେ ଖଣ୍ଡେ ଚିଠି ଆସିଥିଲା ଆରତି ଠିକଣାରେ । ସେଥିରେ ଲେଖାଥିଲା, ନଭେମ୍ବର ସାତ ତାରିଖ ଦିନ କୁନ୍ଦୁରକେଲା ଜଙ୍ଗଲ ଭିତରୁ ଗୋଟିଏ ମୃତଦେହ ମିଳିଥିଲା ଓ ୟୁ.ଡି. କେଶ୍ ନମ୍ବର ୪/୯୬ ଦାୟର୍‌କରି ଏହାର ତଦନ୍ତ କରାଯାଇ ଜଣାଗଲା ଯେ ଏ ଅପମୃତ୍ୟୁ ହତ୍ୟାଜନିତ ନୁହେଁ । ମୃତଙ୍କ ପାଖରୁ ଜବତ ହୋଇଥିବା କାଗଜପତ୍ରରୁ ତା'ର ବିଶେଷ ପରିଚୟ ମିଳିନଥିଲା । କିନ୍ତୁ ଡାଏରୀ ର କେତେକ ତଥ୍ୟକୁ ଭିତିକରି ତୁମର ଠିକଣା ମିଳିଲା । ମୃତଦେହଟି ଯଥା ସମୟରେ ସଂସ୍କାର କରାଯାଇଛି, କିନ୍ତୁ ମୃତଙ୍କର ଯୋଉ ଜିନିଷଗୁଡିକ ଜବତହୋଇ ମାଲ୍‌ଖାନାରେ ରହିଛି, ତାହା ମାସକ ଭିତରେ ନେଇନଗଲେ ତାହା ଆଇନ୍ ଅନୁଯାୟୀ ବିନଷ୍ଟ କରାଯିବ ।

ଆଖିର ଦି' ବୁନ୍ଦା ଲୁହ ଶୁଖିଯିବା ପରେ, ଆରତି ସାମନାରେ ପୁଣି ପରିଷ୍କାର ହୋଇଉଠିଲା ଡାଏରୀ ର ଶେଷପୃଷ୍ଠାଟି । ପାଚଂଧାଡି ଲେଖା ଗୋଟିଏ ପୃଷ୍ଠା ।

ସେ ତାକୁ ପୁଣି ପଢିଲା । ସେଇ ଚିହ୍ନା ଅକ୍ଷର, ସେଇ ଚିହ୍ନା ଭାଷା । କିନ୍ତୁ ସବୁ ମିଶି ତଥାପି ଅଚିହ୍ନା ।

ଥାନାବାବୁ କହିଲେ - ଆପଣ ଆଜି ସାଙ୍ଗେସାଙ୍ଗେ ଫେରିଯିବେ ତ ?

ଦଣ୍ଡପଟ ଆପତିର ସ୍ୱର ଉଠାଇଲା । ସେ କେମିତି ସମ୍ଭବ ! ଲାଷ୍ଟ୍ ବସ୍ ତ ଚାରିଘଟାଂ ଆଗରୁ ଯାଇସାରିବଣି !

- ନା, ଯାଇନାହିଁ ।

ଶୀତାର୍ତ ପବନରେ ଫଡ୍‌ଫଡ୍ କମ୍ପୁଥିବା ଗୋଟିଏ ଫାଇଲ୍‌ର ପୃଷ୍ଠାକୁ ସଜାଡୁ ସଜାଡୁ, ଥାନାବାବୁ କହିଲେ : ଓରକେଲ୍ ବସ୍ ଆହୁରି ଯାଇନାହିଁ । ପାଚଂଘଟାଂ ଲେଟ୍ ଅଛି ।

- ତା'ହେଲେ ତ ଭାରି ଭଲହେଲା । ରାତାରାତି ଏଠୁ ଚାଲିଯିବା ହିଁ ଭଲ ।

ଦଣ୍ଡପାଟ ମତାମତ ଦେଇସାରି ଚାହିଁଲା ବାହାରକୁ, ଯୋଉଠି ବର୍ଷାପାଣିରେ ଜୁଡୁବୁଡୁ ହୋଇ ଅନ୍ଧାର କମ୍ପୁଥିଲା ପବନରେ, ଶୀତରେ ।

- ହଁ, ଠିକ୍ କହିଚ । ତୁମେ ବି ଟିକେ ଚାଲିଯାଅ ସାଙ୍ଗରେ, ବସ୍‌ଷ୍ଟାଣ୍ଡରେ ଛାଡିଦେଇ ଆସିବ ।

ଆରତି ବି ଚାହିଁଲା ପଦାକୁ । କିଛି କହିଲା ନାହିଁ ।

- ଏଇ ରେଜିଷ୍ଟରରେ ଗୋଟେ ଦସ୍ତଖତ ଦେବେ, ଆଉ ଏଇଥିରେ ଦୁଇଟା ।

ଥାନାବାବୁ ଆରତି ଆଡକୁ ଦୁଇଟି ମୋଟାମୋଟା ରେଜିଷ୍ଟର ବଢେଇଦେଲେ । ତା' ସହିତ ଗୋଟିଏ କଲମ ।

ଆରତି ସେହି ନିର୍ଦ୍ଦେଶ ପରିପାଳନ କଲା, ନୀରବରେ ।

ବ୍ୟାଗ୍ ଭିତରେ ଯଥେଷ୍ଟ ଜାଗାଥିଲା ଡାଏରୀ, ଲୁଗାପଟା ଦି' ଖଣ୍ଡ ଓ ବହି ତିନୋଟି ରଖିବାପାଇଁ ।

ଆରତି ତା'ପରେ ଉଠି ଠିଆହେଲା । ହାତଯୋଡି ନମସ୍କାର କଲା ଅଫିସରଙ୍କୁ ।

ବାହାରେ ପୁଣି ଟୋପେଟୋପେ ବର୍ଷା ପଡିବା ଆରମ୍ଭ କରିଥିଲା । କିନ୍ତୁ ଏବେ ମୁଣ୍ଡ ଉପରେ ଛତା ଥିଲା । ଗୋଟିଏ ହାତରେ ପ୍ଲାଷ୍ଟିକ୍ ବ୍ୟାଗ୍, ଆର ହାତରେ ଛତା । ଦଣ୍ଡପାଟ ହାତରେ ବି ଛତା ଥିଲା, ତା' ସାଙ୍ଗେ ଗୋଟିଏ ଟର୍ଚ୍ଚ ଲାଇଟ୍ ବି ।

ଚାରିପାଖେ ଅନ୍ଧାର । ଆଦିମ ରାତିର ଶିର୍‌ଶିର୍ ପବନ । ସ୍ଥାବର ଓ ଜଙ୍ଗମକୁ ଏକାଠି ଧରି ରଖିଥିବା କୀଟପତଙ୍ଗ ଙ୍କ ନିରବଚ୍ଛିନ୍ନ ସ୍ୱର ।

ଏଇ ଅନ୍ଧାର ଭିତରେ, ଆଦିମ ପୃଥିବୀକୋଣରେ ବସି ରହିଥିଲା ତରୁଣଟିଏ, ଦିନ ଦିନ, ସପ୍ତାହ ସପ୍ତାହ, ଗୋଟିଏ ଅଶ୍ୱତ୍ଥ ଗଛ ତଳେ ନୀରବ, ନିଷ୍ପନ୍ଦ ସମାଧିରେ । ନୀରବ : କରଣ ତା'ର ଯାହାକିଛି ବକ୍ତବ୍ୟ, ତାହା ସେ କହି ସାରିଥିଲା ଅନେକ ଆଗରୁ । ତା' ଡାଏରୀରେ ସେ ଲେଖି ସାରିଥିଲା ତା'ର ଶେଷ ଇସ୍ତାହାର ।

ଅନ୍ଧାର ଭିତରେ ବାଟ ଚାଲୁଚାଲୁ ଆରତି ସାମନାରେ ବିସ୍ତାରିତ ହୋଇଗଲା ସେହି ଶେଷପୃଷ୍ଠାଟି । ଝଟକି ଉଠିଲା ଦୀପ ପରି ।

ସୁଶାନ୍ତ ଲେଖିଥିଲା - ଭଗବାନ, ତୁମେ ଅଛ ବୋଲି ମୁଁ ଗୋଟେ ବିଶ୍ୱାସ କରିପାରୁନାହିଁ । ଯଦି ସତରେ ଥାଅ, ତେବେ ଦୟାକରି ଥରଟିଏ ମତେ ଦେଖାଦିଅ । ମୋର କେବଳ ଗୋଟିଏ ପ୍ରଶ୍ନର ଉତର ଦିଅ । ମୁଁ ଏଇଠି ତୁମ ଅପେକ୍ଷାରେ ବସିରହିଲି ।

ହଠାତ୍ ଆରତି ର ପାଦ ପାଖଦେଇ କ'ଣ ଗୋଟେ ଚାଲିଗଲା । ଟର୍ଚ୍ଚ ଆଲୁଅରେ ମନେହେଲା ସମ୍ଭବତଃ ଗୋଟିଏ ବିଷାକ୍ତ ସାପ

ସନ୍ତସନ୍ତିଆ ମାଟି ଉପରେ ମାତ୍ର ମୁହୂର୍ତ୍ତକ ପାଇଁ ସ୍ଥିର ହୋଇଗଲା ଆରତି ର ପାଦ ଦୁଇଟି । ତା'ପରେ ସେ ପୁଣି ପାଦ ବଢେଇଲା ଆଗକୁ ।

ଦଣ୍ଡପାଟ ଏବେ ଆରତି ର ଅତିପାଖକୁ ଆସିଲା । କାନପାଖକୁ ମୁହଁ ଆଣି ଫିସ୍‌ଫିସ୍ କରି କହିଲା - କ'ଣ ଡର ଲାଗୁଚି ? ଡର ନାହିଁ । ମୁଁ ପରା ତୁମ ପାଖରେ ଅଛି -

ଏପରି କହି ସେ ହାତ ରଖିଥିଲା ଆରତି ର କାନ୍ଧ ଉପରେ ।

ଏବଂ ସେହିକ୍ଷଣି ଦୂର ଜଙ୍ଗଲ ଭିତରୁ ଭାସି ଆସିଥିଲା ଏକ ଅସ୍ପଷ୍ଟ ଜାନ୍ତବ ସ୍ୱର । ହୁଏତ ସେଇ ରକ୍ତଲୁବ୍ଧ ମହାବଳ ବାଘଟି ଛେଳି ଛୁଆଟିକୁ ଖାଉଖାଉ କିରିକିରି ହସିଉଠୁଚି, କିମ୍ବା ଅପୂର୍ଣ୍ଣ କାମନାର ପ୍ରେତାତ୍ମାଟିଏ ବାଟବଣା ହୋଇ ଡାକ ପାରିପାରି ଆଗେଇ ଆସୁଚି ଏ ଆଡକୁ ।

ଆରତି ର ଛାତି ଏବେ ଟିକିଏ ବି କମ୍ପିଉଠିଲା ନାହିଁ । ସେ ଜାଣିଥିଲା, ତା'ର କାହାରିକୁ ଭୟ କରିବାର କିଛି ନାହିଁ । ମେଘପବନ ଅନ୍ଧାର ଭିତରେ ନିଶ୍ଚୟ ଏଇଠି କେହିଜଣେ ତା' ଉପରେ ଆଖି ରଖିଛି । ହୁଏତ ଭଗବାନ, ନହେଲେ ସୁଶାନ୍ତ ।

---

## ଓଡିଆ ସାହିତ୍ୟ ର
## ସୁନାମଧନ୍ୟ ଲେଖକ ପ୍ରଫେସର ଧନେଶ୍ୱର ସାହୁ

ଧନେଶ୍ୱର ସାହୁ (୧୯୪୬) -

ଓଡିଆ ସାରସ୍ୱତ ଜଗତର ଜଣେ ପରିଚିତ ନାମ ସହିତ ହେତୁବାଦୀ ଚିନ୍ତକ ଭାବରେ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା ଲାଭ କରିଛନ୍ତି ।

ଏସିଆ ମହାଦେଶର ଭୁବନ ଗାଁରେ ତାଙ୍କ ଜନ୍ମ - ୩୦/୦୯/୧୯୪୯ ମସିହାରେ । ୧୯୨୭ ମସିହାରେ ଭୁବନ ହାଇସ୍କୁଲରୁ ମାଟ୍ରିକ୍ୟୁଲେସନ୍ ପାସ୍‌ପରେ ରେଭେନ୍ସା କଲେଜରେ ସ୍ନାତକ (ବି.ଏ.), ଦର୍ଶନଶାସ୍ତ୍ରର (ସମ୍ମାନ) ସହିତ ସ୍ନାତକୋତର (ଏମ୍.ଏ.), ଦର୍ଶନଶାସ୍ତ୍ରରେ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାର ରୁ ୧୯୭୩ ମସିହାରେ ସ୍ୱର୍ଣ୍ଣ ପଦକପ୍ରାପ୍ତ (ପ୍ରଥମ ଶ୍ରେଣୀରେ ପ୍ରଥମ) ।

ଉଚ୍ଚଶିକ୍ଷା ଗ୍ରହଣକରି ପୁଅ ଜଣେ ସମାଜରେ ବଡ ମଣିଷ ହେଉବୋଲି ସର୍ବଦା ବାପା - କୃଷ୍ଣଚନ୍ଦ୍ର ସାହୁ ଓ ମା' - ବାସନ୍ତୀଦେବୀ ସବୁବେଳେ ଭଗବାନଙ୍କ ପାଖରେ ଗୁହାରି କରିଥାନ୍ତି । ପରିଶେଷରେ ଭଗବାନ ସେମାନଙ୍କ କଥାରେ ପ୍ରସନ୍ନ ହୋଇଥିଲେ ଓ ପୁଅ ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ପରିଚିତ ହୋଇ ପାରିଥିଲେ ।

କର୍ମମୟ ଜୀବନରେ ଧନେଶ୍ୱର - ୧୯୭୪ ମସିହାରେ ଅଧ୍ୟାପକ - ଦର୍ଶନ ବିଭାଗ ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ ଓଡିଶାର ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା କରି ଦୀର୍ଘ ୩୩ ବର୍ଷର ଶିକ୍ଷାଦାନ ପରେ ୨୦୦୭ ମସିହାରେ ଓଡିଶାର ପ୍ରତିଷ୍ଠିତ କଲେଜ, ଭୁବନେଶ୍ୱର ର ବିଜେବି କଲେଜର ଦର୍ଶନଶାସ୍ତ୍ରର ପ୍ରାଧ୍ୟାପକ (ରିଡର) ପଦବୀରୁ ଅବସର ଗ୍ରହଣ କରିଲେ ।

ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ମାନବପ୍ରେମୀ, ଦରଦୀ ମଣିଷ ଥିଲେ - ଧନେଶ୍ୱର । ଅନେକ ସାଂସ୍କୃତିକ ଓ ସାହିତ୍ୟିକ ଅନୁଷ୍ଠାନରେ ତାଙ୍କର ସାରଗର୍ଭକ ବକ୍ତବ୍ୟ ଓଡିଶାରେ ତାଙ୍କୁ ଜଣେ ଉଦ୍ଜ୍ୱଶିନୀ ବ୍ୟକ୍ତା ଭାବରେ ପରିଚୟ ଦେଇଥିଲା ।

ଓଡିଆ ସାହିତ୍ୟରେ ଜଣେ ପ୍ରାବନ୍ଧିକ, ସ୍ତମ୍ଭକାର, ହେତୁବାଦୀ ଚିନ୍ତକ, ସମାଜ ସଂସ୍କାରକ ଓ ପ୍ରଗତିଶୀଳ ବୁଦ୍ଧିଜୀବୀ ଭାବରେ ସମଗ୍ର ଓଡିଶା କାହିଁକି ଭାରତବର୍ଷରେ ମଧ୍ୟ ଧନେଶ୍ୱର ସାହୁଙ୍କ ସୁନାମ ରହିଅଛି ।

### ସାରସ୍ୱତସ୍ରଷ୍ଟା ଧନେଶ୍ୱର -

ଓଡିଆ ସାହିତ୍ୟରେ ବିକାଶ ଦିଗରେ ଧନେଶ୍ୱର ଜଣେ ସଫଳ ସ୍ରଷ୍ଟା । ତାଙ୍କ ସୃଜନ ଦିଗନ୍ତ ବ୍ୟାପକ ଓ ବିସ୍ତାରିତ । ତାଙ୍କ ସୃଜନଶୀଳ ପ୍ରତିଭା ଓଡିଆ ସାହିତ୍ୟ ସହିତ ଇଂରାଜୀ ସାହିତ୍ୟରେ ମଧ୍ୟ ପରିବ୍ୟାପ୍ତ ।

### ଓଡିଆ ସାହିତ୍ୟ ର ପୁସ୍ତକ -

**ପ୍ରବନ୍ଧ ସାହିତ୍ୟ -**

ଧନେଶ୍ୱର ଜଣେ ପ୍ରାବନ୍ଧିକ ଭାବରେ ଓଡିଆ ସାହିତ୍ୟରେ ପ୍ରତିଷ୍ଠିତ । ତାଙ୍କର ୯ ଗୋଟି ପ୍ରବନ୍ଧ ପୁସ୍ତକ ପ୍ରକାଶିତ ।

୧. ଧର୍ମ, ଦର୍ଶନ, ସମାଜ
୨. ସଂସ୍କୃତି ଓ ସର୍ବୋଦୟ
୩. ଗାନ୍ଧୀ, ବିଜ୍ଞାନ ଓ ମାନବବାଦ
୪. ଜୀବନର ମୂଲ୍ୟ ଓ ହେତୁବାଦ
୫. ହେତୁବାଦୀ ଜୀବନବୋଧ
୬. ଜୀବନ ଜିଜ୍ଞାସା
୭. ଜୀବନ ଅନ୍ୱେଷା
୮. ସଂସ୍କୃତି ଜିଜ୍ଞାସା
୯. ମାନବିକତାର ସ୍ୱର

ଉପରୋକ୍ତ ପ୍ରବନ୍ଧ ସମୂହ ଧନେଶ୍ୱର ଙ୍କୁ ଜଣେ ହେତୁବାଦୀ ଭାବରେ ପ୍ରସିଦ୍ଧି ଆଣିଦେଇଛି ସମଗ୍ର ଭାରତବର୍ଷରେ । ତାଙ୍କ ଦାର୍ଶନିକ ଚିନ୍ତାଧାରା, ଯୁକ୍ତି-ନିଷ୍ଠା ଭାବ, ମାନବୀୟ ଗଣବ । ତାଙ୍କୁ ଜଣେ ଆଦର୍ଶବାଦୀ ଦାର୍ଶନିକ ଭାବରେ ପ୍ରତିଷ୍ଠା ଆଣିଦେଇଛି ।

**ଗବେଷଣାଧର୍ମୀ ପୁସ୍ତକ -**

ଅଧ୍ୟାପକ ଧନେଶ୍ୱର ସାହୁ ଜୀବନରେ ଦର୍ଶନଶାସ୍ତ୍ରରେ ଦୀର୍ଘ ୩୩ ବର୍ଷର ଅଧ୍ୟାପନାରେ ଅନେକ ଜ୍ଞାନର ଅଧିକାରୀ ସହ ଗବେଷଣାଧର୍ମୀ ରଚନାରେ ଲିପ୍ତ ରହିଥିଲେ । ତାଙ୍କର ଚାରୋଟି ଗବେଷଣାଧର୍ମୀ ପୁସ୍ତକ ପ୍ରକାଶିତ ।

୧. ଆବ୍ରାହମ କୋଭୁର
୨. ବିନୋଦ କାନୁନ୍‌ଗୋ
୩. ଭାରତୀୟ ଦର୍ଶନରେ ନିରୀଶ୍ୱର ବାଦ

୪. ଦାର୍ଶନିକ ବିଶ୍ଳେଷଣ - ଏକ ପରିଚୟ

ଆଦି ପୁସ୍ତକ ବିପୁଳ ପାଠକୀୟ ଆଦୃତି ଲାଭ କରିଅଛି ।

**ଅନୁବାଦ ସାହିତ୍ୟ -**

ଅନୁବାଦ କ୍ଷେତ୍ରରେ ମଧ ଧନେଶ୍ୱର ନିପୁଣ ଥିଲେ । ୫ ଗୋଟି ଅନୁବାଦ ପୁସ୍ତକ ସେ ଓଡିଆ ସାହିତ୍ୟକୁ ଦାନଦେଇ ଜଣେ ଅନୁବାଦକ ଭାବରେ ଓଡିଆ ସାହିତ୍ୟରେ ପରିଚିତ ଥିଲେ । ତାଙ୍କ ଅନୁବାଦ ପୁସ୍ତକ ମଧରେ -

୧. ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ

୨. ଧର୍ମର ଉର୍ଦ୍ଧ୍ୱରେ

୩. ଭାରତରେ ଜାତିପ୍ରଥା

୪. ପେରିୟାର ଙ୍କ ରଚନା

୫. ମାନବାଧିକାର ପ୍ରକ୍ରିୟା - ପ୍ରଶିକ୍ଷଣ ମାନୁଆଲ

ଆଦି ପୁସ୍ତକ ରହିଅଛି ।

**ଇଂରାଜୀ ପୁସ୍ତକ -**

ଇଂରାଜୀ ସାହିତ୍ୟ ରଚନାରେ ମଧ ନିଜର କଲମ ଚାଳନା କରିଥିଲେ ଅଧାପକ ଧନେଶ୍ୱର ସାହୁ - ତାଙ୍କ ଦ୍ୱାରା ଚାରିଗୋଟି ଇଂରାଜୀ ପୁସ୍ତକ ପ୍ରକାଶିତ । ସେଗୁଡିକ ମଧରେ -

୧. Styayoson's Concipt of Descriptive Metaphysics

୨. Philosophy, Society and Culture

୩. Understanding Life and Rationalism

୪. Abraham Kovoor, Odisha Rationalist Society and Humanist

Rationalist Organisationର ପ୍ରତିଷ୍ଠାତା ଥିଲେ ଅଧାପକ ଧନେଶ୍ୱର ସାହୁ । ତଦ୍‌ସହିତ "ହେତୁବାଦୀ ଚିନ୍ତନ" ନାମକ ଏକ ପତ୍ରିକାର ସମ୍ପାଦକ ଭାବରେ ଧନେଶ୍ୱର କାର୍ଯ୍ୟରତ ।

**ସାରସ୍ୱତ ସମ୍ମାନ ଓ ସମ୍ବର୍ଦ୍ଧନା -**

ଅଧାପକ ଧନେଶ୍ୱର ସାହୁ ନିଜର ସାହିତ୍ୟ ସୃଷ୍ଟିପାଇଁ ଅନେକ ସାରସ୍ୱତ ଅନୁଷ୍ଠାନରୁ ସମ୍ମାନୀତ ଓ ପୁରସ୍କୃତ ମଧ ହୋଇଅଛନ୍ତି ।

ତାଙ୍କର ପ୍ରବନ୍ଧ ପୁସ୍ତକ - "ସଂସ୍କୃତି ଓ ସର୍ବୋଦୟ" ପାଇଁ ୨୦୧୦ ମସିହାରେ - ଧନେଶ୍ୱର - ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ।

୨୦୧୪ ମସିହାରେ ପେରିୟାର ଇଣ୍ଟରନେସନାଲ ଆୱାର୍ଡ - ତାଙ୍କ ସାମଗ୍ରୀକ ସାରସ୍ୱତ କୃତିପାଇଁ ।

୨୦୧୭ ମସିହାରେ - ଓଡିଶା ସରକାର ତାଙ୍କୁ ବୟୋଜ୍ୟେଷ୍ଠ ନାଗରିକ ସମ୍ମାନରେ ସମ୍ମାନୀତ କରିଛନ୍ତି ।

୨୦୧୮ ମସିହାରେ - ଗୋରା - ସରସ୍ୱତୀ ମୋରା ଇଣ୍ଟରନେସନାଲ ଆଥେଇଷ୍ଟ ରିସର୍ଚ୍ଚ ସେଣ୍ଟର ପ୍ରଦତ ପୁରସ୍କାର ଲାଭ କରିଛନ୍ତି ।

ଏତଦବାଦ୍ ଧନେଶ୍ୱର ଙ୍କ ଲେଖା ବିଶେଷତଃ ସ୍ତମ୍ଭମାନ ଅନେକ ପତ୍ରପତ୍ରିକାରେ ପ୍ରକାଶିତ ।

ଦୂରଦର୍ଶନ (ଟିଭି) ମାଧମରେ ବିଭିନ୍ନ ହେତୁବାଦୀ ଉପରେ ଆଧାରିତ ଧନେଶ୍ୱର ଙ୍କ ବକ୍ତବ୍ୟ ସମଗ୍ର ଓଡିଶାର ଜନମାନସରେ ଆନ୍ଦୋଳିତ ହୁଏ, ଏଥିରେ ତିଳେମାତ୍ର ଅବକାଶ ନାହିଁ ।

ଅବସର ଜୀବନ ପରେ ବର୍ତ୍ତମାନ ଅଧାପକ ଧନେଶ୍ୱର ସାହୁ - ଢେଙ୍କାନାଳ ସହରରେ ସପରିବାରେ ରହି ସାହିତ୍ୟ ସାଧନା ତଥା ସାମାଜିକ ସଂଗଠନରେ ସକ୍ରିୟ ଅଂଶଗ୍ରହଣ କରୁଛନ୍ତି ।

ଅଧାପକ ଧନେଶ୍ୱର ସାହୁଙ୍କ ପ୍ରବନ୍ଧ ପୁସ୍ତକ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ "ସଂସ୍କୃତି ଓ ସର୍ବୋଦୟ" ପୁସ୍ତକରୁ ଏକ ପ୍ରବନ୍ଧ "ଗାନ୍ଧିଜୀ ଓ ଚାରି ମାର୍କ୍ସ" ପ୍ରବନ୍ଧଟି ଏଠାରେ ଉପସ୍ଥାପିତ ।

# ଧନେଶ୍ୱର ସାହୁଙ୍କ "ସଂସ୍କୃତି ଓ ସର୍ବୋଦୟ" ପ୍ରବନ୍ଧ ସଂକଳନର ଏକ ପ୍ରବନ୍ଧ - "ଗାନ୍ଧୀ ଓ ଚତୁର୍ଥ ମାଙ୍କଡ"

ଗାନ୍ଧୀଙ୍କ ପ୍ରସଙ୍ଗରେ ରଚିତ ଏକ କାହାଣୀ ବେଶ୍ ଜନପ୍ରିୟ । କାହାଣୀଟି ଅନୁଯାୟୀ ଗାନ୍ଧୀ ତିନୋଟି ମାଙ୍କଡର ପ୍ରତିମୂର୍ତ୍ତି ରଖିଥିଲେ ଯେଉଁମାନଙ୍କ ପାଖରୁ ସେ ଏକ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ପାଉଥିଲେ । ପାଟି ବନ୍ଦ କରିଥିବା ମାଙ୍କଡ ଖରାପ କଥା ନ କହିବାକୁ, ଆଖି ବନ୍ଦ କରିଥିବା ମାଙ୍କଡ ଖରାପ କଥା ନ ଦେଖିବାକୁ ଓ କାନ ବନ୍ଦ କରିଥିବା ମାଙ୍କଡ ଖରାପ କଥା ନ ଶୁଣିବାକୁ ତାଙ୍କୁ ଶିକ୍ଷା ଦେଉଥିଲେ । ଗାନ୍ଧୀ ନୈତିକ ପନ୍ଥାରେ ନିଜକୁ ପରିଚାଳିତ କରିବା ପାଇଁ ଯେପରି ସଙ୍କଳ୍ପବଦ୍ଧ ହୋଇ ଜୀବନର ପ୍ରତ୍ୟେକଟି ଘଟଣା ଓ ଆହ୍ୱାନ କ୍ଷେତ୍ରରେ ସତ୍ୟ ପଥରେ ରହିବାକୁ ପରୀକ୍ଷା କରି ଚାଲିଥିଲେ ସେ କ୍ଷେତ୍ରରେ ଏହି ମାଙ୍କଡ ପ୍ରତିମୂର୍ତ୍ତି ମାନଙ୍କର ପ୍ରେରଣା ବେଶ୍ ଉଲ୍ଲେଖନୀୟ ଥିଲା ।

ଖରାପ କଥା ନ ଦେଖିବା, ନ ଶୁଣିବା ଓ ନ କହିବା ପାଇଁ ଚେଷ୍ଟିତ ହେବାକୁ ଭାରତୀୟ ଆଧ୍ୟାତ୍ମିକ ପରମ୍ପରାରେ ଜଣେ ସାଧକ ଙ୍କୁ ପରାମର୍ଶ ଦିଆଯାଇଛି । ଯେତେ ବିକ୍ଷୁବ୍ଧ ସମାଜରେ ରହିଥିଲେ ବି ଜଣେ ସାଧକ ସେ ସବୁ ପ୍ରତି ଉଦାସୀନ ରହି ନିଜର ଜୀବନକୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରିବାକୁ ଚେଷ୍ଟିତ ହେବାକୁ କୁହାଯାଇଛି । ଭାରତବର୍ଷର ଋଷି ମୁନିମାନେ ସେଥିପାଇଁ ସମ୍ଭବତଃ ସମାଜକୁ ଗୁରୁତ୍ୱ ନଦେଇ ନିଜର ଆଧ୍ୟାତ୍ମିକ ଲକ୍ଷ୍ୟ ହାସଲ ପାଇଁ ସମାଜ ପାଖରୁ ଦୂରେଇ ଯାଇଛନ୍ତି । ପରିଣାମତଃ ଗୋଟିଏ ପଟେ ଉଚ୍ଚାଙ୍ଗ ଦାର୍ଶନିକ ଚିନ୍ତା, ଆଧ୍ୟାତ୍ମିକ ଅନ୍ୱେଷା ଓ ଜୀବନର ପୁରୁଷାର୍ଥ ନେଇ କେତେକେତେ ମହାନ୍ ଭାବନା ସୃଷ୍ଟି ହୋଇଥିବାବେଳେ ଆଉ ଗୋଟିଏ ପଟରେ ସମାଜରେ ସାମାନ୍ୟତମ ମାନବିକ ମୂଲ୍ୟବୋଧର ସୂଚନା ମିଳେନାହିଁ । ବରଂ ସମାଜରେ ଥିବା ଅନେକ ଅମାନବିକ ପରମ୍ପରା, ସାମାଜିକ ଜୀବନକୁ କଳୁଷିତ କରୁଥିବା ଜୀବନଦୃଷ୍ଟି ଓ ବ୍ୟକ୍ତି ମର୍ଯ୍ୟାଦାର ଚରମ ହାନିକର ଆଚରଣକୁ ସମୟେ ସମୟେ ଧାର୍ମିକ ସ୍ୱୀକୃତି ଦେବା ଫଳରେ ଓ ଧର୍ମଭାବନା ନେଇ ସମାଜରେ ଦୁର୍ବଳତା ରହିଥିବାରୁ ଏସବୁ ପ୍ରତି ଚରମ ଉଦାସୀନତା ପ୍ରକାଶ ପାଇବା ଦେଖାଯାଏ । ବଡ ବ୍ୟଙ୍ଗପୂର୍ଣ୍ଣ ହେଲେ ବି ଏହା ସତ୍ୟ ଯେ ଆମ ଦେଶରେ ଆଧ୍ୟାତ୍ମିକତା କ୍ଷେତ୍ରରେ ଏତେ ବିଚାର ବିମର୍ଶ ରହିଥିଲେ ବି ତା'ର ସୁଫଳ ଆମର ସାମାଜିକ ଜୀବନରେ ପ୍ରତିଫଳିତ ହୋଇନାହିଁ ବରଂ ସାମାଜିକ ଜୀବନ ପ୍ରତି ଏକ ଉଦାସୀନ ଦୃଷ୍ଟିଭଙ୍ଗୀ ଆମ ଜାତୀୟ ଜୀବନକୁ କବଳିତ କରିରଖିଛି । ଅବଶ୍ୟ ସମୟେ ସମୟେ ଜଣେ ଜଣେ ବ୍ୟକ୍ତି ଆସି ଏଥିରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଛନ୍ତି ତଥାପି ତାହାର ସୁଫଳ ସମାଜରେ ସେପରି ମୌଳିକ ପରିବର୍ତ୍ତନ ସଂଘଟିତ କରିପାରି ନାହିଁ ।

ଏହି ପରିପ୍ରେକ୍ଷୀରେ ଗାନ୍ଧୀଙ୍କର ବିଚାର ଯଥାର୍ଥରେ ଏକ ନୂତନ ସମ୍ଭାବନାର ପଥ ଦେଖାଇଛି । ବ୍ୟକ୍ତିଗତ ଜୀବନରେ ଏକ ଅନାସକ୍ତ ସାଧୁଙ୍କ ପରି ବଚିଂବାବେଳେ ରାଜନୈତିକ ଘଟଣା ପ୍ରବାହ ସହିତ ଓତପ୍ରୋତ ଭାବେ ସଂଶ୍ଲିଷ୍ଟ ରହି ସମାଜ ଓ ରାଷ୍ଟ୍ରର ପରିବର୍ତ୍ତନ ପାଇଁ ସତତ ଚେଷ୍ଟିତ ହେବା ତାଙ୍କ ବ୍ୟକ୍ତିତ୍ୱର ଏକ ବୈଶିଷ୍ଟ୍ୟ କହିବାକୁ ହେବ ।

ଆଧ୍ୟାତ୍ମିକ ଜୀବନ ଓ ରାଜନୀତି ପରସ୍ପରର ପ୍ରତିକୂଳ ବୋଲି ଯେପରି ଏକ ଭାବଗତ ଆଦର୍ଶ ଆମ ସମାଜରେ ସୃଷ୍ଟି ହୋଇଛି ସେଥିରେ ପରିବର୍ତ୍ତନ ଆଣି ଉଭୟର ଏକ ସମନ୍ୱୟ ସୃଷ୍ଟି କରିବାରେ ଗାନ୍ଧୀଙ୍କର ଅବଦାନ ଉଲ୍ଲେଖନୀୟ ଅଟେ । କେତେକ ନିରଙ୍କୁଶ ମୂଲ୍ୟବୋଧକୁ ସାମାଜିକ ଶ୍ରେୟ ଭାବରେ ଗ୍ରହଣ କରି ତାହାରି ମାନଦଣ୍ଡରେ ଜନଗଣଙ୍କ ଭିତରେ ଏକ ଜାଗରଣ ସୃଷ୍ଟି କରିବା ସହିତ ଏକ ବିକଳ୍ପ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ସିଦ୍ଧାନ୍ତର ସୂତ୍ରପାତ କରିବା ଗାନ୍ଧୀଙ୍କର ମୌଳିକ ଅବଦାନ କହିବାକୁ ହେବ ।

ଏକ ଆଦର୍ଶ ଜନ ରାଜ୍ୟର ପରିକଳ୍ପନା କରିବା ସହିତ ତା'ର ସଫଳ ରୂପାୟନ ପାଇଁ ସେ ସତ୍ୟାନୁମୋଦିତ ପନ୍ଥାକୁ ସାଧନ ଭାବରେ ଗ୍ରହଣ କରିଥିଲେ । ଭାରତର ରାଜନୀତିକ ସ୍ୱାଧୀନତା ତାଙ୍କ ରାଜନୈତିକ ଜୀବନର ଏକମାତ୍ର ଆଭିମୁଖ୍ୟ ନଥିଲା ବରଂ ଏକ ନୂତନ ସାମାଜିକ ପ୍ରକଳ୍ପକୁ ଯଥାର୍ଥରେ କାର୍ଯ୍ୟକାରୀ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ଗୋଟିଏ ସାମାଜିକ ପ୍ରକଳ୍ପକୁ ବାସ୍ତବରେ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଯେଉଁ ଦ୍ୱନ୍ଦ୍ୱର ସୂତ୍ରପାତ ହୋଇଥାଏ ତାହାକୁ ପରିବର୍ତ୍ତନ କରିବା ପାଇଁ ସେ ସାଧନର ମହନୀୟତା ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ । ନିଜ ସାଧନର ନୈତିକ ପରାକାଷ୍ଠା ତାଙ୍କ ପାଇଁ ଜୀବନସାରା ବଡ ଆହ୍ୱାନ ହୋଇ ରହିଥିଲା । ସେଥିପାଇଁ ସେ ସର୍ବଦା ସତ୍ୟକୁ ଗୁରୁତ୍ୱ ଦେଉଥିଲେ ଓ ନିଜର ବିବେକାନୁମୋଦିତ ପନ୍ଥାରେ ପରିଚାଳିତ ହେବା ତାଙ୍କ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ।

ଗାନ୍ଧୀ ଯେପରି ଏକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ ପୃଥିବୀର କେହିକେହି ମନୀଷୀ ବି ସେହିପରି ନିଜନିଜ ବିଚାର କ୍ଷେତ୍ରରେ ନୂତନ ସମାଜ ପାଇଁ ସ୍ୱପ୍ନ ଦେଖିଛନ୍ତି । ସକ୍ରେଟିସ୍ ଙ୍କ ଠାରୁ ଆରମ୍ଭକରି ମାର୍କସ୍ ଙ୍କ ପର୍ଯ୍ୟନ୍ତ ବା କୌଟିଲ୍ୟଙ୍କ ଠାରୁ ଗାନ୍ଧୀଙ୍କ ପର୍ଯ୍ୟନ୍ତ କେତେକେତେ ଆଦର୍ଶ ଜନରାଜ୍ୟ (Utopia)ର ସୈଦ୍ଧାନ୍ତିକ ଭିତି ଦେଖିବାକୁ ମିଳିଥାଏ । ଏହି ଜନରାଜ୍ୟର ପରିକଳ୍ପନା ଭିତରେ କେହିକେହି ରାଷ୍ଟ୍ରର ସଂହତି ପାଇଁ ବ୍ୟକ୍ତି ମର୍ଯ୍ୟାଦାକୁ ନ୍ୟୂନ କରିଛନ୍ତି, ତଥାପି କୌଣସି ଆଦର୍ଶ ସମାଜର ପରିକଳ୍ପନା ସମାଜର ପରିବର୍ତ୍ତନ ପାଇଁ କିଛି ଅଭିନିବେଶ ଯୋଗାଇଛି । ମଣିଷର ଚିନ୍ତା ରାଜ୍ୟରେ ଗୋଟିଏ ବଳିଷ୍ଠ ଆଦର୍ଶ ସୃଷ୍ଟି ନହେବା ପର୍ଯ୍ୟନ୍ତ ପୂର୍ବରୁ ସୃଷ୍ଟ ଆଦର୍ଶଟି, ଏହାର ତ୍ରୁଟି ବିଚ୍ୟୁତି ସତ୍ତ୍ୱେ, ସମାଜ ପାଇଁ ଆକର୍ଷଣୀୟ ହୋଇ ରହିଛି । କିମ୍ବା ଏହା ବି ହୋଇପାରେ ଯେ ଗୋଟିଏ ଆଦର୍ଶକୁ ଧରି ରଖିଥିବା ସାମାଜିକ ବ୍ୟବସ୍ଥା ପରିବର୍ତ୍ତିତ ପରିସ୍ଥିତିରେ କଳୁଷିତ ହୋଇ ପଡିବା ଦ୍ୱାରା ତାହା ଜନଗଣଙ୍କ ଦ୍ୱାରା ପରିବର୍ତ୍ତିତ ହୋଇଛି

ସାମାଜିକ ଚେତନାର ବିକାଶ ଫଳରେ ବ୍ୟକ୍ତି ସମ୍ମାନର ପରିପନ୍ଥୀ ବିଚାରକୁ ଅନ୍ତତଃ ନୀତିଗତ ଭାବରେ ବିରୋଧ କରାଯାଇଛି । ସାମାଜିକ ବୈଷମ୍ୟକୁ ଦୂରକରି ବ୍ୟକ୍ତି ସମ୍ମାନବୋଧ, ଅର୍ଥନୈତିକ ସମତା ଓ ରାଜନୈତିକ ଅଧିକାର ସମ୍ପ୍ରତି ଯେକୌଣସି ଆଦର୍ଶ ଜନରାଜ୍ୟର ପରିକଳ୍ପନା ଭିତରେ ପ୍ରଧାନ ସ୍ଥାନ ନେଇପାରିଛି । ପୁନଶ୍ଚ ଗାନ୍ଧୀଙ୍କର ସତ୍ୟାଗ୍ରହ ପ୍ରତୀତିର ଅଭିନବ ସୈଦ୍ଧାନ୍ତିକ ଦିଗଟି ବିକାଶ ଲାଭକରିବା ଫଳରେ ସାମାଜିକ ପରିବର୍ତ୍ତନ ପୃଷ୍ଠଭୂମିରେ ହିଂସାତ୍ମକ ବିପ୍ଲବ ଆସ୍ତେଆସ୍ତେ ଗୁରୁତ୍ୱ ହରାଇଛି ।

ସାମ୍ପ୍ରତିକ ସମାଜରେ ଶିକ୍ଷାର ବିକାଶ ଓ ଗଣମାଧ୍ୟମର ପ୍ରଭାବ ଯୋଗୁଁ ମଣିଷର ସାମାଜିକ ସଚେତନତା ବୃଦ୍ଧି ପାଇବାରେ ଲାଗିଛି । ପରିଣାମ ସ୍ୱରୂପ ବ୍ୟକ୍ତି ଜୀବନର ସମୁଚିତ ବିକାଶ ସାମାଜିକ ଲକ୍ଷ୍ୟ ସାଧନର ଧ୍ୟେୟ ହୋଇପାରିଛି । ରାଜତନ୍ତ୍ର ଓ ସାମନ୍ତବାଦ ବଦଳରେ ଜନତନ୍ତ୍ର, ମାନବବାଦ ପୁଷ୍ଟହେଉଛି ଓ ରାଷ୍ଟ୍ର ବା ସମାଜ ପାଇଁ ପ୍ରତ୍ୟେକଟି ବ୍ୟକ୍ତିର ବିକାଶ ସାଧନ ଯୋଗୁଁ ବଚିଂବାର ଗୁଣାତ୍ମକ ମାନରେ ଯଥେଷ୍ଟ ବିକାଶ ହୋଇପାରିଛି । ଏହାସହିତ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ଫଳରେ ଯେକୌଣସି ମାନବିକ ସମସ୍ୟା ଏକ ଆଚଂଳିକ ସମସ୍ୟା ନହୋଇ ଆଜି ସମଗ୍ର ମଣିଷ ସମାଜର ଦୃଷ୍ଟି ଆକର୍ଷଣ କରିପାରୁଛି । ଜୀବନକୁ ଅଧିକ ସୁନ୍ଦର ଓ ଉପଭୋଗ୍ୟ କରିବାକୁ ବହୁ ସ୍ତରରେ ବୈଜ୍ଞାନିକ ଗବେଷଣା ହୋଇପାରୁଛି, ପୃଥିବୀକୁ ଯୁଦ୍ଧ ରହିତ କରିବାକୁ ଅହିଂସକାମୀ ଚିନ୍ତାଶୀଳ ବ୍ୟକ୍ତିମାନେ ଚେତନା ସୃଷ୍ଟି କରୁଛନ୍ତି । ପରିଣାମତଃ ସମ୍ପ୍ରତି ଜୀବନ ଅଧିକ ଅର୍ଥପୂର୍ଣ୍ଣ ହୋଇ ଉଠିବା ସହିତ ବ୍ୟକ୍ତିର ଅଙ୍ଗୀକାରବୋଧ ପ୍ରସାରିତ ହେବାରେ ଲାଗିଛି । ବ୍ୟକ୍ତିର କର୍ତ୍ତବ୍ୟବୋଧ ପରିବାର ସ୍ତରରୁ ପ୍ରସାରିତ ହୋଇ ଆଜି ସମଗ୍ର ମଣିଷ ସମାଜ ପାଇଁ ଆବଶ୍ୟକ ହୋଇପଡିଛି । ସଭ୍ୟତାର ବିକାଶ କ୍ଷେତ୍ରରେ ବ୍ୟକ୍ତିର ଏହି ଆରୋହଣ ଯେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଏହା ଅସ୍ୱୀକାର କରିହେବ ନାହିଁ ।

ଜୀବନର ଏହି ଆରୋହଣ ସତ୍ୱେ (ଅବଶ୍ୟ ଶ୍ରୀ ଅରବିନ୍ଦ ଙ୍କ ବିବର୍ତ୍ତନ ପ୍ରକ୍ରିୟାରେ ଚେତନାର ଆରୋହଣ ପରିନୁହେଁ) ମଣିଷ ପାଇଁ ଭବିଷ୍ୟତର ଚିତ୍ରଟି ନୈରାଶ୍ୟଜନକ ମନେହୁଏ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଚାପ, ପ୍ରଯୁକ୍ତିବିଦ୍ୟାର ବହୁଳ ବିନିଯୋଗରୁ ଉଦ୍ରେକ ବହୁବିଧ ସମସ୍ୟା, ପରିବେଶ ପ୍ରଦୂଷଣ ଜନିତ ବିଭୀଷିକା, ଆଣବିକ ବିସ୍ଫୋରଣର ସମ୍ଭାବନା ଇତ୍ୟାଦି ଘଟଣା ମଣିଷର ଭବିଷ୍ୟତ ସ୍ଥିତିନେଇ ଆଶଙ୍କା ସୃଷ୍ଟି କରାଉଛି । ଏହା ସହିତ ଶିଳ୍ପୋନ୍ନତ କେତେକ ରାଷ୍ଟ୍ରର ଅନ୍ୟ ବିକାଶଶୀଳ ରାଷ୍ଟ୍ରକୁ କବଳିତ କରି ରଖିବାର ମନୋଭାବ, ପ୍ରଚଳିତ ଆର୍ଥନୀତିକ ଢାଚାଂରେ ସୃଷ୍ଟ ନୂତନ ଔପନିବେଶବାଦ, ଧର୍ମୀୟ ଭାବ ପ୍ରବଣତା ଦ୍ୱାରା ଏକଛତ୍ରବାଦୀ ଶାସକଙ୍କର ଜନଗଣଙ୍କୁ ଅଧସ୍ତନ କରି ରଖିବାର ପ୍ରଚେଷ୍ଟା ଓ ବିଜ୍ଞାନର ଅପପ୍ରୟୋଗ ଦ୍ୱାରା ବ୍ୟକ୍ତିର ସ୍ୱାଧୀନତାକୁ ପ୍ରତିହତ କରିବାର ଉଦ୍ୟମ ଆମ ପାଇଁ ବିଡମ୍ୱନା କହିବାକୁ ହେବ । ଗୋଟିଏ ପଟେ ସଂସାରକୁ ସରସ ସୁନ୍ଦର କରି ଏକ ବିଶ୍ୱ ଜନରାଜ୍ୟର ପରିକଳ୍ପନା ବେଳେ ଅନ୍ୟପକ୍ଷେ ଏହି ଆଦର୍ଶକୁ ପ୍ରତିହତ କରି ମୁଷ୍ଟିମେୟ ଶାସକଙ୍କର ସ୍ୱାର୍ଥ ସାଧନ ପାଇଁ ଜନଗଣଙ୍କର ଜୀବନକୁ ଉଚ୍ଛନ୍ନ କରିବାର ପ୍ରଚେଷ୍ଟା ଆମ ପାଇଁ ବେଶ୍ ମର୍ମାନ୍ତିକ ମନେହୁଏ ।

ଅତୀତର ସମାଜରେ କୌଣସି କୌଣସି ସମୟରେ ଜଣେ ଜଣେ ଏକଛତ୍ରବାଦୀ ଶାସକଙ୍କର ଅପରିଣାମଦର୍ଶୀ କାର୍ଯ୍ୟଦ୍ୱାରା ଜନଗଣଙ୍କର ଦୁଃଖର ସୀମା ଅପ୍ରତିହତ ଭାବରେ ବୃଦ୍ଧିପାଇଛି । ଜଣେ ଜଣେ ନୀରୋ, ତୈମୁରଲଙ୍ଗ ବା ହିଟଲର କେତେକେତେ ଜନଗଣଙ୍କୁ ଉଚ୍ଛନ୍ନକରି ଦେଇଛନ୍ତି; ତଥାପି ସେମାନଙ୍କ ପ୍ରଭାବ ସୀମିତ ଅଚଂଳ ଭିତରେ ସୀମାବଦ୍ଧ ହୋଇରହିଛି । କିନ୍ତୁ ସମ୍ପ୍ରତି ବିଜ୍ଞାନ ଏପରି ଆୟୁଧ ଆଣିଦେଇଛି ଯଦ୍ଦ୍ୱାରା ଜଣେ ଜଣେ ଶାସକଙ୍କର କ୍ରିୟାକଳାପ ସମଗ୍ର ପୃଥିବୀ ପାଇଁ ଆଶଙ୍କା ସୃଷ୍ଟି କରିବାର ସମ୍ଭାବନା ଆଣିଛି । ବସ୍ତୁତଃ ଆମର ସକଳ ବିକାଶ ସତ୍ୱେ ଆମର ଜୀବନ ଅଧିକ ଆହତବ୍ୟ ହୋଇଉଠିଛି ।

ସଭ୍ୟତାର କ୍ରମବିକାଶର ଧାରା ଓ ଏହାର ଭବିଷ୍ୟତ ପରିଣାମ ନେଇ ବିଚାର ବିମର୍ଶ କଲାବେଳେ ଇତିହାସର ଜଣେ ଜଣେ ବ୍ୟକ୍ତିଙ୍କର ଅବଦାନ କଥା ସ୍ମରଣ କରିବାକୁ ହୋଇଥାଏ । ସେମାନେ ନିଜର କାର୍ଯ୍ୟ ବା ଲେଖନୀ ମୁନରେ ସମାଜର ଧାରାକୁ ବଦଳାଇବାକୁ ଓ ସମସ୍ତ କ୍ଷୟଶୀଳତାକୁ ପ୍ରତିହତ କରିବାକୁ ନୂତନ ଆଶା ଓ ସମ୍ଭାବନା ସୃଷ୍ଟି କରିଥାନ୍ତି । ଆଜିର ଏହି ସନ୍ଧିକ୍ଷଣରେ ଗାନ୍ଧୀଙ୍କୁ ସେହିପରି ସ୍ମରଣ କରାଯାଇପାରେ । "ପୃଥିବୀର ଶ୍ରମଜୀବୀ ଏକ ହୁଅ ଓ ନିଜର ଶୃଙ୍ଖଳ ପରିହାର କରି ଏକ ଶ୍ରେଣୀହୀନ ସମାଜ ପାଇଁ ଶ୍ରେଣୀ ସଂଘର୍ଷକୁ ତା'ର ଚରମ ପରିଣତି ସ୍ତରକୁ ନେବାକୁ ଅଟାଂ ଭିଡ" - ଯେଉଁ ଆହ୍ୱାନ ବିଂଶ ଶତାବ୍ଦୀ ଆରମ୍ଭରେ ମଣିଷକୁ ଏତେ ଆକୃଷ୍ଟ କରିଥିଲା ତାହା ଆଜି ଆସ୍ତେଆସ୍ତେ ମଳିନ ପଡିବାବେଳେ "ଗାନ୍ଧୀବାଦ" ଆଜି ପାଇଁ ଅଧିକ ଆକର୍ଷଣୀୟ ହୋଇପଡିଛି । ସେହି ପରିପ୍ରେକ୍ଷୀରେ ମଣିଷ ସମାଜର ଭବିଷ୍ୟତ ପାଇଁ ଗାନ୍ଧୀଙ୍କ ପ୍ରକଳ୍ପିତ ବ୍ୟବସ୍ଥା ଅଧିକ ଉପଯୋଗୀ ମନେହେଉଛି ।

ଆମ ସଂସାରରେ କେତେକେତେ ଆଦର୍ଶ ଓ ୟୁଟୋପିଆ ଯାହା ଏକଦା ଏତେ ଆକର୍ଷଣୀୟ ମନେ ହେଉଥିଲା ତାହା ସମୟାନୁକ୍ରମେ ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ନିଷ୍ପ୍ରଭ ହୋଇ ପଡିଛନ୍ତି । ଅବଶ୍ୟ କୌଣସି ଏକ ୟୁଟୋପିଆ ଯେ ସବୁ ପରିସ୍ଥିତିରେ ଓ ସବୁ ସମୟ ପାଇଁ ଉପଯୋଗୀ ହୋଇପାରିବ ଏପରି ଭାବିବାର ଅବକାଶ ନାହିଁ । ଏହି ପରିସ୍ଥିତିରେ ହୁଏତ ଗାନ୍ଧୀଙ୍କ ଆଦର୍ଶ ଭବିଷ୍ୟତରେ କି ପ୍ରକାର ଆହ୍ୱାନର ସମ୍ମୁଖୀନ ହେବ ଏହା ଏବେ ମୂଲ୍ୟାୟନ କରି କହିବା ସମ୍ଭବ ନୁହେଁ । ତଥାପି ଗାନ୍ଧୀ ବିଚାରଧାରାର ଗୋଟିଏ ଦିଗ ମଣିଷକୁ ସର୍ବଦା ପ୍ରେରଣା ଦେଉଥିବ । ବିଶେଷକରି ଆଜିର ଆଣବିକ ଯୁଗରେ ସତ୍ୟାଗ୍ରହ ମଣିଷ ପାଇଁ ଏକ ଅଭିନବ ସନ୍ଦେଶ ଆଣିପାରିଛି । ମୋଟ ଉପରେ ସାମାଜିକ ବିପ୍ଲବର ଧାରାରେ ଗାନ୍ଧୀ ଯେଉଁ ବୈପ୍ଲବିକ ପରିବର୍ତ୍ତନର ସୂତ୍ରପାତ କରିଛନ୍ତି ତାହା ମଣିଷର ଚିନ୍ତା ମାନସକୁ ତାଙ୍କର ଯେ ଏକ ମହାନ୍ ଅବଦାନ ଏହା ଅସ୍ୱୀକାର କରିହେବ ନାହିଁ ।

ଗାନ୍ଧୀ ତିନୋଟି ମାଙ୍କଡର ପ୍ରତିମୂର୍ତ୍ତି ରଖି ସେମାନଙ୍କ ଠାରୁ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ପାଉଥିଲେ ବି ତାଙ୍କ ସମଗ୍ର ଚିନ୍ତା ମାନସ "ଖରାପ କଥା ନ କରିବାକୁ" ହିଁ ମଣିଷକୁ ଶିକ୍ଷାଦେଇଛି । ବ୍ୟକ୍ତିଗତ ଜୀବନ କ୍ଷେତ୍ରରେ ହେଉ ବା ସାମାଜିକ ଲକ୍ଷ୍ୟପ୍ରାପ୍ତି ପାଇଁ

ହେଉ ଗାନ୍ଧୀ "ଅହିଂସା" ଓ ସତ୍ୟାଗ୍ରହର ଯେଉଁ ସୈଦ୍ଧାନ୍ତିକ ଭିତିଟି ଗଢି ତୋଳିଛନ୍ତି ସେଥିରୁ ତାଙ୍କ ବିଚାରର ଏହି ଅନ୍ତଃସ୍ୱରଟି ଅଧିକ ସ୍ପଷ୍ଟ ମନେହୁଏ । କହିବା ନିଷ୍ ପ୍ରୟୋଜନ ଯେ ଖରାପ କାର୍ଯ୍ୟ ନ ଦେଖିବା, ନ ଶୁଣିବା ଓ ଏପରିକି ନ କହିବା ଦ୍ୱାରା ଆମ ସଂସାରର ବିଶେଷ କିଛି ପରିବର୍ତନ ହେବାର ସମ୍ଭାବନା ନାହିଁ । ଆମର ଚତୁଃପାର୍ଶ୍ୱରେ ଘଟି ଯାଉଥିବା ହିଂସାତ୍ମକ ଓ ଅନୈତିକ ଘଟଣା ପ୍ରବାହକୁ ନ ଜାଣିବା ପାଇଁ ଆଖି, କାନ ବନ୍ଦକରି ବସିଲେ ହୁଏତ ଜଣେ ବ୍ୟକ୍ତି ସଂସାର ପ୍ରତି ଏକ ଉଦାସୀନ ଜୀବନ ଦୃଷ୍ଟି ପ୍ରକାଶ କରିବେ ସିନା, କିନ୍ତୁ ତଦ୍ୱାରା ଆମ ସଂସାରର ବିଶେଷ କିଛି ପରିବର୍ତନ ହୋଇପାରିବ ନାହିଁ । ବରଂ ଖରାପ କାମ ନ କରିବାକୁ ଶିକ୍ଷା ଦେଉଥିବା ଏକ ଆଦର୍ଶ ସାମ୍ପ୍ରତିକ ଜୀବନ ପାଇଁ ଅତ୍ୟନ୍ତ ଅପରିହାର୍ଯ୍ୟ ମନେହୁଏ । ସୁତରାଂ ଆଜି ଆମ ପାଇଁ ଏକ ଚତୁର୍ଥ ମାଙ୍କଡ ନିହାତି ଆବଶ୍ୟକ ଯେ କି ନିଜର "ହାତ" ବନ୍ଦକରି ଆମକୁ ଶିଖାଇବ "ଖରାପ କାର୍ଯ୍ୟ କରନାହିଁ ।" ଏହି ଚତୁର୍ଥ ମାଙ୍କଡ ଯଦିଓ ଆମ ଜୀବନ ପାଇଁ ଆଦର୍ଶ ହୋଇ ରହେ, ତେବେ ଆମ ସଂସାରର ଯଥେଷ୍ଟ କଲ୍ୟାଣ ହେବା ସହିତ ଭବିଷ୍ୟତ ପାଇଁ ନୂତନ ଆଶା ଓ ସମ୍ଭାବନା ସୃଷ୍ଟି ହୋଇପାରିବ । ଅନ୍ୟାୟ, ଯୁଦ୍ଧ, ହିଂସା, ସଂତ୍ରାସବାଦ ଦ୍ୱାରା ଆକ୍ରାନ୍ତ ସମାଜକୁ ମାନବିକତା ଓ ସଂପ୍ରୀତିରେ ପରିବର୍ତନ କରିବାରେ ଚତୁର୍ଥ ମାଙ୍କଡ ହିଁ ଦିଗ୍‌ଦର୍ଶକ ହେବ ।

---

## ଓଡିଆ ସାହିତ୍ୟ ର
## ଭାଷାବିତ୍ ପଣ୍ଡିତ ଡକ୍ଟର ଅନ୍ତର୍ଯ୍ୟାମୀ ମିଶ୍ର

ଡକ୍ଟର ଅନ୍ତର୍ଯ୍ୟାମୀ ମିଶ୍ର (୧୯୫୦) -

ବେଦ, ବେଦାନ୍ତ, ପୁରାଣ ଇତ୍ୟାଦି ପ୍ରାଚୀନ ଗ୍ରନ୍ଥ ଅଧ୍ୟୟନରେ ପଣ୍ଡିତ ମିଶ୍ର ଯେପରି ରୁଚିଶୀଳ - ଓଡିଆ ଭାଷା, ଜାତି, ଜାତୀୟତା ଅନୁଶୀଳନରେ ମଧ୍ୟ ସେହିପରି ଆଗ୍ରହୀ । ଧର୍ମ ଓ ସଂସ୍କୃତିର ସେ ମଧ୍ୟ ଜଣେ ପ୍ରଜ୍ଞା ପ୍ରବକ୍ତା । ଓଡିଆ ଭାଷାକୁ ଶାସ୍ତ୍ରୀୟତା ପ୍ରତିପାଦନ ଉଦ୍ଦେଶ୍ୟରେ ରଚିତ ତାଙ୍କ ପ୍ରବନ୍ଧଗୁଡିକ ବେଶ୍ ତଥ୍ୟ ସମ୍ବଳିତ ।

ଓଡିଆ ଜାତି ଓ ଓଡିଆ ଭାଷାର ଏହି ସୁଯୋଗ୍ୟ ସନ୍ତାନ - ଓଡିଆ ଭାଷାର ଶାସ୍ତ୍ରୀୟତା ପାଇଁ ମହାମହିମ ରାଷ୍ଟ୍ରପତିଙ୍କ ଠାରୁ ପ୍ରଥମ ଭାଷାବିତ୍ ଭାବରେ ସମ୍ମାନପ୍ରାପ୍ତ ହେବାରେ ସେ ପ୍ରଥମ ଓଡିଆ ।

ଅନ୍ତର୍ଯ୍ୟାମୀ ଜନ୍ମଗ୍ରହଣ କରିଛନ୍ତି - ତା. ୦୧/୦୭/୧୯୫୦ ମସିହା ଭୁବନ ବ୍ଲକ୍‌ର ମାର୍ଥାପୁର ଗ୍ରାମରେ (ଢେଙ୍କାନାଳ ଜିଲ୍ଲା), ବାପା - ସ୍ୱାଧିନତା ସଂଗ୍ରାମୀ ସତ୍ୟବାଦୀ ମିଶ୍ର / ମା' - ଦୁର୍ଗାବତୀ ଦେବୀଙ୍କ ସେ ଯୋଗ୍ୟ ସନ୍ତାନ ଭାବରେ ସମାଜରେ ପ୍ରତିଷ୍ଠିତ । ପିଲାଟି ଦିନରୁ ଭାଷାପ୍ରତି ତାଙ୍କର ଥିଲା ଅହେତୁକ ଦୁର୍ବଳତା, ସମୟକ୍ରମେ ସେ ଜାତୀୟସ୍ତରରେ ପ୍ରତିଷ୍ଠା ପାଇଥିଲେ ଜଣେ ଭାଷାବିତ୍ ଭାବରେ ।

ଗାଁ ସ୍କୁଲ୍ ମାର୍ଥାପୁର ସ୍କୁଲ୍‌ରୁ ପ୍ରାଥମିକ ଶିକ୍ଷା ମାର୍ଥାପୁର ହାଇସ୍କୁଲ - ରେଭେନ୍ସା କଲେଜରୁ (ସଂସ୍କୃତ) - ସମ୍ମାନ, ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. (ସଂସ୍କୃତ) - ଓଡିଆ ଘରୋଇ ଭାବେ ଉତର ଓଡିଆ ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡକ୍ଟରେଟ୍ (ଡି.ଲିଟ୍.) ଉପାଧିପ୍ରାପ୍ତ ନିଜର ସାମଗ୍ରିକ ସାରସ୍ୱତ କୃତିପାଇଁ ।

କର୍ମମୟ ଜୀବନରେ ଓଡିଶା ସରକାରଙ୍କ ରାଜସ୍ୱ ବିଭାଗର ଜଣେ କର୍ମଚାରୀ ଭାବରେ ଯୋଗଦାନ କରି ଦୀର୍ଘ ୩୦ ବର୍ଷର ଅଭିଜ୍ଞତା ସମ୍ପର୍ଣ୍ଣ ଭାବରେ ଜିଲ୍ଲାପାଳ - ଢେଙ୍କାନାଳଙ୍କ କାର୍ଯ୍ୟାଳୟରୁ ଅବସରପ୍ରାପ୍ତ କାର୍ଯ୍ୟାଳୟ ଅଧିକ୍ଷକ । ଅଧୁନା ଢେଙ୍କାନାଳ ସହର ର ଆନନ୍ଦ ନଗର, କାଠଗଡାରେ ସପରିବାରରେ ରହି ସାହିତ୍ୟ ସାଧନାରେ ଜୀବନକୁ ବିତାଉଛନ୍ତି ।

### ସାରସ୍ୱତସାଧକ ଅନ୍ତର୍ଯ୍ୟାମୀ

ଛାତ୍ରାବସ୍ଥାରୁ ଆଧ୍ୟାତ୍ମିକ ଓ ସାରସ୍ୱତ ସାଧନାରେ ବ୍ରତୀରହି ପରିଣତ ଜୀବନରେ ଜଣେ ସାହିତ୍ୟିକ, ଭାଷାବିତ୍, ସ୍ତମ୍ଭକାର, ପ୍ରାବନ୍ଧିକ, ଗବେଷକ, ବାଗ୍ମୀ, ଆଧ୍ୟାତ୍ମିକ ପ୍ରବକ୍ତା, ତନ୍ତ୍ରାଚାର୍ଯ୍ୟ, ଜ୍ୟୋତିର୍ବିଦ୍, ବାସ୍ତୁବିଜ୍ଞାନୀ ଓ ଭାଷାତତ୍ତ୍ୱବିତ୍ ଭାବରେ ଓଡିଶା ତଥା ଓଡିଶା ବାହାରେ ସୁପରିଚିତ ।

ଭାଷା, ସାହିତ୍ୟ, ଧର୍ମ ଓ ସଂସ୍କୃତିକୁ ପ୍ରଜ୍ଞାଲୋକରେ ଉଦ୍‌ଭାସିତ କରି ଅଗଣିତ ପ୍ରବନ୍ଧ ରଚନାରେ ସେ ସିଦ୍ଧହସ୍ତ । ଦୀର୍ଘ ଚାରି ଦଶନ୍ଧି ଧରି ସେ ପ୍ରବନ୍ଧ ସାହିତ୍ୟରେ ସ୍ୱତନ୍ତ୍ରଧାରା ସୃଷ୍ଟିପୂର୍ବକ ବିଶେଷ ପାଠକୀୟ ଆଦୃତି ଲାଭକରି ପାରିଛନ୍ତି । ତାଙ୍କ ରଚିତ ପ୍ରତ୍ୟେକଟି ପ୍ରବନ୍ଧ ନୈତିକ ବିଚାର ଦ୍ୱାରା ସୁସଂହତ, ଆଧ୍ୟାତ୍ମିକ ଶକ୍ତି ଦ୍ୱାରା ସଂଜୀବିତ, ଦାର୍ଶନିକ ସିଦ୍ଧାନ୍ତରେ ସୁଶୋଭିତ ଏବଂ ବୈଜ୍ଞାନିକ ଚେତନାର ଉତରଶୀଳତାରେ ଆଲୋକିତ । ଲେଖକୀୟ ଅନ୍ତର୍ଦୃଷ୍ଟି, ପାଠକୀୟ ଅନୁସନ୍ଧିତ୍ସା, ଭାଷାର ମଧୁରତା ଓ ପରିବେଷଣର ପରିଚ୍ଛନ୍ନତା ଦୃଷ୍ଟିରୁ ତାଙ୍କ ରଚିତ ପ୍ରବନ୍ଧ ସମୂହ ଅନନ୍ୟ ଓ ଅନୁପମ । ଓଡିଆ ବ୍ୟତୀତ ସେ ହିନ୍ଦୀ, ସଂସ୍କୃତ ଓ ଇଂରାଜୀରେ ଅନେକ ପ୍ରବନ୍ଧ ରଚନା କରିଛନ୍ତି ।

ସାହିତ୍ୟ, ସମାଲୋଚନା ଓ ଗବେଷଣା ଦ୍ୱାରା ସେ ସାହିତ୍ୟ ର ଅନ୍ତର୍ନିହିତ ସତ୍ୟ, ଲୁକ୍କାୟିତ ବର୍ଣ୍ଣ ବୈଭବ ଓ ପ୍ରଚ୍ଛନ୍ନ ରସ ମାଧୁର୍ଯ୍ୟ ଉନ୍ମୋଚନ କରି ପାରିଛନ୍ତି । ତାଙ୍କ ରଚିତ ଗବେଷଣାତ୍ମକ ପ୍ରବନ୍ଧ ସମୂହରେ ଅଧ୍ୟୟନ, ଅନ୍ୱେଷଣ ଓ ଅନୁଶୀଳନର ବୌଦ୍ଧିକ କଳାକୌଶଳ ପରିଦୃଷ୍ଟ ହୋଇଥାଏ । ତାଙ୍କ ଐତିହାସିକ ପ୍ରବନ୍ଧରୁ ଜାତୀୟ ପ୍ରଗତିର ଧାରା ଉପଲବ୍ଧ । ତାଙ୍କର ପ୍ରତ୍ୟେକଟି କୃତିରେ ଜଣେ ପାଠକ ନିଜକୁ, ନିଜର ଜନ୍ମଭୂମିକୁ, ନିଜର ଜାତି, ସଭ୍ୟତା, ସଂସ୍କୃତି ଓ ଇତିହାସକୁ ଚିହ୍ନିବାର ଯଥେଷ୍ଟ ଉପାଦାନ ରହିଛି । ଓଡିଆ ଭାଷାର ଶାସ୍ତ୍ରୀୟତା ଉପରେ ସେ ଅନେକ ଗବେଷଣାତ୍ମକ ସନ୍ଦର୍ଭ ରଚନା କରିଛନ୍ତି । ଭାଷାଭିତିକ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମିତ ସେ ଲେଖନୀ ଚାଳନା କରୁଛନ୍ତି । ଓଡିଶୀ ସଙ୍ଗୀତର ପ୍ରାଚୀନତା ଓ ଶାସ୍ତ୍ରୀୟତା ପ୍ରମାଣ କରିବା ନିମିତ ସେ ଗବେଷଣାରତ । ତାଙ୍କ ରଚିତ ଗବେଷଣାତ୍ମକ ଗ୍ରନ୍ଥ "ଓଡିଆ ଏକ ଶାସ୍ତ୍ରୀୟ ଭାଷା" ଏବଂ ଭାଷାବିଜ୍ଞାନ ଭିତିକ "ଓଡିଆ ଭାଷାର ଇତିହାସ", "ମୌଳିକ ଓଡିଆ ଭାଷାତତ୍ତ୍ୱ" ଓ "ମୌଳିକ ଓଡିଆ ବ୍ୟାକରଣ" ଗ୍ରନ୍ଥ ଓଡିଆ ଭାଷାର ଉଚ୍ଚତର ଗବେଷଣା କ୍ଷେତ୍ରରେ ଆଲୋଡନ ସୃଷ୍ଟିକରିଛି । ଶାସ୍ତ୍ରୀୟ ଓଡିଆ ଭାଷାରେ ଗ୍ରନ୍ଥ ରଚନା ଓ ଗବେଷଣା ନିମିତ ସେ ପ୍ରଥମ ଓଡିଆ ଭାବରେ ୨୦୧୯ ମସିହାରେ ରାଷ୍ଟ୍ରପତି ପୁରସ୍କାର ପାଇବାକୁ ଯୋଗ୍ୟ ହୋଇଛନ୍ତି ।

ରାମାୟଣ, ଭାଗବତ, ଗୀତା, ବେଦ ବେଦାନ୍ତ, ପୁରାଣଶାସ୍ତ୍ର ଓ ଜଗନ୍ନାଥ ସଂସ୍କୃତିର ସେ ଜଣେ ଲୋକପ୍ରିୟ ପ୍ରବକ୍ତା । ତାଙ୍କ ପ୍ରବଚନ ଧାରା ଆଧ୍ୟାତ୍ମିକ ଦୃଷ୍ଟି ଦର୍ଶନର ସୌମ୍ୟସ୍ନିଗ୍ଧ ରୂପାବଲୋକନରେ ଦୀପ୍ତିମନ୍ତ । ସରଳ ଜୀବନ ଓ ଉଚ୍ଚ ବିଚାରଧାରାରେ ଶ୍ରୋତାଙ୍କୁ ଉଦ୍‌ବୁଦ୍ଧ କରାଇବା ନିମିତ ସେ ସତତ ପ୍ରୟତ୍ନଶୀଳ । ଜୀବନ, ଆତ୍ମା ଓ ପରମାତ୍ମା ସମ୍ବନ୍ଧୀୟ ଚିନ୍ତନ ତଥା ବିଚାର ବିଶ୍ଳେଷଣର ଗଭୀର ଅନୁଶୀଳନ ଦ୍ୱାରା ସେ ଶ୍ରୋତା ସମାଜର ମାନସିକ ଚେତନା ସ୍ତରରେ ମନ୍ଥନ ସୃଷ୍ଟିକରି ପାରିଥାନ୍ତି । ଭାରତୀୟ ଧର୍ମ ଓ ସଂସ୍କୃତି ଆଧାରିତ

ତାଙ୍କର ପ୍ରବଚନ ଧାରା ଅଗଣିତ ଶ୍ରୋତାଙ୍କର ଆକର୍ଷଣ । ଶ୍ରୀ ଜଗନ୍ନାଥ ଚେତନାର ବ୍ୟାପକ ପ୍ରଚାର ଓ ପ୍ରସାରରେ ସେ ବ୍ରତୀ ଓ ଗବେଷଣାରତ । ଗବେଷଣା ଦ୍ୱାରା ସେ ଶ୍ରୀ ଜଗନ୍ନାଥ ତତ୍ତ୍ୱର ବହୁ ଅଜ୍ଞାତ ତଥ୍ୟ ଓ ପ୍ରସଙ୍ଗ ଲୋକଲୋଚନକୁ ଆଣି ପାରିଛନ୍ତି ।

ତନ୍ତ୍ର, ଜ୍ୟୋତିଷ ଓ ବାସ୍ତୁ ବିଜ୍ଞାନକୁ, ଶାସ୍ତ୍ରୀୟ ସିଦ୍ଧାନ୍ତ ସମନ୍ୱିତ, ଦାର୍ଶନିକ ବିଚାର ସମ୍ମତ ତଥା ବିଜ୍ଞାନଭିତିକ କରାଇବାରେ ତାଙ୍କ ଭୂମିକା ଉଲ୍ଲେଖନୀୟ । ସ୍ୱକୀୟ ସାଧନା ଦ୍ୱାରା ସେ ଏହିସବୁ ଦୁର୍ଲଭ ବିଦ୍ୟାବିଭବର ବ୍ୟବହାର ପକ୍ଷକୁ ମନୋରମ ଓ ଆକର୍ଷଣୀୟ କରି ପାରିଛନ୍ତି ତଥା ଲୋକ କଲ୍ୟାଣ କାମନାରେ ପ୍ରଚାର ଓ ପ୍ରସାରରେ ବ୍ରତୀ । ଏତଦ୍‌ଭିନ୍ନ ବୈଦିକ ସଂସ୍କୃତିର ପୁନରୁତ୍‌ଥାନ ନିମିତ ତାଙ୍କ ଅଧ୍ୟକ୍ଷତାରେ ତିନି ଶହରୁ ଊର୍ଦ୍ଧ୍ୱ ଯଜ୍ଞ ସମ୍ପନ୍ନ ହୋଇଛି । ଚାରିଧାମର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ତଥା ଭାରତର ପ୍ରମୁଖ ସାଧୁସନ୍ଥ ମହାତ୍ମାଙ୍କ ସହିତ ତାଙ୍କର ଆଧ୍ୟାତ୍ମିକ ସମ୍ପର୍କ ରହିଛି ଏବଂ ସେମାନଙ୍କ ନିର୍ଦ୍ଦେଶରେ ସେ ଆଧ୍ୟାତ୍ମିକ ସାଧନାରେ ମନୋନିବେଶ କରିଛନ୍ତି ।

ଆକାଶବାଣୀ ଓ ଦୂରଦର୍ଶନରେ ପ୍ରସାରିତ ତାଙ୍କର ପ୍ରତ୍ୟେକଟି ଆଲୋଚନା ଓ ବକ୍ତବ୍ୟ ଅଲୌକିକ ପ୍ରଜ୍ଞା ସମ୍ପନ୍ନ ଅମୃତ ଅନୁଭୂତିରେ ସୁରଭିତ । ସେ ମଧ୍ୟ ଦୂରଦର୍ଶନର ସ୍ୱୀକୃତିପ୍ରାପ୍ତ ଭାଷ୍ୟକାର । ବିଶ୍ୱପ୍ରସିଦ୍ଧ ପୁରୀ ରଥଯାତ୍ରାର ଧାରା ବିବରଣୀ ପ୍ରଦାନ ପୂର୍ବକ ସେ ବିଶେଷ ଆଦୃତି ଲାଭକରି ପାରିଛନ୍ତି ।

**ପ୍ରକାଶିତ ପୁସ୍ତକ -**

| | | |
|---|---|---|
| ୧. | ସପ୍ତଶଯ୍ୟା | ପ୍ରକାଶକ - ଉତ୍କଳ ସାହିତ୍ୟ ସମାଜ, ସପ୍ତଶଯ୍ୟା, ଢେଙ୍କାନାଳ |
| ୨. | ଅଭୁଲା ଐତିହ୍ୟ | ପ୍ରକାଶକ - ପରିଚାଳନା କମିଟି, ଶ୍ରୀ ଦଧିବାମନ ମନ୍ଦିର, ଢେଙ୍କାନାଳ |
| ୩. | ପୁଣ୍ୟପୀଠ କପିଳାସ | ପ୍ରକାଶକ - ଭାରତ ସରକାର, ନୂଆଦିଲ୍ଲୀ |
| ୪. | ଦିବ୍ୟ ବଚନାମୃତ | ପ୍ରକାଶକ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ |
| ୫. | ଉପନିଷଦ୍ ବଚନାମୃତ (୧ମ ଓ ୨ୟ) | ପ୍ରକାଶକ - ଗ୍ରନ୍ଥ ମନ୍ଦିର, କଟକ |
| ୬. | ପୁରାଣ ପରିଚୟ | ପ୍ରକାଶକ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ |
| ୭. | ମୋ ଦୃଷ୍ଟିରେ ଓଡିଶା | ପ୍ରକାଶକ - କଟକ ଷ୍ଟୁଡେଂଟସ୍ ଷ୍ଟୋର୍, କଟକ |
| ୮. | ଭାରତୀୟ ଐତିହ୍ୟ ଓ ସଂସ୍କୃତି | ପ୍ରକାଶକ - ସାଥୀ ପ୍ରକାଶନୀ, କଟକ |
| ୯. | ଭାରତୀୟ ଧର୍ମ ଓ ସଂସ୍କୃତି | ପ୍ରକାଶକ - କଟକ ଷ୍ଟୁଡେଂଟସ୍ ଷ୍ଟୋର୍, କଟକ |
| ୧୦. | ପୁରୁଷୋତମ ଜଗନ୍ନାଥ | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୧୧. | ଓଡିଆ ଭାଷା ଜାତି ଓ ଜାତୀୟତା | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୧୨. | ଓଡିଶାର ତନ୍ତ୍ରଧାରା | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୧୩. | ଓଡିଆ - ଏକ ଶାସ୍ତ୍ରୀୟ ଭାଷା | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୧୪. | ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି | ପ୍ରକାଶକ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ |
| ୧୫. | ଶୈବପୀଠ କପିଳାସ | ପ୍ରକାଶକ - ଗୁରୁଜୀ ବୁକ୍ ଷ୍ଟୋର୍, କଟକ |
| ୧୬. | ଦାରୁବ୍ରହ୍ମ ଙ୍କ ନବ କଳେବର | ପ୍ରକାଶକ - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ |
| ୧୭. | ଓଡିଆ ଭାଷାର ଇତିହାସ | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୧୮. | ଯାଜପୁର ର ଐତିହ୍ୟ ଓ ସଂସ୍କୃତି | ପ୍ରକାଶକ - କଟକ ଟ୍ରେଡିଂ କମ୍ପାନୀ, ବାଲୁ ବଜାର, କଟକ |
| ୧୯. | ସମ୍ପାଦନା - ଦାମୋଦର ଗ୍ରନ୍ଥାବଳୀ | ପ୍ରକାଶକ - ପ୍ରସନ୍ନ କୁମାର ପଟ୍ଟନାୟକ |
| ୨୦. | ପ୍ରାଚୀନ ଓଡିଶା | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୨୧. | ମଧ୍ୟଯୁଗୀୟ ଓଡିଶା | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |
| ୨୨. | ଆଧୁନିକ ଓଡିଶା | ପ୍ରକାଶକ - ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର |

## ଅନ୍ୟାନ୍ୟ କୃତି -

ତିରିଶ ଗୋଟି ଜିଲ୍ଲା ନିମିତ ପ୍ରକାଶିତ ହେଉଥିବା Cultural Heritage of Orissa ଗ୍ରନ୍ଥର ସେ ସମ୍ପାଦନା ମଣ୍ଡଳୀର ସଦସ୍ୟ ତଥା ପ୍ରକାଶିତ ଅନେକ ପ୍ରବନ୍ଧର ରଚୟିତା । ଏତଦ୍‌ଭିନ୍ନ ସେ ଅନେକ ପ୍ରବନ୍ଧର ଅନୁବାଦ କରିଛନ୍ତି । ଅନେକ ଜାତୀୟ ଓ ରାଜ୍ୟ ସ୍ତରୀୟ ଆଲୋଚନା ଚକ୍ରରେ ସେ ପ୍ରବନ୍ଧ ଉପସ୍ଥାପନ କରିବା ସହିତ ବକ୍ତବ୍ୟ ପ୍ରଦାନ କରି ପ୍ରଶଂସିତ ହୋଇଛନ୍ତି । ସ୍ୱାଧୀନ ଭାବରେ ଯାତାୟତକ୍ଷମ ନହେଲେ ହେଁ ସେ ଓଡିଆ ଭାଷାର ସୁରକ୍ଷା ନିମିତ ଓଡିଶା ଓ ଓଡିଶା ବାହାରେ ଦୀର୍ଘ ତିରିଶ ବର୍ଷଧରି କାର୍ଯ୍ୟକରି ଆସୁଛନ୍ତି । ଆନ୍ତର୍ଜାତୀୟ ଶ୍ରୀ ଜଗନ୍ନାଥ ଚେତନା ମହାଧିବେଶନ, ଆନ୍ତର୍ଜାତୀୟ ଦିବ୍ୟଜୀବନ ସମ୍ମେଳନ ଓ ଆନ୍ତର୍ଜାତୀୟ ବୌଦ୍ଧ ସମ୍ମିଳନୀରେ ସେ ଅଭିଭାଷଣ ପ୍ରଦାନକରି ଉଚ୍ଚ ପ୍ରଶଂସା ଲାଭ କରିଛନ୍ତି । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଓଡିଆ ଭାଷାର ଉତ୍ପତି ଓ କ୍ରମବିକାଶ ଶୀର୍ଷକ ଗବେଷଣାତ୍ମକ ପ୍ରବନ୍ଧ ପାଠକରି ପ୍ରଶଂସିତ ହୋଇଛନ୍ତି । ଏତଦ୍‌ଭିନ୍ନ ସେ ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟରେ ଅନୁଷ୍ଠିତ ସେମିନାରରେ ବହୁବାର ଅଂଶଗ୍ରହଣ କରିଛନ୍ତି । ଉଚ୍ଚତର ଗବେଷଣା ମାଧ୍ୟମରେ ଓଡିଆ ଭାଷାର ଶାସ୍ତ୍ରୀୟତା ପ୍ରତିପାଦନ ପୂର୍ବକ ସେ ସମ୍ମାନଜନକ ଡି.ଲିଟ୍. ଉପାଧିରେ ଭୂଷିତ ।

## ସାହିତ୍ୟାନୁଷ୍ଠାନ ସହ ସମ୍ପୃକ୍ତି -

ଓଡିଶା ସରକାର ବହୁବାର ପଣ୍ଡିତ ମିଶ୍ରଙ୍କୁ ଓଡିଶା ସାହିତ୍ୟ ଏକାଡେମୀର ସଦସ୍ୟ ରୂପେ ମନୋନୀତ କରିଛନ୍ତି । ଏତଦ୍‌ଭିନ୍ନ ସେ ଉତ୍କଳ ସାହିତ୍ୟ ସମାଜ, ସାରଳା ସାହିତ୍ୟ ସଂସଦ, ସନ୍ଧ୍ୟାତାରା ସାହିତ୍ୟ ସଂସଦ, ଓଡିଶା ଲେଖକ ସାମୁଖ୍ୟ, ଓଡିଶା ସାଂସ୍କୃତିକ ପରିଷଦ, ପ୍ରାଚ୍ୟବିଦ୍ୟା ପରିଷଦ, ତୁଳସୀ ସାହିତ୍ୟ ସଂସଦ, ଆଠଗଡ ସାହିତ୍ୟ ସମାଜ, ନରସିଂହପୁର ସାହିତ୍ୟ ସଂସଦ, କେନ୍ଦ୍ରାପଡା ଜିଲ୍ଲା ସାହିତ୍ୟ ସଂସଦ, ଅନୁଗୁଳ ଜିଲ୍ଲା ସାହିତ୍ୟ ସଂସଦ, ପତିତ ପାବନ ସାହିତ୍ୟ ସଂସଦ, ପ୍ରବାହ ସାହିତ୍ୟ ସଂସଦ, ବୀରଭୂମି ସାହିତ୍ୟ ସଂସଦ, କବିଭୂଷଣ ସ୍ମୃତି ପରିଷଦ, ବ୍ରଜନାଥ ସାହିତ୍ୟ ସଂସଦ, ଶ୍ରୀଧର ସ୍ୱାମୀ ସ୍ମୃତି ସଂସଦ, ଯୁଧିଷ୍ଠିର ସାହିତ୍ୟ ସଂସଦ ପ୍ରଭୃତି ବହୁ ସାରସ୍ୱତ ଅନୁଷ୍ଠାନ ତଥା ଓଡିଶାର ବହୁ ଆଧ୍ୟାତ୍ମିକ ଅନୁଷ୍ଠାନ ସହ ସମ୍ପୃକ୍ତ । ଓଡିଆ ଭାଷା ପ୍ରତିଷ୍ଠାନ ଦ୍ୱାରା ଗଠିତ ଶାସ୍ତ୍ରୀୟ ଭାଷା କମିଟିରେ ସେ ସ୍ୱତନ୍ତ୍ର ନିମନ୍ତ୍ରିତ ସଦସ୍ୟ । ଓଡିଆ ଭାଷା ଇତିହାସ ସଂକଳନର ସେ ଅନ୍ୟତମ ଗବେଷକ । ଓଡିଆ ଭାଷା ପ୍ରତିଷ୍ଠାନ ଦ୍ୱାରା ପ୍ରକାଶିତ "ଓଡିଆ ଭାଷାର ଇତିବୃତି" ଗବେଷଣାତ୍ମକ ଗ୍ରନ୍ଥ ସଂକଳନର ସେ ପ୍ରମୁଖ ସଦସ୍ୟ ।

## ସାମ୍ପ୍ରତିକ ନିବାସ -

ଆନନ୍ଦ ନଗର, କାଠଗଡା, ଢେଙ୍କାନାଳ
ପିନ୍ - ୭୫୯୦୦୧,
ଫୋନ୍ - ୮୮୯୫୨୩୦୭୨୨, ୬୩୭୦୪୨୫୦୨୧
e-mail - antaryamimisra@gmail.com

## ସମ୍ମାନ ଓ ସମ୍ବର୍ଦ୍ଧନା -

୧. ସନ୍ଧ୍ୟାତାରା ସାହିତ୍ୟ ସମ୍ମାନ
୨. ବାଗ୍ମୀଶ୍ରୀ ସମ୍ମାନ
୩. ବାଣୀଶ୍ରୀ ସମ୍ମାନ
୪. ରାମାୟଣୀ ସମ୍ମାନ
୫. ସହକାର ପ୍ରବନ୍ଧ ସମ୍ମାନ - ୨୦୦୦
୬. ରାଷ୍ଟ୍ରଦୀପ ପ୍ରବନ୍ଧ ସମ୍ମାନ
୭. ପ୍ରଫେସର ଗୋଲକବିହାରୀ ଧଳ ସ୍ମୃତି ସମ୍ମାନ
୮. କବିଭୂଷଣ ସାରସ୍ୱତ ସମ୍ମାନ
୯. ତୁଳସୀ ସାହିତ୍ୟ ସମ୍ମାନ
୧୦. ନରସିଂହପୁର ସାହିତ୍ୟ ସମ୍ମାନ
୧୧. ଶ୍ରୀ ସତ୍ୟସାଇ ସେବା ସଂଘ ସମ୍ମାନ
୧୨. ଢେଙ୍କାନାଳ ଜିଲ୍ଲା ଲେଖକ ସଂସଦ ସମ୍ମାନ - ୧୯୯୭
୧୩. ବାଣୀ ଭୂଷଣ ସମ୍ମାନ - ୨୦୦୭
୧୪. ରାଜ୍ୟସ୍ତରୀୟ ବାମଣ୍ଡା ସାରସ୍ୱତ ସମ୍ମାନ
୧୫. ଶ୍ରୀ ଗୁଣ୍ଡିଚା ସମ୍ମାନ - ୨୦୦୯
୧୬. ସହଯୋଗୀ ସାରସ୍ୱତ ସମ୍ମାନ - ୨୦୦୯
୧୭. ଦଶମ ରାଜଧାନୀ ପୁସ୍ତକମେଳା ପୁରସ୍କାର - ୨୦୦୯
୧୮. ଓଡିଶା ସଂସ୍କୃତି ପରିଷଦର ସପ୍ତମ ସଂସ୍କୃତି ସମ୍ମାନ - ୨୦୦୯

୧୯. ଶ୍ରୀ ଜଗନ୍ନାଥ ଚେତନା ଗବେଷକ ପୁରସ୍କାର - ୨୦୧୦
୨୦. ଶ୍ରୀ ବିରଜା ସେବା ସମ୍ମାନ - ୨୦୧୦
୨୧. ଅଖିଳ ଚକ୍ର ସାରସ୍ୱତ ସମ୍ମାନ - ୨୦୧୧
୨୨. ଶ୍ରୀ କୁଶଳେଶ୍ୱର ସାରସ୍ୱତ ସମ୍ମାନ - ୨୦୧୧
୨୩. କବି ମାୟାଧର ମାନସିଂହ ସ୍ମୃତି ସମ୍ମାନ - ୨୦୧୧
୨୪. ବାନପ୍ରସ୍ଥୀ ସମ୍ମାନ - ୨୦୧୧
୨୫. ବ୍ୟାସକବି ଫକୀର ମୋହନ ସ୍ମୃତି ସମ୍ମାନ - ୨୦୧୨
୨୬. ବଡଜେନା ସାହିତ୍ୟ ସମ୍ମାନ - ୨୦୧୨
୨୭. ମହିମା ସାହିତ୍ୟ ସମ୍ମାନ - ୨୦୧୨ (ଢେଙ୍କାନାଳ ମହୋତ୍ସବ)
୨୮. ସୁଲକ୍ଷଣା ଦେବୀ ସାହିତ୍ୟ ସମ୍ମାନ - ୨୦୧୨
୨୯. ଦାମୋଦର ସାହିତ୍ୟ ସମ୍ମାନ
୩୦. ସୁଲେଖା ସାହିତ୍ୟ ସମ୍ମାନ - ୨୦୧୨
୩୧. ନବକାକାଳି ସାହିତ୍ୟ ସମ୍ମାନ - ୨୦୧୨
୩୨. ନଟରାଜ ସାହିତ୍ୟ ସମ୍ମାନ - ୨୦୧୨
୩୩. ଉତ୍କଳ ସାହିତ୍ୟ ସମାଜର ଆଧ୍ୟାତ୍ମିକ ସାହିତ୍ୟ ପୁରସ୍କାର - ୨୦୧୩
୩୪. ଚିରନ୍ତନୀ ସମ୍ମାନ - ୨୦୧୩
୩୫. ଅଖିଳ ଭାରତ ଓଡିଆ ସାହିତ୍ୟ ସମ୍ମାନ - ୨୦୧୩
୩୬. ଅମୃତାୟନ ପ୍ରବନ୍ଧ ସମ୍ମାନ - ୨୦୧୩
୩୭. ବୋଲଗଡ ପୂଜ୍ୟପୂଜା ସମ୍ମାନ - ୨୦୧୪
୩୮. ଆମେ ଓଡିଆ ସମ୍ମାନ - ୨୦୧୪
୩୯. ଓଡିଶା ଲେଖକ ସାମ୍ମୁଖ୍ୟ ସମ୍ମାନ - ୨୦୧୪
୪୦. ମୁକ୍ତ ଚିନ୍ତନ ସାରସ୍ୱତ ସମ୍ମାନ - ୨୦୧୪
୪୧. ତୁଳସୀ ପରିବାର, ବାରିପଦା ଦ୍ୱାରା ସମ୍ମାନିତ
୪୨. ବଳଦୁର୍ଗ ସମ୍ମାନ - ୨୦୧୪
୪୩. ବରୁଣେଶ୍ୱର ବକ୍ତୃତାମାଳା ସମ୍ମାନ - ୨୦୧୪
୪୪. ଭୁବନେଶ୍ୱର ପୁସ୍ତକମେଳା ସମ୍ବର୍ଦ୍ଧନା - ୨୦୧୫
୪୫. ପ୍ରଫେସର ଖଗେଶ୍ୱର ମହାପାତ୍ର ସ୍ୱନକ୍ଷତ୍ର ସମ୍ମାନ - ୨୦୧୫
୪୬. ଶ୍ରୀ ସୁଦର୍ଶନ ସମ୍ମାନ - ୨୦୧୬
୪୭. ବିଷୁବ ଝଙ୍କାର ପୁରସ୍କାର - ୨୦୧୬
୪୮. ଧନେଶ୍ୱର ରଥ ସ୍ମୃତି ସମ୍ମାନ - ୨୦୧୬ (DRIEMS)
୪୯. ବାପୁ ମନ୍ଦିର ନ୍ୟାସ ପୂଜ୍ୟପୂଜା ସମ୍ମାନ
୫୦. ଉତର ଓଡିଶା ବିଶ୍ୱବିଦ୍ୟାଳୟର ଦଶମ ସମାବର୍ତନ ୨୦୧୭ରେ ସମ୍ମାନଜନକ ଡି.ଲିଟ୍. ଉପାଧିରେ ଭୂଷିତ ।
୫୧. ବିରଜା ଜ୍ୟୋତି ସମ୍ମାନ - ୨୦୧୭
୫୨. ଗୋଧୂଳି ସାରସ୍ୱତ ସମ୍ମାନ - ୨୦୧୭
୫୩. ପତିତ ପାବନ ସାହିତ୍ୟ ସଂସଦ ସମ୍ମାନ - ୨୦୧୭
୫୪. ଅତିବଡି ଜଗନ୍ନାଥ ଦାସ ସମ୍ମାନ (ପୁରୀ) - ୨୦୧୭
୫୫. କୋଣାର୍କ ସାହିତ୍ୟ ସମ୍ମାନ - ୨୦୧୮
୫୬. ଭାଷା ଭୂଷଣ ସମ୍ମାନ (କେନ୍ଦ୍ରାପଡା) - ୨୦୧୮
୫୭. ବୌଦ୍ଧ ଗୌରବ ସମ୍ମାନ - ୨୦୧୯
୫୮. ରାଷ୍ଟ୍ରପତି ସମ୍ମାନ ପ୍ରମାଣ ପତ୍ର (ଶାସ୍ତ୍ରୀୟ ଓଡିଆ) - ୨୦୧୯
୫୯. ବିଦଗ୍ଧ ସ୍ୱର୍ଣ୍ଣ ସାରସ ସମ୍ମାନ - ୨୦୧୮

ଏତଦ୍‌ଭିନ୍ନ ଅନ୍ୟାନ୍ୟ ବହୁ ସମ୍ମାନ ।

# ଓଡ଼ିଆ ଲିପି ବିକାଶର ନବଦିଗନ୍ତ

ପଣ୍ଡିତ ଡଃ ଅନ୍ତର୍ଯ୍ୟାମୀ ମିଶ୍ର

ଭାରତର ଅନ୍ୟାନ୍ୟ ଲିପି ସଦୃଶ ଓଡିଆ ଲିପି ବ୍ରାହ୍ମୀ ଲିପିରୁ ଜନ୍ମ ନେଇଛି ବୋଲି ଲିପି ତତ୍ୱବିତ୍‌ଙ୍କର ମତ । ବିଶିଷ୍ଟ ଲିପି ତତ୍ୱବିତ୍‌ମାନେ ବ୍ରାହ୍ମୀ ଲିପିର ଉଦ୍ଭବ ଖ୍ରୀଷ୍ଟପୂର୍ବ ପଚଂମ ଶତାବ୍ଦୀ ନିର୍ଣ୍ଣୟ କରିଥିଲେ ହେଁ ଓଡିଶାରୁ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ବ୍ରାହ୍ମୀଲିପି ମିଳିଛି । କିନ୍ତୁ ଏହି ଲିପି ମିଳିବା ପୂର୍ବରୁ ଭୁବନେଶ୍ୱର ସ୍ଥିତ "ଜୟଦେବ ରାଜ୍ୟ ସଂଗ୍ରାହଳୟ", ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀଠାରୁ ଓଡିଆ ଲିପିର କ୍ରମବିକାଶଧାରାର ସାରିଣୀ ପ୍ରକାଶକରି ସାରିଥିଲେ, ଯାହା ସଂଶୋଧନ ଆବଶ୍ୟକ କରିଥାଏ । ପ୍ରମାଣିତ ହୁଏ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀଠାରୁ ବ୍ରାହ୍ମୀ ଲିପିରୁ ଓଡିଆ ଲିପି ଜନ୍ମନେଇ ଚତୁର୍ଦ୍ଦଶ ଶତାବ୍ଦୀରେ ପୂର୍ଣ୍ଣାଙ୍ଗ ରୂପଧାରଣ କରିଥିଲା । ଅର୍ଥାତ୍ ଓଡିଆ ଲିପି ଦୀର୍ଘ ଦୁଇ ହଜାର ବର୍ଷର କ୍ରମ ବିକଶିତ ଧାରାରେ ପୂର୍ଣ୍ଣାଙ୍ଗ ରୂପ ଧାରଣ କରିଅଛି । କିନ୍ତୁ ପ୍ରଫେସର ଡକ୍ଟର ଖଗେଶ୍ୱର ମହାପାତ୍ର ଓଡିଆ ଲିପି ବିକାଶ ସମ୍ପର୍କରେ ନୂତନ ତଥ୍ୟ ପ୍ରଦାନ ପୂର୍ବକ ମତ ଦେଇଅଛନ୍ତି ଯେ, ସପ୍ତମ ଶତାବ୍ଦୀରୁ ଓଡିଶାରେ ଏକ ସ୍ୱତନ୍ତ୍ର ଲିପିର ପ୍ରଚଳନ ହୋଇଥିଲା ଏବଂ ଏହି ଲିପି ତିବ୍ବତରେ ଓ୍ୱାର୍ତୁଲିପି ନାମରେ ପରିଚିତ ଥିଲା । ଓଡିଆ ଲିପି ବିକାଶଧାରାରେ ପ୍ରଫେସର ମହାପାତ୍ରଙ୍କର ଏହି ମତ ବିଶେଷ ପ୍ରଣିଧାନ ଯୋଗ୍ୟ । ୧୯୭୩ ମସିହାରେ ଆମେରିକା ସାନ୍‌ଡିଆଗୋ ଠାରେ ଚୀନ୍ ତିବ୍ବତୀୟ ଭାଷା ସମ୍ମିଳନୀରେ ପ୍ରଫେସର ମହାପାତ୍ର ଏହି ମତ ପ୍ରକାଶ କରିଥିଲେ ହେଁ ଅଦ୍ୟାବଧି ସେ ସମ୍ପର୍କରେ ବିଶେଷ ଆଲୋଚନା ହୋଇନାହିଁ ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଓଡିଶାର ତପସୁ ଓ ଭଲ୍ଲିକ ନାମଧାରୀ ଦୁଇଜଣ ବଣିକ ପାଚଂଶହ ଶଗଡରେ ପଣ୍ୟଦ୍ରବ୍ୟ ନେଇ ମଧ୍ୟ ଭାରତକୁ ଯାତ୍ରା କରୁଥିବା ସମୟରେ ଗୟା ନିକଟସ୍ଥ ଉରୁବେଲା ବା ଆଧୁନିକ ବୁଦ୍ଧଗୟା ଠାରେ ସଦ୍ୟସମ୍ବୋଧି ପ୍ରାପ୍ତ ବୁଦ୍ଧଦେବ ଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲେ ଏବଂ ତାଙ୍କର ପ୍ରଥମ ଶିଷ୍ୟ ହେବାର ଗୌରବ ଅର୍ଜନ କରିଥିଲେ । ବୁଦ୍ଧଦେବ ଏହି ବଣିକଦ୍ୱୟଙ୍କୁ ନଜର ନଖ ଓ କେଶ ପ୍ରଦାନ କରିଥିଲେ । ସେମାନେ ଓଡିଶାକୁ ପ୍ରତ୍ୟାବର୍ତନ କରି ଆସିଆ ନଗରୀ ବା ବର୍ତମାନ ଯାଜପୁର ଜିଲ୍ଲାର ଜାରକା ନିକଟବର୍ତୀ ତାରାପୁର ପାହାଡରେ କେଶସ୍ତୂପ ନିର୍ମାଣ କରିଥିଲେ । ନିକଟରେ ସେହି କେଶସ୍ତୂପର ସନ୍ଧାନ ମିଳିଛି, ଯାହାକି ବିଶ୍ୱର ପ୍ରଥମ ବୌଦ୍ଧସ୍ତୂପ । ସେହି ସ୍ତୂପରୁ ତିନିଗୋଟି ବ୍ରାହ୍ମୀଲିପି ଖୋଦିତ ଅଭିଲେଖ ଓ ସ୍ତୂପ ନିକଟରୁ ଦୁଇଗୋଟି ବ୍ରାହ୍ମୀଲିପି ଖୋଦିତ ମୃତ୍‌ପାତ୍ର ମିଳିଅଛି

୧. ଭେଖୁତପସୁ ଦାନମ୍

୨. କେସ ଥୁପ

୩. କଲିଙ୍ଗ ରାଜ

୪. ବୁଦ୍ଧ

୫. କେସଥୁପ

ତପସୁ ଓ ଭଲ୍ଲିକ ବୁଦ୍ଧଦେବଙ୍କର ସମସାମୟିକ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ବ୍ୟକ୍ତି ହୋଇଥିବାରୁ ନିଃସନ୍ଦେହରେ କୁହାଯାଇପାରେ ଯେ ଏଗୁଡିକ ଷଷ୍ଠ ଶତାବ୍ଦୀର ବ୍ରାହ୍ମୀଲିପି । (୧) ଏହି ବ୍ରାହ୍ମୀଲିପି ଖୋଦିତ ଅଭିଲେଖ ହେଉଛି ଭାରତର ସର୍ବପ୍ରାଚୀନ ଅଭିଲେଖ, ଯହିଁରୁ ଓଡିଆ ଲିପିର ଜନ୍ମ ସୂଚନା ଉପଲବ୍ଧ ହୋଇଥାଏ । ସେହି ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ଓଡିଆ ଲିପି ସ୍ତରସ୍ତର ହୋଇ ବିକାଶ ଲାଭ କରିଅଛି । ଗବେଷକଗଣ ଓଡିଆ ଲିପି ବିକାଶଧାରାକୁ ଛଅଗୋଟି ଐତିହାସିକ କାଳାନୁକ୍ରମରେ ବିଭକ୍ତ କରିଅଛନ୍ତି । (୨) ସେହି କାଳାନୁକ୍ରମ ହେଉଛି ବ୍ରାହ୍ମୀଲିପି, ଗୁପ୍ତଲିପି, ସୂକ୍ଷ୍ମକୋଣ ଲିପି, ମାଗଧୀ ଲିପି ବା ପ୍ରନ୍ ଓଡିଆ ଲିପି, ପ୍ରାଚୀନ ଓଡିଆ ଲିପି ଓ ଆଧୁନିକ ଓଡିଆ ଲିପି । କିନ୍ତୁ ପ୍ରଫେସର ଖଗେଶ୍ୱର ମହାପାତ୍ର ଙ୍କ ମତରେ ଓଡିଆ ଲିପି ସାତଗୋଟି ସ୍ତରରେ ବିକଶିତ ହୋଇ ପ୍ରାଚୀନ ଓଡିଆ ଲିପି ଓ ପରେ ଆଧୁନିକ ଓଡିଆ ଲିପିର ରୂପ ଗ୍ରହଣ କରିଛି । (୩) ପ୍ରାଚୀନ ଓ ଆଧୁନିକ ଓଡିଆ ଲିପିର ପୂର୍ବବର୍ତୀ ସାତଗୋଟି ସ୍ତର ହେଉଛି ବ୍ରାହ୍ମୀଲିପି, କୁଶାଣ ଲିପି, ଗୁପ୍ତଲିପି, ପେଟିକା ଶିର ବା କୁଟିଳ ଲିପି, ଦକ୍ଷିଣ ନଗରୀ, ଗ୍ରନ୍ଥ / ତାମିଳ ଓ ନାଗରୀ ଲିପି । ପ୍ରଫେସର ମହାପାତ୍ର ଙ୍କ ମତରେ ବ୍ରାହ୍ମୀଲିପିରୁ କୁଶାଣ, ଗୁପ୍ତ, କୁଟିଳ ଓ ପ୍ରୋଟୋ ବଙ୍ଗଳା ଲିପି ମଧ୍ୟଦେଇ ତାମିଲ୍ ଗ୍ରନ୍ଥ ଲିପି ଓ ନାଗରୀ ଲିପି ପ୍ରଭାବରେ ଓଡିଆ ଲିପିର ସୃଷ୍ଟି ଓ ବିକାଶ ଘଟିଛି । (୪) ସେ ମଧ୍ୟ ସୂଚନା ଦେଇଛନ୍ତି ଯେ, ଓଡିଆ ଲିପି ତାମିଲ୍, ତେଲୁଗୁ, ବଙ୍ଗଳା ବା ନାଗରୀ କୌଣସି ଗୋଟିଏ ଲିପିରୁ ସୃଷ୍ଟି ହୋଇନାହିଁ ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ତାରାପୁର କେଶସ୍ତୂପ ବ୍ରାହ୍ମୀଲିପି ପରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଅଶୋକ ଙ୍କ ସମୟର ବ୍ରାହ୍ମୀଲିପି, ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଖାରବେଳ କାଳୀନ ବ୍ରାହ୍ମୀଲିପି, ଖ୍ରୀଷ୍ଟାବ୍ଦ ତୃତୀୟର କୁଶାଣ ବ୍ରାହ୍ମୀଲିପି, ଖ୍ରୀଷ୍ଟାବ୍ଦ ସପ୍ତମ, ଅଷ୍ଟମ ଓ ନବମ ଶତାବ୍ଦୀର ପେଟିକାଶିର ବା ଶରଭ ପୁରୀୟ ଲିପି ଓଡିଶାରେ ପରିଦୃଷ୍ଟ ହୋଇଥାଏ । ବିକଶିତ ଧାରାରେ ଓଡିଆ ଲିପିର ମୂଳ ବ୍ରାହ୍ମୀଲିପି ସହିତ ସଂଯୋଗ ରହିଲା ନାହିଁ । ଓଡିଶାର ସିଦ୍ଧାଚାର୍ଯ୍ୟ ବୃନ୍ଦ ସପ୍ତମ, ଅଷ୍ଟମ ଓ ନବମ ଶତାବ୍ଦୀରେ ପରିବର୍ତିତ ଲିପିରେ ଚର୍ଯ୍ୟାଗୀତି ରଚନା କରିଥିଲେ । ଚର୍ଯ୍ୟାଗୀତି ବା ଦୋହାକୋଷ ଲିପିରେ ଆଧୁନିକ ଓଡିଆ ଅକ୍ଷର ର ଏ, ଗ, ଘ, ଚ, ଛ, ଜ, ଢ, ନ, ପ, ଲ ଏବଂ ୬, ୭, ୮ ଓ ୯ ପ୍ରଭୃତି ସଂଖ୍ୟା ପରିଦୃଷ୍ଟ ହୋଇଥାଏ । ଏହି ଲିପି ଆଧୁନିକ ଓଡିଆ ଅକ୍ଷର ର ନିକଟତର ଲିପି, ଯାହାକୁ ପ୍ରଫେସର ଖଗେଶ୍ୱର ମହାପାତ୍ର ଅନୁଧ୍ୟାନ ପୂର୍ବକ ବ୍ୟକ୍ତ କରିଛନ୍ତି ଯେ, ସପ୍ତମ ଶତାବ୍ଦୀରେ ଓଡିଶାରେ ଏକ ସ୍ୱତନ୍ତ୍ର ଲିପିର ପ୍ରଚଳନ ଘଟିଥିଲା । ଭୌମକର ରାଜା ଶୁଭାକର ଦେବ ଏହି ଲିପିରେ ବୌଦ୍ଧଗ୍ରନ୍ଥ "ଗଣ୍ଡବ୍ୟୂହ" ଲେଖି ଅଷ୍ଟମ ଶତାବ୍ଦୀରେ ଚୀନ୍ ସମ୍ରାଟ ଟେସିଙ୍ଗ ଙ୍କ ନିକଟକୁ ବୌଦ୍ଧ ଭିକ୍ଷୁ

ପ୍ରଜ୍ଞାଙ୍କ ହସ୍ତରେ ପଠାଇଥିଲେ । ଭୌମ ରାଜତ୍ୱକାଳୀନ ନେଉଳପୁର, ବାଣପୁର, ଅନୁଗୁଳ, ପାଟଲିଙ୍ଗା, ତାମ୍ର ଶାସନ, ତୁଙ୍ଗ ବଂଶର ତାଳଚେର ଓ ବଲଣ୍ଡା ତାମ୍ର ଶାସନ, ବୌଦ ଭଞ୍ଜ ରାଜାଙ୍କ ତାମ୍ର ଶାସନ ଏବଂ କୋଦାଳକର ଶୁଳ୍କୀମାନଙ୍କ ତାମ୍ର ଶାସନ ଏହି ଲିପିରେ ଉଲ୍ଲିଖିତ । (୫) ଏହି ଲିପି ଓଡିଶା ସିମେ ଭାରତର ପୂର୍ବାଂଚଳ ଓ ଉତର ପୂର୍ବାଚଂଳରେ ସେହି ସମୟରେ ବିଶେଷ ଆଦୃତି ଲାଭ କରିଥିଲା । କାରଣ ସିଦ୍ଧାଚାର୍ଯ୍ୟମାନଙ୍କର ଚାରଣ ଭୂମି ଥିଲା ଭାରତର ପୂର୍ବାଚଂଳ ଓ ଉତର ପୂର୍ବାଚଂଳ । ସେମାନେ ଓଡିଶାରେ ସୃଷ୍ଟ ହୋଇଥିବା ଏଡି ଲିପିକୁ ଉର୍ବାଚଂଳ ଓ ଉତର ପୂର୍ବାଚଂଳରେ ପ୍ରସାର ଘଟାଇଥିଲେ । ଏହି କାରଣ ଦୃଷ୍ଟେ ପ୍ରଫେସର ଖଗେଶ୍ୱର ମହାପାତ୍ର ଏହି ଲିପିକୁ ଓଡିଶାରୁ ଜନ୍ମ ନେଇଥିବା ସ୍ୱତନ୍ତ୍ର ଲିପି ସ୍ୱରୂପରେ ବ୍ୟକ୍ତ କରିଛନ୍ତି । ପ୍ରଫେସର ମହାପାତ୍ର ଏହି ଲିପିରେ ଲିଖିତ ତିବ୍ବତୀୟ ପୋଥି ବିଶ୍ୱଭାରତୀର ତିବ୍ବତ ଭାଷା ବିଭାଗରୁ ପାଇବା ପରେ ନିଜର ଅନୁମାନକୁ ମତ ଭାବରେ ବ୍ୟକ୍ତ କରିଛନ୍ତି ।

ପ୍ରଫେସର ମହାପାତ୍ର ଓଡିଆ ଲିପିର ଏହି ଗୁରୁତ୍ୱପୂର୍ଣ୍ଣ ବିକାଶ ସମ୍ପର୍କରେ ପ୍ରଥମେ ବିଶ୍ୱ ସମୁଦାୟ ନିକଟରେ ଉପସ୍ଥାପନ କରିଥିଲେ । ୧୯୭୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ କାଲଫର୍ଣ୍ଣିୟା ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ସାନ୍‌ଡିଆଗୋ ଠାରେ ଅନୁଷ୍ଠିତ ଆନ୍ତର୍ଜାତୀୟ ଚୀନ୍-ତିବ୍ବତୀୟ ଷଷ୍ଠ ଭାଷା ସମ୍ମିଳନୀରେ ପ୍ରଫେସର ମହାପାତ୍ର ସ୍ୱକୀୟ ବକ୍ତବ୍ୟରେ ଏହି ତଥ୍ୟ ପରିବେଷଣ କରିବା ପରେ ଆଲୋଡନ ସୃଷ୍ଟି ହୋଇଥିଲା । ତାଙ୍କର ମତ ହେଉଛି ତିବ୍ବତରେ ଓ୍ୱାର୍ତୁ ନାମକ ଯେଉଁ ଲିପି ପ୍ରଚଳନ ହୋଇଥିଲା ତାହା ଓଡିଆ ଲିପିର ସୌସାଦୃଶ । କେତେକଙ୍କର ଧାରଣା ତିବ୍ବତ ଭାଷାର ଲିପି ସୃଷ୍ଟି ନିମିତ ଥନ୍-ମି ସମ୍ଭୋଟଙ୍କ ସମେତ ଷୋହଳ ଜଣ ଆଦର୍ଶ ଲିପି ଶିକ୍ଷା କରିବା ନିମିତ କାଶ୍ମୀର ଆସିଥିଲେ । ଏହାକୁ ଖଣ୍ଡନ ପୂର୍ବକ ପ୍ରଫେସର ମହାପାତ୍ର ବକ୍ତବ୍ୟ ପ୍ରଦାନ କରିଥିଲେ ଯେ, ସେହି ସମୟରେ କାଶ୍ମୀରା ବୌଦ୍ଧଧର୍ମ ପ୍ଲାବିତ ଥିଲେ ହେଁ ସମ୍ଭୋଟଙ୍କ ତିବ୍ବତୀ ଲିପି ନିର୍ମାଣ ସହିତ ସମ୍ବନ୍ଧାନ୍ୱିତ କୌଣସି ଐତିହାସିକ ବା ଲିପିତାତ୍ୱିକ ପ୍ରମାଣ ମିଳିନାହିଁ; ଅଥବା କାଶ୍ମୀରୀ ଅଚଂଳର ଲିପି ସହିତ ତିବ୍ବତୀ ବର୍ଣ୍ଣମାଳାର କିଛି ଆକୃତିଗତ ସୌସାଦୃଶ୍ୟ ନାହିଁ । ଅଧିକନ୍ତୁ, ତିବ୍ବତୀୟ "ଓ୍ୱାର୍ତୁ" ଲିପିର ଆକୃତିଗତ ସୌସାଦୃଶ୍ୟ ସପ୍ତମ-ଅଷ୍ଟମ ଶତାବ୍ଦୀର ଓଡିଆ ଲିପି ସହିତ ରହିଛି । ପ୍ରଫେସର ମହାପାତ୍ର ତିବ୍ବତୀୟ "ଓ୍ୱାର୍ତୁ" ଶବ୍ଦର ଦୁଇଟି ସୂତ୍ର ଅନୁମାନ କରିଥିଲେ । ପ୍ରଥମରେ ଏହା ଗୋଟିଏ ସ୍ଥାନର ନାମରୁ ଉତ୍ପନ୍ନ ହୋଇ ପାରିଥାଏ ଏବଂ ଏହି ପ୍ରସଙ୍ଗରେ ଓଡିଶାର ଚୈନିକ ନାମ "wu-tu" ବା "wu-ta" ବିଚାରଣୀୟ । ଦ୍ୱିତୀୟରେ ଏହା ଗୋଟିଏ ବର୍ଣ୍ଣନାତ୍ମକ ନାମ, ଯଥା- ବର୍ତୁଳ ଶବ୍ଦରୁ ଆସି ଥାଇପାରେ । ଏହି ପ୍ରକାର ଅନୁମାନର ଅବଲମ୍ବନ ଉଭୟ ଐତିହାସିକ ଓ ଲିପିତାତ୍ୱିକ ପ୍ରମାଣ ଓଡିଶାରେ ଦୁଷ୍ପ୍ରାପ୍ୟ ନୁହେଁ ବୋଲି ପ୍ରଫେସର ମହାପାତ୍ର ପ୍ରକାଶ କରିଥିଲେ । (୬)

ଇତିହାସ ଦୃଷ୍ଟିକୋଣରୁ ସପ୍ତମ ଶତାବ୍ଦୀ ବେଳକୁ ତିବ୍ବତ ଓ ଓଡିଶା ମଧ୍ୟରେ ସାଂସ୍କୃତିକ ସମ୍ପର୍କ ପ୍ରତିଷ୍ଠିତ ହୋଇ ସାରିଥିଲା । ସେହି ସମୟରେ ଓଡିଶା ବା ଉଡୀୟାନ୍ ପ୍ରଧାନ ତାନ୍ତ୍ରୀକ ପୀଠ ରୂପେ ସୁପରିଚିତ ଥିଲା । ଓଡିଶାର ପଦ୍ମସମ୍ଭବ ନେପାଳ, ଭୁଟାନ ଓ ତିବ୍ବତରେ ଦ୍ୱିତୀୟ ବୁଦ୍ଧରୂପେ ପୂଜା ପାଉଥିଲେ ତଥା ଅନ୍ୟାନ୍ୟ ଓଡିଆ ସିଦ୍ଧାଚାର୍ଯ୍ୟ ତିବ୍ବତ ଯାଇଥିଲେ । ରତ୍ନଗିରି ବିଶ୍ୱବିଦ୍ୟାଳୟର ବିଦ୍ୟାର୍ଥୀ ପ୍ରଜ୍ଞା ଓଡିଶା ରାଜାଙ୍କ ସାଂସ୍କୃତିକ ରାଷ୍ଟ୍ରଦୂତ ଭାବରେ ଓଡିଆ ଲିପି ସମ୍ବଳିତ "ଗଣ୍ଡବ୍ୟୂହ" ପୋଥିନେଇ ୭୯୫ ଖ୍ରୀଷ୍ଟାବ୍ଦରେ ଚୀନ୍ ସମ୍ରାଟଙ୍କ ନିକଟକୁ ଯାତ୍ରା କରିଥିଲେ । "ପାଗସମ ଜୋନ ଜାଙ" ଅନୁସାରେ ବହୁ ବୌଦ୍ଧ ସନ୍ନ୍ୟାସୀ ଜଗଦଳପୁର ବିହାରରେ ଉତର ଭାରତରୁ ଅତ୍ୟାଚାରିତ ହୋଇ ରହୁଥିଲେ ଓ ଦନ୍ତ ପୁରୀର ଅଧକ୍ଷ ଶାକ୍ୟଭଦ୍ର ତିବ୍ବତକୁ ପଳାୟନ ପୂର୍ବରୁ କିଛିକାଳ ଜଗଦଳପୁର ବିହାରରେ ଆତ୍ମଗୋପନ କରିଥିଲେ । ସେହି ସମୟରେ ଓଡିଶାର ବିହାର ଓ ଶିକ୍ଷାନୁଷ୍ଠାନ ମାନଙ୍କରେ ବହୁ ତିବ୍ବତୀୟ ଶିକ୍ଷାର୍ଥୀ ଅବସ୍ଥାନ କରି ସଂସ୍କୃତ ଗ୍ରନ୍ଥ ସମୂହକୁ ତିବ୍ବତୀ ଭାଷାରେ ଅନୁବାଦ କରିଥିଲେ । ଏ ସମ୍ପର୍କରେ ପ୍ରଫେସର ମହାପାତ୍ର ଡକ୍ଟର ନବୀନ କୁମାର ସାହୁଙ୍କ ଗ୍ରନ୍ଥାଲେଖ୍ୟର ଉଦ୍ଧୃତି ପ୍ରଦାନ ପୂର୍ବକ ପ୍ରକାଶ କରିଥିଲେ ଯେ, ସେହି ସମୟରେ ତିବ୍ବତୀ ଭାଷାର ସମୃଦ୍ଧ ଲିଖନ ପଦ୍ଧତି ପ୍ରଚଳନ ହୋଇନଥିଲା ଏବଂ ଓଡିଶା ଅଚଂଳର ଲିପି ତିବ୍ବତୀୟ ବିଦ୍ୟାର୍ଥୀଙ୍କ ଦ୍ୱାରା ଅନୁସୃତ ହୋଇଥିଲା ତଥା ସେହି ଓଡିଆ ଲିପିମାଳାକୁ ତିବ୍ବତୀୟମାନେ ଆକୃତିଗତ ବର୍ତୁଳତା ହେତୁ କିମ୍ବା "wu-tu" ଅଚଂଳରେ ପ୍ରଚଳିତ ଥିବାହେତୁ "ଓ୍ୱାର୍ତୁ" ନାମରେ ଅଭିହିତ କରିଥିଲେ । (୭) ନିଜ ବକ୍ତବ୍ୟର ସତ୍ୟତା ପ୍ରତିପାଦନ କରିବା ନିମିତ ପ୍ରଫେସର ମହାପାତ୍ର ବିଶ୍ୱଭାରତୀ ତିବ୍ବତୀ ଭାଷା ବିଭାଗର ଗୋଟିଏ ପୋଥି ଦର୍ଶାଇଥିଲେ, ଯହିଁରେ ଓଡିଆ ଅକ୍ଷର ଓ ତିବ୍ବତୀ ଅକ୍ଷରମାନଙ୍କ ମଧ୍ୟରେ ସାଦୃଶ୍ୟ ରହିଥିଲା । ଏହି ପୋଥିଟିର ରଚନାକାଳ ଷୋଡଶ / ସପ୍ତଦଶ ଶତାବ୍ଦୀ । ପୋଥିର ପୁଷ୍ପିକାରେ ଲିପିବଦ୍ଧ ଥିଲା ଯେ "ଶ୍ରେଷ୍ଠ ବ୍ରାହ୍ମୀଲିପି ଏବଂ ତିବ୍ବତୀ ଓ ଏହାର ମଙ୍ଗୋଲୀୟ ଚିତ୍ରଲିପି ସମୂହ ଅବିମିଶ୍ର ଭାବେ ପୃଥକ୍ ପୃଥକ୍ ଦେଖାଇବା ପାଇଁ ଅଳଙ୍କରଣରେ ପ୍ରୟୋଜନୀୟ ସଂକ୍ଷେପଣ କରାଗଲା । ଏହା ଅଦ୍ଭୁତପୂର୍ବ ଶ୍ରେଷ୍ଠ ଧର୍ମରାଜ 'ଶେଙ୍ଗ୍ଟୂ' ବଂଶର ଷୋଡଶ କୁଳପୁତ୍ର ଥୋବେଚନ ଓଆଙ୍କ ବିଶେଷ ନିର୍ଦ୍ଦେଶରେ ଚୂଡାନ୍ତ ଭାବେ ସନ୍ନିବେଶିତ କରାଗଲା । ଅବତାର-କ୍ରମ ଅନୁସାରେ ବାକ୍ୟେନ୍ଦ୍ର ସୁମତି ଦିନଶାସନଙ୍କ ଇଚ୍ଛାନୁସାରେ ଓ ତାଙ୍କ କୃତ ସଂସ୍କାର ଅନୁସାରେ, ଧର୍ମ ପ୍ରଚାର ନିମନ୍ତେ ଯଥା ନିୟମରେ ଓ୍ୱାର୍ତୁଲିପି ସମ୍ପାଦିତ ହେଲା ।" ବାକ୍ୟେନ୍ଦ୍ର ସୁମତି ହେଉଛନ୍ତି ପଚଂମ ଦଲାଇଲାମା ଏବଂ ତାଙ୍କ ସମୟ ହେଉଛି ୧୬୧୭ ଠାରୁ ୧୬୮୨ ତଥା ଶେଙ୍ଗ୍ଟୁ ବଂଶର ରାଜତ୍ୱ କାଳ ୧୬୬୨-୧୭୧୨ । (୮)

ଏହି ପ୍ରସଙ୍ଗରେ ଭାଷା ତତ୍ତ୍ୱବିତ୍ ପ୍ରଫେସର ଖଗେଶ୍ୱର ମହାପାତ୍ର ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସ୍ୱରଚିତ "ଓଡିଆ ଭାଷା ଓ ଲିପି" ପୁସ୍ତକରେ ପରିବେଷଣ କରିଛନ୍ତି । ତାଙ୍କର ମତ ହେଉଛି, ତିବ୍ବତୀୟ ଧର୍ମଶାସ୍ତ୍ରରେ ବ୍ୟବହୃତ "ଓ୍ୱାର୍ତୁ" ଲିପି ଗୋଟିଏ ଭାରତୀୟ ଲିପି । ଏହି ଲିପିର ଓଡିଆ ଲିପି ସହିତ ସାମଞ୍ଜସ୍ୟ ଥିବାରୁ ଏହା ଓଡିଆ ଲିପିର ରୂପାନ୍ତର ବୋଲି ଧାରଣାହୁଏ । (୯) ତାଙ୍କ ସୂଚନା ଅନୁସାରେ ତିବ୍ବତରେ ଖ୍ରୀ. ୬୨୭ ଠାରୁ ଖ୍ରୀ. ୬୯୮ ମଧ୍ୟରେ ସ୍ରଙ୍-ସାଙ୍-ଗାମ୍ପୋ ଶାସନ କରୁଥିଲେ । ସେ ନିଜର ମନ୍ତ୍ରୀ ଥନ୍-ମି ସମ୍ଭୋଟଙ୍କ ସହିତ

ଷୋହଳ ଜଣ ବ୍ୟକ୍ତିଙ୍କୁ ଲିପିଶିକ୍ଷା କରିବାକୁ ଭାରତ ପଠାଇଥିଲେ । ସେମାନେ ପଣ୍ଡିତ ଦେବବିଦ ସିଂହ ନାମକ ଜଣେ ଭାରତୀୟ ବ୍ରାହ୍ମଣଙ୍କ ଠାରୁ ଚଉଷଠି ପ୍ରକାର ଲିପିଶିକ୍ଷା କଲେ । ଏହାପରେ ସ୍ୱଦେଶକୁ ଫେରିଯାଇ ସେମାନେ ନିଜ ଭାଷାର ଧ୍ୱନିତାତ୍ତ୍ୱିକ ଆବଶ୍ୟକତା ଅନୁଯାୟୀ ତିବ୍ବତୀୟ ବର୍ଣ୍ଣମାଳା ଉଦ୍ଭାବନ କଲେ । ସେହି ତିବ୍ବତୀୟ ବର୍ଣ୍ଣମାଳା decorative ଓ cursive ଦୁଇ ପ୍ରକାରର, ଯାହାକୁ ଉ'ମେ ଓ ଉ'ଚା ବା ଗୋ'ଚା କୁହାଗଲା । ଉ'ମେ ହେଉଛି ଛଟା ଅକ୍ଷର ଓ ଉ'ଚା ଲିପି ନାଗରୀ ଅକ୍ଷର ସଦୃଶ ଶୀର୍ଷ ମାତ୍ରାଯୁକ୍ତ । ସମ୍ରୋଟ "ଲାସା" ଲିପି ଅନୁକରଣରେ ଉ'ଚା ଓ ଓ୍ୱାର୍ତୁ ଲିପି ଅନୁକରଣରେ ଉ'ମେ ଲିପି ଉଦ୍ଭାବନ କରିଥିଲେ । "ଓ୍ୱାର୍ତୁ" ଲିପିର ବର୍ଣ୍ଣନା ସମ୍ବଳିତ ଯେଉଁ ତିବ୍ବତୀୟ ପୋଥି ବିଶ୍ୱଭାରତୀର ତିବ୍ବତୀ ବିଭାଗରେ ସଂରକ୍ଷିତ ତାହା ଅନୁଧାନ କଲେ ଓ୍ୱାର୍ତୁ ଓ ଓଡିଆ ଲିପି ମଧ୍ୟରେ ଯୋଗସୂତ୍ର ରହିଥିବାର ହୃଦବୋଧ ହୁଏ । ସେହି ପୋଥିଟିରେ "ଓ୍ୱାର୍ତୁ" ଲିପିର ୧୬ଟି ସ୍ୱରବର୍ଣ୍ଣ ଯଥା- ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ୡ, ଏ, ଐ, ଓ, ଔ, ଅଂ ଏବଂ ଅଃ ତଥା ୩୪ଟି ବ୍ୟଞ୍ଜନ ବର୍ଣ୍ଣ ଯଥା- କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଯ, ର, ଲ, ବ, ଶ, ଷ, ସ, ହ, କ୍ଷ ରେ ସ୍ୱର ସଂଯୋଗ ଯଥା- କା, କି ଇତ୍ୟାଦି, ବ୍ୟଞ୍ଜନର ନିମ୍ନନ୍ୟାସ ଯଥା- କ୍ର, କ୍ଲ ଇତ୍ୟାଦି, ତଳଉପର ନ୍ୟସ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ ଯଥା- ଗ୍ ଗ, ଢ୍ ଢ ଇତ୍ୟାଦି, ସଂଯୁକ୍ତ ଅନୁନାସିକ ବ୍ୟଞ୍ଜନ ବର୍ଣ୍ଣ ଯଥା- ଙ୍କ, ଙ୍ଖ ଇତ୍ୟାଦି ଏବଂ ଅନ୍ୟ କେତେକ ବିଶେଷ ଅକ୍ଷର ର ନମୁନା ଦିଆଯାଇଛି । ତନ୍ମଧ୍ୟରୁ ଇ, ଈ, ଏ ଓ କ, ଖ, ଗ, ଙ, ଚ, ଜ, ଟ, ଠ, ଡ, ଢ, ତ, ଥ, ଦ, ଧ, ନ, ପ, ଫ, ବ, ମ, ଯ, ଲ, ବ, ଶ, ଷ, ସ ଅକ୍ଷରଗୁଡିକ ଅବିକଳ ଓଡିଆ ଅକ୍ଷର ସଦୃଶ । ଅ, ଆ ପୋଥିରେ ମିଳୁଥିବା ପ୍ରାଚୀନ ଓଡିଆ ଅକ୍ଷର ସଦୃଶ ଉ, ଊ ତ୍ରୟୋଦଶ-ଚତୁର୍ଦ୍ଦଶ ଶତାବ୍ଦୀର ଅଭିଲେଖର ଅକ୍ଷର ସଦୃଶ, ଐ, ଔ ରେ କେବଳ ଉପର ମାତ୍ରାଟି ଅଛି, "ଘ" ରେ ବଙ୍ଗଳାପରି ପୁଡା ନିମ୍ନରେ ନଥାଇ ପାର୍ଶ୍ୱରେ ଅଛି, "ଛ" ଛନ୍ଦ ଉପରେ ମୁଣ୍ଡଳିଥିବାରୁ "ଜ" ପରି "ଞ" ବଙ୍ଗଳାପରି "ହ" ରନିମ୍ନସ୍ଥ ଚିହ୍ନଟି ଅସ୍ୱଷ୍ଟ ଏବଂ "କ୍ଷ" ପ୍ରାଚୀନ ଅଭିଲେଖ ଅକ୍ଷରପରି, କେବଳ ଉ, ର, ଝ, ଭ, ର ମାତ୍ର ବଙ୍ଗଳାପରି, ଏ, ଐ, ଓ, ଔ କ୍ଷେତ୍ରରେ କେବଳ ଉର୍ଦ୍ଧ୍ୱ ମାତ୍ରାର ପ୍ରୟୋଗହୁଏ ଅନୁସ୍ୱାର ବିସର୍ଗର ଚିହ୍ନ ଓଡିଆପରି । ତିବ୍ବତୀୟ ପୋଥି ଅନୁଧାନ ପରେ ଓ୍ୱାର୍ତୁ ସହିତ ଓଡିଆ ଲିପିର ସମ୍ପର୍କ ନିର୍ଦ୍ଧାରଣ ନିମିତ ପ୍ରଫେସର ମହାପାତ୍ର ଚାରିଗୋଟି ସମ୍ଭାବନା କରିଛନ୍ତି ।

୧. ତିବ୍ବତୀୟମାନେ ଲିପି ଶିକ୍ଷା କରିବାକୁ ସପ୍ତମ ଶତାବ୍ଦୀରେ ଓଡିଶା ଆସିଥିଲେ । ସେତେବେଳକୁ ଓଡିଆ ଲିପି ଜନ୍ମ ନେଇନଥିଲା ବୋଲି ତତ୍ତ୍ୱବିଦ୍‌ଙ୍କ ଧାରଣା । ସେ ସମୟରେ ଓଡିଶାରେ ଯେଉଁ କୁଟିଳ ଲିପି ପ୍ରଚଳିତ ଥିଲା ତାହା ସହିତ ତିବ୍ବତୀୟ ପୋଥିରେ ଥିବା ଅକ୍ଷର ର ନମୁନା ମିଶେନାହିଁ । ତା'ହେଲେ କ'ଣ ଅନୁମାନ କରାଯାଇପାରେ, ଖୋଦିତ ଅଭିଲେଖରେ ଲିପିର ଦୃଷ୍ଟାନ୍ତ ମିଳୁନଥିଲେ ହେଁ ସପ୍ତମ ଶତାବ୍ଦୀ ସୁଦ୍ଧା ଓଡିଆ ଲିପିର ସ୍ୱତନ୍ତ୍ର ରୂପ ହସ୍ତାକ୍ଷରରେ ବିକଶିତ ହୋଇଥିଲା ?

୨. ପୋଥିଟିର ରଚନାକାଳ ପୁଷ୍ପିକାର ସୂଚନା ଆଧାରରେ ନିର୍ଦ୍ଧାରଣ ହୋଇନଥିଲେ ହେଁ, ଲେଖକ ଶୁଦ୍ଧଶାସ୍ତ୍ରର ପ୍ରମାଣ ଅନୁସାରେ ବିବରଣୀ ପ୍ରସ୍ତୁତ କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି । ଯଦି ଧରି ନିଆଯାଏ, ଲେଖକ ଅର୍ବାଚୀନକାଳୀନ ଲିପିର ଦୃଷ୍ଟାନ୍ତ ଦେଇ ପାରିଥାନ୍ତି, ତଥାପି କ'ଣ ବିଶ୍ୱାସ କରାଯାଇପାରେ ଯେ, ତିବ୍ବତୀୟ ପରମ୍ପରାରେ ଭାରତର ଯେଉଁ ବିଶେଷ ଲିପି ଓ୍ୱାର୍ତୁ ରୂପେ ସ୍ୱୀକୃତ ହୋଇଥିଲା, ଏହା ସେହି ଲିପିର ଅର୍ବାଚୀନ ରୂପ ? (ଅନ୍ୟ ପୋଥିରେ ମଧ୍ୟ ଓ୍ୱାର୍ତୁ ଲିପିର ନମୁନା ମିଳେ)

୩. ବ୍ୟୁହ୍ଲର ଙ୍କ ପ୍ରତିପାଦିତ "ପ୍ରନ୍‌ବଙ୍ଗଳା" ଲିପି ସହିତ ଓ୍ୱାର୍ତୁ ଲିପିର ଯେପରି ସାଦୃଶ୍ୟ ପରିଲକ୍ଷିତ ହୁଏ, ତାହାରି ଭିତିରେ କ'ଣ ଅନୁମାନ କରାଯାଇପାରେନା, ପ୍ରନ୍‌ବଙ୍ଗଳା ଲିପିର ବିକାଶ ଏକାଦଶ ଶତାବ୍ଦୀର ଚାରିଶହ ବର୍ଷ ପୂର୍ବରୁ ସୂତ୍ରପାତ ହୋଇଥିଲା ଏବଂ ପ୍ରନ୍‌ବଙ୍ଗଳା ଲିପି ସହିତ ଆଧୁନିକ ବଙ୍ଗଳା ଲିପିଠାରୁ ଓଡିଆ ଲିପିର ସମ୍ପର୍କ ଘନିଷ୍ଠ ?

୪. ଓଡ୍ଡିୟାନ ପୀଠ ଓଡିଶା ସହିତ ତିବ୍ବତର ଯେପରି ଧାର୍ମିକ ସ୍ତରରେ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା ଏବଂ ଉତ୍କଳୀୟ ଧର୍ମ ଗୁରୁମାନେ ତିବ୍ବତୀୟ ଧର୍ମ ଇତିହାସରେ ଯେପରି ମହତ୍ତ୍ୱପୂର୍ଣ୍ଣ ନେତୃତ୍ୱ ଗ୍ରହଣ କରିଥିଲେ, ସେହି ସୂତ୍ରରେ କ'ଣ ଅନୁମାନ କରାଯାଇପାରେ ନା ଯେ, ତିବ୍ବତରେ ପ୍ରନ୍‌ଓଡିଆ ଲିପିର ପ୍ରସାର ଘଟିଥିଲା ଏବଂ ସମ୍ଭବତଃ ତାହା ହିଁ ଥିଲା ତିବ୍ବତୀୟ ମନ୍ତ୍ରୀ ସମ୍ଭୋଟଙ୍କର ଏକ ଆଦର୍ଶ ଲିପି ? (୧୦)

ଲିପିତାତ୍ତ୍ୱିକ ଅଧ୍ୟୟନରୁ ନିମ୍ନୋକ୍ତ ସିଦ୍ଧାନ୍ତମାନ ଗ୍ରହଣ କରାଯାଇପାରେ ।

(କ) କାଫିର ସ୍ଥାନର ଭାଷା କିମ୍ବା କାଶ୍ମୀରୀ ଲିପିଠାରୁ ଓଡିଆ ଲିପି ସହିତ ଓ୍ୱାର୍ତୁ ଲିପିର ସମ୍ବନ୍ଧ ନିକଟତମ ଓ ସମ୍ଭାବ୍ୟ ।

(ଖ) ଶଂସିତ ତିବ୍ବତୀ ପୋଥିର ଲେଖକ କୌଣସି କ୍ରମେ ଆଧୁନିକ ଓଡିଆ ଲିପିର ଦୃଷ୍ଟାନ୍ତ ଦେଇଛନ୍ତି ବୋଲି ଧରିନେଲେ ମଧ୍ୟ ତିବ୍ବତୀୟ ପରମ୍ପରାରେ ଓଡିଆ ଲିପି ଓ୍ୱାର୍ତୁ ନାମରେ ପରିଚିତ ଥିଲା ବୋଲି କୁହାଯାଇପାରେ ।

(ଗ) ଓଡ୍‌ଡିୟାନ୍ ପୀଠ ଓଡିଶା ସହିତ ତିବ୍ବତର ଘନିଷ୍ଠ ସାଂସ୍କୃତିକ ସମ୍ପର୍କ ଥିବା ଦୃଷ୍ଟିରୁ ଏବଂ ଓଡିଶାର ଧର୍ମ ଗରୁମାନେ ତିବ୍ବତୀୟ ଧର୍ମ ପରମ୍ପରାରେ ମହତ୍ୱ ଲାଭ କରିଥିବାରୁ, ପ୍ରାଚୀନ କାଳରେ ଓଡିଶାର ଲିପି ତିବ୍ବତରେ ପ୍ରସାର ଲାଭ କରିଥିଲା ଏବଂ ସମ୍ଭୋଟଙ୍କ ଆଦର୍ଶ ଲିପିର ସ୍ୱରୂପ ଗ୍ରହଣ କରିଥିଲା । (୧୧)

ଲିପି ତତ୍ତ୍ୱବିତ୍ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ମଧ୍ୟ ମତ ପ୍ରଦାନ କରିଅଛନ୍ତି ଯେ, ଆଧୁନିକ ଓଡିଆ ବର୍ଣ୍ଣମାଳାର ଏ, କ, ଖ, ଗ, ଥ, ଧ, ମ, ଯ, ଜ, ଶ, ଷ, ହ ପ୍ରଭୃତି ଅକ୍ଷରମାନଙ୍କର ସଠିକ୍ ଆକୃତି ନବମ ଶତାବ୍ଦୀରେ ଗଠନ ହୋଇଥିଲା ଏବଂ ଆ, ଇ, ଐ, ଓ, ଔ ପ୍ରଭୃତି ସ୍ୱରବର୍ଣ୍ଣ ଆଧୁନିକ ଲିଖନଭଙ୍ଗୀର ରୂପନେଇ ଗଠିତହେଲା । (୧୨) ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ମତପୋଷଣ କରିଛନ୍ତି ଯେ ସପ୍ତମ-ଅଷ୍ଟମ ଓ ନବମ ଶତାବ୍ଦୀରେ ପ୍ରଚଳିତ ଲିପିରୁ ଓଡିଆ, ଆସାମୀୟା ଓ ମୈଥିଳୀ ଲିପି ବିବର୍ତିତ ହୋଇଛି । (୧୩) ଓଡିଶାର

ଦୁଇଜଣ ଲିପି ଓ ଭାଷା ବିଶାରଦଙ୍କ ମତ ଉପରେ ଅନୁଧ୍ୟାନ ଓ ଅନୁଶୀଳନ କଲେ ହୃଦ୍‌ବୋଧ ହୁଏ, ବ୍ରାହ୍ମୀଲିପିରୁ ଓଡିଆ ଲିପିର ବିବର୍ତ୍ତନ ଧାରାରେ ପ୍ରଥମେ ଓଡିଆ ଲିପି ବିକଶିତ ଅବସ୍ଥାରେ ପ୍ରନ୍ ଓଡିଆ ଲିପିର ସ୍ୱରୂପ ସପ୍ତମ ଶତାବ୍ଦୀରେ ଧାରଣ କରିଥିଲା, ଯହିଁରୁ ପୂର୍ବାଚଂଳ ଓ ତିବ୍ବତର ଲିପି ଜନ୍ମନେଇଛି । ସପ୍ତମ ଶତାବ୍ଦୀରେ ଏହି ଓଡିଆ ଲିପିକୁ ତିବ୍ବତୀୟମାନେ ଆଦର୍ଶ ଲିପି ଭାବରେ ଗ୍ରହଣ କରିଥିଲେ । ଏହି ଲିପିରେ ଓଡିଶାର ସିଦ୍ଧାଚାର୍ଯ୍ୟ ବୃନ୍ଦ ଆଧ୍ୟାତ୍ମିକ ବା ଧର୍ମୀୟ ସାହିତ୍ୟ ଲେଖିଥିବାରୁ ତିବ୍ବତର ଧର୍ମୀୟ ସାହିତ୍ୟ ସେହି ଲିପିରେ ଲେଖିବାକୁ ତିବ୍ବତବାସୀ ଶ୍ରେୟ ମଣିଥିଲେ ଏବଂ ଏହାର ନାମ ଓ୍ୱାର୍ତୁ ଲିପି ରଖିଥିଲେ । (୧୪) ପ୍ରଫେସର ଖଗେଶ୍ୱର ମହାପାତ୍ର ଓଡିଆ ଲିପି ବିକାଶର ଏହି ନବଦିଗନ୍ତଟିକୁ ୧୯୭୩ ଖ୍ରୀଷ୍ଟାବ୍ଦରୁ ଆନ୍ତର୍ଜାତୀୟ ଭାଷା ସମ୍ମିଳନୀରେ ଉପସ୍ଥାପନା କରିଥିଲେ ହେଁ ଅଦ୍ୟାବଧି ଏ ବିଷୟରେ ଅନୁଧ୍ୟାନ, ଅନୁଶୀଳନ ଓ ଉଚ୍ଚାଙ୍ଗ ଗବେଷଣା ହୋଇ ପାରିନାହିଁ ।

---

## ଓଡ଼ିଆ ସାହିତ୍ୟ ର ସାହିତ୍ୟକାର
## ପ୍ରଫେସର ବାଉରୀବନ୍ଧୁ କର

ଓଡ଼ିଆ ସାହିତ୍ୟ ର ବିଶିଷ୍ଟ ସମାଲୋଚକ ପ୍ରଫେସର ଡକ୍ଟର ବାଉରୀବନ୍ଧୁ କର । ୧୨ ସେପ୍ଟେମ୍ବର, ୧୯୫୧ ମସିହା ଯାଜପୁର ଜିଲ୍ଲା ଖଣ୍ଡିତରସ୍ଥ କବୀରପୁର ଠାରେ ଜନ୍ମଗ୍ରହଣ କରିଥିଲେ । ବାପା ଥିଲେ - ଅନାଥବନ୍ଧୁ ଓ ମା' ଥିଲେ - ସୁଭଦ୍ରାଦେବୀ ।

ପିଲାଟି ଦିନରୁ ବାଉରୀବନ୍ଧୁ ଥିଲେ - ଜଣେ ମେଧାବୀ ଛାତ୍ର । ସମୟକ୍ରମେ ହାଇସ୍କୁଲ ଶିକ୍ଷା ସମାପ୍ତକରି ଉଚ୍ଚଶିକ୍ଷା ଗ୍ରହଣ କରିଲେ । ସ୍ନାତକରେ ଓଡ଼ିଆ (ଅନର୍ସ) ସହିତ ସ୍ନାତକୋତର (ଏମ୍.ଏ.) ଓଡ଼ିଆରେ ସଫଳତାର ସହିତ ଉତୀର୍ଣ୍ଣ ହେଇଥିଲେ ।

ନିଜର କର୍ମମୟ ଜୀବନ ବାଉରୀବନ୍ଧୁ ଆରମ୍ଭ କରିଥିଲେ - ଓଡ଼ିଆ ଭାଷା ଓ ସାହିତ୍ୟ ର ଅଧ୍ୟାପକ ଭାବରେ ଯାଜପୁରସ୍ଥ ନରସିଂହ ଚୌଧୁରୀ (ଏନ୍.ସି.) କଲେଜରୁ । କେକେବିକେ କଲେଜ, ରେଭେନ୍ସା କଲେଜ, ଯାଜପୁର କଲେଜ ରେ ଦୀର୍ଘଦିନର ଶିକ୍ଷାଦାନ ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗର ପ୍ରଫେସର ଭାବରେ କାର୍ଯ୍ୟ କରିଥିଲେ । ସେଠାରେ ପିଜି କାଉନ୍‌ସିଲର ଚେୟାରମ୍ୟାନ ପଦବୀରେ କାର୍ଯ୍ୟ କରିଥିଲେ । କର୍ମମୟ ଜୀବନରେ ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସେ ସମସ୍ତଙ୍କ ପ୍ରିୟ ଥିଲେ ।

ଓଡ଼ିଆ ସାହିତ୍ୟ ର ଜଣେ ସୁନାମଧନ୍ୟ ଗବେଷକ ଭାବରେ ମଧ୍ୟ ପ୍ରଫେସର ବାଉରୀବନ୍ଧୁ କରଙ୍କ ସୁନାମ ରହିଥିଲା । "ଆଧୁନିକ ଓଡ଼ିଆ ସାହିତ୍ୟକୁ କାମପାଳ ମିଶ୍ରଙ୍କ ଦାନ" ପ୍ରସଙ୍ଗରେ ଗବେଷଣା କରି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ପିଏଚ୍.ଡି. ଉପାଧିପ୍ରାପ୍ତ । ଗବେଷଣା କ୍ଷେତ୍ରରେ ଉଚ୍ଚକୋଟୀର ଗବେଷଣା ପତ୍ର ଜାତୀୟ ଓ ଆନ୍ତର୍ଜାତୀୟ ପତ୍ର ଓ ପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଥିଲା ।

ଓଡ଼ିଆ ସାହିତ୍ୟ ର ସାହିତ୍ୟ ସମାଲୋଚନା କ୍ଷେତ୍ରରେ ବାଉରୀବନ୍ଧୁ ବେଶ୍ ପରିଚିତ ଥିଲେ ।

ତାଙ୍କ ସାରସ୍ୱତ ସୃଷ୍ଟିଗୁଡ଼ିକ -

ଚିନ୍ତନ-ଅନୁଚିନ୍ତନ
ଓଡ଼ିଆ ପ୍ରବନ୍ଧ ସାହିତ୍ୟ
ପ୍ରାବନ୍ଧିକ ନୀଳକଣ୍ଠ ଦାସ
ଜ୍ଞାନସାର ଜ୍ୟୋତି
ସମାଲୋଚନା ଭାରତୀ
ତିନୋଟି ସମାଲୋଚନା
ଓଡ଼ିଆ ସାହିତ୍ୟ ର ଇତିହାସ
ସାହିତ୍ୟସାଧକ ଡକ୍ଟର ମାୟାଧର ମାନସିଂହ
ନାନା ଆଲୋଚନା
ସ୍ୱାଧିନତା ପରବର୍ତୀ ଓଡ଼ିଆ ଉପନ୍ୟାସ
ସମାଲୋଚନା ସ୍ତବକ
ଆଧୁନିକ ଓଡ଼ିଆ ସାହିତ୍ୟକୁ କାମପାଳ ମିଶ୍ରଙ୍କ ଦାନ
ଓଡ଼ିଶାର ସଂସ୍କୃତି ଓ ଇତିହାସ ରେ ମାଦଳାପାଞ୍ଜି
ଗୋପିନାଥ ନନ୍ଦ
ଗୋପିନାଥ ମହାନ୍ତି — ମନୋଗ୍ରାଫ୍
କୃଷ୍ଣପ୍ରସାଦ ମିଶ୍ର
ବିରୂପାକ୍ଷ ପ୍ରବନ୍ଧାବଳୀ
ସାହିତ୍ୟସାଧକ ଶାନ୍ତନୁ କୁମାର ଆଚାର୍ଯ୍ୟ
ସାହିତ୍ୟସାଧକ ମହାପାତ୍ର ନୀଳମଣି ସାହୁ
କବି ରମାକାନ୍ତ ରଥ
କବି ଉପେନ୍ଦ୍ର ଭଞ୍ଜ
ଗଦ୍ୟଶିଳ୍ପୀ କିଶୋର ଚରଣ
ସୁରେନ୍ଦ୍ର ସମୀକ୍ଷା
ଗଙ୍ଗାଧର ମେହେର
ପ୍ରଚଳିତ ପ୍ରବନ୍ଧ କବିତା ଓ କବିତା (ସମ୍ପାଦନା)

ଆମସ୍ ସଟନ ରଚନାବଳୀ

ଇତ୍ୟାଦି ସମାଲୋଚନା ସାହିତ୍ୟ, ପ୍ରବନ୍ଧ, ସମୀକ୍ଷା ପୁସ୍ତକ ଓଡ଼ିଆ ବାଣୀଭଣ୍ଡାରକୁ ଦାନ । ତାଙ୍କ କାଳଜୟୀ ସୃଷ୍ଟି ତାଙ୍କୁ ସର୍ବଦା ଓଡ଼ିଆ ସାହିତ୍ୟରେ ଜଣେ ସାହିତ୍ୟିକ ଭାବରେ ମର୍ଯ୍ୟାଦା ଦେବ ଏଥିରେ ସନ୍ଦେହ ନାହିଁ । ଏତଦ୍‌ବାଦ ତିନିଗୋଟି ଇଂରାଜୀ ପୁସ୍ତକ ସେ ରଚନା କରିଛନ୍ତି ।

ଏନ୍ ସାଇକ୍ଳୋପିଡ଼ିଆ ଅଫ୍ ଇଣ୍ଡିଆନ ଲିଟରେଚର (ଭଲ୍ୟୁମ୍ - ୫)

ମାଷ୍ଟର ପିସେସ୍ ଅଫ୍ ଇଣ୍ଡିଆନ ଲିଟରେଚର

କମ୍ପ୍ରିହେନସିଭ୍ ହିଷ୍ଟ୍ରି ଆଣ୍ଡ କଲଚର ଅଫ୍ ଓଡ଼ିଶା

ଆଦି ପୁସ୍ତକରେ ତାଙ୍କର ସ୍ୱତନ୍ତ୍ର ଆଲୋଚନା ସ୍ଥାନ ପାଇଥିଲା ।

ପ୍ରଫେସର ବାଉରୀବନ୍ଧୁ କର - ଓଡ଼ିଆ ସାହିତ୍ୟକୁ ଜାତୀୟ ସ୍ତରରେ ସୁଦୃଢ଼ ଭାବରେ ଉପସ୍ଥାପନା କରାଇବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଲିଭାଇଥିଲେ । ଅନେକ ଜାତୀୟ ଆଲୋଚନା ଚକ୍ରରେ ଯୋଗଦେଇ ଓଡ଼ିଆ ସାହିତ୍ୟ ସମ୍ପର୍କରେ କେତେକ ଉପାଦେୟ ସନ୍ଦର୍ଭ ପାଠ କରିଥିଲେ ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟ

ବିଶ୍ୱଭାରତୀ ଭାଷା ପରିଷଦ - କଲିକତା

ମଣିପୁର ସାହିତ୍ୟ ପରିଷଦ

ଗୁଜୁରାଟ ସାହିତ୍ୟ ସଂସଦ

ମୁମ୍ବାଇ ସାହିତ୍ୟ ସଂସଦ

ଗୋଆ ସାହିତ୍ୟ ସଂସଦ

ଓଡ଼ିଆ ସାହିତ୍ୟକୁ ନେଇ ତାଙ୍କର ଉଚ୍ଚକୋଟୀର ସନ୍ଦର୍ଭ ଉପସ୍ଥାପନା ତାଙ୍କୁ ଓଡ଼ିଆ ସାହିତ୍ୟରେ ଜଣେ ସୁପ୍ରତିଷ୍ଠିତ ଗବେଷକ ଭାବରେ ପରିଚୟ ଆଣିଦେଇଛି ।

ଏତଦ୍‌ବାଦ ତାଙ୍କର ଉଚ୍ଚକୋଟୀର ଗବେଷଣା ପତ୍ର ଓଡ଼ିଶାର ସମ୍ଭ୍ରାନ୍ତ ସାରସ୍ୱତ ପତ୍ରିକାରେ ପ୍ରକାଶିତ ହୋଇ ଗବେଷକ ମାନଙ୍କୁ ସାହିତ୍ୟ ଗବେଷଣା ଦିଗରେ ଅନେକ ଜିଜ୍ଞାସା ପ୍ରଦାନ କରିଥିଲା ଓ ଯୁବ ସାହିତ୍ୟିକ ମାନଙ୍କୁ ପ୍ରେରଣା ଦେଉଅଛି । ଗୋପବନ୍ଧୁ ଙ୍କ "ସତ୍ୟବାଦୀ", "ଝଙ୍କାର", "ଆସନ୍ତାକାଲି" ପ୍ରଭୃତି ସାରସ୍ୱତ ପତ୍ରିକାରେ ତାଙ୍କର ଆଲେଖ୍ୟ ପ୍ରକାଶ ପାଉଥିଲା

ପ୍ରଫେସର ବାଉରୀବନ୍ଧୁ କର ଜଣେ ଦକ୍ଷ ସଂଗଠକ ଭାବରେ ବିଭିନ୍ନ ସାରସ୍ୱତ ଅନୁଷ୍ଠାନରେ କାର୍ଯ୍ୟ କରିଥିଲେ ।

ଓଡ଼ିଶା ସାହିତ୍ୟ ଏକାଡେମୀ

ଉତ୍କଳ ସାହିତ୍ୟ ସମାଜ

ଓଡ଼ିଆ ଗବେଷଣା ପରିଷଦ

ରେ କାର୍ଯ୍ୟ ସେ କରି ପାରିଥିଲେ ।

ଏତଦ୍‌ବାଦ ପ୍ରଫେସର ଭାବରେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ମେମ୍ବର, ସିନେଟ୍ ମେମ୍ବର ଓ ଏକାଡେମିକ୍ କାଉନ୍‌ସିଲର ସଦସ୍ୟ ଭାବରେ କାର୍ଯ୍ୟ କରିଥିଲେ ।

"ଭାଷାକୁ ନେଇ ରାଜନୀତି କରଣ ଅଶୁଭ ସଙ୍କେତ" - ପ୍ରଫେସର ବାଉରୀବନ୍ଧୁ କରଙ୍କ ଏକ ସ୍ୱତନ୍ତ୍ର ସାକ୍ଷାତକାର ୨୦୧୯, ନଭେମ୍ବର ସଂଖ୍ୟାରେ ଗୋପବନ୍ଧୁ ଙ୍କ "ସତ୍ୟବାଦୀ" ସାରସ୍ୱତ ପତ୍ରିକାରେ ପ୍ରକାଶିତ ପାଇଥିଲା ।

ଯେଉଁଥିରେ ପ୍ରଫେସର କର - ଓଡ଼ିଆ ଭାଷା, ଓଡ଼ିଆ ବିଶ୍ୱବିଦ୍ୟାଳୟ ଓ ସମାଲୋଚନା ସାହିତ୍ୟ ସମ୍ପର୍କରେ ବେଶ୍ ଉପାଦେୟ କଥା କହିଥିଲେ । ସେ ଓଡ଼ିଆ ଭାଷାର ଭବିଷ୍ୟତକୁ ନେଇ କହିଥିଲେ - କୌଣସି ଭାଷା ଲୋପ ପାଇନାହିଁ - କାରଣ ଓଡ଼ିଆ ଭାଷା ଆଜି ଯେଉଁ ସ୍ତରରେ ଅଛି ତାହା ରହିବ, ମାତ୍ର ଭାଷାକୁ ନେଇ ଯେଉଁ ରାଜନୀତି କରାଯାଉଛି, ତାହା ଅଶୁଭ ସଙ୍କେତ ।

ସାହିତ୍ୟକାର ପ୍ରଫେସର ଡକ୍ଟର ବାଉରୀବନ୍ଧୁ କରଙ୍କ ପ୍ରବନ୍ଧ ସଂକଳନ - ବିରୁପାକ୍ଷ ପ୍ରବନ୍ଧାବଳୀଙ୍କୁ ସମ୍ପାଦନା କରିଛନ୍ତି ।

ଐତିହାସିକ ସାହିତ୍ୟ ସ୍ରଷ୍ଟା ଭାବରେ ବିରୁପାକ୍ଷ କର - ଓଡ଼ିଆ ସାହିତ୍ୟରେ ସୁପରିଚିତ । କିମ୍ବଦନ୍ତୀ, ପୁରାଣ, ପୋଥି, ତାମ୍ରଫଳକ, ଅଭିଲେଖ ଇତ୍ୟାଦିରୁ ଉପାଦାନ ସଂଗ୍ରହକରି ସେ ସବୁକୁ ନେଇ ଓଡ଼ିଶା ଇତିହାସର ବିଭିନ୍ନ ଦିଗ ଆଲୋଚନାରେ ସେ ଥିଲେ ଜଣେ କୃତକର୍ମୀସାଧକ । କାଳର ସତ୍ୟ ଘଟଣାର ମହନୀୟତା ଓ ସମକାଳୀନ ସାଂସ୍କୃତିକ ପରିବେଶକୁ ନେଇ ସେ ଓଡ଼ିଶା ଇତିହାସର ବହୁ ଅବାଲୋଚିତ ଦିଗ ଅଧ୍ୟୟନ କରିଅଛନ୍ତି ।

ଐତିହାସିକ ବିରୁପାକ୍ଷ ୧୫ ସେପ୍ଟେମ୍ବର, ୧୮୯୩ ମସିହାରେ ବାଙ୍କୀର ଡମପଡ଼ା ଅଚଂଳରେ ଜନ୍ମଗ୍ରହଣ କରିଥିଲେ । ୧୯୧୨ ରେ ପୁରୀର ଜିଲ୍ଲା ସ୍କୁଲରୁ ମାଟ୍ରିକ୍ ପାସ୍ କରିଥିଲେ । ୧୯୧୬ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଇତିହାସ (ଅନର୍ସ)ରେ ବି.ଏ. ପାସ୍ କରିଥିଲେ । ତା'ପରେ ଆଇନ୍ ପଢ଼ି ଓକିଲ ଭାବରେ କାର୍ଯ୍ୟ କରିଲେ ।

ବିରୂପାକ୍ଷ ଥିଲେ ଗବେଷକ ଓ ପରେ ଐତିହାସିକ । ତାଙ୍କର ରଚନାବଳୀ ଗୁଡ଼ିକ ପ୍ରାଚୀନ ପତ୍ର ଓ ପତ୍ରିକା ର ଛିନ୍ନ ପୃଷ୍ଠାରେ ବିପର୍ଯ୍ୟସ୍ତ ଅବସ୍ଥାରେ ରହିଅଛି । "ଉତ୍କଳ ସାହିତ୍ୟ", "ପ୍ରାଚୀ", "ସତ୍ୟବାଦୀ" ପ୍ରଭୃତି ପ୍ରସିଦ୍ଧ ପତ୍ରିକାରେ ତାଙ୍କର ପ୍ରବନ୍ଧମାନ ସ୍ଥାନ ପାଇଥିଲା ।

ଉତ୍କଳରେ ବୌଦ୍ଧଯୁଗୀୟ ଇତିହାସ
ଆମ ସଂସ୍କୃତି
ପ୍ରାଚୀନ ଯାଜପୁର
ମାଘ ଅମାବାସ୍ୟା
କେଶରୀ ବଂଶ ଓ ଗଜସିଂହ
ପ୍ରାଚୀନ ଉତ୍କଳରେ ଜଳଯାତ୍ରା (୧)
ଇତିହାସ (୨)

ପ୍ରଭୃତିକୁ ଶ୍ରେଣୀ ବିଭକ୍ତକରି ବିରୂପାକ୍ଷ ନିଜର ସାରସ୍ୱତ ସୃଷ୍ଟି - "ବିରୂପାକ୍ଷ ପ୍ରବନ୍ଧାବଳୀ" କୁ ସମ୍ପାଦନା କରିଥିଲେ - ବାଉରୀବନ୍ଧୁ କର ଓ ସହଯୋଗୀ ଥିଲେ - ଅସୀତ କବି ।

ଏହି ପ୍ରବନ୍ଧଟିରେ ଉତ୍କଳର ନୌ ବାଣିଜ୍ୟ ଓ ବର୍ହିଃ ସମ୍ପର୍କୀୟ ପ୍ରାମାଣିକ ତଥ୍ୟ ରହିଅଛି । ଏଥିରେ ସେ ବିଭିନ୍ନ ଐତିହାସିକ ମାନଙ୍କର ତଥ୍ୟକୁ ବିଶ୍ଲେଷଣ କରି ନିଜର ମତବ୍ୟକ୍ତ କରିଅଛନ୍ତି ।

ଓଡିଶା ଏକଦା ବାଣିଜ୍ୟ କାରବାର ଓ ଦେଶ, ବିଦେଶରେ ଉପନିବେଶ ସ୍ଥାପନରେ ଅଗ୍ରଗନ୍ୟ ଥିବା ପ୍ରସଙ୍ଗ ସ୍ଥାପନ କରିଅଛନ୍ତି । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରୁ ଉତ୍କଳୀୟ ମାନେ ସମୁଦ୍ର ପାରହୋଇ ଦେଶ ବିଦେଶରେ ଉପନିବେଶ ପ୍ରତିଷ୍ଠା କରିଥିବା ବିଷୟ ଟୋଲେମି ଙ୍କ ଭୂଚିତ୍ରରୁ ପ୍ରମାଣ ମିଳେ ।

"କେଶରୀ ବଂଶ" - ପ୍ରବନ୍ଧରେ ସେ ଉପାଦାନ ରୂପେ ମାଦଳା ପାଞ୍ଜି ଓ କେତେକ ତାମ୍ର ଲେଖାକୁ ଗ୍ରହଣ କରିଅଛନ୍ତି । କେଶରୀ ବଂଶର ଉତ୍ପତି ଓ ବିସ୍ତୃତି ସମ୍ପର୍କରେ ତାଙ୍କର ଏହି ପ୍ରବନ୍ଧର ଉଦ୍‌ଘାଟିତ ମତମାନ ସମ୍ପ୍ରତି ଗ୍ରହଣୀୟ ନୁହେଁ । କିନ୍ତୁ ବିରୂପାକ୍ଷ କରଙ୍କ "କେଶରୀ ବଂଶ" - ପ୍ରବନ୍ଧ ପରବର୍ତ୍ତୀ କାଳରେ କେଶରୀ ବଂଶ ସମ୍ପର୍କରେ ବ୍ୟାପକ ଅନୁଶୀଳନ ପାଇଁ ବହୁ ଐତିହାସିକ ମାନଙ୍କୁ ତଥ୍ୟ ଯୋଗାଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ବିରୂପାକ୍ଷ ଙ୍କ ସାଂସ୍କୃତିକ ପ୍ରବନ୍ଧ ଗୁଡ଼ିକରେ ଓଡିଆ ସଂସ୍କୃତିର ଏକ ଧାରାବାହିକ ବିକାଶ ପରିଲିଖିତ ବ୍ୟକ୍ତି ଜୀବନରେ ସେ ଗାନ୍ଧିଜୀ ଙ୍କ ଆହ୍ୱାନରେ ଯେଉଁଭଳି ଜାତି ପ୍ରଥାର ବିଲୋପ ଓ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର ପାଇଁ ଉଦ୍ୟମ କରିଥିଲେ ଠିକ୍ ସେହିପରି ଭାରତୀୟ ସଂସ୍କୃତିର ସଂରକ୍ଷଣ ପାଇଁ ତାଙ୍କର ଲେଖା ମାଧମରେ ଆହ୍ୱାନ ଦେଇଥିଲେ । ଏହି ପର୍ଯ୍ୟାୟରେ ଲିଖିତ ପ୍ରବନ୍ଧଗୁଡ଼ିକ ମଧରେ ଆମ ସଂସ୍କୃତି, ଗୋପବନ୍ଧୁ ସମ୍ପର୍କରେ, ଜାତି ବିଚାର, ସରସ୍ୱତୀ ରାଜା ପ୍ରଭୃତି ପ୍ରଧାନ । ତାଙ୍କର ଏହି ସଂସ୍କୃତିମୂଳକ ପ୍ରବନ୍ଧଗୁଡ଼ିକ ଜାତୀୟତା ସହ ସମାଜ ସଂସ୍କାର ଦୃଷ୍ଟିଭଙ୍ଗୀ ଜଡିତ । ସେ ହିନ୍ଦୁ ଧର୍ମର ଆଦର୍ଶ ଓ ମହାନ ପରମ୍ପରା ର ଜୟଗାନ ଏଥିରେ କରିଅଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧ ଗୁଡ଼ିକରେ ତୀକ୍ଷ୍ଣ ଧୀଶକ୍ତି ଓ ମନୀଷା ପ୍ରକାଶିତ । ପ୍ରାଚୀନ ଓଡିଶା ସମ୍ପର୍କରେ ତାଙ୍କର ପାଣ୍ଡିତ୍ୱ ସୁବିଦିତ । ଜାତୀୟତାର ଆତ୍ମପ୍ରକାଶ ପାଇଁ ସେ ଉତ୍କଳର କୀର୍ତି, ସ୍ମୃତି ଓ ଅବଶେଷ ମାନଙ୍କୁ ପ୍ରବନ୍ଧ ସୃଷ୍ଟି କରିଅଛନ୍ତି । ଗବେଷକର ଗଭୀର ଅନ୍ୱେଷା, ସାହିତ୍ୟିକର ସୌନ୍ଦର୍ଯ୍ୟ ଚେତନା, ଐତିହାସିକର କାଳ ସଚେତନତା ଓ ଦେଶପ୍ରେମୀର ଜାତିପ୍ରୀତି ବିରୂପାକ୍ଷ ଙ୍କ ପ୍ରବନ୍ଧଗୁଡ଼ିକରେ ଏକାଧାରାରେ ପ୍ରକାଶିତ ହୋଇଅଛି ।

ବାସ୍ତବିକ୍ ବିରୂପାକ୍ଷ ଙ୍କ ପ୍ରବନ୍ଧାବଳୀକୁ ଏକ ପ୍ରବନ୍ଧ ସାହିତ୍ୟରେ ବାସ୍ତବରୂପ ଦେଇଥିଲେ - ପ୍ରଫେସର ଡକ୍ଟର ବାଉରୀବନ୍ଧୁ କର

"ଓଡିଆ ସାହିତ୍ୟ ର ଇତିହାସ" - ପୁସ୍ତକ ବାଉରୀବନ୍ଧୁ କରଙ୍କୁ ସର୍ବଦା ମନେ ରଖିଥିବ ଓଡିଆ ସାରସ୍ୱତ ଜଗତରେ । ସୁଦୀର୍ଘ ଓଡିଆ ସାହିତ୍ୟ ଓ ପରମ୍ପରା କୁ ସେ ଏହି ପୁସ୍ତକରେ ମଣ୍ଡିତ କରିଛନ୍ତି, ଯାହାକି ଆଗାମୀ ପିଢ଼ିପାଇଁ ଉପାଦେୟ ଅଟେ । ଏହି ପୁସ୍ତକଟି ତାଙ୍କର ଏକ କାଳଜୟୀ ସୃଷ୍ଟି କହିଲେ ଅତ୍ୟୁକ୍ତି ହେବନାହିଁ ।

ପ୍ରଫେସର ବାଉରୀବନ୍ଧୁ କର - ନିଜର ସାହିତ୍ୟକୃତି ପାଇଁ ଅନେକ ସାରସ୍ୱତ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନୀତ ହୋଇଅଛନ୍ତି, ଯାହାକି ତାଙ୍କୁ ପ୍ରେରଣା ଦେଇଅଛି - ସାହିତ୍ୟ ର ବିକାଶଧାରାରେ ନିଜକୁ ଆହୁରି ଘନିଷ୍ଠତା କରାଇ ପାରିଅଛି ।

ସମୟର କାଳଚକ୍ରରେ ସମସ୍ତେ ଦିନେ ନା ଦିନେ ଏ ସଂସାର ରୁ ବିଦାୟ ନେବା, ସେଥିରୁ ବା ବାଉରୀବନ୍ଧୁ ବାଦ୍ ପଡିଥାନ୍ତେ କିପରି । ବାଉରୀବନ୍ଧୁ - ୧୮ ସେପ୍ଟେମ୍ବର, ୨୦୨୦ ଶୁକ୍ରବାର ସନ୍ଧ୍ୟା ୫.୫୫ ମିନିଟ୍‌ରେ ହୃଦଘାତରେ ପରଲୋକ ଗମନ କରିଲେ । ସାହିତ୍ୟିକ ସମାଲୋଚକ ବାଉରୀବନ୍ଧୁ କର ସର୍ବଦା ଅମର ରହିଥିଲେ - ଜଣେ ଓଡିଆ ସାହିତ୍ୟ ର ସାହିତ୍ୟକାର ଭାବରେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

## ଓଡିଆ ସାହିତ୍ୟ ର ସ୍ରଷ୍ଟା

## ପ୍ରଫେସର ଡକ୍ଟର ନୃସିଂହଚରଣ ଷଡଙ୍ଗୀ

ନୃସିଂହଚରଣ ଷଡଙ୍ଗୀ (୧୯୫୫) -

କେବଳ ସମାଲୋଚକ ନୁହଁନ୍ତି ଜଣେ ଦରଦୀ କବି ମଧ୍ୟ । "ଲୁହହୋଇ ବହିଯାଏ ନଈ", "ଅବଶିଷ୍ଟ ଶୋଷ", ମଧୁବନ - କବିତା ଗ୍ରନ୍ଥଗୁଡିକ ତାଙ୍କ ସୃଷ୍ଟି ପ୍ରତିଭାର ଅମଳିନ ସ୍ୱାକ୍ଷର । ତାଙ୍କ କବିତା ଆବେଗଜନିତ ଓ ଭାବ ଉଦ୍ଦୀପକ, ଏସବୁରେ ରୋମାଂଟିଂକ୍ ପ୍ରବଣତା ଓ ମନନଧର୍ମୀ ଚେତନାର ସାର୍ଥକ ପରିପ୍ରକାଶ ଘଟିଛି, ସଫଳ ପ୍ରତୀକ ଓ ରୂପକଳ୍ପର ଚମ୍‌କାରିତା ମାଧ୍ୟମରେ ।

ନୃସିଂହଚରଣ ଙ୍କ ଜନ୍ମ - ତା. ୨୧/୧୦/୧୯୫୫ ଅବିଭକ୍ତ କଟକ ଜିଲ୍ଲା ଅଧୁନା ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍‌ର ବିଭୂତିପୁର ଗାଁରେ । ମା' - ବାସନ୍ତି ଦେବୀ ଓ ବାପା - ମୂରଲୀଧର ଷଡଙ୍ଗୀ । ଶୈଶବର ଦୁଃଖଯନ୍ତ୍ରଣା ଭିତରେ ସେ ମାତ୍ର ସାତଦିନ ଥିଲେ ମା' କୋଳରେ, ତା'ପରେ ରୋଗାଗ୍ରସ୍ତ ହୋଇ ମା' ଚାଲିଯାଇଥିଲେ । ତାଙ୍କ ବିହୁନେ ବାପାଙ୍କ ସଂସାର ସୁଖ ହାତରୁ ଏକଦମ୍ ଖସିଗଲା । ଜେଜେମା ପାଳିପୋଷି ବଡ କରିଥିଲେ ।

ଏକୋଇର ବାଳା ବିଶିକେଶନ ନୃସିଂହଚରଣ ଗାଁ ନିମ୍ନ ପ୍ରାଇମେରୀ ସ୍କୁଲରେ ପାଠପଢିଲେ, ପରେ ଗାଁଠାରୁ ତିନି କି.ମି. ଦୂର ଈଶ୍ୱରପୁର ଉଚ୍ଚ ପ୍ରାଥମିକ ସ୍କୁଲରେ ପାଠପଢିଲେ, ପରେ ଦଶରଥପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରୁ ଷଷ୍ଠ ଓ ସପ୍ତମ ଶ୍ରେଣୀ ପାଠପଢି ଓ ଦଶରଥପୁର ହାଇସ୍କୁଲରେ ଅଷ୍ଟମ, ନବମ, ଦଶମ ଓ ତତ୍‌କାଳୀନ ଏକାଦଶ ପର୍ଯ୍ୟନ୍ତ ପାଠ ପଢିଥିଲେ ।

ସ୍କୁଲ ଜୀବନ ସରିଗଲା ପରେ ୧୯୭୩ ମସିହାରେ ଯାଜପୁର ର ନରସିଂହ ଚୌଧୁରୀ (ଏନ୍.ସି.) କଲେଜରେ ପାଠପଢିଲେ, କଲେଜ ପଢିବା ସମୟରେ ଅଧ୍ୟାପକ କବି କମଳାକାନ୍ତ ଲେଙ୍କା ଙ୍କ ପ୍ରେରଣାରେ ଓଡିଆ ସାହିତ୍ୟ ର କବିତା ଲେଖିବା ଆରମ୍ଭକରି ଆଜି ଜଣେ କବି ଭାବରେ ପ୍ରତିଷ୍ଠା ପାଇଅଛନ୍ତି । ୧୯୭୭-୭୯ ଦୁଇବର୍ଷ ରେଭେନ୍ସା କଲେଜରେ ଓଡିଆ (ଏମ୍.ଏ.)ର ଛାତ୍ର ଜୀବନ, ସେ ପରିଶେଷରେ ନବ ଯୌବନରେ ପ୍ରେମତୁରା କବିତା ସୃଷ୍ଟି ତାଙ୍କ ଦ୍ୱାରା ହିଁ ସମ୍ଭବ ହୋଇପାରିଥିଲା ।

ଶିକ୍ଷା ଜୀବନ ପରେ କର୍ମମୟ ଜୀବନରେ ଓଡିଶାରେ ଅନେକ କଲେଜରେ ଓଡିଆ ଭାଷା ଓ ସାହିତ୍ୟ ର ଅଧ୍ୟାପକ ଭାବରେ କାର୍ଯ୍ୟାରମ୍ଭ ୧୯୮୦, ଅଗଷ୍ଟ ୧୬ - କଟକ କଲେଜ ଆରମ୍ଭ ଓ ୨୦୧୫ରେ ଷ୍ଟୁଆର୍ଟ ସାଇନ୍ସ କଲେଜ, କଟକରୁ ଓଡିଆ ସାହିତ୍ୟ ର ପ୍ରାଧ୍ୟାପକ ଭାବରେ ଅବସର ସହିତ ୩ ବର୍ଷର ଭିଜିଟିଙ୍ଗ୍ ପ୍ରଫେସର ଭାବରେ ଦୀର୍ଘ ୩୮ ବର୍ଷଧରି ଓଡିଆ ଭାଷା ଓ ସାହିତ୍ୟ ର ଅଭିଜ୍ଞତା ସମ୍ପର୍ଣ୍ଣ ପ୍ରଫେସର ।

### ସାହିତ୍ୟସାଧକ ନୃସିଂହଚରଣ -

ଏକାଏକା ଏକଲବ୍ୟ ହେବାରେ ବି ଆନନ୍ଦ ଅଛି । ସାଧନା ଲୋଡେ ଏକାନ୍ତ ମୁହୂର୍ତ୍ତ । ସେ କୋଳାହଳର ବିପରୀତ ମୁହୂର୍ତ୍ତ ସମୂହର ଏକ ପ୍ରଚ୍ଛନ୍ନ ଅଥଚ ମୋହମୟ ସତା । ଏହାର ପ୍ରିୟବାଦିତାରେ ସେ ଦୃଷ୍ଟିରେ ଐଶ୍ୱର୍ଯ୍ୟମୟ । ତାଙ୍କ ସାରସ୍ୱତ ସାଧନା ସାଧିଛି ଚାରି ଦଶନ୍ଧିର କାଳଖଣ୍ଡକୁ ।

ବିଶ୍ୱାସକୁ ତଥାପି ସମର୍ପିବାକୁ ପଡେ ବିଳାସୀ ବନ୍ଧୁଙ୍କ ବିଶ୍ୱସ୍ତାକୁ ଖୋଲପଣ କୋଳେଇନେଇ । ବିଶ୍ୱାସ ଓ ପ୍ରତିଶ୍ରୁତିକୁ ପରାହତ କରିବାରେ ସତରେ କେଉଁ ସୁଖଥାଏ ..... ଯାହାଥାଏ ପୁରୁଷାର୍ଥରେ, ଯାହାଥାଏ ସମୃଦ୍ଧ ହିଁ ଟିକୁ ..... ହଁ ହଁ କହି ବାରମ୍ବାର ବନ୍ଧୁପଣଙ୍କୁ ନିରତା ଦେବାରେ ??? ସତରେ ସେଇମାନେ ଭାଗ୍ୟବାନ ଯେଉଁମାନେ ସବୁପ୍ରକାର ପ୍ରତିକୂଳତାରେ ବି ପ୍ରଥମ ପ୍ରତିଶ୍ରୁତିକୁ କେବେ ପରାସ୍ତ ହେବାକୁ ଦିଅନ୍ତି ନାହିଁ, ସାହିତ୍ୟ ର ସହିତ ଭାବବୋଧେ ଏଇଆ ..... ଯାହା ସେ ଅନୁଭବ କରିଛନ୍ତି, ତାଙ୍କର ସାରସ୍ୱତ ସୃଷ୍ଟିରୁ .....

୧. ପ୍ରଜ୍ଞାପୁରୁଷ ଜାନକୀ ବଲ୍ଲଭ
୨. ଓଡିଆ ଉପନ୍ୟାସ ଇତିହାସ
୩. ଶ୍ରେଷ୍ଠ କବିତା
୪. ବିଦଗ୍ଧ ଚିନ୍ତାମଣି
୫. ଶତାବ୍ଦୀର ଏକଲବ୍ୟ - ଜାନକୀ ବଲ୍ଲଭ
୬. ଓଡିଆ କାବ୍ୟକଳା ଓ ନନ୍ଦିକେଶ୍ୱରୀ
୭. ସାହିତ୍ୟ ସମ୍ଭାର
୮. କବିମାନସ ଅତୀତ ଓ ସମ୍ପ୍ରତିକ
୯. ସାହିତ୍ୟରେ ମାନଚିତ୍ର
୧୦. ଓଡିଆ ବ୍ୟାକରଣ
୧୧. ସାହିତ୍ୟ ଏକ ଆକଳନ
୧୨. ସ୍ରଷ୍ଟା-ସୃଷ୍ଟି-ସମୀକ୍ଷଣ

୧୩. ସମାଲୋଚକ ଦୃଷ୍ଟିରେ ବ୍ରଜବାବୁ
୧୪. ଭାବ ବିନିମୟ ଓ ଯୋଗାଯୋଗରେ ଭାଷା ମାଧ୍ୟମ
୧୫. ପ୍ରାଚୀନ ସାହିତ୍ୟ
୧୬. ଗଳ୍ପଗଳ୍ପ

ଅନେକ ପୁସ୍ତକ ରଚନାକରି ମଧ୍ୟ ଓଡିଆ ସାହିତ୍ୟ ର ବିକାଶରେ ଡକ୍ଟର ନୃସିଂହଚରଣ ଷଡଙ୍ଗୀ ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଓଡିଆ କବିତା ସାହିତ୍ୟ କ୍ଷେତ୍ରରେ ନୃସିଂହଚରଣ ଙ୍କ ସୃଜନୀ ପ୍ରକଟିତ ହୋଇଅଛି - ବିଶେଷତଃ ସେ ଜଣେ କବି ଭାବରେ ଓଡିଆ ସାହିତ୍ୟରେ ପରିଚିତ । ତାଙ୍କର କୃତି ମଧ୍ୟରେ -

୧. ବିଦଗ୍ଧ ହସ୍ତିନା - ୧୯୯୦
୨. ଲୁହହୋଇ ବହିଯାଏ ନଈ - ୧୯୯୧
୩. ଅବଶିଷ୍ଟ ଶ୍ଳୋକ - ୧୯୯୩
୪. ମଧୁବନ - ୧୯୯୪
୫. ପ୍ରତିନିୟତ - ୨୦୦୩
୬. ମୁହୂର୍ତ୍ତ ମନ୍ୱନ୍ତର - ୨୦୦୬
୭. ଚିତ୍ରପଟ୍ଟ - ୨୦୦୭
୮. ନିଜ ଆଇନାରେ ନିଜେ - ୨୦୧୫

## କବି ନୃସିଂହଚରଣ ଙ୍କ ଏକ କବିତା

ସମଗ୍ର ଜୀବନର ଅନୁଭୂତି ସାଉଁଟା ସୂଚୀପତ୍ରଟିଏ ହେଉଛି - "ଶତ୍ରୁ ହାତରେ ସମୟ" ।

ମଣିଷ ସାଉଁଟିଛି ହାନିଲାଭ ଓ ଦେଣନେଣ ପ୍ରୀତିରୁ ନିସ୍ପନ୍ଦ ମିତ୍ରତା ଓ ବୈରତାକୁ । ସମୟ ଏଠି ପକ୍ଷ, ପ୍ରତିପକ୍ଷ ସବୁକିଛି, କେତେବେଳେ ବଉଳଫୁଲର ବାସ୍ନାହୋଇ ଏକ ସୁଗନ୍ଧିତ ମିତ୍ରତାରେ ସମୟ ଚହଟିଯାଇଛି ତ କେତେବେଳେ ବାସି ଗୋଲାପର ବିମର୍ଶ ଋତୁଟିଏ ହୋଇ ସେ କାବୁକରି ନେଇଛି ଅବଶିଷ୍ଟ ଜୀବନସତାକୁ । ଜୀବନ ସହ / ସମୟ ସହ ଯୋଜନାବଦ୍ଧ ଭାବରେ ସାଲିସ୍‌ରେ ଅବା ସନ୍ଧିପତ୍ରରେ କେବେ ସ୍ୱାକ୍ଷର କରିନଥିବା କବି ଡକ୍ଟର ନୃସିଂହଚରଣ ଷଡଙ୍ଗୀ ଙ୍କ ଅଷ୍ଟମ କବିତା ସଂକଳନ ହେଉଛି - "ଶତ୍ରୁ ହାତରେ ସମୟ" - ଏକ ନିର୍ଭୀକ ତଥା ପୁରୁଷାର୍ଥିକ ସ୍ପର୍ଦ୍ଧାରେ ଗଢାହୋଇଛି, ଏଥିରେ ଥିବା ସମସ୍ତ କବିତାର ଭାଗ୍ୟ ।

କବିଙ୍କର ନିଜସ୍ୱ ନିଆରା ଗଢଣ ରୀତିରେ ଉତରିତ "ଶତ୍ରୁ ହାତରେ ସମୟ" ରେ ପତ୍ରସ୍ଥ କବିତା ସମଗ୍ର ପ୍ରଥମରୁ ସବୁ କବିଙ୍କ ପରି ଏକ ରୋମାଟିଂକ୍ ଅବବୋଧରେ ସ୍ନାତଥିଲା କବି ନୃସିଂହ ଙ୍କ କବିତା କତିପୟ । ମାତ୍ର ଜୀବନର ଅବରୁଦ୍ଧ ଅଧ୍ୟାୟକୁ ଅନୁଶୀଳନ କ୍ରମରେ ବିବର୍ତିତ ହୋଇଯାଇଛି ତାଙ୍କ ରୋମାଟିଂକ୍ ମାନସିକତା । ଲକ୍ଷ୍ୟଣୀୟ ପ୍ରସଙ୍ଗ ଯେ ଗୋଟିଏ ଚକିତ ଓ ଚର୍ଚ୍ଚିତ ବୌଦ୍ଧିକ ଅସ୍ତରଣ ତାଙ୍କ ବିବର୍ତ୍ତମାନ କାବ୍ୟଚେତନାର ଧାରାରେ ସଂଚରି ଯାଇଛି ।

"ଶତ୍ରୁ ହାତରେ ସମୟ" କବିଙ୍କର ଏହି ଚମତ୍କାର ଉତରଣଶୀଳତାର ଏକ ପ୍ରଗାଢ ପରିପ୍ରକାଶ ମାତ୍ର ।

"ଶତ୍ରୁ ହାତରେ ସମୟ" ର ଏକ କବିତା -

### ଭାଗ୍ୟ

ଗଛମାନେ ଭାଙ୍ଗିପଡନ୍ତି ନାହିଁ ଦୁଃଖରେ
ଭାଙ୍ଗିପଡନ୍ତି ଇଚ୍ଛା ବିରୁଦ୍ଧରେ
କୌଣସି ନା କୌଣସି ଦୁର୍ବିପାକରେ ॥

କୌଣସି ଭାଗ୍ୟ ଝୁଟେଂନାହିଁ
ଆପଣା ଇଚ୍ଛାରେ
ଝୁଟିଂପଡେ କୌଣସି ତାଡନାରେ
କୌଣସି ପୀଡନରେ ॥

ମଣିଷ ସୁଖ ଉଆସ ଗଢାହୁଏ
କାହାରି ଦୁଃଖରେ ଅନଳରେ
ଶୁଖିଲା ଧାନ କିଆରିରେ ନିଆଁ ଲାଗିଲାପରି

ସାରା ଭାଗ୍ୟର ସୁଖ ଜାଳିଦିଏ
ପ୍ରତାରଣାରେ ମୋର ମୋର କହି
ଛୁରୀମରା ମୁହୂର୍ତ୍ତଙ୍କ ମାଳମାଳ
ଶୋଭାଯାତ୍ରାରେ ॥

ପ୍ରତାରଣାରେ ଚାଲିଛି ସଂସାର
ତେଣୁ ଜଣାପଡେ ନାହିଁ ସହଜେ
କିଏ ଆପଣା କିଏ ପର,
ଗଛ ଭାଙ୍ଗିଲା ପରି ଦୁର୍ବିପାକରେ
ଭାଗ୍ୟ ଭାଙ୍ଗିଯାଏ ଆପଣାଛାଏଁ
ଇଚ୍ଛା ବିରୁଦ୍ଧରେ ॥

ବାସ୍ତବିକ୍ କବିପ୍ରାଣ ନୃସିଂହଚରଣ ନିଜର କାବିକ ତତ୍ୱରେ ଭାଗ୍ୟକୁ ଉପସ୍ଥାପନା କରିଅଛନ୍ତି, ଯାହା ପାଠକୀୟ ଆଦୃତିଲାଭ କରିଅଛି ।

**ସମ୍ମାନ ଓ ସମ୍ବର୍ଦ୍ଧନା ମଧ୍ୟରେ କବି ନୃସିଂହଚରଣ -**

ନୃସିଂହଚରଣ ନିଜର ସାରସ୍ୱତ ସୃଷ୍ଟିପାଇଁ ଅନେକ ଅନୁଷ୍ଠାନରୁ ସମ୍ମାନୀତ ଓ ସମ୍ବର୍ଦ୍ଧିତ ମଧ୍ୟ । ସେଥିମଧ୍ୟରୁ କିଛି .....

୧. ଊନବିଂଶ ରାଜଧାନୀ ପୁସ୍ତକ ମେଳା ସମ୍ମାନ - ୨୦୧୯
୨. ୧୪ତମ ମହାନଦୀ ଫେଷ୍ଟିଭାଲ - କଟକ - ୨୦୧୯
୩. ସାରଳା ସାହିତ୍ୟ ସଂସଦ ପକ୍ଷରୁ ମାନସିଂହ ସମ୍ମାନ - ୨୦୧୮
୪. ଅଖିଳ ଚକ୍ର - ଓଡିଶା, ଯାଜପୁର ପକ୍ଷରୁ କବି ରବୀନ୍ଦ୍ର ପାଢୀ ସ୍ମୃତି ସମ୍ମାନ - ୨୦୧୫
୫. ଗୋକର୍ଣ୍ଣିକା ସାହିତ୍ୟ ସଂସଦ - ଯାରକା, ଯାଜପୁର ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା - ୨୦୧୮

ଆଦି ଅନେକ ଅନୁଷ୍ଠାନର ସମ୍ମାନୀତ ହୋଇ ସାରସ୍ୱତସାଧକ ନୃସିଂହଚରଣ ଷଡଙ୍ଗୀ ନିଜର ସାରସ୍ୱତ ସାଧନରେ ନିମଗ୍ନ ରହିଅଛନ୍ତି ବୟସର ଅପରାହ୍ନରେ । ଡକ୍ଟର ନୃସିଂହଚରଣ ଷଡଙ୍ଗୀ ଅଧୁନା ଓଡିଶା ସାହିତ୍ୟ ଏକାଡେମୀ ର ସାଧାରଣ ପରିଷଦ କୁ ନିର୍ବାଚିତ ହୋଇଛନ୍ତି ଜଣେ ସଦସ୍ୟ ଭାବରେ ।

## ଓଡିଆ ସାହିତ୍ୟ ର ଗାଳ୍ପିକ
## ଇଂ ବିଷ୍ଣୁ ସାହୁ

ବିଷ୍ଣୁ ସାହୁ - ଓଡିଆ ସାହିତ୍ୟରେ ଜଣେ ଗାଳ୍ପିକ ଭାବରେ ବେଶ୍ ପରିଚିତ । ଗଳ୍ପ ବ୍ୟତୀତ କବିତା, ପ୍ରବନ୍ଧ, ନାଟକ, ଶିଶୁ ସାହିତ୍ୟ ଆଦି ସାହିତ୍ୟ ବିଭାଗରେ ନିଜର କଲମ ଚାଳନା କରିଛନ୍ତି । ପେଷାରେ ଜଣେ ଇଞ୍ଜିନିୟର ଭାରତୀୟ ଟେଲିକମ୍ - ଭାରତ ସଚାଂର ନିଗମ ଲିମିଟେଡ (ବି.ଏସ୍.ଏନ୍.ଏଲ୍.) ର ପଦସ୍ତ ଅଧିକାରୀ ଭାବରେ ଅଧୁନା ଅବସରପ୍ରାପ୍ତ, କିନ୍ତୁ ନିଶାରେ ସାହିତ୍ୟ ସୃଷ୍ଟି, ମାତୃଭାଷା ଓଡିଆ ସାହିତ୍ୟ ର ଜଣେ ସଫଳ ସ୍ରଷ୍ଟା ।

ଓଡିଆ ଗଳ୍ପ ସାହିତ୍ୟରେ ବିଷ୍ଣୁ ସାହୁ ଜଣେ ଧିରିଣ କଥାଶିଳ୍ପୀ ଭାବରେ ସୁପ୍ରତିଷ୍ଠିତ । ଏକ ସୁନ୍ଦର ସାବଲୀଳ ଶୈଳୀ, ଚମତ୍କାର ଚରିତ୍ର ନିର୍ମାଣ ନିଜସ୍ୱ ଗଳ୍ପରେ ପ୍ରଚୁର ଚିତ୍ରଭାଷାର ବିନ୍ୟାସ ତାଙ୍କ ପ୍ରତିଷ୍ଠା ଓ ସଫଳତାର ଏକ ଏକ ଦିଗ । ତାଙ୍କ ଗଳ୍ପ ପଢିବାକୁ ଆରମ୍ଭ କରିବା ଅର୍ଥ, ଜଣେ ନିଜକୁ ସ୍ରୋତରେ ଭସାଇଦେବା, ବେଶ୍ ପ୍ରତିଭାବାନ ଏହି ଗାଳ୍ପିକ ଙ୍କ ଗଳ୍ପପ୍ରାଣତା ଓ ଜୀବନନିଷ୍ଠ ଗଳ୍ପଚାର୍ଯ୍ୟା ତାଙ୍କୁ ତାଙ୍କ ସମସାମୟିକ ସ୍ରଷ୍ଟାଙ୍କ ଭିତରେ ସ୍ୱତନ୍ତ୍ର ଭାବରେ ଚିହ୍ନାଇଦିଏ । ସେ ଉତର ଆଧୁନିକ ଗଳ୍ପ ସାହିତ୍ୟ (୧୯୮୦) - ପରବର୍ତୀ କାଳର ଜଣେ ଜୀବନବାଦୀ ଗାଳ୍ପିକ । ଏକ ସୁସ୍ଥ ସୁନ୍ଦର ପୃଥିବୀର ପରିକଳ୍ପନା, ମଣିଷ ଭିତରେ ସ୍ନେହ ଓ ଭଲପାଇବାର ଅବତାରଣା ତଥା ଉତର ପ୍ରାଣୀ ପ୍ରତି ଦୟାଶୀଳ ମନୋଭାବ ପୋଷଣ ପାଇଁ ତାଙ୍କ ଗଳ୍ପରେ ରହିଛି ପ୍ରଚୁର ଉପାଦାନ, ବର୍ଣ୍ଣନା ଚତୁରୀ ସାଙ୍ଗକୁ ପରିବେଶର ଚିତ୍ରାୟିତ ଅଭିବ୍ୟକ୍ତି ଓ ସମ୍ବୋଦନଶୀଳତା ତାଙ୍କ ଲେଖନୀରେ ପରିସ୍ଫୁଟିତ । ତାଙ୍କ ଲେଖାରେ ପୁଣି ରହିଅଛି - ଅନେକ ପ୍ରତିଶ୍ରୁତି ଆଗାମୀ ଦିନପାଇଁ, ଆଗାମୀ ପିଢିର ସାହିତ୍ୟିକ ମାନଙ୍କ ପାଇଁ ।

୨୧ ଜାନୁୟାରୀ, ୧୯୫୬ ମସିହାରେ ଜଗତ୍‌ସିଂହପୁର ର ନବପାଟଣା ଗ୍ରାମରେ ବିଷ୍ଣୁ ସାହୁ ଜନ୍ମଗ୍ରହଣ କରିଥିଲେ । ବାପା ଗନ୍ଧର୍ବ ସାହୁ ଓ ମାତା ରାଧାମଣି ଦେବୀ ଙ୍କ ଦୁଇପୁଅ ମଧ୍ୟରୁ ସେ ଥିଲେ ବଡପୁଅ, ସାନଭାଇ ମହେଶ୍ୱର । ଏକ ମଧ୍ୟବିତ ପରିବାରରେ ଜନ୍ମଗ୍ରହଣ କରିଥିବା କଥାଶିଳ୍ପୀ ବିଷ୍ଣୁ ସାହୁ ଅଭାବ ଓ ଅସୁବିଧା କୁ ପଛରେ ପକାଇ ନିଜକୁ ସମାଜରେ ପ୍ରତିଷ୍ଠିତ କରାଇ ପାରିଥିଲେ । ତାଙ୍କ ପତ୍ନୀ ମୀନାକ୍ଷୀ ଦେବୀ ଜଣେ ସୁଲେଖିକା, ସିଏ ଜଣେ ଶିଶୁ ସାହିତ୍ୟିକା ଭାବରେ ବେଶ୍ ଜଣାଶୁଣା । ତିନିଗୋଟି କନ୍ୟା ସନ୍ତାନଙ୍କୁ ନେଇ ବିଷ୍ଣୁ ସାହୁଙ୍କ ସଂସାର ।

ଗାଁର ସୁକୋମଳ କୋଳରେ ବିତିଛି ତାଙ୍କର ଶୈଶବ ଓ କିଶୋର । ପାରିବାରିକ ମାଧୁର୍ଯ୍ୟକୁ ସେ ଉପଲବ୍ଧ କରିଅଛନ୍ତି । ଗାଁର ଯାବତୀୟ ପର୍ବପର୍ବାଣୀ ଭରା ସଂସ୍କୃତିରେ ତାଙ୍କର ସମ୍ପୃକ୍ତି ଚିରକାଳ ତାଙ୍କ ଚେତନାକୁ ଉଦ୍‌ବୁଦ୍ଧ କରିଅଛି । ସେ ଜଣେ ପଲ୍ଲୀପ୍ରେମୀ ମଣିଷଟିଏ ।

ବିଷ୍ଣୁ ଶିକ୍ଷା ଆରମ୍ଭ କରିଥିଲେ - ନିଜ ଜନ୍ମମାଟି ନବପାଟଣା ଗାଁର ଦୋଳବେଦୀ ଉଚ୍ଚ ପ୍ରାଥମିକ ସ୍କୁଲ୍‌ରେ । ପରେ ତରିକୁଦ ସ୍କୁଲ୍ ଓ ତରିକୁଦ ହାଇସ୍କୁଲ୍‌ରୁ ମାଟ୍ରିକ୍ୟୁଲେସନ୍ ପାସ୍ କରିଥିଲେ । ପରେ ଜଗତ୍‌ସିଂହପୁରସ୍ଥ ସ୍ୱାମୀ ବିବେକାନନ୍ଦ ମେମୋରିଆଲ କଲେଜରୁ ସ୍ନାତକ ଡିଗ୍ରୀ ଧରିବାପରେ ରେଭେନ୍ସା କଲେଜରୁ ଓଡିଆ ଭାଷା ଓ ସାହିତ୍ୟରେ (ଏମ୍.ଏ.) ସ୍ନାତକୋତର ପାସ୍ କରିଥିଲେ । ପରେ କଲ୍ୟାଣୀ ଟେଲିକମ୍ ଟ୍ରେନିଙ୍ଗ୍ ୟୁନିଭରସିଟି, କଲିକତାରୁ ଟେଲିକମ୍ ଇଞ୍ଜିନିୟରିଂରେ ଡିପ୍ଲୋମା ହାସଲ କରିଥିଲେ । ସେ ସଙ୍ଗୀତଶାସ୍ତ୍ରରେ ମଧ୍ୟ ଜଣେ ଧିରୀଣ ଶିଳ୍ପୀ । ଓଡିଶା ସଙ୍ଗୀତରେ ଚଣ୍ଡୀଗଡ଼ର ପ୍ରାଚୀନ କଳାକେନ୍ଦ୍ରରୁ ସ୍ନାତକ ଶିକ୍ଷାଗ୍ରହଣ କରିଥିଲେ ।

କର୍ମମୟ ଜୀବନରେ ବିଷ୍ଣୁ ସାହୁ ପ୍ରଥମେ ୧୯୭୯ ମସିହାରେ ଭାରତ ସଚାଂର ନିଗମ ଲିମିଟେଡ୍ (ବି.ଏସ୍.ଏନ୍.ଏଲ୍.) ର ଡିଭିଜିନାଲ ଇଞ୍ଜିନିୟର ଭାବରେ ବଡବିଲର ମାଟକାମ ବେଢାରେ କର୍ମମୟ ଜୀବନ ଆରମ୍ଭ କରିଥିଲେ, ପରେ ସାଲେପୁର, ଜଗତ୍‌ସିଂହପୁର, ଜଳେଶ୍ୱର, ଖୋର୍ଦ୍ଧା, କଟକ, ରାୟଗଡ଼ା, ଢେଙ୍କାନାଳ ପ୍ରଭୃତି ସ୍ଥାନରେ କାର୍ଯ୍ୟକରି ୨୦୧୪ ମସିହାରେ କଟକରୁ ଅବସର ନେଇ ବର୍ତମାନ କଟକରେ ଅବସ୍ଥାପିତ ।

ବିଷ୍ଣୁ ସାହୁଙ୍କ ବ୍ୟକ୍ତିତ୍ୱ ବାସ୍ତବରେ ନିଆରା । ଅନ୍ୟକୁ ସାହାଯ୍ୟ କରିବା ମନୋବୃତି ତାଙ୍କ ବ୍ୟକ୍ତିତ୍ୱର ଶ୍ରେଷ୍ଠଗୁଣ । ଅତି ସାଧାରଣ ଭେଷପୋଷାକ, ନମ୍ର, ଭଦ୍ର ବ୍ୟବହାର - ଏ ଗାଳ୍ପିକ ଙ୍କ ବ୍ୟକ୍ତିତ୍ୱକୁ ବହୁ ଉଚ୍ଚସ୍ତରକୁ ନେଇଥାଏ । ପାଠକ ଙ୍କ ପ୍ରତି ରହିଥାଏ, ତାଙ୍କର ଗଭୀର ସମ୍ବୋଦନଶୀଳ ମନୋଭାବ । ତାଙ୍କର ବହୁମୂଲ୍ୟ ସମୟଦେଇ ଜିଜ୍ଞାସୁ ପାଠକର ସନ୍ଦେହ ଦୂର କରିବାରେ ସେ ସଦା ଚେଷ୍ଟିତଥାନ୍ତି । ଓଡିଆ ଗଳ୍ପର ପ୍ରଚୁର ଅନୁବାଦ ବୋଲି ଗାଳ୍ପିକ ମତାମତ ପ୍ରକାଶ କରିଥାନ୍ତି । ଅନୁବାଦ ମାଧ୍ୟମରେ ଓଡିଆ ଗଳ୍ପ ସାହିତ୍ୟକୁ ଭାରତୀୟ ତଥା ବିଶ୍ୱସାହିତ୍ୟକୁ ପ୍ରଭାବିତ କରିପାରିବା ସହ ଓଡିଆର ସଭ୍ୟତା ସଂସ୍କୃତି ଓ ଗଳ୍ପର ଧାରାକୁ ଅନ୍ୟ ଭାଷାଭାଷୀ ମାନେ ସହଜରେ ହୃଦୟଙ୍ଗମ କରିପାରିବେ ।

ଇଂ ବିଷ୍ଣୁ ସାହୁ ଜଣେ ଗୀତିକାର ଭାବରେ ୧୯୮୦ ମସିହାରେ କଟକ ଆକାଶବାଣୀ ପକ୍ଷରୁ ସ୍ୱୀକୃତିପ୍ରାପ୍ତ ।

### ଇଂ ବିଷ୍ଣୁ ସାହୁଙ୍କ ସୃଷ୍ଟସମ୍ଭାର -

ଓଡିଆ କଥା ସାହିତ୍ୟ ର ଜନ ଆଦୃତି ବିଭାଗ "କ୍ଷୁଦ୍ରଗଳ୍ପ" କୁ ସମୃଦ୍ଧଶାଳୀ କରିବାରେ କଥାଶିଳ୍ପୀ ବିଷ୍ଣୁ ସାହୁଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ, ମାତ୍ର କ୍ଷୁଦ୍ରଗଳ୍ପ ଭିତରେ ତାଙ୍କର ସାହିତ୍ୟ ସଂସାର ସୀମାବଦ୍ଧ ହୋଇ ରହିପାରିନଥିଲା । ସେ ଏକାଧାରାରେ ଗଳ୍ପକାର,

କବି, ଶିଶୁ ସାହିତ୍ୟିକ, ନିବନ୍ଧ ଲେଖକ ଓ ଯାତ୍ରା ନାଟ୍ୟକାର ଭାବରେ ବେଶ୍ ପରିଚିତ । ତାଙ୍କ ସାରସ୍ୱତ ଜଗତର ପରିଧି ସଙ୍କୁଚିତ ନୁହେଁ ବରଂ ବହୁମୁଖୀ ।

**ଗଳ୍ପ ସଂକଳନ -**

ଚମ୍ପାବତୀ (୧୯୯୪)
ମୁନ୍ନା ପାଇଁ ପ୍ରାର୍ଥନା (୧୯୯୯)
ଅସୁସ୍ଥ ପୃଥିବୀ (୧୯୯୯)
ଦୁଃଖର ଚାରିକାନ୍ଥ (୨୦୦୧)
ଗୋଟିଏ ଗାଁର ଚିତ୍ରପଟ୍ଟ (୨୦୦୫) (ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର)
ବିଷ୍ଣୁ ସାହୁଙ୍କ ପ୍ରେମଗଳ୍ପ (୨୦୦୭)
ଶେଷ ସନ୍ଧ୍ୟାର ସଙ୍ଗୀତ (୨୦୦୮)
ଗୋଟିଏ ବାଳିକାର ବର୍ଣ୍ଣନା (୨୦୧୧)
ଜହ୍ନରାତିର ହୃଦୟ (୨୦୧୨)
ବିଷ୍ଣୁ ସାହୁଙ୍କ କଥା ଓ କାହାଣୀ (୨୦୧୩)
ଦେହାଗ୍ନି (୨୦୧୫)
ଜଣେ ସୁନ୍ଦରୀଙ୍କ ସମ୍ପର୍କରେ (୨୦୧୬)
ଗୋଟିଏ ଲଣ୍ଡନର ପ୍ରେମ କାହାଣୀ
ପାପର ଦୈର୍ଘ୍ୟ ପ୍ରସ୍ଥ

**କବିତା ଓ ଗୀତି କବିତା -**

ପାରୁଲର ପ୍ରେମିକ
ଯେଉଁ ପୃଥିବୀ ମୁଁ ଛାଡିଯାଉଛି
ସଙ୍ଗୀତାୟନ
ଗୁଣୁଗୁଣୁ ଜହ୍ନରାତି
ଦେହପଦ୍ମ

**ଶିଶୁ କବିତା -**

ବାବୁଲା ହେଇବ ଜଗତଜିତା
ପୁପୁନ ର ହାତରେ ପେଁ କାଳି
ଲାଲ ଟୁକୁଟୁକୁ ଝିଅ
ପିଲାଙ୍କ ପାଇଁ ପପଲ୍ ପୁଁ
କୁନା ପାଇଁ ନାନା ବାୟାଗୀତ

**ନିବନ୍ଧ -**

ମୁଖ୍ୟ ପ୍ରସଙ୍ଗ

**ନାଟକ -**

ସାତଟି ବୋତାର ନାଟକ
ଦଶଟି ଅପେରା ନାଟକ
ପନ୍ଦରଟି ନୃତ୍ୟ ନାଟିକା
ସାତଟି ଗୀତିନାଟ୍ୟ
ପାଚଂଟି ସଙ୍ଗୀତରୂପକ

**ଛୋଟ ନାଟକ -**

ଗୋଟିଏ ଛେଳିର କାହାଣୀ
(ଝଙ୍କାର ପୂଜା ବିଶେଷାଙ୍କ - ୬୮ତମ ବର୍ଷ ୨୦୧୬)

ଇଂ ବିଷ୍ଣୁ ସାହୁଙ୍କ ସାହିତ୍ୟ କୃତିର ବୈଗୀକରଣରେ ମଟଂକଳା, କାବ୍ୟକଳା ଓ ଗଳ୍ପକଳା ର ତ୍ରିବେଣୀ ସଙ୍ଗମ କହିଲେ ଅତ୍ୟୁକ୍ତି ହେବନାହିଁ ।

ଓଡିଆ ସାହିତ୍ୟକୁ ପରିପୂଷ୍ଟ କରିବାରେ ଇଂ ସାହୁଙ୍କ ଉପରୋକ୍ତ କୃତି ସମୂହ ବେଶ୍ ପାଠକୀୟ ଆଦୃତି ଲାଭ କରିଅଛି । ଫଳତଃ ସେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନୀତ ହୋଇ ପାରିଛନ୍ତି ।

**ସମ୍ମାନୀତ ଓ ସମ୍ବୋର୍ଦ୍ଧିତ -**

୧. ଓଡିଶା ସାହିତ୍ୟ ଏକାଡେମୀ ଗଳ୍ପ ପୁରସ୍କାର - ୨୦୦୬
୨. ବିଷୁବ ମିଳନ ପୁରସ୍କାର (ରଘୁନାଥପୁର ବିଷୁବ ପରିଷଦ) - ୧୯୯୦
୩. କଣ୍ଢେଇ ଶିଶୁ ସାହିତ୍ୟ ପୁରସ୍କାର, କଟକ - ୧୯୯୪
୪. ଝୁମୁକା ଶିଶୁ ସାହିତ୍ୟ ପୁରସ୍କାର, ଚୌଦ୍ୱାର - ୧୯୯୪
୫. ଶ୍ରେଷ୍ଠ ଗୀତିକାର ପୁରସ୍କାର (ଅଳକା କଳା ମଣ୍ଡପ - ଜଗତ୍ସିଂହପୁର) - ୧୯୯୨
୬. ବିଷୁବ ଝଙ୍କାର ଗଳ୍ପ ପୁରସ୍କାର (ପ୍ରଜାତନ୍ତ୍ର ସାହିତ୍ୟ ପରିଷଦ) - ୧୯୯୯
୭. ଜିଲ୍ଲା ଶିଶୁ ସାହିତ୍ୟ ପୁରସ୍କାର (ଜଗତ୍ସିଂହପୁର - ଶିଶୁ ସାହିତ୍ୟ ପରିଷଦ) - ୧୯୯୧
୮. "ସଭା" ଗଳ୍ପ ପୁରସ୍କାର (କୋରାପୁଟ) - ୨୦୦୧
୯. ଆଷାଢ଼ ଗଳ୍ପ ପୁରସ୍କାର (ଆଷାଢ଼ ସାହିତ୍ୟ ପରିଷଦ, ଜଗତ୍ସିଂହପୁର) - ୨୦୦୫
୧୦. ସୁରେଖା ଗଳ୍ପ ପୁରସ୍କାର (ସୁରେଖା ସାହିତ୍ୟ ପରିଷଦ - ପୁରୀ) - ୨୦୦୫
୧୧. ଶ୍ରେଷ୍ଠ ଗାଳ୍ପିକ ପୁରସ୍କାର (କଟକ, ଦୂରସଚାଂର ଭବନ) - ୨୦୦୫
୧୨. ସାହିତ୍ୟ ଭାରତୀ - ସୁବ୍ରତ ସ୍ମାରକୀ ଗଳ୍ପ ପୁରସ୍କାର - ୨୦୦୬ - (ଗଙ୍ଗାଧର ରଥ ଫାଉଣ୍ଡେସନ୍ - କଟକ)
୧୩. ଜାତୀୟ ପୁରସ୍କାର - ଦିଲ୍ଲୀ - ୨୦୦୬ - ଆକାଶବାଣୀ ସଙ୍ଗୀତରୂପକ ବଉଳଗଛର ଛାୟା
୧୪. ଶ୍ରେଷ୍ଠ ଗାଳ୍ପିକ ପୁରସ୍କାର - ୨୦୦୬ - (ୱାଲଡ ଟେଲିକମ୍ ଡେ ସେଲିବ୍ରେସନ୍)
୧୫. ଅର୍ପଣ ଗଳ୍ପ ପୁରସ୍କାର - ୨୦୦୬ - (ଅର୍ପଣ ସାହିତ୍ୟ ପତ୍ରିକା - ବାଲେଶ୍ୱର)
୧୬. ଅଳକା ଗଳ୍ପ ପୁରସ୍କାର - ୨୦୧୦ - (ଜଗତ୍ସିଂହପୁର ସାଂସ୍କୃତିକ ପରିଷଦ)
୧୭. ଶ୍ୟାମପ୍ରସାଦ ମହାପାତ୍ର ଗଳ୍ପ ସମ୍ମାନ - ୨୦୧୪ - (ଫକୀରମୋହନ ସାହିତ୍ୟ ପରିଷଦ - ବାଲେଶ୍ୱର)
୧୮. କହ୍ନେଇଲାଲ ଗଳ୍ପ ପୁରସ୍କାର - ୨୦୧୪ - (ଚନ୍ଦ୍ରଭାଗା - ବାଲେଶ୍ୱର)
୧୯. ସୁରେନ୍ଦ୍ର ମହାନ୍ତି ଗଳ୍ପ ସମ୍ମାନ - ୨୦୧୪ - (ଅମୃତାୟନ - ଭୁବନେଶ୍ୱର)
୨୦. ଧ୍ୱନି ପ୍ରତିଧ୍ୱନି ଗଳ୍ପ ସମ୍ମାନ - ୨୦୧୪ - (ବାଲେଶ୍ୱର ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର - ଗଳ୍ପ "ଗୋଟିଏ ଗାଁର ପଟ୍ଟଚିତ୍ର" ଓ ବିଷୁବ ପୁରସ୍କାର ସହ ସାହିତ୍ୟ ଭାରତୀ ସମ୍ମାନ)

ବାସ୍ତବିକ୍ ସମସ୍ତ ପୁରସ୍କାର ଓ ସମ୍ମାନ ବିଷ୍ଣୁ ସାହୁଙ୍କୁ ପ୍ରେରଣା ଯୋଗାଇ ଦେଇଥିଲା - ଅଧିକରୁ ଅଧିକ ରଚନା ଓଡିଆ ସାହିତ୍ୟ ର ପାଠକ ଙ୍କ ପାଇଁ ତଥା ଏ ଜାତି ପାଇଁ ।

ଓଡିଆ ସାହିତ୍ୟ ସର୍ବୋପରି ଗଳ୍ପ ରଚନା କ୍ଷେତ୍ରରେ ଗାଳ୍ପିକ ବିଷ୍ଣୁ ସାହୁଙ୍କ ପରିଚୟ ଅନନ୍ୟ ପାଠକ ପାଠିକା ଙ୍କ ଚାହିଦାକୁ ମେଟାଂଇବା ପାଇଁ ତାଙ୍କର ସୃଷ୍ଟିରେ ଭରି ରହିଛି - ମାଦକତା, ଭାଷା ମାଧୁର୍ଯ୍ୟତା ଓ ଭାବର ଗଭୀର ସନ୍ଧି ତାଙ୍କୁ ଜଣେ ଗାଳ୍ପିକ ଭାବରେ ଓଡିଆ ସାହିତ୍ୟରେ ପରିଚୟ କରାଇ ପାରିଅଛି ।

## ଗାଳ୍ପିକ ବିଷ୍ଣୁ ସାହୁଙ୍କ
## ଗଳ୍ପ ସଂକଳନ
## "ପାପର ଦୈର୍ଘ୍ୟ ପ୍ରସ୍ଥ" ରୁ ଏକ ଗଳ୍ପ - "ଗୁଡ୍‌ଲି"

ବିଭିନ୍ନ କିସମର କାକ୍ଟସ୍ ଓ ଫୁଲଗଛ ବଳୟିତ ଘାସର ଲନ୍‌ରେ ପତ୍ନୀ ପ୍ରଣତି ଙ୍କ ସହ ବସି ଚା' ପିଉଥିଲେ ସୁଧାକର ବାବୁ । ଗଛଗୁଡ଼ିକ ଫାଙ୍କରୁ କମଳା ରଙ୍ଗର ଉ ରୀୟ ଖଣ୍ଡେ ଉଡ଼ି ଆସୁଥିବା ପରି ଅସ୍ତସୂର୍ଯ୍ୟର ରଶ୍ମି ଓ କିଚିରିମିଚିରି କରୁଥିବା ନୀଡ଼ ଫେରନ୍ତା ପକ୍ଷୀଙ୍କର ପଟ୍ଟଭୂମିରେ କପେ କପେ ଚା' ପାନର ମଜା ଉଠାଇବା ସେମାନଙ୍କର ଅନ୍ୟତମ ବିଳାସ । ଉଭୟ ଅଧାପନା କରନ୍ତି ଗୋଟିଏ କଲେଜରେ । ସୁଧାକର ବାବୁ ରସାୟନ ବିଜ୍ଞାନରେ ଏବଂ ପ୍ରଣତି ରାଜନୀତି ବିଜ୍ଞାନର ଅଧାପିକା ।

ଇଂରାଜୀ ମିଡ଼ିୟମ୍ ସ୍କୁଲର ଷ୍ଟାଣ୍ଡାର୍ଡ ଥ୍ରୀରେ ପଢୁଥିବା ତାଙ୍କ ସାତବର୍ଷର ପାଳିତା କନ୍ୟା ଗୁଡ୍‌ଲି ଯାଇ ବସିଥିଲା ଲନ୍‌ର ଗୋଟାଏ କୋଣକୁ, ଡ୍ରଇଁଖାତା ଓ ପେନ୍‌ସିଲ୍ ଧରି । ସମ୍ଭବତଃ ଲୋହିତ ଦିଗ୍‌ବଳୟର ଛବିଟିଏ ଆଙ୍କୁଥିଲା ।

ଅଧିକାଂଶ ସମୟରେ ସେହି ସୂର୍ଯ୍ୟାସ୍ତକାଳୀନ ଚା' ପର୍ବରେ ତାଙ୍କ ଆଲୋଚନାର ମୁଖ୍ୟ ପ୍ରସଙ୍ଗ ଥାଏ ଗୁଡ୍‌ଲି । ମନହେଲେ ଏକାନ୍ତରେ ଚୁପ୍‌ଚାପ୍ ବସି ରହୁଥିବା ଏବଂ ମନହେଲେ କେତେ କେତେ ପ୍ରଶ୍ନ ପଚାରି ବ୍ୟସ୍ତକରି ଦେଉଥିବା ପିଲାଟା, ଯେପରି ସେମାନଙ୍କ କଥାଶୁଣି ନପାରିବ, ସେ ଦୃଷ୍ଟିରୁ ସେମାନେ ଥିଲେ ସତର୍କ ।

ସେମାନେ ଚିନ୍ତା ପ୍ରକଟ କରୁଥିଲେ, ପିଲାଟାର ବିଚିତ୍ର ଖିଆଲ ଓ ଅଜବ ଫରମାସିକୁ ନେଇ । ଆଉ ସେଭଳି ଚିନ୍ତାର କାରଣ ଥିଲା, ତା' ବୟସର ଅନ୍ୟସବୁ ପିଲାଙ୍କଠାରୁ ଗୁଡ଼୍‌ଲି ର ଭିନ୍ନତା ।

ହୁଏତ କଥାଟି ସ୍ପଷ୍ଟ ହେବ, ନିମ୍ନୋକ୍ତ ଗୋଟିଏ ଘଟଣାରୁ ।

ଥରେ ଗୁଡ଼୍‌ଲି ଜ୍ୱରରେ । କୌଣସି ଔଷଧପତ୍ର କିମ୍ବା ପଥ୍ୟ, ଜ୍ୱରକୁ ଉପଶମ କରିବାରେ ବ୍ୟର୍ଥ ହେଉଥାଏ । ପର୍ଯ୍ୟାୟକ୍ରମେ କଲେଜରୁ ଛୁଟିନେଇ ସ୍ୱାମୀସ୍ତ୍ରୀ ଉଭୟ ଦିନରାତି ଲାଗି ପଡ଼ିଥିଲେ ପିଲାଟାର ଯତ୍ନ ନେବାରେ । ତଥାପି ଜ୍ୱର କମିବାର ଲକ୍ଷଣ ଦେଖାଗଲା ନାହିଁ । ପାଖାପାଖି ସପ୍ତାହେ ବିତିଗଲା ।

ଗୁଡ଼୍‌ଲି ର ଜିଦ୍ ଯୋଗୁଁ ତା' ସ୍କୁଲ ଯିବା ବନ୍ଦ ନଥାଏ । ପରେ ପରେ ଆସିଗଲା ଦଶହରା । ସ୍କୁଲସବୁ ଛୁଟିକରି ଦିଆଗଲା । ତିନି ଚାରିଦିନ ଯାଇଛି କି ନାହିଁ, ଜରୁଆ ପିଲାଟା ଦିନେ ଠିକ୍ ଦଶଟା ବେଳକୁ ଅଡ଼ିବସି କହିଲା :

- "ମୁଁ ସ୍କୁଲ ଯିବି । ମୋ ସ୍କୁଲ ଡ୍ରେସ୍ କାହିଁ ? ପାଉନି ।"

- "ସ୍କୁଲ ତ' ଏବେ ଛୁଟି ! କେହି ନଥିବେ । ତୁ ଯାଇ ସେଠି କ'ଣ କରିବୁ ?" ତାକୁ ବୁଝାଇବାକୁ ଚେଷ୍ଟାକଲେ ପ୍ରଣତି ।

- "ନଥାନ୍ତୁ ..... ମୁଁ ଯିବି । ସ୍କୁଲ ପଡ଼ିଆରେ ଖାଲି ଟିକେ ବସିଗଲେ, ମୋତେ ଭଲ ଲାଗିବ । ପ୍ରାର୍ଥନା ବୋଲିବି ବଡ଼ପାଟିରେ । ତମେ ମାମା, ମୋ ସାଙ୍ଗରେ ମିଶି ବୋଲିବ ନା ପ୍ରାର୍ଥନା ? ବଢ଼ିଆ ମଜା ହବ ।" ପ୍ରଣତି ନିରୁପାୟ ଦେଖାଗଲେ ।

- "ହଁ ରେ ମା', କହୁଛୁ ଯଦି ନିଶ୍ଚୟ ବୋଲିବି । ମୋ ଝିଅ ଯେଉଁଥିରେ ଖୁସି ହେବ ..... ତା' ପୁଣି ମୁଁ କରିବିନି ?" ପିଲାଟାକୁ ନିରୁତ୍ସାହିତ କରିବାକୁ ତାଙ୍କର ଇଚ୍ଛା ହେଲା ନାହିଁ ।

ଅତଏବ ଦୁଇଜଣଯାକ ସ୍କୁଲ ପଡ଼ିଆରେ ଥିବା ଗୋଟେ ଚମ୍ପାଗଛ ମୂଳରେ ଯାଇ ବସିପଡ଼ିଲେ । ବୋଲିଲେ ପ୍ରାର୍ଥନା । ଗୁଡ଼୍‌ଲି ବହୁତ ଖୁସି ହେଲା । ଖାଲି ଖୁସି ହେଲା ନାହିଁ; ପ୍ରଣତି ଙ୍କ ମୁହଁକୁ ନୁଆଁଇ ଆଣି ଚୁମାଟିଏ ବି ଦେଲା । ପ୍ରତିବଦଳରେ ମାମାଙ୍କ ଠାରୁ ହାସଲ କଲା ଗୋଟାଏ ଟଫି ।

କହିବା ବାହୁଲ୍ୟ, ସେଦିନ ସନ୍ଧ୍ୟା ସମୟକୁ ତା'ର ଜ୍ୱର ବିଲକୁଲ୍ ଗାଏବ୍ । ପିଲାଟାର ଶୁଭ ମନାସିବାକୁ ସେମାନେ ମନ୍ଦିରକୁ ଯାଇ ଭୋଗରାଗ କରିଥିଲେ ।

ସେ ଘରକୁ ଗୁଡ଼୍‌ଲି ପୋଷ୍ୟ ସନ୍ତାନ ରୂପେ ଆସିଥିଲା ଗୋଟିଏ ଅନାଥାଶ୍ରମରୁ । ସନ୍ତାନ ହୀନତାର କଷ୍ଟ ଲାଘବ କରିବା ପାଇଁ ସୁଧାକର ବାବୁ ଓ ପ୍ରଣତି ଯାଇଥାନ୍ତି ସେଠିକି । ଗୁଡ଼୍‌ଲି କୁ ତିନିବର୍ଷରୁ କିଛି ଅଧିକ ହୋଇଥାଏ । ପିନ୍ଧିଥାଏ ଗୋଟିଏ ଜରିଲଗା ଗୋଲାପି ଫ୍ରକ୍ । ସଦ୍ୟଫୁଟନ୍ତା ପୁଷ୍ପଟିଏ ପରି ଦିଶୁଥାଏ । ଅଚିହ୍ନା ମଣିଷ ଦୁଇଜଣ ତାକୁ କୋଳେଇ ନେବାର ଦେଖି ତା' କାନ୍ଦ କାନ୍ଦ ମୁହଁଟିରେ ଅଚାନକ ଉଙ୍କି ମାରିଥିଲା ଧାରେ ହସ । ମେଘମାଳା ଭିତରୁ ଚମକି ଉଠୁଥିବା ପୋଷେ ପ୍ରାଞ୍ଜଳ ଖରା ଭଳି ।

ସେମାନଙ୍କୁ ପ୍ରଥମେ ବିସ୍ମିତ ଏବଂ ପରେ ପରେ ପୁଲକିତ କରି ସେ ଯେତେବେଳେ ପ୍ରଣତି ଙ୍କ କାଖରେ ଥାଇ ତାଙ୍କୁ ଚୁମାଟିଏ ଦେଲା; ଉଭୟଙ୍କ ଆଖି ଛଳଛଳ ହୋଇ ଯାଇଥିଲା, ଗୋଟେ ଅମୂଲ୍ୟ ନିଧି ପାଇଲା ଭଳି । ଏହା ପରେ ପୋଷ୍ୟ ସନ୍ତାନ ନିମନ୍ତେ ଉର୍ଦ୍ଦିଷ୍ଟ କାଗଜପତ୍ରରେ ସେମାନେ ଦସ୍ତଖତ କରିବାରେ ଆଉ କି ଅନ୍ତରାୟ ?

ଗୁଡ଼୍‌ଲି ଅନାଥାଶ୍ରମ ଛାଡ଼ି ଆସିଲାବେଳକୁ ଗୋଟିଏ ଫଟୋକୁ ସେ ଭିଡ଼ିକରି ଧରିଥାଏ ଛାତିରେ । ଠାଏ ଠାଏ ନଷ୍ଟ ହୋଇ ଯାଇଥିବା ତା' ପରଲୋକଗତା ମା'ର ବିବର୍ଣ୍ଣ ଫଟୋ ।

- "ଆମେ ଏବେ କୁଆଡ଼େ ଯିବା ?" ତିନିଜଣଯାକ କାର୍‌ରେ ବସିପଡିଲା ବେଳକୁ; ଯେମିତି ସେ କୌଣସି ମେଳା ମଉଛକ ବୁଲି ଯାଉଛି, ସେଇଭଳି ଖୁରୁସାଣିଆ ହୋଇ ଗୁଡ଼୍‌ଲି ପ୍ରଶ୍ନ କଲା ।

- "ଆମ ଘରକୁ ଆମେ ଯିବା ।" ଉତର ଦେଲେ ସୁଧାକର ବାବୁ ।

- "ମୁଁ କ'ଣ ତମକୁ ପଚାରିଲି ?" ସେ ଆଖିକୁ ତରାଟି ସୁଧାକର ବାବୁଙ୍କର ଅନଧିକାର ଚର୍ଚ୍ଚା ବାବଦରେ ମୃଦୁ ଆପତିଟିଏ ଉଠାଇଲା ।

- "ଓହୋ ..... ତମେ ଟିକିଏ ଚୁପ୍ ହୋଇ ବସ ଭଲା ! ମୋ ଝିଅ ..... ମୋତେ ପଚାରୁଛି ପରା ! ଏତିକି କ'ଣ ବୁଝିପାରୁନ ?" ପ୍ରଣତି ର କପଟ ଚେତାବନୀ ସୁଧାକର ବାବୁଙ୍କୁ ଖୁବ୍ ଆମୋଦିତ କଲା । ଏଥର ପ୍ରଣତି ଙ୍କ ପାଳି :

- "ହଉ ମା' କ'ଣ କହୁଛୁ, କହ । ଆମ ଝିଅଟା କେତେ ଭଲ !" ସେ ଗୁଡ଼୍‌ଲି ର ଚିବୁକ କୁ ହଲାଇ ଦେଲେ ।

- "ତମର କ'ଣ ଶୁଆ ଅଛି ? ନାଲି ନାଲି ଥଟଂ ?" ଗୁଡ଼୍‌ଲି ଗେହ୍ଲେଇ ହେଇ କହିଲା

- "ଅଛି ମା' ଅଛି ?"

- "ଆଉ ଫୁଲଗଛ ? ଗୁଣ୍ଡୁଚିମୂଷା ?"

- "ସବୁ ଅଛିରେ ମା' ..... ସବୁ । ଯାହା ନଥିବ, ତୋ'ପାଇଁ ମୁଁ ସବୁ ଆଣିଦେବି ।" ପ୍ରଣତି ତା' ମୁଣ୍ଡ ଉପରେ ହାତ ରଖି ସାଉଁଳୋଉଥିଲେ ।

- "ସିଲଟ, ଖଡି, ଖାତା, ବହି ବି କିଣିଦବ ?" ସେ ଭୀଷଣ ଉତ୍ସାହିତ ହୋଇ ପ୍ରଣତି ର ବେକକୁ ଭିଡି ଧରିଥିଲା ।

- "ସବୁ କିଣିଦେବି । ତୁ ଆଗ ଚାଲ୍ ନା !" ଗୁଡ଼୍‌ଲି ସନ୍ତୁଷ୍ଟ ହେଲାପରି ଦେଖାଗଲା ।

ସୁଧାକର ବାବୁ କାର୍ ଡ୍ରାଇଭ୍ କରୁଥିଲେ । ଘରେ ପହଚିଂବାକୁ, ବାଟତକ ଘଟାଂକରେ ସରିବା କଥା । କିନ୍ତୁ ଡେରି ହେଉଥାଏ । କାରଣ ତା' ପ୍ରଶ୍ନ ସବୁ ଥିଲା ଅସରନ୍ତି । ସେ ଗାଡିର ଝରକା ଦେଇ ଚାରିଆଡକୁ ଭଲକରି ଅନାଇ ଦେଖୁଥିଲା । ରାସ୍ତାକଡର ଗଛବୃଛ, ଉଡୁଥିବା ଟିକିଟିକି ଚଢେଇ, ଦୂର ଆକାଶର ବଉଦ । ପୁଳାପୁଳା ପବନରେ କେଶତକ ଉଡିଆସି ତା' ମୁହଁ ଉପରେ ପଡିଯାଇଥିବାରୁ, ପିଲାଟାର ସୁନ୍ଦରତା ଥାଏ ଆହୁରି ମନୋମୁଗ୍ଧକର ।

- "ତମ ଘର କ'ଣ ଏତେ ବାଟ ? କେତେବେଳେ ପହଚିଂବା ? ରାତିରେ ?" ତା' ବଜରବଜର ଲାଗି ରହିଥାଏ ।

- "ନାଇଁ, ନାଇଁ ..... ମୋ' ସୁନାଟା ପରା ! ଏଇ ସାଙ୍ଗେ ସାଙ୍ଗେ ପହଚିଂଯିବା । ଘରେ ପହଚିଂଲେ, ଆଗ ମୁଁ ମୋ' ଝିଅକୁ ବଢିଆ ଖେଳନା ସବୁ ଦେବି । ଗିନି ବଜୋଉଥିବା ଭାଲୁ ..... ପିଁ ପିଁ ବାଜୁଥିବା ପେଁକାଳି ..... କେତେ କ'ଣ ରଖିଚି ।"

- "ଖେଳନା କିଣିବାକୁ ମୁଁ କ'ଣ କହିଥିଲି ? ତା'ର ପିଲାଳିଆ ଧମକରେ ପ୍ରଣତି ଟିକେ ଦବିଗଲା ଭଳି ଅଭିନୟ କଲେ । ସେ ଖୁସି ହୋଇ କହିଲା :

- "ତମର ସେଠି ବଣି ଚଢେଇ ଅଛନ୍ତି ?"

- "ବହୁତ ଅଛନ୍ତିରେ ମା' ..... ଯେତେ ଚାହିଁବୁ ସେତେ ।"

- "ଆଉ କଙ୍କି ?"

- "ତୁ ଆଉ ମୁଁ ସାଙ୍ଗ ହୋଇ ପୁଳାଏ ଖଣ୍ଡେ କଙ୍କି ଧରିବା ।" ପ୍ରଣତି କହିଲେ ।

- "ଠିକ୍ ଅଛି । ଏବେ କହିଲ, ସେ ବାବୁଟି କିଏ ?" ଗୁଡ୍‌ଲି କାର୍ ଚଳାଉଥିବା ସୁଧାକର ବାବୁଙ୍କ ଆଡେ ହାତ ଦେଖାଇ ଖୁବ୍ ଗମ୍ଭୀର ଭାବରେ ପଚାରିଲା ।

- "ଏ ମା' ..... ସେମିତି କ'ଣ କହୁଛୁ ? ସେ ପରା ତୋ ବାବା !"

- "ବାବା ଯଦି ..... ମୁହଁକୁ ଏମିତି ହାଣ୍ଡିକରି ବସିଛନ୍ତି କାହିଁକି ?"

- "ନାଇଁରେ ମା', ତୁ ପହଚିଂଲେ ଦେଖିବୁ, ସେ ତୋତେ କେତେ ଗେଲ କରିବେ ..... କେତେ ମଜାକଥା ସବୁ କହିବେ ।"

- "ତାଙ୍କୁ କ'ଣ ଗୀତ ବୋଲି ଆସେ ?"

- "ଆସେ ରେ ମା' ଆସେ ।" ସୁଧାକର ବାବୁ ନହସି ରହିପାରିଲେ ନାହିଁ ।

- "ତେବେ ବୋଲୁ ନାହାଁନ୍ତି କାହିଁକି ?" ଟିକିଏ ରହିଯାଇ ସେ ପୁଣି ତାଗିଦ୍ କଲା - "ବୋଲୁନ ..... କେତେଥର କହିବି ?" ଗୁଡ୍‌ଲି ର ନିର୍ଦ୍ଦେଶ ଥିଲା ଅପେକ୍ଷାକୃତ ଅଧିକ ଓଜନଦାର । ଅଗତ୍ୟା ସୁଧାକର ବାବୁଙ୍କ ହସ ରହିଲା ସ୍ଥଗିତ ।

- "ସେ ପରା ଗାଡି ଚଳାଉଛନ୍ତି ..... ବୋଲିବେ କେମିତି ?"

- "ତେବେ ମୁଁ ବୋଲୁଚି ଶୁଣ ..... ।" ଗୁଡ୍‌ଲି, ତା' ରାୟ ଶୁଣାଇଦେଲା ।

ଗୁଡ୍‌ଲି ର ଗୀତ ଗାଇବା ଢଙ୍ଗଟି ଥିଲା ବେଶ୍ ମଜାଦାର । କିନ୍ତୁ ସେ ଯାହା ଯେମିତି ବେସୁରା ଆଉ ବେତାଳରେ ଗାଇଲା, ତାହା ବହୁତ ଆମୋଦ ଦେଲା ସେମାନଙ୍କୁ । ଗାଡିଯାଇ ଲାଗିଥିଲା ତାଙ୍କ ପୋର୍ଟିକୋରେ ।

ସେହିଦିନଠୁଁ ଏଇ ତିନୋଟି ବର୍ଷଯାକ, ଗୁଡ୍‌ଲି ହିଁ ସେ ଘରର ସାମ୍ରାଜ୍ଞୀ । ସୁଧାକର ବାବୁ ଓ ପ୍ରଣତି ଅଧସ୍ତନ ରୀତିରେ ଚଳପ୍ରଚଳ ହେଉଥାନ୍ତି । ସେଥିରେ ମଧ୍ୟ ଥାଏ ସେମାନଙ୍କର ସନ୍ତୋଷ ଏବଂ ଗୁଡ୍‌ଲି ପରି ଗୋଟିଏ ଝିଅର ବାପା-ମା' ବନିବାର ବିପୁଳ ଗୌରବ ବୋଧ ।

ମୋଟ ଉପରେ କହିବାକୁ ଗଲେ, ପିଲାଟା ହିଁ ଥିଲା ସେମାନଙ୍କ ଶୁଷ୍କ ଓ ଧୂଷର ଜୀବନରେ ଗୋଟିଏ ସବୁଜ ସୁନ୍ଦର ବନସ୍ପତି । ଚକ୍‌ଚକ୍ ଜୋତା, ଡିପ୍ ବ୍ଲୁ ଆଉ ଧଳା ରଙ୍ଗର ୟୁନିଫର୍ମ, ଲାଲ ରଙ୍ଗର ଟାଇ ଓ ହଳେ କଜଳପାତି ସଦୃଶ ପନିଟେଲ ସହକାରେ ସେ ଯେତେବେଳେ ସ୍କୁଲକୁ ବାହାରିଯାଏ, ଲାଗେ - ସେ ଘରର ପ୍ରାଣ ପକ୍ଷୀଟି କିଛି ସମୟ ପାଇଁ ଉଡି ପଳାଉଛି ।

ସ୍କୁଲ ମିଷ୍ଟ୍ରେସ୍‌ମାନଙ୍କର ମଧ୍ୟ ତା' ପ୍ରତି ଆକର୍ଷଣ କିଛି କମ୍ ନଥିଲା । ପ୍ରତ୍ୟେକ ପ୍ରଶ୍ନର ନିର୍ଭୁଲ ଉତର ଦେବା, ନିୟମିତ ଭାବରେ ହୋମ ଟାସ୍କ କରିବା, ବିଭିନ୍ନ ପ୍ରତିଯୋଗିତାରେ କୃତିତ୍ୱ ଦେଖାଇବା ସହିତ ତା'ର ନିୟମିତ ଉପସ୍ଥାପନ ଏବଂ ମାର୍ଜିତ ଶୃଙ୍ଖଳା ଜ୍ଞାନ ଯୋଗୁଁ, ସେଠାରେ ସମସ୍ତଙ୍କ ପାଇଁ ସେ ଥାଏ ଏକ କୁନି ବିସ୍ମୟ । ଏଥିସହିତ ତାକୁ ନେଇ ବିସ୍ମିତ ହେବାର ଅନ୍ୟ କାରଣ ମଧ୍ୟ ଥିଲା

ଗୁଡ୍‌ଲି ଥିଲା, ଯେପରି ଏକ ଭିନ୍ନ ପୃଥିବୀର ବାସିନ୍ଦା । ପାଠପଢା ବ୍ୟତୀତ ପ୍ରକୃତି ଓ ପରିବେଶ ସହିତ ତା'ର ଘନିଷ୍ଠତା ଥିଲା ସହଜାତ । ଫୁଲ କୁଣ୍ଡ ପାଖରେ ଠିଆହୋଇ ଫୁଲଗୁଡିକ ସହିତ ଅନ୍ତରଙ୍ଗ ଭାବରେ କଥାବାର୍ତା କରିବା ଓ ପବନରେ ଦୋଳାୟିତ ଗୋଲାପ କଢକୁ ଦୁଇ ପାପୁଲିରେ ବୁଜିଧରି 'ଫୁଟିଯା ..... ଫୁଟିଯା' ବୋଲି କହିବା ଦେଖି ସମସ୍ତେ ତାଜ୍ଜୁବ ହେଉଥିଲେ । ଗଛ ଫାଙ୍କରୁ ଆସୁଥିବା ସୂର୍ଯ୍ୟ କିରଣ, ସଜନା ଗଛ ଡାଳରେ ଆସି ବସି ପଡୁଥିବା ଦୂରାଗତ ହଳଦୀବସନ୍ତ, କ୍ଷଣକୁ କ୍ଷଣ ଯା'ଆସ କରୁଥିବା ଅସ୍ଥିର ଗୁଣ୍ଡୁଚିମୂଷା - ଏଗୁଡିକ ଥିଲେ ତା' ମନ ମୂଲକର ଅଧିବାସୀ ।

ତା' ଭଳି ଛୋଟ ପିଲାର ଏଭଳି ଭାବୁକତାକୁ ଅନୁମୋଦନ କରିବା ସେତେଟା ସହଜ ନଥିଲା, ବିଶେଷକରି ସୁଧାକର ବାବୁଙ୍କ ପାଇଁ । ତେଣୁ ଅନ୍ୟ ସାଧାରଣ ଶିଶୁମାନଙ୍କ ଭଳି ତା'ର ଉଲ୍ଲାସ ଓ ଉତେଜନା ଉଦ୍ରେକ କରାଇବା ପାଇଁ ପ୍ରାୟ ଦୁଇବର୍ଷ ତଳେ ସେ ତା' ସମ୍ମୁଖରେ ଆଣି ଦାଖଲ କରିଥିଲେ ଦୁଇଟି ଖେଳନା । ଗୋଟିଏ ଥିଲା, ସିଟି ବଜାଇ ରେଳ ଧାରଣାରେ ଗଡି ଚାଲୁଥିବା ପ୍ଲାଷ୍ଟିକ୍‌ର ରେଳ

ଗାଡି ଏବଂ ଅନ୍ୟଟି ଥିଲା, ସାଏଁ କରି ଉପରକୁ ଉଡି ଯାଉଥିବା କୌତୁକିଆ ଉଡାଜାହାଜ । ଚାବି ଦ୍ୱାରା ସ୍ପ୍ରିଙ୍ଗ୍‌କୁ କାର୍ଯ୍ୟକ୍ଷମ କରି ଉଭୟଟାକୁ ଗତିଶୀଳ କରାଇବା ଥିଲା ଭାରି ମଜାଦାର । ସେ ଭାବିଥିଲେ, ଗୁଡ୍‌ଲି ଖୁସିରେ ନାଚି ଉଠିବ ସେଗୁଡିକୁ ଦେଖି ।

ସେ ପ୍ରଥମେ ଖେଳନା ଦୁଇଟିକୁ ଅତ୍ୟନ୍ତ କାଉଁଦା ଦୃଷ୍ଟିରେ ନିରୀକ୍ଷଣ କରିଚାଲିଲା କିଛି କ୍ଷଣ । ସେଗୁଡିକ ଯେମିତି ତା' ମନୋରଞ୍ଜନ ପାଇଁ ଅନୁପଯୁକ୍ତ, ସେହିଭଳି ଭାବଟିଏ ମୁହଁରେ ଖେଳାଇ ସୁଧାକର ବାବୁଙ୍କୁ ଲକ୍ଷ୍ୟକରି କହିଲା :

- "ଏ ନକଲି ଜିନିଷଗୁଡା କିଏ ଆଣିଲା ?"

- "ଏସବୁ ନକଲି ବୋଲି କିଏ କହିଲା ? ଏସବୁ ପରା ପଣ୍ଡା ଭେରାଇଟି ଷ୍ଟୋରର ଜିନିଷ ! ଏକଦମ୍ ଅସଲି ଆଉ ଦାମିକା ବି ।"

- "ଓଃ ..... ମୁଁ ସେ ନକଲି କଥା କହୁନାଇଁ ବାବା ..... ତମେ ଜମା ବୁଝିନ । ହଉ ଶୁଣ, ମୁଁ ବୁଝେଇ ଦଉଚି । ଆଚ୍ଛା ମୋତେ କହିଲ, ଏଇ ରେଳ ଗାଡି ଆଉ ଉଡାଜାହାଜରେ ବସି ଆମେ କ'ଣ ଦୂର ଜାଗାକୁ ଯାଇପାରିବା ?"

- "ନାଇଁରେ ମା' ..... ଏଗୁଡା ପରା ଖେଳନା ! ତୋ ସାଙ୍ଗମାନେ ସବୁ କେମିତି ଖେଳନ୍ତି - ତୁ ଦେଖିନୁ କି ?"

- "ମୁଁ କାହିଁକି ସାଙ୍ଗମାନଙ୍କ ଭଳିଆ ହେବି ଯେ ? ମୋ' ପାଖରେ ତ ବହି, ଖାତା, ପେନ୍, ଗୁଣ୍ଡୁଚିମୂଷା, ବଣି ଚଢେଇ, ଗୋଲାପ ଫୁଲ, ଟିକି ବାଛୁରୀ ଯେତେସବୁ ଅସଲି ଜିନିଷ । ତମେ ଏଡୁଟିଏ ହେଲଣି ଆସି ..... ଅସଲି କ'ଣ ନକଲି କ'ଣ ଜାଣିନାହଁ ? ମୁଁ ମାମାଙ୍କୁ କହିବି, ସେ ତମକୁ ବୁଝେଇଦେବେ । ତା'ପରେ ତମେ ଏଗୁଡାକ ନେଇ ଫେରେଇଦେଇ ଆସିବ । ନାଇଁ ଯଦି ତମର ଆଉ କିଛି କାମ ନାଇଁ, ତେବେ ସେଇ ଯୋଉ ଛଉକୀ ବିଲେଇଟା, ଆମ ଶୁଆଟାକୁ ଦି' ଚାରିଥର ଝୁଣି ସାରିଲାଣି, ତାକୁ ନେଇଯାଇ ଛାଡିଦେଇ ଆସ କୋଉଠି ହେଲେ । ମୁଁ ତମକୁ ଟଫିଟିଏ ଦେବି ।"

ଅଗତ୍ୟା ଟଫିର ପ୍ରଲୋଭନରେ ସୁଧାକର ବାବୁ ବିରାଡିଟାକୁ ଦେଶାନ୍ତରୀ କଲେ ଓ ଖେଳନା ଦୁଇଟିକୁ ତା' ଦୃଷ୍ଟିର ଅନ୍ତରାଳକୁ ହଟାଇବାକୁ ପଡିଲା । ପରେ ପରେ ପ୍ରଣତି ଆଗରେ ସେ ଆଶଙ୍କା ବ୍ୟକ୍ତ କରିଥିଲେ କି ..... ବିନା ଖେଳକୁଦ, ବିନା ସାଙ୍ଗସାଥୀରେ ଗୁଡ୍‌ଲି ର ଅନେକ ସମୟ ଚିନ୍ତାମଗ୍ନ ରହିବା ଆଦୌ ଭଲ ଲକ୍ଷଣ ନୁହେଁ । ପ୍ରଣତି ସବୁ ବୁଝୁଥିଲେ; କିନ୍ତୁ ପିଲାଟାକୁ ତା'ର ରୁଚି ଆଉ ପ୍ରବୃତିରୁ ବଚିଂତ କରିବା କେତେଦୂର ଠିକ୍, ସେ କଥା ବୁଝିନପାରି ସେ ବ୍ୟସ୍ତହୋଇ ପଡୁଥିଲେ ।

ପ୍ରଣତି ଟିକେ ସୌଖୀନ୍ ମିଜାଜ୍‌ର । ଛୁଟିଦିନ ଗୁଡିକରେ ଗୁଡ୍‌ଲି କୁ ମନପସନ୍ଦର କୁର୍ତା ପିନ୍ଧାଇ ବଜାରକୁ କିମ୍ୱା ପଡୋଶୀଙ୍କ ଘରଆଡେ ବୁଲାଇନେବା ତାଙ୍କ ସଉକ । ଗୁଡ୍‌ଲି କୁ ଖୁସି ଦେଖିବାକୁ ଯେତେନୁହେଁ, ତା'ଠୁଁ ବେଶୀ ନିଜ ଖୁସି ପାଇଁ । ତା'ର ମାଆ ଭାବରେ ଗର୍ବବୋଧ କରିବାକୁ, ଅବସର ମିଳିଲେ ତାକୁ ନେଇ କୁଆଡେ ଟିକେ ବୁଲେଇ ନଆଣିଲେ ତାଙ୍କ ମନ ବୁଝୁନଥିଲା । ଗୁଡ୍‌ଲି ର ଚେହେରା ଓ ଚାଲିଚଳନ ମଧ୍ୟ ଥାଏ ପ୍ରଦର୍ଶନ ଯୋଗ୍ୟ ସାମଗ୍ରୀ ଭଳି ।

କୌଣସି ଏକ ଅପରାହ୍ନରେ ନୂଆ ଡ୍ରେସ୍‌ଟିଏ ପିନ୍ଧିଥିବା ଗୁଡ୍‌ଲି ସହିତ ବୁଲୁବୁଲୁ କଲୋନୀରେ ଦେଖା ହୋଇଗଲେ ମିସେସ୍ ମହାପାତ୍ର । ତାଙ୍କ ଝିଅ ଲୀନା ମଧ୍ୟ ଥାଏ ଗୁଡ୍‌ଲି ର ସହପାଠିନୀ । ଦେଖିବାକୁ ଡଉଲଡାଉଲ ..... ଠିକ୍ କଣ୍ଢେଇଟିଏ ପରି । ଯେହେତୁ ଗୁଡ୍‌ଲି ଥାଏ ସ୍କୁଲରେ ସମସ୍ତଙ୍କର ପ୍ରିୟ ଏବଂ ତା' ପରୀକ୍ଷା ନମ୍ବର ସବୁ ଥାଏ ଅନ୍ୟ ପିଲାମାନଙ୍କ ଠାରୁ ଢେର୍ ବେଶୀ, ତେଣୁ ଲୀନା ତାକୁ ଟକ୍କର ଦେବାର ପ୍ରଶ୍ନ ହିଁ ନଥାଏ । ଏଣୁ ସ୍ୱାଭାବିକ୍ ଭାବରେ ମିସେସ୍ ମହାପାତ୍ର ଈର୍ଷାଳୁ ଥାନ୍ତି ଗୁଡ୍‌ଲି ପ୍ରତି ।

ମିସେସ୍ ମହାପାତ୍ର ତାଙ୍କ ପଡୋଶୀ ମିସେସ୍ ମହାନ୍ତି ଙ୍କ ସହ ଗପସପରେ ମାତିଥିଲେ । ଗୁଡ୍‌ଲି ର ଚହଟ ରୂପଭେକ ଦେଖି ସେ ମିସେସ୍ ମହାନ୍ତି ଙ୍କୁ କହୁକହୁ କହି ପକାଇଲେ - ଅନାଥାଶ୍ରମରୁ ଆଣିଥିବା ପିଲାଟି ପାଇଁ ତ ଏତେ ! ନିଜ ରକ୍ତର ହୋଇଥିଲେ, କିକି ନାଟ କରୁନଥାନ୍ତେ ଏମାନେ ? ତୁଚ୍ଛାକୁ ଏତେ ନା ..... ଇତ୍ୟାଦି ।

ଅସଲ କଥା ହେଲା, ତାଙ୍କର ସେଭଳି ଆକ୍ଷେପ, ପ୍ରଣତି ଙ୍କ କାନରେ ପଡିବା ଭଳି ସ୍ୱରରେ ହିଁ ସେ କହୁଥିଲେ । ପ୍ରଣତି ଙ୍କ ମୁହଁ ଶୁଖିଗଲା । ଗୁଡ୍‌ଲି ତ ବିଚକ୍ଷଣ ! ସେ ମଧ୍ୟ କଥାଠାରୁ ଦୁର୍ଗନ୍ଧ ଠଉରାଇ ନେଲାପରି ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଯାଇ କହିଲା :

- "ଗୋଟାଏ କଥା ପଚାରିବି ଆଟିଂ । କହିବ ନା ?"

- "ମଲା, କହୁନୁ ? ଏତେ ଫୁଲେଇ ହଉଚୁ କ'ଣ ?" ତାଙ୍କ ଅସହିଷ୍ଣୁତା ଥିଲା ସ୍ପଷ୍ଟ ।

- "ଛୋଟ ପିଲାଙ୍କୁ କ'ଣ ସେମିତି କହନ୍ତି ?" ପ୍ରଣତି ନମ୍ର ପ୍ରତିବାଦ କଲେ ।

- "ଆଉ କେମିତି କହିବି ? ଆମକୁ ଯେମିତି ଆସେ ନା ?" ମିସେସ୍ ମହାପାତ୍ର କହିଲେ ।

- "ଆଚ୍ଛା ଆଟିଂ ..... ଲୀନା ତମ ରକ୍ତର ଝିଅ ନା ?" ଗୁଡ୍‌ଲି ସହଜ ଭାବରେ କହିଲା ।

- "ଆଲୋ, ମୁଁ ତାକୁ କୋଉ ଅନାଥାଶ୍ରମରୁ ଗୋଟେଇ ଆଣିଚି ନା କ'ଣ ?

- "ତମ ରକ୍ତର ଝିଅ ଯଦି, ସେ ପୁଣି ପରୀକ୍ଷାରେ ଏତେ କମ୍ ନମ୍ବର ରଖୁଚି କେମିତି ?" ଗୁଡ୍‌ଲି ଆଖିର ତୀର୍ଯ୍ୟକ୍ ଚାହାଣି ଥିଲା ଦେଖିଲା ଭଳି ।

ମିସେସ୍ ମହାପାତ୍ର ଙ୍କ ରକ୍ତ ତାତିଗଲା । ଦାନ୍ତ କଡମଡ କରି ସେ କ'ଣ ଗୁଡାଏ ବକିଯିବେ ବୋଲି ଭାବିଥିଲେ । କିନ୍ତୁ ପିଲାଟା ଯଦି ତାଙ୍କୁ ମୁହେଁ ମୁହେଁ ଜବାବ ଦିଏ ? ସେ ଅଟକି ଗଲେ । ପିଲାଟାର ପୁଣି ସାହାସକୁ ଦେଖ । କେତେ ବଡବଡ କଥା କହୁଛି ! ପରେପରେ କଥାଟାକୁ ହଜମ କରୁକରୁ ସେ କହିଲେ :

- "ତ କ'ଣ ହେଲା ସେଇଠୁ ?"

- "ଯାହା ହେଲା ଆଟିଂ ..... ମୁଁ ତ ପିଲାଲୋକ ..... ତମକୁ କ'ଣ ବା ବୁଝେଇବି ? ନିଜ ମନକୁ ପଚାରି ବୁଝ । ଯାଉଛି ଆଟିଂ ..... ବାଏ ।"

ଖୁବ୍ ଅପ୍ରସ୍ତୁତ ହୋଇପଡି ମୁହଁ ମୋଡିଦେବା ବ୍ୟତୀତ ଆଉ କିଛି କରିବାର ନଥିଲା ମିସେସ୍ ମହାପାତ୍ରଙ୍କର । ମନଦୁଃଖରେ ଗୁଡ୍‌ଲି କୁ ଭିଡିଧରି ପ୍ରଣତି ବଜାର ଛକ ଆଡେ ଚାଲି ଯାଇଥିଲେ ।

କିଛି ସମୟ ପରେ ଗୁଡ୍‌ଲି ଅବଶ୍ୟ ବଜାର ରୁ ଫେରି ଆସିଥିଲା, କିନ୍ତୁ ଫେରିନଥିଲା ତା'ର ପ୍ରଗଲ୍‌ଭତା । ଚପଳ ଛନ୍ଦଭରା ତା' ମୁହଁଟି ଦିଶୁଥିଲା ମେଘାକ୍ରାନ୍ତ । ତା'ର ସ୍ପର୍ଶକାତର ମନଟା ଖୁବ୍ ଆହତ ହେଲାଭଳି ଜଣାପଡୁଥିଲା ।

ଏଇଠାରୁ ଯେମିତି ଆରମ୍ଭ ହେଲା, ତା' ଭାବାନ୍ତର ର ଅନ୍ୟ ଏକ ପର୍ଯ୍ୟାୟ । ଦିନକୁ ଦିନ ତା'ର ଗୁମ୍‌ଗୁମ୍ ଭାବ ବଢିଲା ସିନା, କମିଲା ନାହିଁ । ତା' ପ୍ରିୟ ଫୁଲ ଗଛ, ହଳଦୀବସନ୍ତ ..... ଏପରିକି ତା'ର ସ୍ୱରକୁ ଅବିକଳ ନକଲ କରି ହୁରି ପକାଉଥିବା ଅଥୟ ଶୁଆଟି ମଧ୍ୟ ତାକୁ ଦେଇ ପାରୁନଥିଲା କୌଣସି ଆନନ୍ଦର ସନ୍ଧାନ ।

ସଙ୍କଟ ବଢି ଯାଉଥିଲା ପ୍ରଣତିଙ୍କର । ଗୁଡ୍‌ଲି ର ଭଲମନ୍ଦ, ହସକାନ୍ଦ ଓ ଜର ଆପତି ..... ସବୁକିଛି ସମାଧାନ କରୁଥିବା ପ୍ରଣତି ଙ୍କ ପାଖରେ ସେ ଠିଆ କରିଥିଲା ଅସମାହିତ ସମସ୍ୟାଟିଏ । ପ୍ରଣତି ନାଚାର ହୋଇ ପଡିଥିଲେ, ତା'ର ନିର୍ବେଦ ଅନ୍ୟମନସ୍କତା ଲକ୍ଷ୍ୟକରି । ଗୁଡ୍‌ଲି ର ସେଭଳି ଉଦାସୀନତାର ଯନ୍ତ୍ରଣାଦାୟକ ଦୁଇଟି ଦିନ ବିତି ଯାଇଥାଏ ।

ତୃତୀୟ ଦିନ ସୁଧାକର ବାବୁ ଖବରକାଗଜ ପଢୁଥିଲାବେଳେ ତାଙ୍କ ପଛରୁ ଆସ ଉଙ୍କି ମାରିଲା ଗୁଡ୍‌ଲି । ସେ ସବୁବେଳେ ପାଖକୁ ଆସେନା । ଖବରକାଗଜ ପଢା ବନ୍ଦକରି ସେ ତାକୁ କୋଳକୁ ଆଉଜାଇ ଆଣିଲେ । ଗେହ୍ଲା କଲାଭଳି କହିଲେ :

- "କ'ଣ କିଛି କହିବୁ କି ମା' ?"

- "ଆଚ୍ଛା କହିଲ ବାବା ..... ସମସ୍ତେ କହୁଛନ୍ତି, ମୁଁ କୁଆଡେ ତମ ରକ୍ତର ଝିଅ ନୁହଁ ..... ଯାର ମାନେଟା କ'ଣ ? କ'ଣ ମୁଁ ସତରେ ତମର ଝିଅ ନୁହଁ ?"

- "କିଏ କହୁଚିରେ ମା' ?"

- "ମହାପାତ୍ର ଆଟିଂ କହୁଥିଲେ ..... ପୁଣି ଅନ୍ୟମାନେ ବି ..... ମୋ ସାଙ୍ଗମାନେ ବି ସେଇ ଏକାକଥା କହୁଛନ୍ତି ।"

ଅସଲ ସମସ୍ୟାଟି ଏବେ ସ୍ପଷ୍ଟ ହେବାରେ ଲାଗିଥିଲା । ସେ ଦେଖିଲେ, ପିଲାଟାର ମତିଗତି ଯେଭଳି ବିଗିଡିଯାଇଛି, ତାକୁ ଏଣ୍ଟୁତେଣ୍ଟୁ କିଛି ଉତର ଦେଲେ ବିପଦ । ତାକୁ ବହଲେଇବା ଅର୍ଥ ଆହୁରି ଅନେକଗୁଡିଏ ଜଟିଳ ପ୍ରଶ୍ନକୁ ଆହ୍ୱାନ କରିବା । ସେ କିଛି ସମୟ ପାଇଁ ଚୁପ୍ ହୋଇଗଲେ । ଛୋଟ ପିଲାଟି ମୁହଁରୁ ଏଭଳି ପ୍ରଶ୍ନ ତାଙ୍କୁ ଚିନ୍ତାରେ ପକାଇଦେଲା ।

ଦୈବାତ୍ ସେତିକିବେଳେ ପ୍ରଣତି ଛାତ ଉପରୁ ଆସି ପହଚିଂଗଲେ । ଗୁଡ୍‌ଲି ଯାଇ ମାମାକୁ ଦୁଇ ହାତରେ କୁଣ୍ଢାଇ ଧରି ସେଇ ଏକା ଅଭିଯୋଗ କଲା, ମହାପାତ୍ର ଆଟିଂଙ୍କ ବିଷୟରେ ।

- "ଓଃ ଏଇ କଥା ? ଦେଖିଲୁ ତ, ତୋ' କଥା ଶୁଣି ଆଟିଂ କେମିତି ଚୁପ୍ ହେଇଗଲେ ?"

- "ତା' ବୋଲି ସେମାନେ ତମକୁ ଏମିତି କାହିଁକି କହିବେ ଯେ ?"

ସୁଧାକର ବାବୁ ହସ୍ତକ୍ଷେପ କରି କହିଲେ, "କିଏ କ'ଣ କହୁଚି, କହୁ । ତୁ ତୋ' ବାକ୍ସରେ ଯୋଉ ଫଟୋଟି ରଖିଛୁ, ସିଏ ତୋର ବୋଉ ବୋଲି ତୁ ତ ଜାଣିଚୁ! ତୁ ତାଙ୍କର ଯେମିତି ଝିଅ ..... ସେମିତି ମୋର ଝିଅ ..... ସେମିତି ତୋ' ମାମାର ଝିଅ ..... ସେମିତି ସମସ୍ତଙ୍କର ଝିଅ । ଏଥିରେ ଅସୁବିଧା କ'ଣ ?

- "ତେବେ ମୁଁ ବି ମହାପାତ୍ର ଆଟିଂଙ୍କର ବି ଝିଅ ?" ସେ ଆଖି ନଚାଇ ପ୍ରଶ୍ନ କଲା ।

- "ନିଶ୍ଚୟ ..... ତୁ ତାଙ୍କର ବି ଝିଅ !"

- "ଆଚ୍ଛା ତେବେ ..... ଏକଥା ମହାପାତ୍ର ଆଟିଂଙ୍କୁ ବୁଝେଇ ଦଉନ ? ଠିକ୍ ଅଛି ..... ମୁଁ ବୁଝେଇଦେବି ..... ଯୋଉଦିନ ଲୀନା ମୋତେ ତାଙ୍କ ଘରକୁ ଡାକିବ, ମ୍ୟାଥ୍ ବୁଝେଇ ଦବାକୁ, ସେଇଦିନ ।" ସେ ଚୁପ୍ ହୋଇଗଲା ।

ସୁଧାକର ବାବୁ ଲକ୍ଷ୍ୟକଲେ, ଚିନ୍ତାର କୁଟିଳ ରେଖାସବୁ ପିଲାଟାର ମୁହଁ ଉପରୁ ଲିଭିବା ଆରମ୍ଭ କରୁଛି । ଗୁଡ୍‌ଲି ଟିକେ ହସିଦେଲା । ରକ୍ଷା ହେଇଚି, ପିଲାଟା ସହଜରେ ବୁଝିଗଲା ।

ସେହି ସମୟ ପାଇଁ ଯଦିଓ ବିପଦ ଟଳିଗଲା, ତଥାପି ପରବର୍ତୀ ସମୟରେ ଗୁଡ୍‌ଲି ର ଆଚରଣ କି ପ୍ରକାର ରୂପ ନେବ, ତାହା କିଏ କହିବ ? ସୁଧାକର ବାବୁ ଚିନ୍ତାମୁକ୍ତ ହୋଇ ପାରୁନଥାନ୍ତି ।

ପାଖାପାଖି ମାସଟିଏ ଅତିକ୍ରାନ୍ତ ହୋଇଥାଏ । ଯେଉଁଦିନ ତା' ସ୍କୁଲର ବାର୍ଷିକ ଉତ୍ସବ ପାଇଁ ଉଦ୍ଦିଷ୍ଟ ମନୋରଞ୍ଜନ କାର୍ଯ୍ୟକ୍ରମରେ ସାମିଲ ହେବ ବୋଲି ଗୁଡ୍‌ଲି ସହର୍ଷ ରାଜି ହୋଇଗଲା ଏବଂ ତା' ସାଙ୍ଗ ଲୀନାକୁ ବି ମନାଇପାରିଲା, ସେଦିନ ସୁଧାକର ବାବୁ ଏବଂ ପ୍ରଣତି ଖୁବ୍ ଆଶ୍ୱସ୍ତି ହୋଇଥିଲେ ।

ସ୍କୁଲ କର୍ତୃପକ୍ଷଙ୍କ ଦ୍ୱାରା ସାମୟିକ ଭାବେ ନିଯୁକ୍ତ ଜଣେ ଡ୍ରାମା ସାର୍‌ଙ୍କ ଉପରେ ନ୍ୟସ୍ତଥିଲା ରିହର୍ସାଲର ଦାୟିତ୍ୱ । ସୁଠାମ, ସୁନ୍ଦର ଯୁବା ମଣିଷ । କଣ୍ଠ ସ୍ୱର ଟି ବି ଭାରି ମିଠା । ତାଙ୍କୁ ସହାୟତା କରିବା ପାଇଁ ସ୍ୱତଃପ୍ରବୃତ ଭାବରେ ଆଗେଇ ଆସିଲେ ସ୍କୁଲର ଜଣେ ମିଷ୍ଟ୍ରେସ୍

ଆପାତତଃ ରିହର୍ସଲ ପାଇଁ ପିଲାମାନଙ୍କୁ ଏକଜୁଟ କରାଇବା ଏବଂ ଶୃଙ୍ଖଳା ରକ୍ଷା କରିବା କାର୍ଯ୍ୟଟି ସେ ତୁଲାଉଥାନ୍ତି । ଯେହେତୁ ସ୍କୁଲଠାରୁ ସୁଧାକର ବାବୁଙ୍କ ଘରର ଦୂରତା ବେଶୀ ନୁହେଁ, ପିଲା ଦୁଇଜଣ ଚାଲି ଚାଲି ଯିବା ଆସିବା କରିବାରେ ନଥିଲା କୌଣସି ସମସ୍ୟା ।

ସେଦିନ ଥିଲା ରବିବାର । ଅପରାହ୍ନ ସମୟ । ପିଲାମାନଙ୍କର ଦ୍ରୁତ ପ୍ରସ୍ତୁତିକୁ ଆଖିରେ ରଖି ରିହର୍ସଲର ସେଭଳି ବ୍ୟବସ୍ଥା କରିଥାଆନ୍ତି କର୍ତ୍ତୃପକ୍ଷ । ଘରୁ କୌଣସି ଜରୁରୀ ଡାକରା ପାଇ ମିଷ୍ଟ୍ରେସ୍ ଜଣକ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ପଳାଇବା ପାଇଁ ବାଧ୍ୟହେଲେ । କ୍ଲାସ୍ ରୁମ୍ ଓ ମେନ୍ ଗେଟ୍ ର ଚାବି ଜିମା ରହିଲା, ଦାୟିତ୍ୱବାନ ଗୀତ ସାରଙ୍କ ପାଖରେ । ଅନ୍ୟ ଉପାୟ ନଥିଲା ।

ରିହର୍ସାଲ ସାରି ଯଥା ସମୟରେ ପିଲାମାନେ ବିଦାୟ ନେଲେ, କେବଳ ଗୁଡ଼ଲି ଓ ଲୀନା କୁ ଛାଡି । ଏକେ ତ' ସେମାନେ ଘର ପାଖର ପିଲା ଏବଂ ଦ୍ୱିତୀୟତଃ ଗୀତ ଶିଖିବାରେ ସେମାନଙ୍କ ଅବିଚଳିତ ନିଷ୍ଠା - ଏତକ ଉପରେ ଆସ୍ଥା ରଖି ତାଙ୍କୁ ଆଉ କିଛି ସମୟ ଅଟକାଇ ଦେଇଥିଲେ ଡ୍ରାମା ସାର୍ ମହୋଦୟ ।

ତେବେ ସୂର୍ଯ୍ୟାସ୍ତ ପୂର୍ବରୁ ପିଲା ଦି'ଜଣ ଯାକ ରିହର୍ସାଲ ସାରି ଆସି ପହଚିଂ ଯାଇଥିଲେ ମେନ୍ ଗେଟ୍ ପାଖରେ । ସ୍କୁଲ ହତା ଥାଏ ଶୂନ୍‌ଶାନ୍ । ହଠାତ୍ ଲୀନା କହି ପକାଇଲା - "ଆରେ, ମୋ' ଟିଫିନ୍ ଡବାଟା ସ୍କୁଲରେ ଛାଡିଦେଇ ଆସିଲି । ସାଙ୍ଗେ ସାଙ୍ଗେ ଯାଇ ନେଇ ଆସୁଚି ।"

- "ଚଟଂଳ ଯା', ମୁଁ ଗେଟ୍ ବାହାରେ ଠିଆ ହୋଇଛି ।" ଗୁଡ଼ଲି କହିଲା ।

ଲୀନା ଦୌଡି ଦୌଡି ଚାଲିଗଲା କ୍ଲାସ୍ ରୁମ୍ ଆଡେ ।

ସେତେବେଳକୁ ଡ୍ରାମା ସାର୍ ବ୍ୟସ୍ତଥାନ୍ତି ଘରର ଝରକା କବାଟ ବନ୍ଦ କରିବାରେ ।

ମେନ୍ ଗେଟ୍ ଟପି କିଛିବାଟ ଚାଲି ଆସିଲା ପରେ ଗୁଡ଼ଲି ଲକ୍ଷ୍ୟକଲା - ଲୀନା ଫେରୁନାହିଁ । ଏପଟେ ସନ୍ଧ୍ୟା ହୋଇ ଆସୁଥିବାର ଡର, ସେପଟେ ଲୀନାର ଅନ୍ତର୍ଦ୍ଧାନ - ଏ ଦୁଇଟିର ଭାରସାମ୍ୟ ସମ୍ଭାଳି ନପାରି ଗୁଡ଼ଲି ମେନ୍ ଗେଟ୍ ପାଖକୁ ଫେରିଆସି ଦେଖିଲା, ଲୀନା ଦିଶୁନାହିଁ କେଉଁଠି । ଅଗତ୍ୟା ସେ କ୍ଲାସ୍ ରୁମ୍ ଆଡକୁ ଚାଲିଲା । କେହି କୁଆଡେ ନାହାଁନ୍ତି । ତାକୁ ବି ଡର ଲାଗୁଥାଏ । କ୍ଲାସ୍ ରୁମ୍‌ର କବାଟ ମଧ୍ୟ ଆଉଜା ହୋଇ ରହିଛି, ତାଲା ପଡିନାହିଁ ।

ଝରକାର କବାଟ ଅଳ୍ପ ଫାଙ୍କ ଥିଲା । କ'ଣ ଭାବି, ସେ ବାହାରେ ଠିଆହୋଇ ଉଙ୍କିମାରି ଘର ଭିତରକୁ ଅନେଇଲା । ଏ କ'ଣ ? ଡ୍ରାମା ସାର୍ ଲୀନାକୁ ଭିଡି ଧରିଛନ୍ତି ତାଙ୍କ କୋଳରେ । ପିଲାଟା ଛାଟିପିଟି ହଉଛି । ସେ ତାକୁ ଚକୋଲେଟ୍ ଟି ଦେଲେ । ଲୀନା ସେଇଟିକୁ ରାଗରେ ଦୂରକୁ ଫିଙ୍ଗିଦେଲା । ପରେ ପରେ ସେ ଦେଖିଲା, ତାକୁ ଗେଲ କଲା ଭଳି ସେଇ ସାରଙ୍କ ମୁହଁଟି ଲୀନା ମୁହଁକୁ ଲାଗି ଆସୁଛି । ତା' ସାଙ୍ଗର ଯନ୍ତ୍ରଣାକ୍ଲିଷ୍ଟ ମୁହଁଟି ତାକୁ ଉତ୍ୟକ୍ତ କରିବା ପାଇଁ ଯଥେଷ୍ଟ ଥିଲା ।

ଏ ବିଷମ ପରିସ୍ଥିତିରେ କ'ଣ ତା'ର କର୍ତ୍ତବ୍ୟ ? ତା' ମୁଣ୍ଡ କାମ କରୁନଥାଏ । ଭିତରକୁ ଚାଲିଯିବ କି ? ନା ..... ନା ..... କାଳେ ସେ ଲୋକଟା ତାକୁ ବି କୁଣ୍ଢେଇ ପକେଇବ ! ଏଥର ଲୋକଟା ତାକୁ ଦିଶୁଥାଏ, ସେ ସିରିୟଲରେ ଦେଖିଥିବା ଗୋଟାଏ ଗୁଣ୍ଡା ଆଉ ବଦ୍‌ମାସ ପରି ଭୟାନକ ।

ତତ୍‌କ୍ଷଣାତ୍ ତା' ବିବେକର ନିର୍ଦ୍ଦେଶ ଥିଲା ଅଲଂଘ୍ୟ । ଆଉ କିଛି ଚିନ୍ତା କରିବା ପୂର୍ବରୁ ସ୍କୁଲ ହତାରୁ ତା' ହାତକୁ ଆସି ଯାଇଥିଲା ତୀକ୍ଷ୍ଣ ଇଟା ଖଣ୍ଡିଏ । ସେଇଟିକୁ ସେ ଝରକାରେ ହାତ ଗଳାଇ ଖୁବ୍ ଜୋର୍‌ରେ ଫିଙ୍ଗିଲା, ଲୋକଟାର ମୁଣ୍ଡକୁ ଲକ୍ଷ୍ୟକରି । ତା' ଉଦ୍ଦେଶ୍ୟ ହେଲା ଅବ୍ୟର୍ଥ । ବାଜିଲା, ବଦ୍‌ମାସ୍‌ଟାର ଠିକ୍ କାନମୁଣ୍ଡାରେ । ଖଣ୍ଡିଆ ହୋଇଗଲା କି କ'ଣ ? ସେ ନିଜ କାନମୁଣ୍ଡାକୁ ଚାପିଧରି ଲୀନାକୁ ଛାଡିଦେଲା ।

ଲୀନା ଅବଶ୍ୟ ଦୌଡି ଦୌଡି ପଳାଇଗଲା ମେନ୍ ଗେଟ୍ ଆଡେ । କିନ୍ତୁ ସେ ନିଜେ ଦୌଡି ପଳାଇବା କିଭଳି ବିପଜ୍ଜନକ ହେବ, ତାହା ସେ ଜାଣି ପାରିଥିଲା । ଅତଏବ ତାକୁ ଚଟ୍‌କରି ଲୁଚି ଯିବାକୁ ପଡିଲା, ଗୋଟାଏ କନ୍ଦି ଜାଗା ଦେଖି । କିନ୍ତୁ ଜୁଳୁଜୁଳୁ ଆଖିରେ ଚାରିଆଡକୁ ଅନାଇ ରହିବା ତା'ର ଥାଏ ଅବ୍ୟାହତ ।

ମୁଣ୍ଡରୁ ରକ୍ତ ଝରୁଥିବା ଅବସ୍ଥାରେ ଲୋକଟି ବାହାରି ଆସିଥାଏ ରୁମ୍ ଭିତରୁ ଗୋଟେ ଝଟ୍‌କାରେ । ଲୀନା ନୁହେଁ, ଅଜଣା ଦୁର୍ବୃତଟିକୁ ଠାବ କରିବା ଥାଏ ତା'ର ଲକ୍ଷ୍ୟ । ଅତ୍ୟଧିକ ଆଶଙ୍କା ଏବଂ ଉତ୍କଣ୍ଠା, ଲୋକଟାର ହୃତ୍‌ସ୍ପନ୍ଦନକୁ କ୍ଷିପ୍ରତର କଲାଭଳି ଲାଗୁଥାଏ । ଅତ୍ୟଧିକ ଉତେଜନା ହେତୁ ସିଏ ଗୁଡ଼ଲି କୁ ସନ୍ଧ୍ୟାର ଆସନ୍ନ ଅନ୍ଧାର ଭିତରେ ଆବିଷ୍କାର କରିପାରିବା ସମ୍ଭବ ହେଉନଥାଏ । ଗୁଡ଼ଲି କିନ୍ତୁ, ଲୋକଟି ଉପରେ ନଜର ରଖିଥାଏ । ଅଗତ୍ୟା ମେନ୍ ଗେଟ୍‌ରେ ତାଲା ପକେଇ ଦେଇ ଯଥାଶୀଘ୍ର ପଳେଇଗଲା ଲୋକଟା ।

ହେ ଭଗବାନ ..... ଏବେ ସେ କ'ଣ କରିବ ? ତାକୁ ଭୀଷଣ ଅବସନ୍ନ ଲାଗୁଥାଏ । କେମିତି ବା ସେ ଏଠୁ ବାହାରି ଚାଲିଯାଇ ପାରିବ ତା' ଘରକୁ ? କ'ଣ ହେଉଥିବ, ତା' ବାବା ଆଉ ମମ୍ମିଙ୍କ ଅବସ୍ଥା ? "ଗୁଡ଼ଲି ବହୁତ ଆଗରୁ ଘରକୁ ପଳାଇଥିଲା" - ଏତିକି ତଥ୍ୟ ବ୍ୟତୀତ ଲୀନା ବା ଆଉ କ'ଣ କହି ପାରୁଥିବ ତାଙ୍କୁ ? ସାରାରାତି ସେ କେମିତି ଏଠି ରହିବ ଅନ୍ଧାରରେ ? ଖାଇବ କ'ଣ ? ଶୋଇବ କେଉଁଠି ? ଯଦି ଭୂତପ୍ରେତ ବାହାରନ୍ତି ..... ?

ଏହିଭଳି ଅସଂଖ୍ୟ ପ୍ରଶ୍ନର ଘୂର୍ଣ୍ଣିଝଡରେ ହାଉଳି ଖାଇ ସେ ଦଉଡି ଆସି ମେନ୍ ଗେଟ୍‌କୁ ଖୁବ୍ ଜୋର୍‌ରେ ଠେଲି ଧଡଧଡ କଲା । କାନ୍ଦି କାନ୍ଦି ଡକାହକା କରିବାକୁ ଲାଗିଲା ବଡ ପାଟିରେ । ହେଲେ ମୁଖ୍ୟ ରାସ୍ତାଠାରୁ ଦୂରରେ ଥିବା ସେ ନିଶୂନ୍ ଜାଗା ଆଡେ, ସନ୍ଧ୍ୟା ପରେ କିଏ ଆସିବେ ବା କାହିଁକି ?

ଚାରିଆଡୁ ଅନ୍ଧାର ର ପନ୍‌ଝାଟିମାନ ଆସି ତା' ତଟିଂକୁ ଚିପିଦେଲା ପରି ଅବସ୍ଥା । ଦେହହାତ ଝୋଲାମାରି ଯାଉଥାଏ । ଶେଷକୁ ସେ ସ୍କୁଲ ଘର ବାରଣ୍ଡା ଉପରକୁ ଯାଇ ସେଇଠି ତଳେ ଶୋଇପଡିଲା ।

ସୁଧାକର ବାବୁ ଆଉ ପ୍ରଣତି ବାତଚକ୍ର ପରି ଘୂରି ବୁଲୁଥାନ୍ତି ଗୁଡ୍‌ଲି କୁ ଖୋଜି ଖୋଜି । ଲୀନାକୁ ପଚରାପଚରି କଲାପରେ, ଗୁଡ୍‌ଲି କୁ ଯେକେହି ଅପହରଣ କରିନେଇଛି, ସେଥିରେ ତାଙ୍କର ଆଉ କୌଣସି ସନ୍ଦେହ ନଥାଏ । ଗୁଡ୍‌ଲି ବିଷୟଟି ବ୍ୟତୀତ, ସ୍କୁଲ ଘରେ ଆଉ ଯାହାସବୁ ଘଟିଲା, ସେ ବିଷୟରେ ଲୀନା ପାଟି ଫିଟାଉ ନଥାଏ । ସେ ମୂକ ପାଲଟି ଯାଇଥାଏ । ରାତିସାରା ତାକୁ ପ୍ରବଳ ଜ୍ୱର ହେଲା । ଏହା ଭିତରେ ସୁଧାକର ବାବୁ ଏଫ୍.ଆଇ.ଆର୍. ଦେଇ ସାରିଥାନ୍ତି ଥାନାରେ ।

ସକାଳକୁ ଲୀନା ପାଟି ଖୋଲିଲା । ସବୁକଥା ଗୋଟି ଗୋଟି କରି ମିସେସ୍ ମହାପାତ୍ର ଙ୍କୁ କହିଲା ପରେ, ସେ ସ୍ଥାନରେ ସୃଷ୍ଟିହେଲା ପ୍ରବଳ ଉତେଜନା । ଆରମ୍ଭ ହେଲା ଖୋଳତାଡ । ପ୍ରବଳ ହୈ ଚୈ ଯୋଗୁଁ ହୁଲସ୍ଥୁଲ ହୋଇ ପଡିଲା ସ୍କୁଲ ପାଖ ପରିସର । ସେତେବେଳକୁ ଡ୍ରାମା ସାର୍ ନାମକ ସେହି ଦୁର୍ବୃତ ଜଣକ ଫେରାର୍ । ସ୍କୁଲର ଫାଟକ ଧୂଳିସାତ୍ ହେବା ପୂର୍ବରୁ ପ୍ରଧାନଶିକ୍ଷକ ଙ୍କ ଉପସ୍ଥିତିରେ ଡୁପ୍ଲିକେଟ୍ ଚାବି ସାହାଯ୍ୟରେ ତାଲା ଖୋଲା ଯାଇଥିଲା ।

ସ୍କୁଲ ବାରଣ୍ଡାରେ, ତଳେ ମୁହଁ ମାଡି ଶୋଇ ରହିଥିଲା ଗୁଡ୍‌ଲି । ଚେତା ନଥିଲା ।

ନିର୍ବେଦ ଗୁଡ୍‌ଲି କୁ ଡାକ୍ତରଖାନାରେ ପହଚାଂଇଲା ବେଳକୁ ସୁଧାକର ବାବୁ ଦିଶୁଥାନ୍ତି ମୃତବତ୍ । ପ୍ରଣତି ତ ଘଡିକୁ ଘଡି ହୋଇ ପଡୁଥାନ୍ତି ଚେତାଶୂନ୍ୟ । ଈଶ୍ୱର ଙ୍କୁ ଶତ ଧନ୍ୟବାଦ । ଡାକ୍ତରଙ୍କ ଅକ୍ଲାନ୍ତ ପରିଶ୍ରମ ଫଳରେ ଗୁଡ୍‌ଲି ର ଚେତା ଫେରିଲା । କିନ୍ତୁ ଦିଶୁଥାଏ ଖୁବ୍ ଦୁର୍ବଳ ଓ ଚଳତ୍ ଶକ୍ତିହୀନ ।

ମୁମୂର୍ଷୁ ଗୁଡ୍‌ଲି ସେମାନଙ୍କୁ ଆସ୍ତେ ଆସ୍ତେ କହୁଥାଏ ଗତ ରାତିର କଥାସବୁ । ରାତିର ଅନ୍ଧାର ଓ ପେଟର ଭୋକ ସହିତ ସେ ଯେଉଁଭଳି ଲଢେଇ କଲା, ତା'ର ବର୍ଣ୍ଣନା ଥିଲା ହୃଦୟ ବିଦାରକ । ଡାକ୍ତରଖାନା ବାହାରେ ଉତ୍ୟକ୍ତ ଜନତାଙ୍କ କୋଳାହଳ ତୀବ୍ରତର ହେବାରେ ଲାଗିଥାଏ । ଅବଶ୍ୟ ସେତେବେଳକୁ ଡ୍ରାମା ସାର୍ ନାମଧେୟ ସେଇ ଉଦ୍‌ଭ୍ରାନ୍ତ ଯୁବକ ଏବଂ ଦାୟିତ୍ୱ ଖିଲାଫ୍ କରିଥିବା ମିଷ୍ଟ୍ରେସ୍ ଜଣକ ଥାଆନ୍ତି ପୁଲିସ୍ କବ୍‌ଜାରେ ।

ଉପସ୍ଥିତ ଜନତାଙ୍କ ଭିତରେ ଗୁଞ୍ଜରଣ - ଯଦି ଗୁଡ୍‌ଲି ନଥାନ୍ତା, ତେବେ ଲୀନାର ଅବସ୍ଥା ହୋଇଥାନ୍ତା କ'ଣ ? ପିଲାଟାର ଉପସ୍ଥିତ ବୁଦ୍ଧି ଓ ସାହସର ତାରିଫ୍ ଥାଏ ସମସ୍ତଙ୍କ ତୁଣ୍ଡରେ । ସେଠାରେ ଥିବା ସାମ୍ବାଦିକ ମାନଙ୍କ ନିକଟରେ କେହି କେହି ମଧ ଦାବିକରି ବସିଲେ - ଗୁଡ୍‌ଲି ର ନାଁକୁ ଜାତୀୟ ସାହସିକତା ପୁରସ୍କାର ପାଇଁ ସୁପାରିଶ କରାଯାଉ ସରକାରଙ୍କୁ ।

ଡାକ୍ତରଖାନା ଖଟିଆରେ ଶୋଇ ରହିଥାଏ ଗୁଡ୍‌ଲି । ଖଞ୍ଜା ଯାଇଥାଏ ସାଲାଇନ୍ ସରଞ୍ଜାମ । ଅସୁସ୍ଥତା ସତ୍ୱେ ତା'ର ସେଇ ସ୍ନିଗ୍ଧ ମୁହଁଟି ଦିଶୁଥାଏ ଯେମିତି ଆହୁରି ଗରୀୟାନ୍ । ତତ୍ପର ଥାଆନ୍ତି ନର୍ସମାନେ ଓ ଡାକ୍ତର ଜଣକ । ପିଲାଟା ଉପରେ ହାତ ପକାଇ ସୁଧାକର ବାବୁ ଆଉ ପ୍ରଣତି ବସିଥାନ୍ତି ଦୁଇଟି ଷ୍ଟାଚ୍ୟୁ ଭଳି ।

ପହଚିଂଲେ ମିସେସ୍ ମହାପାତ୍ର । ଗୁଡ୍‌ଲି ପାଖକୁ ଆସି ସେ ତା' କପାଳରେ ଚୁମାଟିଏ ଦେଲେ । ପିଲାଟା ପାଖରେ ଯେମିତି ଏତେ ଟିକେ ହୋଇ ଯାଇଛନ୍ତି, ସେମିତି ସେ ଦିଶିବାକୁ ଲାଗିଲେ । ପ୍ରାର୍ଥନା କଲାଭଳି ସେ କିଛି ସମୟ ପାଇଁ ଆଖିକୁ ବୁଜି ରଖିଲେ । ପରେ ପରେ ଆଖିର ଲୁହକୁ ରୋକିବା ଆଉ ସମ୍ଭବ ନଥିଲା ।

ଖୁବ୍ ଧିମା ସ୍ୱରରେ ଗୁଡ୍‌ଲି କହିଲା :

- "ତମେ କ'ଣ ଆଟିଂ ଛୋଟ ପିଲା ହେଇଚ ଯେ କାନ୍ଦିବ ? ମୋର କିଛି ହବନାହିଁ । ତମେ ଦେଖିବ, କାଲି ସକାଳୁ ଲୀନା ଆଉ ମୁଁ ସାଙ୍ଗହୋଇ ଖେଳିବୁ ..... ସ୍କୁଲକୁ ବି ଯିବୁ । ବାବା ପରା କହିଛନ୍ତି, ମୁଁ ଯାହା ରକ୍ତର ହେଲେ କ'ଣ ହେଲା - ମୁଁ ବାବାଙ୍କ ଝିଅ, ମମ୍ମିଙ୍କ ଝିଅ ..... ତମ ଝିଅ ..... ଆଉ ସମସ୍ତଙ୍କର ଝିଅ ।"

ତା'ପରେ ସେ ହସୁଥିବା ଡାକ୍ତରଙ୍କୁ ଚାହିଁ କହିଲା :

- "କ'ଣ ଡାକ୍ତର ଅଙ୍କଲ୍, ମୁଁ ସମସ୍ତଙ୍କର ଝିଅ ନା ?"

ଡାକ୍ତର ବାବୁଙ୍କ ମୁହଁରୁ କୌଣସି ଭାଷା ବାହାରୁନଥାଏ । ସୁଧାକର ବାବୁ ଆଉ ପ୍ରଣତି ଉଭୟ ଚମକି ପଡିଲେ, ଗୁଡ୍‌ଲି ର କଥା ଶୁଣି । ତା'ର ବାକ୍‌ଚାତୁରୀ ରହିଥିଲା ଅତୁଟ । ସମସ୍ତଙ୍କ ପାଇଁ ତା'ର ସେଭଳି ପିଲାଳିଆ ପ୍ରବୋଧନା ଥିଲା ଖୁବ୍ ମର୍ମସ୍ପର୍ଶୀ । ମନେ ହୋଇଥିଲା, ସେଠାରେ ଉପସ୍ଥିତ ଥିବା ଏତେ ଅଭିଜ୍ଞ ଓ ବୟସ୍କ ଲୋକମାନେ ଯେମିତି ତା' ସାମ୍ନାରେ ଗୋଟିଏ ଗୋଟିଏ ଶିଶୁ ।

ମିସେସ୍ ମହାପାତ୍ର ଙ୍କ ମୁହଁଟି କିନ୍ତୁ ଦିଶୁଥିଲା ଖୁବ୍ କରୁଣ । ସେ ସ୍ଥାଣୁବତ୍ ଠିଆହୋଇ ରହିଥିଲେ । ପିଲାଟାର ସେଇ କଥା କେଇପଦ ତାଙ୍କ ମର୍ମସ୍ଥଳକୁ ଯେଭଳି ଦଂଶନ କରି ଚାଲିଥିଲା, ସେକଥା କେବଳ ସେ ନିଜେ ହିଁ ବୁଝୁଥିଲେ ।

---

## ଓଡିଆ ସାହିତ୍ୟ ର ସ୍ରଷ୍ଟା

## ପ୍ରଫେସର ଉଦୟନାଥ ସାହୁ

ଗବେଷଣା ଓ ସାହିତ୍ୟ ରଚନା କ୍ଷେତ୍ରରେ ଏକ ଶ୍ରଦ୍ଧାସ୍ପଦ ନାମ ଉଦୟନାଥ ସାହୁ । ସମ୍ପ୍ରତି ନୂଆଦିଲ୍ଲୀର ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟ (ଜେ.ଏନ୍.ୟୁ.)ର ଆଦିକବି ସାରଳା ଦାସ ଓଡିଆ ଚେୟାର ର ପ୍ରଫେସର । ସ୍ୱତନ୍ତ୍ର ମନଶୀଳତା ଓ ଯୁକ୍ତିସିଦ୍ଧ ଉପସ୍ଥାପନା ରୀତିରେ ସମୃଦ୍ଧ ତାଙ୍କ ଆଲୋଚନା ବେଶ୍ ବୁଦ୍ଧିଦିପ୍ତ । "ପୂର୍ବ ଭାରତୀୟ ମହାଭାରତ ପରମ୍ପରା" ଓ "ସାରଳା ମହାଭାରତ ସୃଷ୍ଟିର ଭୂମିପର୍ବ" ଆଦି ଗ୍ରନ୍ଥଦ୍ୱୟ ତାଙ୍କ ବ୍ୟାପକ ଅଧ୍ୟୟନ ଓ ତୁଳନାତ୍ମକ ଅନୁଶୀଳନ ପ୍ରୀତିର ନିର୍ଭୁଲ ପରିଚୟ । "ଭାଗବତର ଭାବଭୂମି" ନାମକ ଏକ ଉନ୍ନତମାନର ଆଲୋଚନା ଗ୍ରନ୍ଥ ରଚନାରେ ତଥା କଥାସମ୍ରାଟ ଫକୀରମୋହନ ଙ୍କ ଗଳ୍ପ ସଂକଳନ - "ଗଳ୍ପ ସ୍ୱଳ୍ପ" ର ସୁ ସମ୍ପାଦନାରେ ତାଙ୍କ କୃତିତ୍ୱ ପ୍ରଦର୍ଶିତ ।

ଉଦୟନାଥ ଙ୍କ ଜନ୍ମ - ୦୬/୦୨/୧୯୫୬, ବାପା - ପୂର୍ଣ୍ଣଚନ୍ଦ୍ର ସାହୁ ଓ ମା' - ତାରାଦେବୀ - କେନ୍ଦ୍ରପଡା ଜିଲ୍ଲା - ରାଜକଣପୁର ର ସାନକିଲୋ ଗାଁରେ ।

ପିଲାଟିଦିନରେ ଗାଁ ସ୍କୁଲରେ ଶିକ୍ଷା ସମାପ୍ତକରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡିଆ ସାହିତ୍ୟରେ ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି. ଓ ଡି.ଲିଟ୍. ଉପାଧିପ୍ରାପ୍ତ ।

କର୍ମମୟ ଜୀବନରେ ଉଦୟନାଥ ଥିଲେ - ଓଡିଆ ଭାଷା ଓ ସାହିତ୍ୟ ର ଜଣେ ଅଧ୍ୟାପକ । ପୁରୀର ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ବିଭାଗୀୟ ମୁଖ୍ୟ ଅଧ୍ୟାପକ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର ଭାବରେ କାର୍ଯ୍ୟକରି ଅଧୁନା ନୂଆଦିଲ୍ଲୀର ଭାରତର ସର୍ବଶ୍ରେଷ୍ଠ - ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟ (ଜେ.ଏନ୍.ୟୁ.)ର ପ୍ରଫେସର - ଓଡିଆ (ଆଦିକବି ସାରଳା ଦାସ) ଭାଷାର କାର୍ଯ୍ୟରତ। ଯାହାକି ଭାରତୀୟ ଭାଷା କେନ୍ଦ୍ର - ଭାଷା, ସାହିତ୍ୟ, ସଂସ୍କୃତି ସଂସ୍ଥାନ ଦ୍ୱାରା ପରିଚାଳିତ

### ସାରସ୍ୱତସାଧକ ଉଦୟନାଥ -

ଓଡିଆ ଭାଷା ଓ ସାହିତ୍ୟ ର ପ୍ରବୀଣ ସମାଲୋଚକ ପ୍ରଫେସର ଉଦୟନାଥ ସାହୁ ସାହିତ୍ୟ ଜଗତରେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଅଛନ୍ତି । ଦେଶ ଓ ବିଦେଶରେ ତାଙ୍କ ପ୍ରବନ୍ଧଗୁଡିକ ବେଶ୍ ଆଦୃତ ଲାଭ କରିଅଛି । ଜଣେ ସମାଲୋଚକ, ଗବେଷକ, ସାହିତ୍ୟିକ ସର୍ବୋପରି ସମ୍ପାଦକ ହିସାବରେ ସେ ଓଡିଆ ସାହିତ୍ୟ କ୍ଷେତ୍ରରେ ପରିଚିତ ।

ଉଦୟନାଥ ନୂତନ ସାହିତ୍ୟ ସମାଲୋଚନା ଶୈଳୀର ଜଣେ ସଫଳ ଗଦ୍ୟଶିଳ୍ପୀ । ପ୍ରାଚୀନ ସାହିତ୍ୟ ର ନବ ମୂଲ୍ୟାୟନ ଦିଗରେ ତାଙ୍କ ପଯନ୍ତ ଯେତିକି ପ୍ରଶଂସନୀୟ, ଇତିହାସ ପୃଷ୍ଠଭୂମି ଆଧାରରେ ସାହିତ୍ୟ ର ଅନୁଶୀଳନ ପଦ୍ଧତି ସେତିକି ଅଭିନବ । ସମଗ୍ର ଭାରତବର୍ଷରେ ତିନିଗୋଟି ପ୍ରାଦେଶିକ ଭାଷା - ଯଥା - ଓଡିଆ, ବଙ୍ଗଳା ଓ ଆସାମୀୟାରେ ଲିଖିତ ମହାଭାରତ ଓ ଶ୍ରୀମଦ୍ ଭାଗବତ ଗୀତା ତୁଳନାତ୍ମକ ଅଧ୍ୟୟନ କରିବାରେ ପ୍ରଥମ । ସାରଳା ମହାଭାରତ ଓ ସଂସ୍କୃତ ମହାଭାରତର ସେ ମଧ ତୁଳନାତ୍ମକ ଅଧ୍ୟୟନ କରି କଥା ଓ ଚରିତ୍ରର ସାମ୍ୟ ଓ ବୈଷମ୍ୟକୁ ପ୍ରଦର୍ଶନ କରିଅଛନ୍ତି ।

ଜଣେ ପ୍ରଫେସର ଭାବରେ ଏକାଡେମିକ୍ ଶିକ୍ଷାର ପରିପୂର୍ଣ୍ଣ ଯୋଗ୍ୟତା ସହିତ ଭାଷା ଓ ସାହିତ୍ୟ ର ଗବେଷକ ଭାବରେ ସେ ଦେଖାଇଛନ୍ତି ନିଆରା ଅଭିବ୍ୟକ୍ତି । ଭାଗବତ ଓ ମହାଭାରତର ମୂଳଧାରାକୁ ଶ୍ରେୟକରି ପ୍ରାଚୀନ ଓଡିଆ ସାହିତ୍ୟରୁ ଭାରତୀୟ ସାହିତ୍ୟ ମଧ ଦେଇ ବିଦେଶୀ ମାଟି ଜାପାନର ଓଟାନି ବିଶ୍ୱବିଦ୍ୟାଳୟ (୧୬୫୬ ମସିହାରେ ପ୍ରତିଷ୍ଠିତ)ରେ ସାରଳା ମହାଭାରତର ତୁଳନାତ୍ମକ ଗବେଷଣା ତାଙ୍କୁ ଏକ ସ୍ୱତନ୍ତ୍ର ପରିଚୟ ଦେଇଅଛି । କେବଳ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡିଆ ସାହିତ୍ୟ ନୁହେଁ ଆଧୁନିକ ସାହିତ୍ୟ, ଫକୀରମୋହନ ଙ୍କ ସାହିତ୍ୟ ସମ୍ପର୍କରେ ରଚିତ ତାଙ୍କର ଗବେଷଣା ପୁସ୍ତକଗୁଡିକ ଓଡିଆ ସାହିତ୍ୟକୁ ସମୃଦ୍ଧ କରିଅଛି ।

ପ୍ରଫେସର ଉଦୟନାଥ - ଭାରତ ସରକାରଙ୍କ ସୂଚନା ପ୍ରଯୁକ୍ତି ବିଭାଗ ଅଧିନରେ କମ୍ପ୍ୟୁଟର ମାଧ୍ୟମରେ ଅନୁବାଦ ପ୍ରକଳ୍ପ (EILMT - English to Indian Language Machine Translation)ରେ ଓଡିଆ ଭାଷାର ମୁଖ୍ୟ ପରିଚାଳକ ଭାବରେ କାର୍ଯ୍ୟ କରିଅଛନ୍ତି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (ୟୁଜିସି) ନୂଆଦିଲ୍ଲୀ ଅଧିନରେ ତିନିଗୋଟି ପ୍ରକଳ୍ପର ମୁଖ୍ୟ ଭାବରେ କାର୍ଯ୍ୟ ତୁଲାଇଛନ୍ତି ।

ଜଣେ ଗବେଷକ ଭାବରେ ଉଦୟନାଥ ଙ୍କ ଅଧିନରେ ଏମ୍.ଫିଲ୍. - ୧୮ ଜଣ, ପିଏଚ୍.ଡି. - ୧୭ ଜଣ ଛାତ୍ରଛାତ୍ରୀ ଉପାଧିପ୍ରାପ୍ତ ସହ ୮ ଜଣ ଗବେଷକ ଅଧୁନା ଗବେଷଣା କରୁଅଛନ୍ତି ।

### ସାହିତ୍ୟ ସୃଷ୍ଟି -

୧. ଭାଗବତର ଭାବଭୂମି
୨. ଗଳ୍ପ ସ୍ୱଳ୍ପ (ସଂକଳନ)
୩. ଐତିହାସିକ କେଦାରନାଥ ମହାପାତ୍ର (ଜୀବନୀ)
୪. ସମାଲୋଚକ ଙ୍କ ଦୃଷ୍ଟିରେ ଫକୀରମୋହନ
୫. ଆଲୋଚନା ସମାଲୋଚନା

୬. ଭାଗବତର ସୃଷ୍ଟି ସୌରଭ
୭. ଓଡିଆ ଦୀର୍ଘ କବିତା
୮. Reflection on the Great Indian EPEC Mahabharat in Odisha, Bengal, Assam
୯. ସ୍ୱର୍ଗାରୋହଣ ପର୍ବ (ସଂକଳନ)
୧୦. ଗନ୍ଧ ଚନ୍ଦନ (ସଂକଳନ)
୧୧. ପୂର୍ବ ଭାରତୀୟ ମହାଭାରତ ପରମ୍ପରା
୧୨. ସାରଳା ମହାଭାରତ ସୃଷ୍ଟିର ଭୂମିପର୍ବ
୧୩. ପୂର୍ବ ଭାରତୀୟ ଭାଗବତ ପରମ୍ପରା ଓ ଭକ୍ତି ଆନ୍ଦୋଳନ
୧୪. ସାରଳା ମହାଭାରତରେ ମନ୍ତ୍ରୀ ଓ ସେନାପତି
୧୫. Great Indian Epic - International Perspectives (Edited)

ପ୍ରଫେସର ଉଦୟନାଥ ସାହୁ ଜଣେ ସାହିତ୍ୟିକ, ଗବେଷକ ଭାବରେ ୨୦୦ରୁ ଉର୍ଦ୍ଧ୍ୱ ପ୍ରବନ୍ଧ ବିଭିନ୍ନ ପତ୍ର ଓ ପତ୍ରିକାରେ ପ୍ରକାଶିତ । ଏତଦ୍‌ବ୍ୟତୀତ ବହୁ ଇଂରାଜୀ ପ୍ରବନ୍ଧ ଆନ୍ତର୍ଜାତୀୟ ସ୍ତରରେ ଆଦୃତ ଲାଭ ହୋଇଅଛି ।

ପ୍ରଫେସର ଉଦୟନାଥ ଜଣେ ଓଡିଆ ସାହିତ୍ୟ ର ଗବେଷକ ଭାବରେ ମଧ କିଛି ବିଶେଷ ଗବେଷଣା କରିଅଛନ୍ତି -

୧. ସାରଳା ସାହିତ୍ୟ
୨. ଭାଗବତ
୩. ତୁଳନାତ୍ମକ ଅଧ୍ୟୟନ
(ଓଡିଆ, ବଙ୍ଗଳା ଓ ଆସାମୀଆ) ମହାଭାରତ
୪. ଫକୀରମୋହନ ସାହିତ୍ୟ
୫. ଓଡିଆ ଦୀର୍ଘ କବିତା

**ସମ୍ମାନ ଓ ସମ୍ବର୍ଦ୍ଧିତ ପ୍ରତିଭା ଉଦୟନାଥ -**

ପ୍ରଫେସର ଉଦୟନାଥ ନିଜର ଗବେଷଣା ସାହିତ୍ୟ ରଚନା ସର୍ବୋପରି ଅଧ୍ୟାପନାର ସାଫଲ୍ୟତା ପାଇଁ ଦେଶ ଓ ବିଦେଶରୁ ଅନେକ ସମ୍ମାନପ୍ରାପ୍ତ -

୧. ଓଟାନି ବିଶ୍ୱବିଦ୍ୟାଳୟ, ଜାପାନ, କିଟୋ
୨. ପ୍ରବାଦ ପୁରୁଷ ସାରଳା ଭାଷା ସମ୍ମାନ - ୨୦୨୦
୩. ଏକାମ୍ର ସମ୍ମାନ - କେଦାରନାଥ ଗବେଷଣା ପରିଷଦ, ଭୁବନେଶ୍ୱର
୪. ୧୫ତମ ରାଜଧାନୀ ପୁସ୍ତକ ମେଳା ପୁରସ୍କାର
୫. ଆମ ଭୁବନେଶ୍ୱର ସମ୍ମାନ - ୨୦୧୫
୬. ଡକ୍ଟର ହରେକୃଷ୍ଣ ମହତାବ ସମ୍ମାନ (ଭୁବନେଶ୍ୱର ଜର୍ଣ୍ଣାଲିଷ୍ଟ ଆସୋସିଏସନ୍)
୭. ବିଚିତ୍ରାନନ୍ଦ ପ୍ରବନ୍ଧ ଓ ସମାଲୋଚନା ସମ୍ମାନ (ଉତ୍କଳ ସାହିତ୍ୟ କଳା ପରିଷଦ, କଟକ)
୮. ନିଖିଳ ଓଡିଶା ପ୍ରଗତିଶୀଳ ଲେଖକ ମହାସଂଘ ପୁରସ୍କାର, ଭୁବନେଶ୍ୱର
୯. ଶ୍ୱେତ ସଙ୍କେତ ପୁରସ୍କାର - ସାହିତ୍ୟ ଶ୍ୱେତପଦ୍ମା ଟ୍ରଷ୍ଟ୍
୧୦. ମା' କାଳୀ ପ୍ରତିଭା ସମ୍ବର୍ଦ୍ଧନା ସମ୍ମାନ -
୧୧. କୋରେଇ ମହୋତ୍ସବ ସମ୍ମାନ - କୋରେଇ ମଣ୍ଡଳ ସାହିତ୍ୟ ସଂସଦ, ଯାଜପୁର

ଓ ଆହୁରି ଅନେକ ଅନୁଷ୍ଠାନରୁ ସମ୍ବର୍ଦ୍ଧିତ ।

**ପଦ ଓ ପଦବୀଯୁକ୍ତ - ଉଦୟନାଥ :**

ପ୍ରଫେସର ଉଦୟନାଥ ସାହୁ ଓଡିଆ ସାହିତ୍ୟ ର ଜଣେ ଅଧ୍ୟାପକ ଭାବରେ ଦୀର୍ଘ ୩୯ ବର୍ଷର ଅଭିଜ୍ଞତା ସମ୍ପର୍ଣ୍ଣ ସହିତ ଦୀର୍ଘ ୩୫ ବର୍ଷର ଗବେଷକ ଭାବରେ କାର୍ଯ୍ୟକରି ସୁନାମ ଅର୍ଜନ କରିବା ସହିତ ଅନେକ ପଦ ଓ ପଦବୀରେ କାର୍ଯ୍ୟ କରିଅଛନ୍ତି ।

ଓଡିଶା ସାହିତ୍ୟ ଏକାଡେମୀର ସଭ୍ୟ

ମୁଖ୍ୟ ସଂଚାଳକ - English to Indian
Language Machine Translation
Deptt. of Information Technology
Govt. of India

ଏକ୍‌ଜିୟୁଟିଭ ମେମ୍ବର - "ଦି ଇଟେଂଲଜେନସ୍" ନୂଆଦିଲ୍ଲୀ

ଇତ୍ୟାଦି .....

**ବିଦେଶ ଭ୍ରମଣ -**

ପ୍ରଫେସର ଉଦୟନାଥ - ଥାଇଲାଣ୍ଡ, କାନାଡା ଓ ଆମେରିକା ପ୍ରଭୃତି ରାଷ୍ଟ୍ର ଭ୍ରମଣକରି ସେଠାକାର ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନରେ ସକ୍ରିୟ ଅଂଶଗ୍ରହଣ କରିଅଛନ୍ତି ।

## ପ୍ରଫେସର ଉଦୟନାଥ ସାହୁଙ୍କ ସାରସ୍ୱତ କୃତିର
## ଏକ କ୍ରୀୟାଂଶ
## ଭାଗବତର ଐତିହ୍ୟ

ଆଧୁନିକ ଭାରତୀୟ ଭାଷା ସମୂହର ଉତ୍ସ ହେଉଛି ସଂସ୍କୃତ ଭାଷା । ସଂସ୍କୃତ ଭାଷା ବିବର୍ତ୍ତିତ ହୋଇ ପାଲି, ପ୍ରାକୃତ ଏବଂ ଅପଭ୍ରଂଶ ମାଧ୍ୟମ ଦେଇ ଆଧୁନିକ ଭାରତୀୟ ଭାଷା ସମୂହକୁ ରୂପାନ୍ତରିତ ହୋଇଛି । ପୂର୍ବ-ମାଗଧୀ ପ୍ରାକୃତ ଭାଷାରୁ ଓଡିଆ, ବଙ୍ଗଳା ଏବଂ ଅସମୀୟା ଭାଷାର ସୃଷ୍ଟି । ଏହି ତିନି ଭାଷାକୁ ପୂର୍ବ ଭାରତର ଭଗିନୀ ଭାଷା ବୋଲି କୁହାଯାଇଥାଏ । ଏହି ଭାଷାଗୁଡ଼ିକ ମଧ୍ୟରେ କେତେକ ନୀତିଗତ ପାର୍ଥକ୍ୟ ରହିଥିଲେ ମଧ୍ୟ ଅଧିକ ସାମଞ୍ଜସ୍ୟ ରହିଥିବା ଦେଖାଯାଏ । ପ୍ରାଚୀନ କାଳରୁ ପୂର୍ବ ଭାରତର ଜନଗୋଷ୍ଠୀମାନଙ୍କ ମଧ୍ୟରେ ଭାଷାଭିତ୍ତିକ ସମ୍ପର୍କ ଅତି ନିବିଡ ଥିଲା । ୮ମ-୯ମ ଶତାବ୍ଦୀରେ ପୂର୍ବ ଭାରତର ସିଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ରଚିତ ସାହିତ୍ୟରେ ଏହାକୁ ଅନୁଭବ କରାଯାଇପାରେ ।

ପୂର୍ବ ଭାରତରେ ଥିବା ବିଭିନ୍ନ ରାଜ୍ୟଗୋଷ୍ଠୀର ସାଂସ୍କୃତିକ ବିଭବକୁ ଅନୁଶୀଳନ କଲେ ସେମାନଙ୍କ ମଧ୍ୟରେ ଥିବା କେତେକ ସାମ୍ୟ ଏବଂ ବୈଷମ୍ୟ ଲକ୍ଷ୍ୟ କରାଯାଏ । ବିବିଧତା ମଧ୍ୟରେ ଏକତା ହିଁ ପୂର୍ବ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ମନ୍ଦିର, ଭାସ୍କର୍ଯ୍ୟ, କଳା, ନୃତ୍ୟ, ଗୀତ, ପର୍ବପର୍ବାଣି, ବେଶ ପୋଷାକ, ଖାଦ୍ୟ ଚଳଣି, ବିଶ୍ୱାସ, ପ୍ରଥା, ସଂସ୍କାର ଓ ଭାଷା ସାହିତ୍ୟ ଦୃଷ୍ଟିରୁ ଆସାମ, ଓଡିଶା ଏବଂ ବଙ୍ଗଳା ମଧ୍ୟରେ ଭାବର ଆଦାନ ପ୍ରଦାନ ବହୁ ପ୍ରାଚୀନ କାଳରୁ ରହିଆସିଛି । ମହାଭାରତୀୟ ହିନ୍ଦୁ ସଂସ୍କୃତିର ଆର୍ଯ୍ୟ ଏବଂ ଅଣଆର୍ଯ୍ୟ ସଂସ୍କୃତିର ସମନ୍ୱୟ ଏବଂ ଜାତୀୟ ସଂସ୍କୃତିରେ ପ୍ରଚଳିତ ନୀତି, ନିୟମ, ଚଳଣି, ବିଶ୍ୱାସ ଏବଂ ସଂସ୍କାର ଆଦି ପୂର୍ବ ଭାରତୀୟ ରାଜ୍ୟଗୁଡ଼ିକର ଜନଗୋଷ୍ଠୀମାନଙ୍କର ଜୀବନଧାରାରେ ପ୍ରତିଫଳିତ ତଥା ବ୍ୟବହୃତ ହେଉଥିବା ଲକ୍ଷ୍ୟ କରାଯାଏ ।

ଭାରତବର୍ଷରେ ସର୍ବପ୍ରଥମେ ସଂସ୍କୃତ ଭାଷାରେ ବ୍ୟାସଦେବ ମହାଭାରତ ଏବଂ ଅଷ୍ଟାଦଶ ପୁରାଣ ରଚନା କରିଥିଲେ । ଏହି ଅଷ୍ଟାଦଶ ପୁରାଣମାନଙ୍କ ମଧ୍ୟରେ ଭାଗବତ ସର୍ବକନିଷ୍ଠ ହେଲେ ମଧ୍ୟ ସର୍ବଶ୍ରେଷ୍ଠ ଗ୍ରନ୍ଥ ଭାବରେ ଗୃହୀତ । ପୁରାଣ ପରମ୍ପରାରେ ଏହା ମହାପୁରାଣର ମାନ୍ୟତା ଲାଭ କରିଅଛି । ବ୍ୟାସଦେବ ଙ୍କ ସଂସ୍କୃତ ଭାଗବତ ରଚିତ ହେବାର ବହୁପରେ ପୂର୍ବ ଭାରତୀୟ ରାଜ୍ୟମାନଙ୍କର ଆଚଂଳିକ ଭାଷାରେ ଭାଗବତର ସୃଷ୍ଟି । ଓଡିଆ, ବଙ୍ଗଳା ଓ ଅସମୀୟା ଭାଗବତରେ କେତେକ ପାର୍ଥକ୍ୟ ସତ୍ତ୍ୱେ ବିଭିନ୍ନ ଦିଗରୁ ଏମାନଙ୍କ ମଧ୍ୟରେ ସମନ୍ୱୟ ଏବଂ ଐକ୍ୟ ଥିବା ଲକ୍ଷ୍ୟ କରାଯାଏ । ବଙ୍ଗଳା, ଆସାମ ଏବଂ ଓଡିଶାରେ ସଂସ୍କୃତ ଭାଗବତକୁ କେତେକ କବି ଆକ୍ଷରିକ ଅନୁବାଦ କରିଥିବାବେଳେ ଅନ୍ୟ କେତେକ କବି ସାମାନ୍ୟ ପରିବର୍ତ୍ତନ କରିଛନ୍ତି । କିନ୍ତୁ କୌଣସି କବି ସଂସ୍କୃତ ଭାଗବତର ପ୍ରଧାନ କାହାଣୀକୁ ପରିବର୍ତ୍ତନ କରିନଥିବା ଜଣାଯାଏ ।

**ଓଡିଆ ଭାଗବତ -**

ପୂର୍ବ ଭାରତୀୟ ଭାଗବତ ସ୍ରଷ୍ଟାମାନଙ୍କ ମଧ୍ୟରେ ଓଡିଶାର ଅତିବଡୀ ଜଗନ୍ନାଥ ଦାସ ହିଁ ଭାଗବତର ସର୍ବପ୍ରଥମ ଅନୁବାଦକ । ତାଙ୍କର ଜୀବନ କାଳ ୧୪୯୦ ରୁ ୧୫୫୦ ମଧ୍ୟରେ ନିରୂପିତ ହୋଇଛି । ଓଡିଶାର ପୁରୀ ଜିଲ୍ଲା କପିଳେଶ୍ୱରପୁର ଶାସନରେ ପିତା ଭଗବାନ ଦାସ ଏବଂ ମାତା ପଦ୍ମାବତୀ ଦେବୀଙ୍କ କୋଳମଣ୍ଡନ କରିଥିଲେ ଜଗନ୍ନାଥ ଦାସ । ସେ ଭାଗବତ ପ୍ରଥମରୁ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ରଚନା କରିଥିବାବେଳେ ପରବର୍ତ୍ତୀ କାଳରେ ମହାଦେବ ଦାସଙ୍କ ଦ୍ୱାରା ଦ୍ୱାଦଶ ସ୍କନ୍ଧ ଏବଂ ଦ୍ୱାରକା ଦାସଙ୍କ ଦ୍ୱାରା ତ୍ରୟୋଦଶ ସ୍କନ୍ଧ ରଚିତ । ଓଡିଆ ଭାଗବତର ପ୍ରଥମ ସ୍କନ୍ଧରେ ପ୍ରସ୍ତାବନା, ଦ୍ୱିତୀୟରୁ ନବମ ସ୍କନ୍ଧରେ ରହିଛି କୃଷ୍ଣ ଚରିତର ପୃଷ୍ଠଭୂମି, ବିଷ୍ଣୁ-କୃଷ୍ଣ ସମନ୍ୱୟ, ପୌରାଣିକ ଲକ୍ଷଣ ଜନିତ ବିବିଧ ବର୍ଣ୍ଣନା ସହିତ ଦଶମ ଓ ଏକାଦଶ ସ୍କନ୍ଧରେ ରହିଛି ଶ୍ରୀକୃଷ୍ଣଙ୍କର ଜୀବନୀ ଓ ଦର୍ଶନ । ଦ୍ୱାଦଶ ସ୍କନ୍ଧ ହେଉଛି ଉପସଂହାର । ଜଗନ୍ନାଥ ଦାସ ଓଡିଆ ଭାଗବତର କେତେକ ସ୍କନ୍ଧରେ ମୂଳ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ କରିଥିବାବେଳେ ଅନ୍ୟ କେତେକ ସ୍କନ୍ଧରେ ମୂଳ ଶ୍ଳୋକଗୁଡ଼ିକର ଭାବକୁ ଗ୍ରହଣକରି ସଂକ୍ଷିପ୍ତ ରୂପେ ଉପସ୍ଥାପନା କରିଛନ୍ତି । କେତେକ ସ୍ଥାନରେ ମୂଳ ସଂସ୍କୃତ ଭାଗବତର ବିଷୟବସ୍ତୁ ବା ଶ୍ଳୋକକୁ ପରିତ୍ୟାଗ କରିଥିବାବେଳେ ସ୍ଥଳ ବିଶେଷରେ ତା'ର ନବୀକରଣ ମଧ୍ୟ କରିଛନ୍ତି । ମାତ୍ର ଅନେକ କ୍ଷେତ୍ରରେ ଜଗନ୍ନାଥ ଦାସଙ୍କର ମୌଳିକ ପରିକଳ୍ପନା ପାଠକମାନଙ୍କୁ ଚମତ୍କୃତ କରିଥାଏ ।

ଶିକ୍ଷା, ସାହିତ୍ୟ, ଧର୍ମ, ଦର୍ଶନ, ସଙ୍ଗୀତ, ନୈତିକତା ପ୍ରଭୃତି ବିଭିନ୍ନ ଦୃଷ୍ଟିରୁ ଭାଗବତ ଓଡିଆ ଜାତିର ଆଦର୍ଶ । ଭାଗବତ କେବଳ ଏକ ଧର୍ମୀୟ ଗ୍ରନ୍ଥ ନୁହେଁ, ଓଡିଆ ଜାତିପାଇଁ ଏହା ହେଉଛି ଏକ ଆଧ୍ୟାତ୍ମିକ ଅନୁଭୂତି । ଏହା ଯେପରି ପ୍ରତ୍ୟେକ ଓଡିଆ ଜୀବନର

ଶିକ୍ଷାଦାତା - ଗୁରୁ । ପୁଣି ଶେଷ ଜୀବନର ସହଚର ମଧ । ଓଡିଶାର ଅତିବଡୀଙ୍କ ଭାଗବତ ଦିନେ ଥିଲା "ପ୍ରାଥମିକ ଶିକ୍ଷାର ଅନନ୍ୟ ପାଠ୍ୟଗ୍ରନ୍ଥ"; ଅଥଚ ଏହା ପୁଣି ପରମ ଶାସ୍ତ୍ର ଭାଗବତ । ("ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥") ଭାଗବତର ଲୋକପ୍ରିୟତା ସମ୍ପର୍କରେ ଅଚ୍ୟୁତାନନ୍ଦ ଦାସଙ୍କର "ହରିବଂଶ" ଗ୍ରନ୍ଥରୁ ଜଣାଯାଏ -

"ଧନବନ୍ତ ଲୋକଙ୍କୁ କି ଯାଚି ଦେଇ ଅନ୍ନ ।
ଭାଗବତ ଛାଡି ଶୁଣେ କେ ଆନ ପୁରାଣ ॥"

ଓଡିଶାର ଘରେଘରେ ଏହି ଗ୍ରନ୍ଥ ଭକ୍ତିର ସହିତ ପାଠ କରାଯାଏ । ଓଡିଆ ସମାଜରେ ଏହାର ଲୋକପ୍ରିୟତାର ତୁଳନା ନାହିଁ । ୧୯୦୧ ମସିହା ଜନସୁମାରି ରିପୋର୍ଟ ଅନୁସାରେ, ତତ୍‌କାଳୀନ ଭାରତବର୍ଷରେ ଓଡିଶାର ସାକ୍ଷର ସଂଖ୍ୟା ଥିଲା ସର୍ବାଧିକ । ଏହି ସର୍ବାଧିକ ସାକ୍ଷରତା ନେପଥ୍ୟରେ ଭାଗବତର ଭୂମିକା ଥିଲା ଅଗ୍ରଗଣ୍ୟ । ଏତଦ୍‌ବ୍ୟତୀତ ଓଡିଶାର ଜନସମାଜରେ ଭାଗବତ ଗାଦି ଘର, ଭାଗବତ ସପ୍ତାହ, ହରିହାଟ ପ୍ରଭୃତି ଅନୁଷ୍ଠାନ ଓ ଉତ୍ସବ ଜଗନ୍ନାଥ ଦାସଙ୍କ ଓଡିଆ ଭାଗବତର ପ୍ରଭୂତ ଲୋକପ୍ରିୟତାକୁ ସୂଚାଇ ଦେଇଥାଏ ।

ଶତାବ୍ଦୀ-ଶତାବ୍ଦୀ ଧରି ଓଡିଶାର ସାମାଜିକ ଓ ସାଂସ୍କୃତିକ ଜୀବନ ବହୁ ଘାତ ପ୍ରତିଘାତ ଓ ପରିବର୍ତ୍ତନ ଭିତରଦେଇ ସାମ୍ପ୍ରତିକ କାଳରେ ଆସି ପହଂଚିଛି । ଏହା ମଧ୍ୟରେ ମଣିଷର ରୁଚି ବଦଳିଛି, ସ୍ୱଭାବ ବଦଳିଛି, ତା'ର ଜୀବନର ଧାରା ମଧ ବଦଳିଛି । କିନ୍ତୁ ଓଡିଆ ଜାତିର ଧ୍ୟାନ-ଧାରଣାର ସୂକ୍ଷ୍ମ ଚେତନାରେ ସାମାନ୍ୟତମ ପରିବର୍ତ୍ତନ ସୁଦ୍ଧା ଘଟିନାହିଁ । ତା'ର କାରଣ ହେଉଛି ଭାଗବତ । ଭାଗବତ ସତେ ଯେପରି ହୋଇଯାଇଛି ଓଡିଆ ଜାତିର ଅସ୍ମିତା ।

ଓଡିଆ ସାହିତ୍ୟରେ ଭାଗବତର ରହିଛି ଏକ ସୁଦୂରପ୍ରସାରୀ ପ୍ରଭାବ । ଜଗନ୍ନାଥ ଦାସଙ୍କର ଭାଗବତ ପ୍ରଭାବରେ ୧୭ଶ ଶତାବ୍ଦୀରେ ଦୀନବନ୍ଧୁ ଖାଡଙ୍ଗାଙ୍କର "ଖାଡଙ୍ଗା ଭାଗବତ", ୧୮୮୬ରେ ରାମ ନାରାୟଣ ବିଦ୍ୟାରତ୍ନଙ୍କର "ଭାଗବତ ପ୍ରକାଶିକା" (ଓଡିଆ ଗଦ୍ୟାନୁବାଦ), ୧୯୧୭ରେ ପରୀକ୍ଷିତ ଦାଶଶର୍ମାଙ୍କର "ଜ୍ଞାନ ପ୍ରଚାର ଭାଗବତ" ଓ ୧୯୩୦ରେ "ହଳଧର ଭାଗବତ" (ଓଡିଆ ଗଦ୍ୟାନୁବାଦ) ପ୍ରକାଶିତ ହୋଇଛି । ଏହାବ୍ୟତୀତ ରାଜକିଶୋର ଦାସ, ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ, ରାୟ ବାହାଦୂର ଚିନ୍ତାମଣି ଆଚାର୍ଯ୍ୟ, ଡକ୍ଟର କୃଷ୍ଣଚରଣ ସାହୁ, ପଣ୍ଡିତ ନୀଳମଣି ମିଶ୍ର ପ୍ରଭୃତି ସାହିତ୍ୟିକ ତଥା ଗବେଷକମାନେ ଭାଗବତର ସଂଶୋଧନ ବା ଶୁଦ୍ଧପାଠ କରି ଓଡିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଆଧୁନିକ ସାହିତ୍ୟରେ ମଧ ଭାଗବତର ପ୍ରଭାବ ଅପ୍ରଚୁର ନୁହେଁ । ଆଧୁନିକ ଗଳ୍ପ, ଉପନ୍ୟାସ, ନାଟକ ଏବଂ କବିତାରେ ଭାଗବତ ଆଦର୍ଶରେ ଅନୁପ୍ରାଣିତ ଆଦର୍ଶ ଚରିତ୍ରମାନଙ୍କର ସଂଯୋଜନା କରାଯାଇଥିବାର ଦେଖିବାକୁ ମିଳେ । ଭାଗବତରୁ ଚିତ୍ରକଳ୍ପ ଏବଂ ମିଥ୍ ଗ୍ରହଣକରି କବି-ଲେଖକମାନେ ଆଧୁନିକ ଓଡିଆ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି ।

## ବଙ୍ଗଳା ଭାଗବତ -

ବଙ୍ଗଳାରେ ସର୍ବପ୍ରଥମ କୃଷ୍ଣକଥା ସମ୍ବଳିତ "ଶ୍ରୀକୃଷ୍ଣ ବିଜୟ" (ଖ୍ରୀ : ୧୪୭୩-୮୪) କାବ୍ୟ ରଚୟିତା ମାଳାଧର ବସୁଙ୍କ ପରେ ତଥା ଓଡିଶାରେ ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦର ଦେଢଶହ ବର୍ଷପରେ, ୧୬୫୮ ସାଲରେ ବଙ୍ଗ କବି ଶ୍ରୀ ସନାତନ ଚକ୍ରବର୍ତୀ ବା ବିଦ୍ୟାବାଗୀଶ ଭାଗବତ ଅନୁବାଦ କରିଥିଲେ । କିନ୍ତୁ ଏହି କାର୍ଯ୍ୟରେ ସେ ସଫଳହୋଇ ପାରିନଥିଲେ ହେଁ ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦ ଦ୍ୱାରା ପ୍ରଭାବିତ ହୋଇଥିବା କଥା ସେ ତାଙ୍କ ଗ୍ରନ୍ଥରେ ସ୍ୱୀକାର କରିଅଛନ୍ତି ।

ବଙ୍ଗଳାରେ ଭାଗବତ ରଚନା ପୂର୍ବରୁ ତ୍ରୟୋଦଶ ଶତାବ୍ଦୀ ପରଭାଗରେ ତିଆରି ଏକ ପୁରାତନ ପ୍ରସ୍ତର ନିର୍ମିତ ହିନ୍ଦୁ ମନ୍ଦିର ର ଧ୍ୱଂସାବଶେଷ ଉପରେ ସାତଗାଁ (ସପ୍ତଗ୍ରାମ) ଠାରେ ଜାଫର ଖାଁ ଗାଜୀଙ୍କ ସମାଧିରେ କଳା ପଥରରେ ଖୋଦାଇ ଶିଳାଲେଖରେ ରାମାୟଣ, ଭାଗବତ ଏବଂ ମହାଭାରତ ବର୍ଣ୍ଣିତ ଚାଣୁର ବିନାଶ, ବାଣାଙ୍କ ସହ କୃଷ୍ଣଙ୍କ ଯୁଦ୍ଧ, ଧୃଷ୍ଟଦ୍ୟୁମ୍ନ ଓ ଦୁଃଶାସନ ଙ୍କ ମଧରେ ଯୁଦ୍ଧ କାହାଣୀର ଚିତ୍ର ରହିଥିବା ଦେଖିବାକୁ ମିଳେ । ଏହାପରେ ୧୪୭୩-୮୪ ଖ୍ରୀଷ୍ଟାବ୍ଦରେ ସୁଲତାନ ରୁକବୁଦ୍ଦିନ୍ ବାରାବକ ସାହାଙ୍କ ସମୟରେ ମାଳାଧର ବସୁ "ଶ୍ରୀକୃଷ୍ଣ ବିଜୟ" କୃଷ୍ଣକଥା ସମ୍ବଳିତ ବର୍ଣ୍ଣନାତ୍ମକ କାବ୍ୟ ରଚନା କରିଥିଲେ । ଏହାପରେ ଶ୍ରୀଚୈତନ୍ୟ ଦେବଙ୍କର ଭକ୍ତି ଆନ୍ଦୋଳନର ପ୍ରଭାବ ଯୋଗୁଁ ବଙ୍ଗଳାରେ କେତେକ ଭକ୍ତି ରସାତ୍ମକ କାବ୍ୟ ରଚନା କରାଯାଇଥିଲା । ସେଥିମଧ୍ୟରୁ ସୁଲତାନ ହୁସେନ୍ ସାହାଙ୍କ ସମୟରେ ଦାମୋଦର ସେନଙ୍କର "କୃଷ୍ଣ ମଙ୍ଗଳ", ବଡୁଚଣ୍ଡୀ ଦାସଙ୍କର "ଶ୍ରୀକୃଷ୍ଣ କୀର୍ତ୍ତନ" (୧୬ଶ ଶତାବ୍ଦୀ) ପ୍ରଭୃତି ଅନ୍ୟତମ ।

୧୬ଶ ଶତାବ୍ଦୀ ବେଳକୁ ଭକ୍ତି ଆନ୍ଦୋଳନ ସମଗ୍ର ଭାରତବର୍ଷରେ ଏକ ପ୍ଲାବନ ସୃଷ୍ଟି କରିଥିଲା । ଭକ୍ତି ଆନ୍ଦୋଳନର ପ୍ରଭାବ ଏବଂ ବଙ୍ଗଳା ଓଡିଶା ସୀମାନ୍ତବର୍ତୀ ଅଚଂଳରେ ଜଗନ୍ନାଥ ଦାସଙ୍କର ଭାଗବତର ଲୋକପ୍ରିୟତା ଦେଖି ୧୬୫୮ରେ ଶ୍ରୀ ସନାତନ ଚକ୍ରବର୍ତୀ ବଙ୍ଗଳାରେ ଭାଗବତ ଅନୁବାଦ କରିଥିବା ଅନୁମାନ କରାଯାଏ । ପରେ ଭାଗବତ ହିଁ ବଙ୍ଗଳା ସମାଜ ଓ ସାହିତ୍ୟରେ ଏକ ନୂତନ ପ୍ରେରଣା ସୃଷ୍ଟି କରିଥିଲା । ଭାଗବତର ପ୍ରଭାବରେ ସାମାଜିକ ସଂସ୍କାର, ଧର୍ମଚିନ୍ତା, ଆଧାତ୍ମିକ ଉଚ୍ଛ୍ୱାସ, ଉଚ୍ଚନୀଚ, ଧନୀଦରିଦ୍ର, ହିନ୍ଦୁ-ମୁସଲମାନ ନିର୍ବିଶେଷରେ ଏକ ଉଦାରମୁକ୍ତ ସମାଜ ଗଢି ଉଠିଥିଲା । ଶ୍ରୀଚୈତନ୍ୟ ଖୋଲାଖୋଲି ଭାବରେ ସାମାଜିକ ଜୀବନରୁ ଜାତିପ୍ରଥାର ବିଲୋପ କରିନଥିଲେ । କିନ୍ତୁ ପରୋକ୍ଷରେ ଏହାର ମନ୍ଦ ଫଳ ଦୂରକରିବା ନିମିତ ସଚେଷ୍ଟ ଥିଲେ । ସେ ନିଜ ହାତରେ ମୁସଲମାନ ହରି ଦାସଙ୍କ ମୃତଦେହକୁ ସମାଧି ଦେଇ ଅନ୍ତ୍ୟେଷ୍ଟିକ୍ରିୟା ପାଳନ କରିବା ପାଇଁ କୁଣ୍ଠିତ ହୋଇନଥିଲେ । ଭାଗବତ ପ୍ରଭାବରେ ବଙ୍ଗଳାରେ ସାମାଜିକ ସ୍ୱାଧିନତା, ମାନସିକ ଆବେଗର ବହିଃପ୍ରକାଶ, ଭକ୍ତମାନଙ୍କ ମଧରେ ରସତୃଷ୍ଣା ସଂଚାର ଏବଂ ସାହିତ୍ୟ ଓ ସଙ୍ଗୀତରେ ପ୍ରାଣଶକ୍ତି ସଂଚାର ଘଟିଥିଲା ।

ବଙ୍ଗଳାରେ ଭାଗବତ ପୁରାଣର ଜଣେ ପେଶାଦାର ଆବୃତ୍ତିକାରୀ ବା କଥକ ଥିଲେ ରଘୁପଣ୍ଡିତ । ତାଙ୍କୁ କୁହାଯାଉଥିଲା ଭାଗବତାଚାର୍ଯ୍ୟ । ସେ ଭାଗବତ ପୁରାଣର ଅଧ୍ୟାୟ ଅନୁଶାସନର ଛାୟାରେ "କୃଷ୍ଣ ପ୍ରେମ ତରଙ୍ଗିଣୀ" ଅନୁବାଦ କରିଛନ୍ତି । ମାଧବ ଆଚାର୍ଯ୍ୟଙ୍କର "ଶ୍ରୀକୃଷ୍ଣ ମଙ୍ଗଳ" ରେ ଭାଗବତ ପୁରାଣ ବର୍ଣ୍ଣିତ କୃଷ୍ଣକଥା ବିସ୍ତୃତ ଭାବରେ ପ୍ରକାଶିତ ହୋଇଛି । ବୃନ୍ଦାବନ ଦାସ ଭାଗବତ ଅନୁସାରେ ଶ୍ରୀଚୈତନ୍ୟଙ୍କର ଜୀବନ ଚରିତ ସମ୍ବଳିତ ରଚନାର ନାମକରଣ କରିଛନ୍ତି "ଚୈତନ୍ୟ ଭାଗବତ" । ତେଣୁ ସାମଗ୍ରିକ ଦୃଷ୍ଟିରୁ ଦେଖିଲେ ବଙ୍ଗଳାର ସମାଜ ଓ ସାହିତ୍ୟକୁ ଶ୍ରୀମଦ୍ ଭାଗବତ ଗ୍ରନ୍ଥ ଗଭୀର ଭାବରେ ପ୍ରଭାବିତ କରିଆସିଛି ।

## ଅସମୀୟା ଭାଗବତ -

ଆସାମରେ ନବ ବୈଷ୍ଣବ ଧର୍ମର ଆଦିଗୁରୁ ହେଉଛନ୍ତି ଶଙ୍କର ଦେବ । ତାଙ୍କର ସମୟସୀମା ଖ୍ରୀ : ୧୪୪୯ ରୁ ୧୫୬୮ ମଧ୍ୟରେ ନିର୍ଦ୍ଧାରିତ । ସେ ଆସାମର ନାଉଗଂଜ ସହର ନିକଟବର୍ତ୍ତୀ ଆଲିପୁଖୁରୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ୧୩ଶ ଶତାବ୍ଦୀରେ ଆସାମରେ ମୁସଲମାନ ଧର୍ମର ଆବିର୍ଭାବ ହୋଇଥିଲା । ଶଙ୍କର ଦେବ ଖ୍ରୀ : ୧୪୯୧ ଖ୍ରୀଷ୍ଟାବ୍ଦରେ ଭାରତବର୍ଷର ବିଭିନ୍ନ ପ୍ରସିଦ୍ଧ ଧର୍ମକ୍ଷେତ୍ରମାନଙ୍କୁ ତୀର୍ଥଯାତ୍ରା କରିବାର ଶ୍ରୁତି ରହିଛି । ସେଠାରେ ସେ ବୈଷ୍ଣବ ଗୁରୁମାନଙ୍କ ସଂସ୍ପର୍ଶରେ ଆସି ଭାଗବତ ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ସମ୍ଭବତଃ ଶଙ୍କର ଦେବ ଶ୍ରୀକ୍ଷେତ୍ର ପୁରୀରେ ଶ୍ରୀଚୈତନ୍ୟ ଙ୍କୁ ଭେଟିଥିଲେ ଏବଂ ତାଙ୍କଠାରୁ ଭାଗବତ ଅନୁସୃତ ବୈଷ୍ଣବ ଧର୍ମର ପ୍ରେରଣା ଲାଭ କରିଥିଲେ । କାରଣ ସେହି ସମୟରେ ଶ୍ରୀଚୈତନ୍ୟ ଜୀବନର ଶେଷ ଅଠର ବର୍ଷ (ଖ୍ରୀ : ୧୫୧୫-୧୫୩୩) ପୁରୀରେ ଅତିବାହିତ କରିଥିଲେ ।

ଶଙ୍କର ଦେବଙ୍କ ସମୟରେ ଆସାମରେ ଶାକ୍ତ ଓ ତନ୍ତ୍ର ପୂଜାର ପ୍ରଭାବ ଥିଲା ପ୍ରବଳ । ବିଶ୍ୱାସ ଥିଲା ଯେ ଆସାମର ମନ୍ଦିର ଥିଲା ଯାଦୁ ବିଦ୍ୟା ଓ ଗୁଣିଗାରୁଡ଼ିର ପ୍ରଧାନ କେନ୍ଦ୍ର ସ୍ଥଳ । ତୀର୍ଥଯାତ୍ରାରୁ ଫେରିବା ପରେ ଶଙ୍କର ଦେବ ଶକ୍ତିପୂଜା ଓ ତନ୍ତ୍ରପୂଜା ବିରୁଦ୍ଧରେ ପ୍ରଚଣ୍ଡ ଧର୍ମଯୁଦ୍ଧ ଆରମ୍ଭକଲେ । ଫଳରେ ଆସାମରେ ବୈଷ୍ଣବ ଧର୍ମରେ ଅଭ୍ୟୁତ୍‌ଥାନର ପର୍ବ ଆରମ୍ଭହେଲା । ଶଙ୍କର ଦେବ ଏକ ଦେବତା ପୂଜାର ପ୍ରବର୍ତ୍ତନ କଲେ । ଆସାମରେ ତାଙ୍କର ନୂତନ ଧର୍ମ "ଏକେଶ୍ୱର ଧର୍ମ" ନାମରେ ପରିଚିତ ହେଲା । ଶଙ୍କର ଦେବଙ୍କ ପ୍ରଚାରିତ ଧର୍ମ ସାମାଜିକ ଓ ସାଂସ୍କୃତିକ ଜୀବନ ଉପରେ ନୂଆ ଅର୍ଥ ଓ ଗଭୀରତା ଆଣି ଦେଇଥିଲା । ତାଙ୍କ ଦୃଷ୍ଟିରେ ବ୍ରାହ୍ମଣ, ଶୂଦ୍ର ବା ନିମ୍ନ ଜାତିର ଲୋକ ସମସ୍ତେ ସମାନ । ସେ ସବୁ ସାମାଜିକ ଶ୍ରେଣୀର ଲୋକଙ୍କୁ ନିଜର ଭାଗବତ ଧର୍ମରେ ଗ୍ରହଣ କରୁଥିଲେ । ଆସାମରେ ନବ ବୈଷ୍ଣବ ଧର୍ମର ଆନ୍ଦୋଳନକୁ ସୁଦୂର ପ୍ରସାରୀ କରିବାପାଇଁ ସେ ସତ୍ର (ମଠ) ଏବଂ ନାମଘର ପ୍ରତିଷ୍ଠା କରିଥିଲେ । ଶ୍ରୀକ୍ଷେତ୍ର ପୁରୀରେ ସେ ତାଙ୍କର ୧୨୦ ଜଣ ଭକ୍ତଙ୍କ ସହ ଶ୍ରୀଚୈତନ୍ୟ ଙ୍କୁ ଭେଟିଥିଲେ । ଏହି ଶିଷ୍ୟମାନଙ୍କ ସହିତ ମିଶି ଶଙ୍କର ଦେବ ଭାଗବତର ଅନୁବାଦ କରିଥିବା କଥା ଆଲୋଚକ ଗଣଙ୍କ ମତ ।

ଅସମୀୟା ଭାଗବତ ରଚନାରେ ଶଙ୍କର ଦେବ ଥିଲେ ମୁଖ୍ୟ ପ୍ରେରଣା ଦାତା ଓ ଗୁରୁ । ଶଙ୍କର ଦେବ ୧ମ, ୨ୟ, ୩ୟ, ୭ମ, ୮ମ, ୯ମ, ୧୦ମ ଓ ୧୨ଶ ସ୍କନ୍ଧ ଅଧ୍ୟାୟ ଅନୁବାଦ କରିଛନ୍ତି । ସେ ଭାଗବତରୁ ଅମୂଲ୍ୟ ଜ୍ଞାନ ଓ ଭକ୍ତି ସମ୍ପଦମାନ ସଂଗ୍ରହ କରିଛନ୍ତି । ଅନନ୍ତ କନ୍ଦଳୀ - ୪ର୍ଥ, ୬ଷ୍ଠ ଓ ୧୦ମ ସ୍କନ୍ଧର କିଛି ଅଂଶ, କେଶବ ଚରଣ ୭ମ ଓ ୯ମ ସ୍କନ୍ଧ, ଗୋପାଳ ଚରଣ ଦ୍ୱିଜ ୩ୟ, କଳାପଚନ୍ଦ୍ର ୪ର୍ଥ, ରତ୍ନାକର ମିଶ୍ର ୫ମ ସ୍କନ୍ଧର କେତୋଟି ସର୍ଗ, ଶ୍ରୀବିଷ୍ଣୁ ଭାରତୀ ୪ର୍ଥର କେତୋଟି ସର୍ଗ, ଶ୍ରୀ ଚନ୍ଦ୍ରଦେବ ୪ର୍ଥର କିଛି ଅଂଶ, ଅନିରୁଦ୍ଧ କାୟସ୍ଥ ୪ର୍ଥ ଓ ୫ମ ସ୍କନ୍ଧର କିଛି ଅଂଶ ଓ ହରି ୫ମର କିଛି ଅଂଶ ଅନୁବାଦ କରି ଅସମୀୟା ସାହିତ୍ୟରେ ଭାଗବତ ରଚନାର ପରମ୍ପରାକୁ ସାର୍ଥକ କରିଅଛନ୍ତି ।

ଶଙ୍କର ଦେବ ଓ ତାଙ୍କ ଭକ୍ତମାନଙ୍କର ଭାଗବତ ସୃଷ୍ଟି ଆସାମରେ ଏକ ଧାର୍ମିକ ବିପ୍ଳବ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲା ତଥା ଜ୍ଞାନ ଓ ସାହିତ୍ୟ ର ପ୍ରଗତି ପାଇଁ ପ୍ରଚୁର ପ୍ରେରଣା ଦେଇଥିଲା । ଭାଗବତ ରଚନା ଓ ଚର୍ଚ୍ଚାର କେନ୍ଦ୍ରଥିଲା ନାମଘର । ଏହି ନାମଘର ଅସମୀୟା ଜନସାଧାରଣଙ୍କ ସାମାଜିକ ଓ ଧାର୍ମିକ ଜୀବନକୁ ପ୍ରଭାବିତ କରିବା ସହିତ ଏହା ଆଜି ପର୍ଯ୍ୟନ୍ତ ଆସାମର ସାଂସ୍କୃତିକ ପରମ୍ପରାକୁ ମଧ୍ୟ ଅକ୍ଷୁର୍ଣ୍ଣ ରଖିଛି । ଅସମୀୟା ସଙ୍ଗୀତ, ନୃତ୍ୟ ଏବଂ ନାଟକର କ୍ରମବିକାଶ ଉପରେ ଏହାର ରହିଛି ବିପୁଳ ପ୍ରଭାବ । ଅସମୀୟା "ନାମଘର" କେନ୍ଦ୍ରୀୟ ଧର୍ମ ଓ ରାଜନୀତି ଅନୁଷ୍ଠାନ ରୂପେ ପ୍ରତିଷ୍ଠିତ ଥିଲା । ୫୦ ଫୁଟରୁ ଉର୍ଦ୍ଧ୍ୱ ଲମ୍ବ, ୨୦ ଫୁଟ ଓସାର ର ଦୁଇଛାତ ଥିବା ଏକ ଚାଳଘର । ମଣିକୂଟ ବୋଲି ଏକ ଛୋଟ ଘର । ସେଠାରେ ସିଂହାସନ ଖଟୁଲିରେ ମୂର୍ତ୍ତିଟିଏ ଅଥବା ଧର୍ମ ଗ୍ରନ୍ଥଟିଏ ଥାଏ । ନାମଘରେ ଅସମୀୟା ସମାଜର ରାଜନୈତିକ, ଅର୍ଥନୈତିକ, ସାମାଜିକ ସମସ୍ୟା ଆଲୋଚନା ହେଉଥିଲା । ଏହା ଅସମୀୟା ଗ୍ରାମୀଣ ଜୀବନରେ ଐକ୍ୟ ଓ ସଂହତି ଆଣି ଦେଇଥିଲା । ଶଙ୍କର ଦେବଙ୍କ ପଟ୍ଟଶିଷ୍ୟ ମାଧବ ଦେବ ନାମଘର ପରି ସତ୍ର ଅନୁଷ୍ଠାନମାନ ସ୍ଥାପନ କରିଥିଲେ । ସତ୍ର ଏବଂ ନାମଘର ଅନୁଷ୍ଠାନ ଅସମୀୟା ନାଟକ, ସଙ୍ଗୀତ ଓ ରଙ୍ଗମଚଂର ସୃଷ୍ଟି ଓ ପ୍ରତିଷ୍ଠା ଦିଗରେ ସହାୟକ ହୋଇଥିଲା । ଅସମୀୟା ଭାଗବତ ପ୍ରଭାବରେ ଅଙ୍କିଆ ନାଟକ ମାଧବ ଦେବଙ୍କ "ବରଗୀତ", ରମାକାନ୍ତ ଙ୍କ "ବନମାଳୀ ଦେବ ଚରିତ" ଅସମୀୟା ସମାଜକୁ ଶୁଦ୍ଧ ଏବଂ ମାର୍ଜିତ କରିବାରେ ସହାୟକ ହୋଇଥିଲା । ଶଙ୍କର ଦେବ ଏବଂ ତାଙ୍କ ଶିଷ୍ୟମାନଙ୍କ ଦ୍ୱାରା ରଚିତ ଭାଗବତ ଅସମୀୟା ଜନସାଧାରଣଙ୍କୁ ମୁଖ୍ୟତଃ ଆନନ୍ଦ, ପ୍ରେରଣା, ଆଶ୍ୱାସ ଓ ଜ୍ଞାନ ପ୍ରଦାନ କରିଥିବା କଥା ମୁକ୍ତ କଣ୍ଠରେ ସ୍ୱୀକାର କରାଯାଏ ।

ପୂର୍ବ ଭାରତୀୟ ସାମାଜିକ ଜୀବନର ମୂଳ ଉତ୍ସ ହେଉଛି ଶାକ୍ତ । ଶାକ୍ତ ସଂସ୍କୃତିର ଭିତି ଉପରେ ଭାଗବତ ସଂସ୍କୃତି ବିକାଶଲାଭ କରିଛି । ଭାଗବତ ଆମର ଜାତୀୟ ଗ୍ରନ୍ଥ । ଓଡିଶାରେ ଶାକ୍ତ ଏବଂ ବୈଷ୍ଣବ ସଂସ୍କୃତି ମଧ୍ୟରେ ଯେଉଁ ସମନ୍ୱୟ ଘଟିଛି, ଦୁର୍ଗା-ମାଧବ ଉପାସନା ତାହାର ପ୍ରକୃଷ୍ଟ ଉଦାହରଣ । ବଙ୍ଗଳାରେ ଶ୍ରୀଚୈତନ୍ୟ ଙ୍କୁ କେନ୍ଦ୍ରକରି ବୈଷ୍ଣବ ଧର୍ମର ବିକାଶ ଘଟିଛି । ବଙ୍ଗଳାରେ ଶ୍ରୀଜଗନ୍ନାଥ

ଙ୍କୁ କେନ୍ଦ୍ରକରି ଭାଗବତ ନିମଜ୍ଜିତ ହୋଇ ଯାଇଥିବାରୁ ବଙ୍ଗର ସାମାଜିକ ଜୀବନରେ ସ୍ମାର୍ତମାନଙ୍କର ସଂଖ୍ୟା ଅଧିକ । ସ୍ମାର୍ତମାନେ କେବଳ ଅଧିକ ପରିମାଣରେ ପାରମାର୍ଥିକ ଜୀବନ ଉପରେ ଗୁରୁତ୍ୱ ଦିଅନ୍ତି । ଆସାମରେ ଶାକ୍ତ ପରମ୍ପରାକୁ ବିରୋଧକରି ବୈଷ୍ଣବ ଧର୍ମ ଆନ୍ଦୋଳନ ଗଢି ଉଠିଥିଲା । ତେଣୁ ସେଠାରେ ଶାକ୍ତ ସମ୍ପ୍ରଦାୟ ଏବଂ ବୈଷ୍ଣବ ସମ୍ପ୍ରଦାୟ ସମ୍ମିଳିତ ନହୋଇ ଅଲଗା ହୋଇ ଯାଇଛନ୍ତି । କିନ୍ତୁ ଓଡିଶାରେ ଶ୍ରୀଜଗନ୍ନାଥ ଙ୍କୁ କେନ୍ଦ୍ରକରି ସବୁ ସମ୍ପ୍ରଦାୟ ସମ୍ମିଳିତ ହୋଇଥିବାରୁ ଜଗନ୍ନାଥ ଦାସଙ୍କ ଭାଗବତରେ ଏକ ଉଚ୍ଚକୋଟୀର ଉଦାର ଆଧାତ୍ମିକ ଧାରାର ବିକାଶ ଘଟିଛି । ଓଡିଶାର ଲୋକ ଜୀବନରେ ଏନ୍ତୁଡିଶାଳ ଠାରୁ ଆରମ୍ଭକରି ମଶାଣି ଭୂଇଁ ପର୍ଯ୍ୟନ୍ତ ଭାଗବତ ହିଁ ଐହିକ ତଥା ପାରମାର୍ଥିକ ସାଥୀ ଭାବରେ ରହିଯାଇଛି । ଅନ୍ୟ ଗୋଟିଏ ଦୃଷ୍ଟିରୁ ଦେଖିଲେ ବଙ୍ଗଳା ଏବଂ ଆସାମରେ ପ୍ରଥମେ ଭାଗବତ ଓ ପରେ ମହାଭାରତ ରଚିତ ହୋଇଥିବାବେଳେ ଓଡିଶାରେ ପ୍ରଥମେ ମହାଭାରତ ଏବଂ ପରେ ଭାଗବତ ରଚିତ ହୋଇଛି । ପୂର୍ବ ଭାରତର ଲୋକ ଚରିତ୍ର ଗଠନ, ସାମାଜିକ ସଂହତି ଏବଂ ସାହିତ୍ୟ ରଚନା କ୍ଷେତ୍ରରେ ଭାଗବତର ପ୍ରଭାବ ସର୍ବାଧିକ । ଅଥଚ ଏହି ବିଷୟକୁ ନେଇ ଉକ୍ତ ଭାଷା-ସାହିତ୍ୟମାନଙ୍କରେ ଗବେଷଣାଭିତିକ କୌଣସି ଆଲୋଚନା ଆଜି ସୁଦ୍ଧା ସମ୍ଭବ ହୋଇପାରିନାହିଁ ।

ଭାଗବତ ମହାପୁରାଣର ସୂଚନାଦେଇ ଡଃ. ଶ୍ରୀମତୀ ସାବିତ୍ରୀ ରାଉତ ଲେଖିଛନ୍ତି, ଭାଗବତ ସଂସ୍କୃତ ସାହିତ୍ୟ ର ଏକ ଅନୁପମ ରତ୍ନ । ଭାଗବତର ଗୂଢାର୍ଥ ବ୍ୟକ୍ତକରିବା ନିମିତ ପ୍ରତ୍ୟେକ ବୈଷ୍ଣବ ସମ୍ପ୍ରଦାୟ ସ୍ୱମତାନୁକୂଳ ବ୍ୟାଖ୍ୟା ଲେଖିଅଛନ୍ତି । ଭାଗବତ ପୁରାଣରେ ଅଦ୍ୱୈତ ତତ୍ତ୍ୱର ଅବତାରଣା ସମ୍ୟକ୍ ରୂପେ କରାଯାଇଅଛି । ଭକ୍ତି ଦ୍ୱାରା ହିଁ ଭଗବାନଙ୍କୁ ଲାଭ କରାଯାଇପାରେ - ଏହା ହିଁ ଏ ପୁରାଣର ସାରକଥା । ଭକ୍ତର ହୃଦୟ ଈଶ୍ୱରଙ୍କୁ ପାଇବାପାଇଁ ବ୍ୟାକୁଳ ହେବା ଉଚିତ୍, ଯେପରି ପକ୍ଷହୀନ ପକ୍ଷୀଶାବକ ନିଜର ମାତାକୁ ପାଇବାପାଇଁ କ୍ଷୁଧାରେ ବ୍ୟାକୁଳ, ଗୋ ବତ୍ସ ଦୁଗ୍ଧ ପାଇଁ ଓ ପ୍ରିୟ ବିରହରେ ବ୍ୟାକୁଳ ସୁନ୍ଦରୀ ସ୍ତ୍ରୀ ପତି ପାଇଁ ଉତ୍କଣ୍ଠିତ ହୁଅନ୍ତି ।

ଏ ପ୍ରକାର ପ୍ରେମଭକ୍ତିର ପ୍ରତିନିଧି ହେଉଛନ୍ତି ବ୍ରଜକୂଳର ଗୋପିକାଗଣ, ଯାହାଙ୍କର ବିମଳ ପ୍ରେମର ରହସ୍ୟମୟ ବର୍ଣ୍ଣନା "ରାସ ପଚାଂଧ୍ୟାୟୀ" ରେ କରାଯାଇଛି । ସୁତରାଂ ପ୍ରେମଭକ୍ତି ଦ୍ୱାରା ମୋକ୍ଷ ପ୍ରାପ୍ତି ହିଁ ଭାଗବତର ପ୍ରଧାନ ସାଧନମାର୍ଗ । ଭକ୍ତି ମାଧମରେ ମୁକ୍ତିପ୍ରାପ୍ତି ହିଁ ଭାଗବତର ସନ୍ଦେଶ । ସେଥିପାଇଁ ଭାଗବତର ଦ୍ୱାଦଶ ସ୍କନ୍ଧରେ ଯଥାର୍ଥରେ କୁହାଯାଇଛି -

"ଶ୍ରୀମଭାଗବତଂ ପୁରାଣାମମଳଂ ଯଜ୍ ବୈଷ୍ଣବାନଂପ୍ରିୟଂ
ଯସ୍ମିନ୍ ପାରମହଂସ୍ୟମେକମମଳଂ ଜ୍ଞାନଂ ପରଂଗୀୟତେ
ତତ୍ର ଜ୍ଞାନବିରାଗ ଭକ୍ତିସହିତଂ ନୈଷ୍କର୍ମ୍ୟମାବିଷ୍କୃତଂ
ତଚ୍ଛୃଣ୍ୱନ୍ ବିପଠନ୍ ବିରଣପରୋ ଭକ୍ତ୍ୟା ବିମୁଚ୍ୟେନ୍ନରଃ ॥"

-ଶ୍ରୀମଭାଗବତ- ୧୨ / ୧୩ / ୧୮

ଭାଗବତରେ ପ୍ରେମଭକ୍ତି ସହିତ ଭାରତୀୟ ଧର୍ମସାଧନାର ଏହି ଚତୁର୍ବିଧ ମାର୍ଗର ବିସ୍ତୃତ ପରିଚୟ ମିଳିଥାଏ । ଅବଶ୍ୟ ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଏହି ଗ୍ରନ୍ଥ ବିଶେଷଭାବେ ଭକ୍ତିମାର୍ଗର ପ୍ରଶଂସକ ।

ରାମାୟଣ ଯେପରି ରାମଚରିତ, ଭାଗବତ ସେହିପରି କୃଷ୍ଣଚରିତ । ପ୍ରକୃତ ପକ୍ଷରେ ଏହାକୁ କୃଷ୍ଣାୟଣ କହିବା ଅଯୌକ୍ତିକ ହେବନାହିଁ । ମହାଭାରତରେ ଶ୍ରୀକୃଷ୍ଣ ଥିଲେ ହେଁ, ରାମାୟଣରେ ରାମଚନ୍ଦ୍ର ଯାହା, ମହାଭାରତରେ ଶ୍ରୀକୃଷ୍ଣ ଠିକ୍ ତାହା ନୁହଁନ୍ତି । ମହାଭାରତକୁ କଦାପି କୃଷ୍ଣାୟଣ କୁହାଯାଇପାରିବ ନାହିଁ । "କୃଷ୍ଣାୟଣ" ନାମ କେବଳ ହରିବଂଶ ଏବଂ ଶ୍ରୀମଦ୍ ଭାଗବତକୁ ଦିଆଯାଇପାରେ । ଭାଗବତରେ ଶ୍ରୀକୃଷ୍ଣ ଙ୍କୁ ସ୍ୱୟଂ ଭଗବାନ ବୋଲି ପ୍ରତିପାଦିତ କରାଯାଇ କୁହାଯାଇଛି -

ଏତେ ଚାଂଶ କଳାଃପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟଂ
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡଂୟନ୍ତି ଯୁଗେ ଯୁଗେ ।

କିନ୍ତୁ ଭାଗବତର ଏହି କୃଷ୍ଣ, ରାଧାମୋହନ ନୁହଁନ୍ତି, ସେ ପ୍ରକୃତରେ ଗୋପୀବଲ୍ଲଭ । ଅବଶ୍ୟ ଭାଗବତର ଏକ ଶ୍ଳୋକ ସାହାଯ୍ୟରେ ରାଧାଙ୍କର ସ୍ଥିତି ପ୍ରମାଣର ଚେଷ୍ଟା କରାଯାଏ, କିନ୍ତୁ ତାହା ସର୍ବସମ୍ମତ ନୁହେଁ । ଶ୍ଳୋକଟି ହେଉଛି -

ଅନୟା ରାଧିତୋ ନୂନଂ ଭଗବାନ ହରିରୀଶ୍ୱରଃ
ଯନ୍ନୋ ବିହାୟ ଗୋବିନ୍ଦ ପ୍ରୀତୋ ଯାମନୟଦ୍ରହଃ ।

ଭାଗବତ ନିଃସନ୍ଦେହରେ ଏକ ପୁରାଣଗ୍ରନ୍ଥ, କିନ୍ତୁ ଏହାର କାବ୍ୟମାଧୁର୍ଯ୍ୟ ଅଳ୍ପ ନୁହେଁ । ବସ୍ତୁତଃ ଏହା ଭାରତୀୟ କବିକୁଳରେ ଚିରନ୍ତନ ପ୍ରେରଣା ହୋଇଆସିଛି । ଭାଗବତର ଉତ୍ପତି ସମ୍ପର୍କରେ ପ୍ରଥମ ସ୍କନ୍ଧର ପ୍ରଥମ ଅଧ୍ୟାୟ ୩ୟ ଶ୍ଳୋକରେ କୁହାଯାଇଛି -

ନିଗମକଳ୍ପତରୋଗର୍ଗଳିତଂ ଫଳଂ
ଶକମୁଖାଦମୃତଦ୍ରବ ସଂଯୁତମ୍
ପିବତ ଭାଗବତଂ ରସମାଳୟଂ
ମୁହୁରହୋ ରସିକା ଭୁବି ଭାବୁକାଃ ॥

ବାସ୍ତବରେ ଭାଗବତ ରସୈଶ୍ୱର୍ଯ୍ୟ ଏବଂ କାବ୍ୟ ମାଧୁର୍ଯ୍ୟମୟ । ଏହା କେବଳ ଭାବୁକମାନଙ୍କ ପାଇଁ ନୁହଁ, ରସିକମାନଙ୍କ ପାଇଁ ମଧ୍ୟ ଉଦ୍ଦିଷ୍ଟ । ଭାବର ମାଧୁର୍ଯ୍ୟ, ଭାବନାର ଗାମ୍ଭୀର୍ଯ୍ୟ, ପଦର ଲାଳିତ୍ୟ, ଛନ୍ଦର ଲାବଣ୍ୟ, ବର୍ଣ୍ଣନାର ନୈପୁଣ୍ୟ ଓ ନୈତିକତାର ନିଷ୍ଠା, ସବୁଦିଗରୁ ଏହା ଏକ ଅତୁଳନୀୟ ସୃଷ୍ଟି । ଅଷ୍ଟାଦଶ ସହସ୍ର ଶ୍ଳୋକ ଓ ଦ୍ୱାଦଶ ସ୍କନ୍ଧ ସମନ୍ୱିତ ଏହି ମହାପୁରାଣ ଯେ ଭାରତୀୟ ସଂସ୍କୃତିର ଏକ

ମହାନ୍ ସମ୍ପଦ ଏଥିରେ ସନ୍ଦେହ ନାହିଁ । କଥା ଅଛି - "ବିଦ୍ୟା ଭାଗବତାବଧି ।" ଖ୍ରୀଷ୍ଟିୟ ନବମ ଶତାବ୍ଦୀରେ ବୋପଦେବ ଙ୍କ ଦ୍ୱାରା ଏହା ରଚିତ ହୋଇଥିବା କୁହାଯାଏ ।

ମୋଟାମୋଟି ଏହା ହିଁ ଭାଗବତର ଯତ୍ ସାମାନ୍ୟ ପରିଚୟ । ଆମର ଆଲୋଚ୍ୟ ଜଗନ୍ନାଥ ଦାସଙ୍କ ଭାଗବତ, ଏହା ସଂସ୍କୃତ ଲିଖିତ ଶ୍ରୀମଦ୍ ଭାଗବତର ଓଡିଆ ରୂପାନ୍ତର ମାତ୍ର । ତାହାକୁ ଜଗନ୍ନାଥ ଦାସଙ୍କ କହିବା ଅନୁଯାୟୀ ଶିରୀ ଭାଗବତ ବା କେବଳ "ଭାଗବତ" କୁହାଯାଇପାରେ ।

## ଭାଗବତର ଜନ୍ମ-ଜାତକ -

ମୂଳ ଭାଗବତ, ଅର୍ଥାତ୍ ସଂସ୍କୃତ ଶ୍ରୀମଦ୍ ଭାଗବତର ଉତ୍ପତି ସମ୍ପର୍କରେ ବିସ୍ତୃତ ବିବରଣୀ ମିଳେ । ତା'ର ଇତିହାସ ବା ପରମ୍ପରା ଭଗବାନଙ୍କ ଠାରୁ ଆରମ୍ଭକରି ପରୀକ୍ଷିତ ଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହି ଇତିହାସ ବା ପରମ୍ପରା ସହିତ ଯେଉଁ ମହାନ୍ ଚରିତସବୁ ସମ୍ପୃକ୍ତ, ସେମାନେ ହେଲେ ଶ୍ରୀଭଗବାନ-ବ୍ରହ୍ମା-ନାରଦ-ବ୍ୟାସ-ଶୁକ ଓ ପରୀକ୍ଷିତ । ଭଗବାନ ବ୍ରହ୍ମାଙ୍କୁ ଭାଗବତ କହିଲେ, ବ୍ରହ୍ମା କହିଲେ ନାରଦ ଙ୍କୁ, ନାରଦ କହିଲେ ବ୍ୟାସଙ୍କୁ, ବ୍ୟାସ କହିଲେ ଶୁକଦେବ ଙ୍କୁ ଓ ଶୁକଦେବ କହିଲେ ପରୀକ୍ଷିତ ଙ୍କୁ ।

ସୃଷ୍ଟି ପୂର୍ବରୁ ଭଗବାନ ଅନନ୍ତ ଶୟନରେ ଶାୟିତ ଥାଆନ୍ତି । ତାଙ୍କୁ ସର୍ବତ୍ର ଶୂନ୍ୟତା ହିଁ ଦୃଷ୍ଟିଗୋଚର ହେଲା । ସେ କିପରି ସୃଷ୍ଟି ସର୍ଜନା କରିବେ - ଏହା ହିଁ ହେଲା ତାଙ୍କର ସମସ୍ୟା । ଅନ୍ତର୍ବାଣୀ ଶୁଣିଲେ - ତପ, ତପ, ତପ । ଶତବର୍ଷ ତପସ୍ୟାରେ ବ୍ରହ୍ମା ମଗ୍ନହେଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟହୋଇ ଭଗବାନ, ତାହାଙ୍କୁ ଚତୁଃଶ୍ଳୋକୀ ଭାଗବତ ଶୁଣାଇଲେ । ତାହା ଭାଗବତର ୨ / ୯ / ୩୨-୩୫ ଶ୍ଳୋକ ଅଟେ । ଯଥା -

ଅହମେବାସମେ ବାଗ୍ରେ ନାନ୍ୟଦ୍ ଯତ୍ ସଦସତ୍ ପରମ୍ ।
ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟତେ ସୋଽସ୍ମ୍ୟହମ୍ ॥୩୨॥
ଋତେଽର୍ଥଂ ଯତ୍ ପ୍ରତୀୟେତ ନ ପ୍ରତୀୟେତ ଚାତ୍ମନି ।
ତଦ୍ୱିଦ୍ୟାଦାତ୍ମନୋ ମାୟାଂ ଯଥାଽଽଭାସୋ ଯଥା ତମଃ ॥୩୩॥
ଯଥା ମହାନ୍ତି ଭୂତାନି ଭୂତେଷୂଚ୍ଚାବଚେଷ୍ୱନୁ ।
ପ୍ରବିଷ୍ଟାନ୍ୟ ପ୍ରବିଷ୍ଟାନି ତଥା ତେଷୁ ନ ତେଷ୍ୱହମ୍ ॥୩୪॥
ଏତାବଦେବ ଜିଜ୍ଞାସ୍ୟଂ ତତ୍ତ୍ୱ ଜିଜ୍ଞାସୁନାଽଽତ୍ମନଃ ।
ଅନ୍ୱୟ ବ୍ୟତିରେକାଭ୍ୟାଂ ଯଦତ୍ସ୍ୟାତ୍ ସର୍ବତ୍ର ସର୍ବଦା ॥୩୫॥

(ଶ୍ରୀମଦ୍ ଭାଗବତ - ୨ୟ ସ୍କନ୍ଧଃ / ୯ମ ଅଧ୍ୟାୟ)

ଏ ଚାରୋଟି ଶ୍ଳୋକ ଚତୁଃଶ୍ଳୋକୀ ଭାଗବତ । ଏଥିରେ ବ୍ରହ୍ମାଙ୍କ ସନ୍ଦେହର ଅବସାନ ଘଟିଲା, ସମସ୍ୟାହେଲା ସମାହିତ । ସୁତରାଂ ଭାଗବତର ଆଦି ପ୍ରବକ୍ତା ହେଲେ ସ୍ୱୟଂ ଭଗବାନ ।

ଭାଗବତର ଆଦିଶ୍ରୋତା ବ୍ରହ୍ମାଙ୍କର ପୁତ୍ର ନାରଦ ହେଉଛନ୍ତି ଭକ୍ତ ଶିରୋମଣି ନାରଦ । ନାରଦଙ୍କର ଏହା ହିଁ ଧାରଣାଥିଲା ଯେ, ବ୍ରହ୍ମା ହିଁ ହେଉଛନ୍ତି ଏହି ନିର୍ମଳ ସୃଷ୍ଟିର ଆଦି କାରଣ । ନାରଦ ତାଙ୍କୁ ସୃଷ୍ଟି ଓ ତତ୍ତ୍ୱର ଜିଜ୍ଞାସା କଲେ । କିନ୍ତୁ ତାହା ମଧ୍ୟ ତପଃ - ନିରତ ହେଉଥିବା ଦେଖି ବ୍ରହ୍ମାଙ୍କ ଠାରୁ ଭିନ୍ନ ବା ସ୍ୱତନ୍ତ୍ର ବ୍ରହ୍ମାଙ୍କର ସାଧ୍ୟ-ଆରାଧ୍ୟ ବା ତତ୍ତ୍ୱଦାତା କିଏ ସେ, ନାରଦଙ୍କର ଏହା ଜିଜ୍ଞାସାର ବିଷୟ ହେଲା । ଭାଗବତର ଆଦିଶ୍ରୋତା ବ୍ରହ୍ମା, ତା'ର ଦ୍ୱିତୀୟ ପ୍ରବକ୍ତା ଭାବରେ ଭାଗବତ ନାରଦ ଙ୍କୁ କହିଥିଲେ । ତେଣୁ ନାରଦ ହେଲେ ଭାଗବତର ଦ୍ୱିତୀୟ ଶ୍ରୋତା ।

ମହର୍ଷି ବେଦବ୍ୟାସ ପ୍ରତ୍ୟେକ ଭାରତୀୟଙ୍କ ପ୍ରାତଃ ସ୍ମରଣୀୟ । ସେ ବେଦ ବିଭାଗ କର୍ତା, ବ୍ରହ୍ମସୂତ୍ର ରଚୟିତା, ମହାଭାରତକାର, ପୁଣି ଅଷ୍ଟାଦଶ ମହାପୁରାଣର ରଚନାକୁ ତାଙ୍କରିଠାରେ ଅର୍ପଣ କରାଯାଇଛି । ସୃଷ୍ଟିର କଲ୍ୟାଣକାରୀ ଏପରି ଅସାଧାରଣ ଅକ୍ଷୟକୀର୍ତି ସବୁ ସ୍ଥାପନକରି ମଧ୍ୟ ତାଙ୍କ ଚିତରେ ପ୍ରସନ୍ନତା ଆସିନଥିଲା । ଏଣୁ ସେ ଚିନ୍ତାମଗ୍ନ ହେଲେ । କିନ୍ତୁ ତାଙ୍କଠାରେ କୌଣସି ଅନ୍ତର୍ବାଣୀ ସ୍ଫୁରିତ ହେଲାନାହିଁ । ଏହି ସମୟରେ ପହଂଚିଂଲେ ଭାଗବତର ଦ୍ୱିତୀୟ ଶ୍ରୋତା ନାରଦ ମହର୍ଷି । ବ୍ୟାସଦେବ ଙ୍କ ସମସ୍ୟା ସମାଧାନ କଲେ । ପୁରୁଷୋତମ ଙ୍କ ଲୀଳା ଚରିତ ବର୍ଣ୍ଣନା କଲେ । ଜଗତର ସମସ୍ତ ଅଶୁଭର ପ୍ରତିକାର, ଉପଭୋଗର ଏକମାତ୍ର ମାର୍ଗ ହେଉଛି ଭଗବତ ଶରଣାଗତି । ତେଣୁ ସେହି ପୁରୁଷୋତମ ଙ୍କ ଲୀଳାର ମହିମା ବର୍ଣ୍ଣନା କଲେ ଜଗତର କଲ୍ୟାଣ ସାଧିତ ହେବା ହିଁ ନାରଦ ବ୍ୟାସଦେବ ଙ୍କୁ ଏପରି କହିସାରିବା ପରେ ତାଙ୍କୁ ବାସୁଦେବ ମନ୍ତ୍ର ଏବଂ ଚତୁଃଶ୍ଳୋକୀ ଭାଗବତର ତତ୍ତ୍ୱ କହିଲେ । ବ୍ୟାସଦେବ ଧ୍ୟାନମଗ୍ନ ହେଲେ । ଅର୍ନ୍ତଦୃଷ୍ଟି ବଳରେ ଅବଲୋକନ କଲେ ଶ୍ରୀକୃଷ୍ଣ ଙ୍କ ଲୀଳା, ତାଙ୍କ ଲେଖନୀରୁ ସୃଷ୍ଟିହେଲା ଶ୍ରୀମଭାଗବତର ଅମୀୟ ନିର୍ଝର । ବ୍ୟାସଦେବ ଭାଗବତର ତୃତୀୟ ଶ୍ରୋତା ଓ ଚତୁର୍ଥ ବକ୍ତା ।

ବ୍ୟାସଦେବ ଙ୍କ ପୁତ୍ର ହେଉଛନ୍ତି ମାୟାମୁକ୍ତ ଆଜନ୍ମ ବ୍ରହ୍ମଚାରୀ ଶୁକଦେବ । ଭାଗବତର ଏଇ ଶ୍ଳୋକଟି ତାଙ୍କୁ ଭାଗବତ ଆଡକୁ ଟାଣିନେଲା -

ଅହୋ ବିକୀଯଂ ସ୍ତନକାଳକୂଟଂ
ଜିଘାଂସ ୟାପାୟ ଯଦପ୍ୟସାଧ୍ୱୀ

ଲେଭେ ଗତିଂ ଧାତ୍ର୍ୟୁଶତାଂ ତତୋଽନଂ
କଂ ବା ଦୟାଳୁଂ ଶରଣ ବ୍ରଜେମ ।

-ଶ୍ରୀମଭାଗବତ- ୩ / ୨ / ୨୩

ଅର୍ଥାତ୍ ଅହୋ ! ବଡ ଆଶ୍ଚର୍ଯ୍ୟ ! ଶ୍ରୀକୃଷ୍ଣ ଙ୍କୁ ବଧ କରିବାକୁ ଇଚ୍ଛାକରି ପୂତନା ପିଆଇଥିଲା ଶ୍ରୀକୃଷ୍ଣ ଙ୍କୁ ସ୍ତନଲିପ୍ତ ବିଷ । କିନ୍ତୁ ସେଇ ଦୁଷ୍ଟା ପୂତନା ମଧ ଭଗବତ୍ କୃପାବଳରେ ଲାଭ କରିଥିଲା ମୁକ୍ତି - ଯାହାକୁ ଧାତ୍ରୀ ଲାଭ କରିଥାନ୍ତା । ଅତଏବ ଶ୍ରୀକୃଷ୍ଣ ଙ୍କ ବ୍ୟତୀତ ଏପରି ଦୟାଳୁ କେଉଁ ବ୍ୟକ୍ତି ଅଛି, ଯାହାର ଶରଣ ପଶିବୁ ଆମ୍ଭେମାନେ ! ! ବ୍ୟାସପୁତ୍ର ଶୁକଦେବ ଭାଗବତ ପ୍ରତି ଆକୃଷ୍ଟ ହେଲେ । ସୁଯୋଗ୍ୟ ପିତାର ସୁଯୋଗ୍ୟ ପୁତ୍ର ବ୍ୟାସଦେବ ଭାଗବତ କୁ ପଢାଇଥିଲେ ଶୁକଦେବ ଙ୍କୁ । ବ୍ୟାସ ହେଲେ ପଚଂମ ବକ୍ତା, ଶୁକଦେବ ହେଲେ ଚତୁର୍ଥ ଶ୍ରୋତା ।

ଏହି ଶୁକଦେବ ଥିଲେ ଭାଗବତର ଷଷ୍ଠ ବକ୍ତା ଓ ସାତଦିନ ଧରି ଭାଗବତ ସେ ଶୁଣାଇଥିଲେ ରାଜା ପରୀକ୍ଷିତ ଙ୍କୁ । ଶୁକଦେବ ଯାହା କହିଛନ୍ତି ଓ ପରୀକ୍ଷିତ ଯାହା ଶୁଣିଛନ୍ତି ତାହାର ସାରସ୍ୱତ ରୂପ ହେଉଛି ଆଜିର ଶ୍ରୀମଦ୍ ଭାଗବତ ।

---

## ଓଡିଆ ସାହିତ୍ୟ ର ସାଧକ
## ସମାଲୋଚକ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ

କୃଷ୍ଣଚନ୍ଦ୍ର ପ୍ରଧାନ (୧୯୫୯) - ଜଣେ ବହୁପାଠୀ ତଥା ପ୍ରଭାବଶାଳୀ ସମାଲୋଚକ । ତାଙ୍କ ସାହିତ୍ୟ ମୂଲ୍ୟାୟନ ଯୁକ୍ତିନିଷ୍ଠ । ବିଚାରଧାରା ସୂକ୍ଷ୍ମ ଓ ଶୈଳୀ ମାର୍ଜିତ । "ଓଡିଆ ସାହିତ୍ୟ ର ସାମାଜିକ ଓ ସାଂସ୍କୃତିକ ବିକାଶଧାରା", "ଓଡିଆ ଲୋକସାହିତ୍ୟ ଓ ଲୋକସଂସ୍କୃତି", "ଓଡିଆ ରୀତି ସାହିତ୍ୟ", "ପରମ୍ପରା-ପୁରୋଦୃଷ୍ଟି", "ଦେଶ ଭାଷାର କାରିଗର ଫକୀରମୋହନ", "ଧର୍ମ-ସାହିତ୍ୟ ଓ ସାହିତ୍ୟ ତତ୍ତ୍ୱ" ଓଡିଆ ସାହିତ୍ୟ ର ଇତିହାସ (୧୮୫୦-୧୯୪୭) ଆଦି ତାଙ୍କର କେତୋଟି ଉଲ୍ଲେଖଯୋଗ୍ୟ କୃତି ଏବଂ ଏସବୁରେ ତାଙ୍କର ଅଧ୍ୟୟନ ଓ ଅଧିନ ଜ୍ଞାନର ପରିବ୍ୟାପ୍ତ ଉନ୍ମୋଚିତ ।

କୃଷ୍ଣଚନ୍ଦ୍ର ଙ୍କ ଜନ୍ମ - ତା. ୦୨/୦୨/୧୯୫୯ ଅବିଭକ୍ତ କଟକ ଜିଲ୍ଲା ତଥା ବର୍ତ୍ତମାନର କେନ୍ଦ୍ରାପଡା ଜିଲ୍ଲା ପଟ୍ଟାମୁଣ୍ଡାଇ ଅନ୍ତର୍ଗତ କଖାରଣୀ ପରି ଏକ ମଫସଲ ଗାଁରେ । ମା' - ବାଲୁରୀ ଦେବୀ, ବାପା - ହୃଦାନନ୍ଦ ପ୍ରଧାନ । ଗୋଟିଏ ପ୍ରାକୃତିକ ବାତାବରଣ ଭିତରେ ପ୍ରଥମେ ନିଜକୁ ଆବିଷ୍କାର କରିଥିଲେ । ସେତେବେଳେ ଗ୍ରାମରେ ମନୋରଞ୍ଜନ କାର୍ଯ୍ୟରେ କୃଷ୍ଣଚନ୍ଦ୍ର ବିଭିନ୍ନ ପର୍ବପର୍ବାଣୀ ତଥା ବର୍ଷକରେ ଥରେ ଅଭିନୀତ ମଚଂ ନାଟକରେ ପିଲାଟି ଦିନରୁ ନିଜକୁ ସାମିଲକରି ପାରିଥିଲେ । ନାଟକରେ ମଧ ସେ କିଛିକିଛି ଅଭିନୟ କରିଥିଲେ । ସେ ମଧ ନାଟକରେ ଗୀତ ରଚନା କରିବାର ଦାୟିତ୍ୱରେ ଥିଲେ । ରେଡିଓରୁ ଗୀତା ଶୁଣିଶୁଣି ଭଜନ ଜଣାଣ ଲେଖିବାର ଇଚ୍ଛାପୂର୍ଣ୍ଣ ହୋଇଥିଲା ।

ପିଲାଟି ଦିନରୁ ତାଙ୍କର ସାରସ୍ୱତ କୃତି ବାରିହୋଇ ପଡୁଥିଲା । ସମୟକ୍ରମେ କୃଷ୍ଣଚନ୍ଦ୍ର ଶିକ୍ଷା ଅଧ୍ୟୟନରେ ଅଗ୍ରସର ହୋଇପାରିଲେ । ମାଟ୍ରିକ୍ - ମନମଥ ନାଥ ହାଇସ୍କୁଲ, ପଟ୍ଟାମୁଣ୍ଡାଇ, ବି.ଏ. - କେନ୍ଦ୍ରପଡା କଲେଜ, ଏମ୍.ଏ. (ଓଡିଆ) ତଥା ଏମ୍.ଫିଲ୍ ଉତ୍କଳ ବିଶ୍ୱବିଦ୍ୟାଳୟ । ପରେପରେ ଉଚ୍ଚଶିକ୍ଷା ଗବେଷଣାରେ "ଓଡିଆ ସାହିତ୍ୟରେ ଫକୀରମୋହନ ଙ୍କ କବିତା" ଉପରେ ପିଏଚ୍.ଡି. - ଉତ୍କଳ ବିଶ୍ୱବିଦ୍ୟାଳୟ, "ଓଡିଆ ରୀତି ସାହିତ୍ୟ ର ପରମ୍ପରା ଓ ପୁରଦୃଷ୍ଟି" ପ୍ରସଙ୍ଗରେ ଉଚ୍ଚତର ଗବେଷଣା (ଡି.ଲିଟ୍.) ପ୍ରାପ୍ତ ।

ଶିକ୍ଷା ପରେପରେ କୃଷ୍ଣଚନ୍ଦ୍ର ନିଜର ଜୀବିକାପାଇଁ ଶିକ୍ଷକତାକୁ ଗ୍ରହଣ କରିଥିଲେ - ପ୍ରଥମେ ସୁନାବେଡାର ବ୍ୟାମଯାନ ସଂସ୍ଥାରୁ ଶିକ୍ଷକତା ଆରମ୍ଭ କରିଥିଲେ । ସେଠାରେ ଥଣ୍ଡା ଅଚଂଳ ଥିବାରୁ ସ୍ୱାସ୍ଥ୍ୟ ସମସ୍ୟାକୁ ନେଇ ଅନେକ ସ୍ୱାସ୍ଥ୍ୟ ସମ୍ପର୍କୀୟ ଗଳ୍ପ ରଚନା କରିଥିଲେ, ତାହା ଓଡିଶାରେ ବିଭିନ୍ନ ଶିଶୁ ପତ୍ରିକାରେ ପ୍ରକାଶିତ ହୋଇଥିଲା । ସୃଜନ ବିକାଶରେ ସେ ଅଗ୍ରଗତି କରି ଚାଲିଲେ ।

ପରେ ଉଚ୍ଚଶିକ୍ଷା ବିଭାଗ - ଓଡିଶା ଦ୍ୱାରା ପରିଚାଳିତ ରାଜ୍ୟ ସିଲେକସନ୍ ବୋର୍ଡ ଦ୍ୱାରା ମନୋନୀତ ହୋଇ ବିଭିନ୍ନ କଲେଜରେ ଓଡିଆ ଭାଷା ଓ ସାହିତ୍ୟ ର ଅଧାପକ ଭାବରେ ଯୋଗଦେଇ ସୃଜନଶୀଳତାରେ ସାହିତ୍ୟ ସମାଲୋଚନା ପ୍ରତି ଆକୃଷ୍ଟ ହୋଇଥିଲେ । କଲେଜରେ ଅଧାପନା ସମୟରେ ୫ / ୬ଟି ସମାଲୋଚନା ସାହିତ୍ୟ ପୁସ୍ତକ ଆତ୍ମପ୍ରକାଶ କରିଥିଲା । ପରବର୍ତୀ ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଅଧାପନା କାର୍ଯ୍ୟ ସମୟରେ ଗବେଷଣା, ସମାଲୋଚନା ଓ ପ୍ରକଳ୍ପ କାର୍ଯ୍ୟରେ ବ୍ୟସ୍ତ ରହିଥିଲେ । ସାହିତ୍ୟ ସମାଲୋଚନା ଲେଖିବା ସମୟରେ ସର୍ଜନାତ୍ମକ ଦୃଷ୍ଟିଭଙ୍ଗୀକୁ ଆଦୌ ପରିହାର କରିନାହାଁନ୍ତି । ତାଙ୍କ ମତରେ ପ୍ରତ୍ୟେକ ସମାଲୋଚକ କେଉଁଠି ନା କେଉଁଠି ତା' ଅନ୍ତକରଣର କ୍ରୀୟା ସହିତ ଜଡିତ, ତେଣୁ କଳ୍ପନା ଦୃଷ୍ଟିନେଇ ସ୍ରଷ୍ଟାଟିଏ ସୃଷ୍ଟିର ସର୍ଜନା କରିଥାଏ

### ସାହିତ୍ୟସାଧକ କୃଷ୍ଣଚନ୍ଦ୍ର -

ଆଧୁନିକ ସାହିତ୍ୟ ପ୍ରତି ଦୁର୍ବଳତା କରିଥିଲା କୃଷ୍ଣଚନ୍ଦ୍ର ଙ୍କୁ । ସମକାଳିନୀ ସେ ଥିଲେ ସର୍ବାଧିକ ଆଧୁନିକ ସାହିତ୍ୟ ର ଜଣେ ସ୍ରଷ୍ଟା । ସାହିତ୍ୟ ସମାଲୋଚନା ହେଉଛି ତାଙ୍କ ଜୀବନର ଏକ ଅବିଚ୍ଛେଦ୍ୟ ଧାରା । ତାହା ତାଙ୍କପାଇଁ ମୁକ୍ତି ଓ ଗତିର ପ୍ରତୀକ । ଏହାମତେ ବହୁ ସୁନାମଧନ୍ୟ ସ୍ରଷ୍ଟାଙ୍କୁ ଅଧ୍ୟୟନ କରିବାର ସୁଯୋଗ ଦେଇଛି ତାଙ୍କୁ । ସେମାନଙ୍କ ଦୃଷ୍ଟିରେ ବିଶ୍ୱକୁ ଦେଖି ତାଙ୍କ ଦୃଷ୍ଟିଭଙ୍ଗୀ ହୋଇଅଛି ପ୍ରସାରିତ । ଜଣେ ସ୍ରଷ୍ଟା ନିକଟରେ ତା'ର ସୃଷ୍ଟି ଯେତିକି ସତ୍ୟ, ତାଙ୍କପାଇଁ ତାଙ୍କ ସମାଲୋଚନା ସାହିତ୍ୟ ତା'ଠାରୁ କୌଣସି ଗୁଣରେ କମ୍‌ନୁହେଁ । ସତ୍ୟକୁ ଦେଖି ଦେଖାଇବାର ସତ୍‌ଦୃଷ୍ଟି ଲାଭ କରିଛନ୍ତି ସମାଲୋଚନା ସାହିତ୍ୟ ମାଧମରେ । ସେ କେବଳ ସ୍ରଷ୍ଟା ଓ ସୃଷ୍ଟିକୁ ଲେଖିନାହାଁନ୍ତି । ନିଜକୁ ମଧ ଲେଖିଛନ୍ତି - ସମାଲୋଚନାର ମୁଗ୍ଧ ଭାବାଲୋକରେ । ସତ୍ୟ ଓ କଳ୍ପନା ମଧରେ ରହିଥିବା ଅନ୍ତରଙ୍ଗପଣ ଓ ଜୀବନକୁ ଅନୁଭବିଛି ଏହା ମାଧମରେ । ଏଥିପାଇଁ ସମାଲୋଚନା ସାହିତ୍ୟ ତାଙ୍କପାଇଁ ହେଉଛି ଏକ ଦିବ୍ୟ ଅନୁଭବ । ଜୀବନର ଅନ୍ତରଙ୍ଗ ସାଥି ଓ ତାଙ୍କ ଚିନ୍ତନର ସାର୍ଥକ ଉଚ୍ଚାରଣ ।

ଏଯାବତ୍ କୃଷ୍ଣଚନ୍ଦ୍ର ଙ୍କ ଏକାବନ ଖଣ୍ଡ ପୁସ୍ତକ ପ୍ରକାଶିତ । ଯେଉଁଥିରେ ରହିଅଛି ୨୮ ଖଣ୍ଡ ମୌଳିକ ଆଲୋଚନା ଓ ୨୩ ଖଣ୍ଡ ସମ୍ପାଦନା ପୁସ୍ତକ । ଲୋକସାହିତ୍ୟ ସଂସ୍କୃତି ଠାରୁ ଆରମ୍ଭକରି ସାମ୍ପ୍ରତିକ କାଳ ପର୍ଯ୍ୟନ୍ତ ରଚିତ ସାହିତ୍ୟ ସମସ୍ତ ବିଭାଗରେ ସେ ଲେଖନୀ ଚାଳନା କରିଅଛନ୍ତି । ଲୋକସଂସ୍କୃତି ଆଲୋଚନା ମୂଳକରେ ରହିଛି ଜାତିକୁ ଜାଣିବାରେ ଆଗ୍ରହ । ଲୋକସାହିତ୍ୟ ଅନୁଶୀଳନ ନିମିତ ଲୁପ୍ତହୋଇ ଚାଲିଥିବା ଆମର ଅସ୍ମିତା ଓ ଗୌରବାବହ ପରମ୍ପରାକୁ ସେ ଖୋଜିଛନ୍ତି ଲୋକସଂସ୍କୃତି ପରିଚର୍ଚ୍ଚା ମଧରେ ।

ଜଣେ ଶିକ୍ଷକ ଭାବରେ ପ୍ରିୟ ଛାତ୍ରଛାତ୍ରୀମାନଙ୍କୁ ସାହିତ୍ୟ ର ବିଭିନ୍ନ ଧାରା ମାଧମରେ ସମ୍ପର୍କରେ ଧାରଣା ପ୍ରଦାନକରିବା ତାଙ୍କ ଜୀବନର ନୈତିକ କର୍ତବ୍ୟ ବୋଲି ସେ ଗ୍ରହଣ କରିଛନ୍ତି ।

ଏହି ଉଦ୍ଦେଶ୍ୟରେ ଅନେକ ପୁସ୍ତକ ତାଙ୍କର ସମ୍ପାଦିତ - ଯଥା -

୧. ଉତର ଆଧୁନିକତା - ଏକ ପରିଚିତ

୨. ପାଶ୍ଚାତ୍ୟ ସାହିତ୍ୟ ଓ ସମୀକ୍ଷା ତତ୍ୱ

୩. ଭାରତୀୟ ପାଶ୍ଚାତ୍ୟ ସାହିତ୍ୟିକ ମତବାଦ ଓ ସମାଲୋଚନା ତତ୍ୱ

ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ପୁସ୍ତକ ମଧ୍ୟରେ - ଆଧୁନିକ କବିତା, କଥା ସାହିତ୍ୟ, ଗଦ୍ୟ ସାହିତ୍ୟ ବିଭିନ୍ନ ବିଭାଗ ସମ୍ପର୍କରେ ସ୍ୱତନ୍ତ୍ର ପୁସ୍ତକ ରଚନା କରିଅଛନ୍ତି ।

ସମାଜ ତତ୍ୱ, ନୃତତ୍ୱ, ଭାଷାତତ୍ୱ, ମନସ୍ତତ୍ୱ ଆଦି ଗଭୀର ଅଧ୍ୟୟନ କରି ସାହିତ୍ୟ ର ଅନ୍ତର୍ନିହୀତ ଭାବାରାଶିର ଉନ୍ମୋଚନ ନିମିତ ସର୍ବଦା ପ୍ରୟାସରତ । ସେହିପରି ତୁଳନାତ୍ମକ ସାହିତ୍ୟ ବିଚାରଧାରାରେ ଓଡିଆ ସାହିତ୍ୟକୁ ବିଭିନ୍ନ ଭାରତୀୟ ସାହିତ୍ୟ ଏବଂ ବିଶ୍ୱସାହିତ୍ୟ ସହିତ ସେ ତୁଳନାତ୍ମକ ଅଧ୍ୟୟନ କରିଅଛନ୍ତି । ସାହିତ୍ୟ ଆଲୋଚନା ମାଧ୍ୟମରେ ବିଶ୍ୱର ବହୁ ବିଦ୍ୱାନ, ବିଶିଷ୍ଟ ସ୍ରଷ୍ଟାଙ୍କ ସହିତ କୃଷ୍ଣଚନ୍ଦ୍ର ପରିଚିତ ହୋଇପାରିଛନ୍ତି ।

## ପଦପ୍ରଯୁକ୍ତ କୃଷ୍ଣଚନ୍ଦ୍ର -

ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ଜଣେ ଅଧ୍ୟାପକ ଭାବରେ ଯେପରି ଛାତ୍ରବତ୍ସଳ ଥିଲେ ଠିକ୍ ସେହିପରି ଜଣେ ସାହିତ୍ୟିକ ଭାବରେ ପ୍ରଖ୍ୟାତ ସମାଲୋଚକ ସହିତ ଜ୍ଞାନପିପାସୁ ଗବେଷକ ଭାବରେ ମଧ୍ୟ ପ୍ରତିଷ୍ଠା ଲାଭ କରିଥିଲେ । ଜଣେ ସାରସ୍ୱତସାଧକ ଭାବରେ ବିଭିନ୍ନ ଅନୁଷ୍ଠାନରେ ପଦପ୍ରଯୁକ୍ତ ସହିତ ନିଷ୍ଠାପର ଭାବରେ ଅନୁଷ୍ଠାନର ଉନ୍ନତିକଳ୍ପ ନିଜକୁ ଉତ୍ସର୍ଗୀତ କରିଥିଲେ - ସେଥିମଧ୍ୟରୁ କିଛି ଅନୁଷ୍ଠାନ ମଧ୍ୟରେ - କେନ୍ଦ୍ର ସାହିତ୍ୟ ଏକାଡେମୀ ସଦସ୍ୟ - ଜଣେ ବିଶ୍ୱବିଦ୍ୟାଳୟର ପ୍ରଫେସର ଭାବରେ ଭାରତର ସର୍ବୋଚ୍ଚ ସାହିତ୍ୟ ଅନୁଷ୍ଠାନ କେନ୍ଦ୍ର ସାହିତ୍ୟ ଏକାଡେମୀର ସଦସ୍ୟ ଭାବରେ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ଭାରତର ବିଶିଷ୍ଟ ସାହିତ୍ୟ ସ୍ରଷ୍ଟା ଓ ଆଲୋଚକ ଙ୍କ ସମ୍ପର୍କରେ ଆସି ତାଙ୍କ ଦୃଷ୍ଟିଭଙ୍ଗୀରେ ପରିବର୍ତନ ଘଟିଛି । ବିଭିନ୍ନ ଭାଷାଙ୍କ ସ୍ରଷ୍ଟାଙ୍କ ସହଯୋଗରେ ତାଙ୍କ ସୃଷ୍ଟିପ୍ରତି ଅବଗତ ହୋଇଛନ୍ତି, ସେହି ପ୍ରସଙ୍ଗରେ ଓଡିଆ ସାହିତ୍ୟ ସହିତ ଅନ୍ୟଭାଷାର ସାହିତ୍ୟ ପ୍ରତି ବିଚାର କରିଛନ୍ତି । ବହୁ ଜ୍ଞାନପୀଠ ବିଜେତା, ସରସ୍ୱତୀ ସମ୍ମାନପ୍ରାପ୍ତ, ମୂର୍ତିଦେବୀ ସମ୍ମାନ ସହ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ସାହିତ୍ୟିକ ଠାରୁ ସେମାନଙ୍କ ସୃଷ୍ଟିର ନିଜସ୍ୱ ବିଚାର ଜାଣିପାରିଛନ୍ତି । ଓଡିଶା ସାହିତ୍ୟ ଏକାଡେମୀର ସଦସ୍ୟ ଭାବରେ କାର୍ଯ୍ୟ କରିଅଛନ୍ତି ।

ଏତଦ୍‌ବାଦ କେନ୍ଦ୍ର ସାହିତ୍ୟ ଏକାଡେମୀ, ଓଡିଶା ସାହିତ୍ୟ ଏକାଡେମୀ ଓ ଜାତୀୟ ବୁକ୍ ଟ୍ରଷ୍ଟ ପାଇଁ (ପୁସ୍ତକ) ଲେଖାଲେଖି କରିଅଛନ୍ତି ।

## ସମ୍ମାନ ଓ ସମ୍ବର୍ଦ୍ଧିତ ପ୍ରତିଭା କୃଷ୍ଣଚନ୍ଦ୍ର -

ନିଜର ସାହିତ୍ୟ ସୃଷ୍ଟିପାଇଁ ସାହିତ୍ୟିକ କୃଷ୍ଣଚନ୍ଦ୍ର ଅନେକ ଅନୁଷ୍ଠାନରୁ ସମ୍ମାନୀତ ଓ ସମ୍ବର୍ଦ୍ଧିତ ମଧ୍ୟ । ନିଜର ସମାଲୋଚନା ସାହିତ୍ୟ ପାଇଁ ଓଡିଶାର ବିଭିନ୍ନ କଲେଜ ଓ ବିଶ୍ୱବିଦ୍ୟାଳୟରୁ ସମ୍ମାନୀତ ହୋଇଛନ୍ତି ।

ଓଡିଶା ସାହିତ୍ୟ ଏକାଡେମୀ

ପ୍ରଜାତନ୍ତ୍ର ପ୍ରଚାର ସମିତି (ଝଙ୍କାର ପୁରସ୍କାର)

ଉତ୍କଳ ସାହିତ୍ୟ ସମାଜ, କଟକ - ସମ୍ମାନୀତ

ସାରଳା ସଂସଦ ସମ୍ମାନ

ସାହିତ୍ୟ ଶ୍ୱେତପଦ୍ମ ସମ୍ମାନ

କେନ୍ଦ୍ରାପଡା ଜିଲ୍ଲା ସାହିତ୍ୟ ସଂସଦ

ଗୀତିକବି ସମାଜ

ବିଭିନ୍ନ ପୁସ୍ତକ ମେଳା ସମ୍ମାନ

ଆଦିକବି ସାରଳା ଦାସ ସାଂସ୍କୃତିକ ସମାଜ

ବାସୁମତୀ ସାହିତ୍ୟ ସଂସଦ

ଲେଖାଲେଖି ସାହିତ୍ୟ ସମ୍ମାନ

ସୁଧନ୍ୟା ସାହିତ୍ୟ ସମ୍ମାନ

ଚେତାବନୀ ସାହିତ୍ୟ ସମ୍ମାନ

ଆଦି ବହୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନୀତ ଓ ସମ୍ବର୍ଦ୍ଧିତ ।

## ଜ୍ଞାନପୀପାସୁ ଗବେଷକ କୃଷ୍ଣଚନ୍ଦ୍ର -

ସାହିତ୍ୟ - ଆଲୋଚନା, ଗବେଷଣା ଓ ଅଧ୍ୟାପନା କୃଷ୍ଣଚନ୍ଦ୍ର ଙ୍କ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗହୋଇ ଏଯାବତ୍ ରହିଆସିଛି । ଗୋଟିଏ ମଫସଲ ଗାଁରେ ଜନ୍ମହୋଇ ଅନେକ କ୍ଷେତ୍ରରେ ପ୍ରତିକୂଳ ପରିବେଶ ବିରୁଦ୍ଧରେ ସଂଗ୍ରାମକରି ଈଶ୍ୱର ଙ୍କ ଆଶୀର୍ବାଦରୁ ସେ ଏକ ସ୍ୱତନ୍ତ୍ର ପରିଚୟ ପାଇପାରିଛନ୍ତି । ଶିକ୍ଷକତା ପରି ଏକ ପବିତ୍ର କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରି ଗର୍ବୀତ ମନେକରିବା ସହିତ

ରାଷ୍ଟ୍ର ନିର୍ମାଣରେ ଭାଗିଦାରୀ ହୋଇପାରିଛନ୍ତି । ଜଣେ ଶିକ୍ଷକ ଭାବରେ ନୁହେଁ ବରଂ ଜଣେ ବିଦ୍ୟାର୍ଥୀ ଭାବରେ ସମଗ୍ର ଜୀବନ ଅଧ୍ୟୟନ ହିଁ ହୋଇଛି ତାଙ୍କ ଜୀବନ ଜିଜ୍ଞାସା । ହଜାର ହଜାର ସ୍ୱନାମଧନ୍ୟ ଛାତ୍ର ଓ ଛାତ୍ରୀ ତାଙ୍କର ଗର୍ବ ଓ ଗୌରବ ।

କୃଷ୍ଣଚନ୍ଦ୍ର ଙ୍କ ଅଧିନରେ ଗବେଷଣା କରି ପ୍ରାୟ ୮୦ ଜଣ ଛାତ୍ରଛାତ୍ରୀ ଏମ୍.ଫିଲ୍. ଡିଗ୍ରୀ, ତିରିଶ ଜଣ ଗବେଷକ ଓ ଗବେଷିକା ପିଏଚ୍.ଡି. ଡିଗ୍ରୀ ଓ ତିନିଜଣ ଗବେଷକ ଓ ଗବେଷିକା ଡି.ଲିଟ୍. ଡିଗ୍ରୀ ପାଇଛନ୍ତି ଓ ମାତ୍ରାଧିକ ଶିକ୍ଷାର୍ଥୀ ତାଙ୍କ ତତ୍ତ୍ୱାବଧାନରେ ପ୍ରକଳ୍ପ କାର୍ଯ୍ୟ ସମାପନ କରିଅଛନ୍ତି । ପ୍ରାୟ ନବେ ଗୋଟି ଆନ୍ତର୍ଜାତୀୟ, ଜାତୀୟ, ପ୍ରାଦେଶିକ ସଂସ୍ଥାନ ଓ ଆଲୋଚନା ଚକ୍ରରେ ଯୋଗଦେଇ ପ୍ରବନ୍ଧ ପାଠ କରିଛନ୍ତି ।

ସମ୍ପ୍ରତି କୃଷ୍ଣଚନ୍ଦ୍ର ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଓଡିଆ ଭାଷା ଓ ସାହିତ୍ୟ ର ପ୍ରଫେସର ଭାବରେ ଅବସର ନେଇ କୋରାପୁଟସ୍ଥ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଓଡିଶାରେ ଭିଜିଟିଙ୍ଗ୍ ପ୍ରଫେସର ଭାବରେ କାର୍ଯ୍ୟରତ ।

କୃଷ୍ଣଚନ୍ଦ୍ର ପ୍ରଧାନ ଙ୍କ "ଲୋକସାହିତ୍ୟ ତତ୍ତ୍ୱରୂପ ଓ କଳାରୂପ" (ସମାଲୋଚନା) ପୁସ୍ତକରୁ

## ଲୋକବିଦ୍ୟା : କଥାରୂପ (ଟାଇପ୍) ଓ କଥାଭିପ୍ରାୟ (ମୋଟିଫ୍) ପ୍ରବନ୍ଧ

ସମ୍ପ୍ରତି ବିଶ୍ୱରେ ଲୋକବିଦ୍ୟା ଚର୍ଚ୍ଚା ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଛି । ବୈଜ୍ଞାନିକ ପଦ୍ଧତିରେ ଏହାର ବିଚାର ବିଶ୍ଲେଷଣ ଜାରି ରହିଛି । ଇଉରୋପ ଓ ଆମେରିକାରେ ଲୋକବିଦ୍ୟା ଚର୍ଚ୍ଚା ନିମିତ ବହୁ ସରକାରୀ ଓ ବେସରକାରୀ ଅନୁଷ୍ଠାନ ଗଢିଉଠିଛି । ଲୋକବିଦ୍ୟାର ବିଷୟ ଆଜି ଆଉ କେବଳ ସାଂସ୍କୃତିକ ନୃତତ୍ତ୍ୱଶାସ୍ତ୍ର ସହିତ ସମ୍ପର୍କ ନରଖି ବିସ୍ତୃତ ହୋଇଯାଇଛି ସମାଜ ଶାସ୍ତ୍ର, ମନୋବିଜ୍ଞାନ, ଭାଷାବିଜ୍ଞାନ ଓ ସାହିତ୍ୟ ରାଜ୍ୟକୁ । ମାନବ ଜୀବନ ସହିତ ଏହି ବିଦ୍ୟାର ସମ୍ପର୍କ ଅଛେଦ୍ୟ ଥିବାରୁ ସମାଜ ତାତ୍ତ୍ୱିକ, ନୃତାତ୍ତ୍ୱିକ, ମନସ୍ତାତ୍ତ୍ୱିକ, ଭାଷାତାତ୍ତ୍ୱିକ ଆଦି ଅଧ୍ୟୟନ ପଦ୍ଧତି ମାଧ୍ୟମରେ ଏହାର ବାସ୍ତବ ସ୍ୱରୂପ ଉଦ୍‌ଘାଟନ ନିମିତ ପ୍ରୟାସ ଚାଲିଛି । ଆଜି ଏହା କେବଳ ସାହିତ୍ୟ ର ଏକ ଅଙ୍ଗବିଶେଷ ମାତ୍ର ନୁହେଁ, ମାନବର ସଂସ୍କାର ଓ ଜୀବନ ସହିତ ଏହା ଏପରି ଭାବରେ ସମ୍ବନ୍ଧାନ୍ୱିତ ଯେ, ଏହା ବ୍ୟତିରେକେ ମାନବ ସଭ୍ୟତାର ଇତିହାସ ଆକଳନ ଅପୂର୍ଣ୍ଣ ରହିଯିବ ବୋଲି ବିଚାର କରାଯାଉଛି । ଲୋକସାହିତ୍ୟ ଠାରୁ ଆରମ୍ଭକରି ଲୋକକଳା, ଚିତ୍ରବିଦ୍ୟା, ହସ୍ତଶିଳ୍ପ, କାରିଗରୀ, କୃଷିପ୍ରଣାଳୀ, ସମ୍ବାଦ ସଂଗ୍ରହ ଓ ପ୍ରେରଣ, ଲୋକଚିକିତ୍ସା, ଲୋକବିଶ୍ୱାସ, ସଙ୍ଗୀତ-ନୃତ୍ୟ ଆଦି ସମସ୍ତ ବିଷୟ ଲୋକବିଦ୍ୟା ଅନ୍ତର୍ଭୁକ୍ତ । ଲୋକବିଦ୍ୟାର ଅନ୍ୟାନ୍ୟ ବିଭାଗ ପରି ଲୋକସାହିତ୍ୟ ର ମଧ ବୈଜ୍ଞାନିକ ବିଶ୍ଲେଷଣ ହେଉଛି । ଏହାର ସଂରଚନା ପଦ୍ଧତି ସମ୍ପର୍କରେ ବିଂଶ ଶତକରେ ବହୁ ତାତ୍ତ୍ୱିକ ଆଲୋଚନା ପ୍ରକାଶ ପାଇଛି । ଲୋକସାହିତ୍ୟ, ଲୋକନୃତ୍ୟ, ଲୋକସଙ୍ଗୀତ ଓ ଲୋକକଳା ଅଧ୍ୟୟନ କ୍ଷେତ୍ରରେ ଯେଉଁ କେତୋଟି ବିଶିଷ୍ଟ ବିଭାବର ଗୁରୁତ୍ୱ ରହିଛି, ତନ୍ମଧ୍ୟରେ କଥାରୂପ ଓ କଥାଭିପ୍ରାୟ ମୁଖ୍ୟ । ଲୋକକଥା ବିଶ୍ଲେଷଣ ଓ ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ଏହାର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏହି ଦୁଇଟି ବିଭାବ ସମ୍ପର୍କରେ ଆଲୋଚନାର ସ୍ୱତନ୍ତ୍ର ପ୍ରୟୋଗ ରହିଛି ।

### କଥାରୂପ ବା ଟାଇପ୍ -

ଇଂରାଜୀରେ ଏହାର ପାରିଭାଷିକ ଶବ୍ଦ ହେଉଛି Tale Types ପରମ୍ପରାରେ ଯାହା ନିଜପାଇଁ ଏକ ସ୍ୱତନ୍ତ୍ର ଆଧାର ସୃଷ୍ଟି କରିଥାଏ, ଲୋକବିଦ୍ୟାରେ କେବଳ ସେହି କ୍ଷେତ୍ରରେ ଏହି କଥାରୂପ ଶବ୍ଦଟିର ବ୍ୟବହାର କରାଯାଇଥାଏ । ଆର୍ଟିଂଆନେ ଓ ଷ୍ଟିଥ୍ ଥମ୍ପସନ ଙ୍କ "The Types of the Folk Tale" ଟାଇପ୍ ବା କଥାରୂପ ସମ୍ପର୍କୀୟ ଏକ ବୈଜ୍ଞାନିକ ତଥା ପ୍ରାମାଣିକ ଗ୍ରନ୍ଥ । ଲୋକକଥାର ବିଜ୍ଞାନ ସମ୍ମତ ଅନୁଶୀଳନ ନିମିତ ଲୋକକଥାକୁ ବିଭିନ୍ନ ଭାବରେ ବିଭକ୍ତ କରାଯାଇଛି । ଏହାକୁ ବିଜ୍ଞାନସମ୍ମତ ଓ ଶ୍ରେଣୀବଦ୍ଧ କରିବା କ୍ଷେତ୍ରରେ ଟାଇପ୍ ନିର୍ଣ୍ଣୟ ଏବଂ ଟାଇପ୍ ସୂଚୀର ପ୍ରମୁଖ ଭୂମିକା ବିଦ୍ୟମାନ । ଭାବ ଓ ଚରିତ୍ରାନୁଯାୟୀ ଲୋକକଥାର ଯାହା ଗୋଟିଏ ବିଶିଷ୍ଟ ବିଭାବ, ତାହା Index of Tale Type ନାମରେ ପରିଚିତ । କୌଣସି କାହାଣୀର ଯେତେ ଜଟିଳ ବା ସରଳ ବିଧାନ କରାଯାଇ ଥାଉନା କାହିଁକି, ତାହା ଯଦି ସ୍ୱତନ୍ତ୍ର ରୂପେ କୁହାଯାଇଥାଏ, ତାହା ଏକ କଥାରୂପ ବା ଟାଇପ୍ । ତେଣୁ କଥାରୂପ ହେଉଛି ଏପରି ଏକ ସ୍ୱାଧୀନ ସଂଜ୍ଞାବିଶିଷ୍ଟ ଲୋକକଥା, ଯାହାର ଅର୍ଥ ଅନୁଶୀଳନ ପାଇଁ କୌଣସି କାହାଣୀ ଉପରେ ନିର୍ଭର କରିବାକୁ ପଡେନାହିଁ । Thompson ଙ୍କ ଭାଷାରେ - "A Type is a traditional tale that has an independent existence. It may be told as a complete narrative and does not depend for its meaning or anyother tale. It may indeed happen to be told with another tale, but the fact that, it may appear alone attests its independence. (The Folk Tale - Thompson, stith. U.S.A.-p-415. 1977)

କେଉଁ ଆଖ୍ୟାନ କେଉଁ କଥାରୂପ ବା ଟାଇପ୍ ସହିତ ସମ୍ବନ୍ଧାନ୍ୱିତ, ତା'ର ସ୍ୱରୂପ ଉଦ୍‌ଘାଟନ କରିବା ଅସମ୍ଭବ ନହେଲେ ହେଁ, ସମୟେ ସମୟେ ବିବିଧ ଆଖ୍ୟାନର ମିଳନର ସ୍ଥିତି କାରଣରୁ ଟାଇପ୍ ନିର୍ଦ୍ଧାରଣ କଷ୍ଟସାଧ୍ୟ ହୋଇ ପଡିଥାଏ । କେତେକ ଲୋକତତ୍ତ୍ୱବିତ୍ ବିଭିନ୍ନ ଟାଇପ୍ ବା କଥାରୂପର ରୂପାନ୍ତର ଉପରେ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ବିଶ୍ୱରେ ବିଭିନ୍ନ ଦେଶର ଲୋକକଥାର ତୁଳନାତ୍ମକ ଅଧ୍ୟୟନ

ନିମିତ ଏକାଧିକ କଥାରୂପର ଅନୁକ୍ରମଣିକା ପ୍ରସ୍ତୁତ ହୋଇଛି । ଇଂଲଣ୍ଡର ଲୋକବିଦ୍ୟା ପରିଷଦ ସହିତ ସମ୍ପୃକ୍ତ ଶ୍ରୀମତୀ ବନ ୧୯୧୪ ମସିହାରେ "The handbook of Folklore" ପ୍ରକାଶ କରିଥିଲେ । ଏଥିରେ ସେ ପ୍ରାୟ ସତରଟି କଥାରୂପର ଉଲ୍ଲେଖ କରିବା ସଙ୍ଗେସଙ୍ଗେ ପ୍ରତ୍ୟେକ କଥାଚକ୍ରର ସଂକ୍ଷିପ୍ତ ରୂପରେଖ ପ୍ରଦାନ କରିଥିଲେ । ଏଟିଂଆନେ ଓ ଥମ୍ପସନ୍ ଙ୍କ ଦ୍ୱାରା ପ୍ରବର୍ତ୍ତିତ ଲୋକକଥାର ଟାଇପ୍ ସୂଚୀର ମୂଳ ବିଭାଗ ମୁଖ୍ୟତଃ ପାଚଂ ଭାଗରେ ବିଭକ୍ତ ଓ ଆବଶ୍ୟକସ୍ଥଳେ ଏହି ବିଭାଗଗୁଡିକର କେତେକ ଉପବିଭାଗ ସମ୍ପର୍କରେ ସୂଚନା ପ୍ରଦତ । ଯଥା -

୧. Animal Tales - (ପ୍ରାଣୀ କଥା) - ଏଥିରେ ଅରଣ୍ୟ ଓ ଗୃହପାଳିତ ପଶୁପକ୍ଷୀଙ୍କ ସହିତ ସମ୍ବନ୍ଧିତ କଥାରୂପ ସମ୍ମିଳିତ (୧-୨୯୯) ।

୨. Ordinary Tales - (ସାଧାରଣ କଥା) - ଏଥିରେ ଯାଦୁବୃତାନ୍ତ, ଅଲୌକିକ ଘଟଣା, ରୋମାଚଂକର ଆଖ୍ୟାନ ସହିତ ସମ୍ବନ୍ଧିତ କଥାରୂପ ସ୍ଥାନପାଇଛି (୩୦୦-୧୧୯୯) ।

୩. Jokes and Anecdotes - (ରଙ୍ଗ କଥା) - ଏଥିରେ ଚତୁର ମଣିଷର ଭାଗ୍ୟଶାଳୀ ଘଟଣା, ମୂର୍ଖ କଥା, ମିଥ୍ୟା କଥା, ଧର୍ମାନୁଷ୍ଠାନ ସମ୍ପର୍କୀୟ କଥାରୂପ ରହିଛି (୧୨୦୦-୧୯୯୯) ।

୪. Formula Tales - (ସୂତ୍ର କଥା) - ଏଥିରେ କ୍ରମ ସମ୍ବର୍ଦ୍ଧକ ଗୁଚ୍ଛଗଳ୍ପ ଓ ଅନ୍ୟାନ୍ୟ ବିବିଧ କଥା ସ୍ଥାନପାଇଛି (୨୦୦୦-୨୩୯୯) ।

୫. Unclassified Tales - (ଅବିଭାଜିତ ଓ ଅବର୍ଗୀକୃତ କଥା) - (୨୪୦୦-୨୪୯୯) ।

ଅନୁକ୍ରମଣିକାରେ ପ୍ରତ୍ୟେକଟି ଟାଇପ୍ ଗଳ୍ପ ଏକଏକ ସ୍ୱତନ୍ତ୍ର ସଂଖ୍ୟାଦ୍ୱାରା ଚିହ୍ନିତ । ଗୋଟିଏ ଗୋଟିଏ ଟାଇପ୍ ଗଳ୍ପ ବିଭିନ୍ନ ରୂପରେ ଦେଖାଦେଲେ ତାହା ସ୍ୱତନ୍ତ୍ର ଭାବରେ ସୂଚାଇ ଦିଆଯାଇଥାଏ । ପୁଣି ଶ୍ରେଣୀ ବିଭାଗର ଗୁରୁତ୍ୱ ଅନୁଯାୟୀ ଏହାକୁ ବିଭିନ୍ନ ସଂଖ୍ୟା ଓ ଦଶମିକ ଚିହ୍ନଦ୍ୱାରା ସୂଚିତ କରାଯିବାର ଉପକ୍ରମ ହୋଇଛି । ଉପଲବ୍ଧ ଗଳ୍ପଟି କେଉଁ ଟାଇପ୍ର ଅନ୍ତର୍ଭୁକ୍ତ ଏବଂ ବିଶ୍ୱର ଅନ୍ୟ କେଉଁ ସ୍ଥାନରେ ଏହା ଉପଲବ୍ଧ, ତା'ର ସୂଚନା ଏଥିରୁ ମିଳିଥାଏ । ଉଦାହରଣ ସ୍ୱରୂପ "ଟମ୍ଥମ୍ବ" ର ପ୍ରାୟ ସାତଶହ ସଂଖ୍ୟକ କଥାରୂପ ଦେଖିବାକୁ ମିଳେ । ଏହି ସଂଖ୍ୟା ସହିତ ପ୍ରତ୍ୟେକ ଟାଇପ୍ କଥାର ସଂକ୍ଷିପ୍ତ ରୂପରେଖ ସଙ୍ଗେ ଇଉରୋପ ଏବଂ ଏସିଆରେ ପ୍ରାପ୍ତ ତା'ର ସମସ୍ତ ରୂପାନ୍ତର ଉଲ୍ଲେଖ କରାଯାଇଛି, ଯଦ୍ଦ୍ୱାରା ଏହି କଥାରୂପଟିର ବିସ୍ତୃତି ସମ୍ପର୍କରେ ସୂଚନା ମିଳିପାରିଛି । ଏହି କଥାରୂପଗୁଡିକର ବିଭିନ୍ନ ରୂପାନ୍ତର ର ତୁଳନା କରାଯାଇ ତା'ର ମୂଳ କଥାରୂପଟିକୁ ଅନୁସନ୍ଧାନ କରିବା ସହଜସାଧ୍ୟ ହୋଇଥାଏ ।

ରନ୍‌ସିଭୋ ଲୋକକଥା ଆଲୋଚନା ପ୍ରସଙ୍ଗରେ ସୂଚନା ପ୍ରଦାନକରି କହିଛନ୍ତି, ବିଶେଷ ବିଶେଷ ଦେଶର ପ୍ରତିକଥା ଓ କାହାଣୀରେ ସ୍ଥିରୀକୃତ ସୁନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟମୟ ଟାଇପ୍ ବିଦ୍ୟମାନ ରହିଛି । ସିଭୋ ଏହି ସମସ୍ତ ଟାଇପ୍‌କୁ "ଆଇକୋ ଟାଇପ୍" (Iko Type) ଭାବରେ ଅଭିହିତ କରିଛନ୍ତି । ସେ ପୁଣି କୁହନ୍ତି ଯେତେବେଳେ ଏହି ଟାଇପ୍ ବା କଥାରୂପ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ପ୍ରସାରିତ ବା ଆନୀତହୁଏ, ସେତେବେଳେ ତାହା ବିଦେଶୀ ରୂପେ ପରିଚିତ ହୋଇଥାଏ । ଆଇକୋ ଟାଇପ୍ ତା'ର ସ୍ୱାତନ୍ତ୍ର୍ୟ ଓ ସ୍ଥାୟିତ୍ୱ ବଜାୟ ରଖିଥାଏ କଥକର ଭୂମିକାରେ । ଭନ୍‌ସିଭୋ Wonderable ଆଇକୋ ଟାଇପ୍ର ବିଚାରକରି ପ୍ରାଚୀନ ଇଣ୍ଡୋ-ଇଉରୋପୀୟ ମାନବଗୋଷ୍ଠୀରେ ତା'ର ମୂଳଉତ୍ସ ସନ୍ଧାନ କରିଛନ୍ତି ।

କଥାରୂପରେ ପରିଲକ୍ଷିତ ବିଭିନ୍ନ ରୂପାନ୍ତରକୁ ତୁଳନା କରାଯାଇ ତା'ର ମୂଳ କଥାରୂପକୁ ଅନୁସନ୍ଧାନ କରାଯାଇଥାଏ । ଏହି ରୂପାନ୍ତରକୁ ଜାଣିବାକୁ ହେଲେ ଅନୁସନ୍ଧାନ କର୍ତାଙ୍କର କଥାରୂପ ସମ୍ପର୍କରେ ସ୍ପଷ୍ଟଧାରଣା ଥିବା ଆବଶ୍ୟକ । ପ୍ରଥମେ ଅନୁସନ୍ଧାନ କର୍ତା ଉପଲବ୍ଧ ପ୍ରସଙ୍ଗ କଥାକୁ ଗୋଟିଏ ଗୋଟିଏ ବର୍ଗରେ ସଜାଡ଼ି ରଖିଥାନ୍ତି । ପ୍ରସଙ୍ଗଗୁଡିକର ତୁଳନାତ୍ମକ ଆଲୋଚନାରୁ ସେ ଯେଉଁ ସୂତ୍ର ଲାଭକରନ୍ତି, ସେଥିରୁ ସେ ଅଧିକରୁ ଅଧିକ କଥା ସଂଗ୍ରହକରି ରୂପାନ୍ତର ର ଆଧାର ଉପରେ ମୂଳ କଥାରୂପର ସ୍ୱରୂପ ଉଦଘାଟନ କରିବା ସଙ୍ଗେସଙ୍ଗେ ତା'ର ଉଦ୍‌ଗମ ସ୍ଥାନ ସମ୍ପର୍କରେ ନିଶ୍ଚିତ ଉପସଂହାରରେ ଉପନୀତ ହେବାକୁ ସମର୍ଥ ହୋଇଥାନ୍ତି । କଥାରୂପର ନିର୍ଦ୍ଧାରଣ ସମୟରେ ଐତିହାସିକ-ଭୌଗୋଳିକ ପଦ୍ଧତିର ସହାୟତା ନିଆଯାଇଥାଏ ।

ଆଟିଂ ଆର୍ନେ ପ୍ରଥମେ ଯେଉଁ ଟାଇପ୍ ସୂଚୀଟି ପ୍ରସ୍ତୁତ କରିଥିଲେ, ପରବର୍ତୀ ସମୟରେ ତାହା ବହୁବାର ସଂଶୋଧିତ, ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇଛି । ୧୯୨୩ ଖ୍ରୀ.ରେ ଆର୍ନେଙ୍କ ମୃତ୍ୟୁପୂର୍ବରୁ ଅନ୍ତତଃ ଆଠଟି ସୂଚୀ ପ୍ରକାଶିତ ହୋଇଥିଲା । ୧୯୨୪ ଖ୍ରୀ.ରେ ଆଉ କେତେକ ନୂତନ ଟାଇପ୍ ସଂଗ୍ରହ ହେବାଦ୍ୱାରା ଆର୍ନେଙ୍କ ସୂଚୀଟିର ପରିବର୍ତନ ଓ ସଂଶୋଧନ ଅପରିହାର୍ଯ୍ୟ ହୋଇଉଠିଲା । ୧୯୨୬-୨୭ ମସିହାରେ ଥମ୍ପସନ୍ ଆର୍ନେଙ୍କ ସୂଚୀକୁ ସଂଶୋଧିତ କରି ୧୯୨୮ ମସିହାରେ ପ୍ରକାଶକଲେ । ସମ୍ପ୍ରତି ବିଶ୍ୱରେ ଏହି ପରିବର୍ତିତ ସୂଚୀଟି "The Types of the Folk Tales" ନାମରେ ପରିଚିତ । ଏହାକୁ ମଧ୍ୟ "ଆର୍ନେ-ଥମ୍ପସନ୍ ଟାଇପ୍ ସୂଚୀ" ବୋଲି କହିଥାନ୍ତି । ଉକ୍ତ ସୂଚୀରେ Formula Tales (ସୂତ୍ର କଥା) ଓ Cumulative Tales (କ୍ରମପୁଞ୍ଜିତ କଥା) ନାମକ ଦୁଇଟି ନୂତନ ଟାଇପ୍ ସୂଚୀ ସଂଯୁକ୍ତ ହୋଇଛି । ଆର୍ନେ-ଥମ୍ପସନ୍ ପ୍ରଣୀତ ଟାଇପ୍ ସୂଚୀ ପ୍ରକାଶପାଇବା ପରେ ବିଶ୍ୱର ବିଭିନ୍ନ ଦେଶରେ ଲୋକକଥାର ତାଲିକା ପ୍ରକାଶିତ ହେଲା । ବିଶେଷକରି ରୁଷିଆ, ଆଇସ୍‌ଲ୍ୟାଣ୍ଡ, ପ୍ରୁଶିଆ, ହଙ୍ଗେରୀ, ରୁମାନିଆ, ସ୍ପେନ ଆଦି ଦେଶମାନଙ୍କରେ ଏହି ତାଲିକା ପ୍ରକାଶିତ ହେବାରୁ ଲୋକକଥାର ନୂତନ ଦିଗନ୍ତ ଉନ୍ମୋଚିତ ହେବାକୁ ଲାଗିଲା । ୧୯୩୫ ମସିହାରେ ସୁଇଡେନର ଲାଣ୍ଡେଠାରେ ଲୋକକଥା ଅନୁଶୀଳନ ପାଇଁ ଆହୂତ ଆନ୍ତର୍ଜାତିକ କଂଗ୍ରେସରେ "ଆର୍ନେ-ଥମ୍ପସନ୍" ସୂଚୀର ସଂଶୋଧନ ନିମିତ ପ୍ରଶ୍ନ ଉତ୍‌ଥାପିତ

ହୋଇଥିଲା । ପୃଥିବୀର ବିଭିନ୍ନ ଅଂଚଳରୁ ଲୋକକଥା ସଂଗ୍ରହ ଓ ଆଚଂଳିକ ସୂଚୀ ସମୂହର ପ୍ରକାଶନ ଉପରେ ଏଥିରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ବୈଶିଷ୍ଟ୍ୟମୟ ସାଦୃଶ୍ୟ ଓ ସାଧାରଣ ଲକ୍ଷଣ ଅନୁଯାୟୀ ଟାଇପ୍ ସୂଚୀ ପ୍ରସ୍ତୁତହେଲେ ବିଶ୍ୱରେ ପରିଲକ୍ଷିତ କଥାରୂପର ବୈଚିତ୍ର୍ୟ ଉପଲବ୍ଧ ହୋଇପାରିବ । ଆର୍ନେ-ଥମ୍ପସନ୍ ପ୍ରବର୍ତିତ ଟାଇପ୍ ସୂଚୀ ଲୋକକଥା ଅନୁଶୀଳନ କ୍ଷେତ୍ରରେ ସମ୍ପ୍ରତି ବିଶେଷ ଗୁରୁତ୍ୱାରୋପ ଭୂମିକା ଗ୍ରହଣ କରିଛି । ଲୋକ କାହାଣୀର ଅସ୍ତିତ୍ୱ, ସ୍ଥାନ-କାଳଗତ ଜୀବନ ଇତିହାସ ।

ତା'ର ପରିବର୍ତନଗତ ଗତି-ପ୍ରକୃତି ଅନୁଧାନ କ୍ଷେତ୍ରରେ ଏହି ଟାଇପ୍ ସୂଚୀଟି ସହାୟତା ପ୍ରଦାନକରିବା ସଙ୍ଗେସଙ୍ଗେ ତା'ର ବୈଜ୍ଞାନିକ ଅନୁଶୀଳନ କ୍ଷେତ୍ରରେ ଅତ୍ୟନ୍ତ ଉପାଦେୟ ବୋଲି ପ୍ରମାଣିତ ହୋଇଛି । ତେଣୁ Standard Dictionary of Folklore, Mythology and Legend ଗ୍ରନ୍ଥରେ ଲେଖାଯାଇଛି - His investigation implies a basic assumption, namely that the tale he is studying is an entity, that it has had a history with a beginning in time and place and has suffered certain changes in the course of its life (P-1137, Vol.-11, 1950) । ଲୋକକଥା ଗବେଷଣା କ୍ଷେତ୍ରରେ ଅଦ୍ୟାବଧି ଟାଇପ୍ ସୂଚୀଟି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସୁଛି, ଯଦିଓ ଏବେ ଏହାର କେତେକାଂଶରେ ପରିବର୍ତନ ଓ ପରିବର୍ଦ୍ଧନର ଆବଶ୍ୟକତା ରହିଛି ।

**କଥାଭିପ୍ରାୟ -**

କଥାଭିପ୍ରାୟର ଇଂରାଜୀ ପ୍ରତିଶବ୍ଦ Motif (ମୋଟିଫ୍) । ଏହାକୁ କେହିକେହି ଅଭିପ୍ରାୟ ବା ଗଳ୍ପାଣୁ ନାମରେ ନାମିତ କରିଥାନ୍ତି । ମୋଟିଫ୍ ହେଉଛି ଲୋକକଥାର ଆଭ୍ୟନ୍ତରୀଣ ବୈଶିଷ୍ଟ୍ୟପୂର୍ଣ୍ଣ ଅସାଧାରଣ ଓ ଆକର୍ଷଣୀୟ ତଥା ମୌଳିକ କ୍ଷୁଦ୍ରତମ ଉପାଦାନ, ଯାହା ଐତିହ୍ୟ ମଧ୍ୟରେ ବଚିଂ ରହିଥାଏ ଏବଂ କଥକର ବା ସମୟ (କାଳ) ପ୍ରଭାବରେ ଅପରିବର୍ତିତ ରୁହେ । ଥମସନ ଙ୍କ ମତରେ "A motif is the smallest element in a tale having a power to persist tradition. In order to have this power it must have something unusual and striking about it." (The Folk Tale-P-415) । ଏହା ବସ୍ତୁତଃ କୌଣସି ରଚନାର ରୂପଗତ ବିଶେଷତାର ଦ୍ୟୋତକ, ଯାହା ପରମ୍ପରାରେ ପ୍ରଯୁକ୍ତ ରହିବା କାରଣରୁ ସମାନ ପରିସ୍ଥିତି ଅଥବା ମନରସ୍ଥିତିକୁ ପ୍ରକାଶକରିବା ପାଇଁ ବାରମ୍ଭାର ବ୍ୟବହୃତ ହୋଇଥାଏ । କଥାନକର ନିର୍ମାଣ ତଥା ବିକାଶରେ ଏହାର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଲୋକ ଉପାଦାନର କ୍ଷୁଦ୍ରମତ ଅଂଶ ହିଁ ମୋଟିଫ୍ । ଏହା କୌଣସି ଏକ ସୃଷ୍ଟି ବା ଏକ ବର୍ଗର ବିଭିନ୍ନ ରଚନାରେ ସମାନ ପରିସ୍ଥିତି ବା ସମାନ ଭାବକୁ ଉତ୍ପନ୍ନ କରିବାରେ ସହାୟତା କରିଥାଏ । Dictionary of World Literary Termsରେ ମୋଟିଫ୍ ସମ୍ପର୍କରେ ତେଣୁ କୁହାଯାଇଛି - "A word or a pattern of thought which recurs in a similar situation or to evoke a similar mood within a work or in various works of a genre (T. shipldy-Motif).

ଲୋକକଳା, ଲୋକସଙ୍ଗୀତ, ଲୋକନୃତ୍ୟ ଓ ଲୋକସାହିତ୍ୟ ର ବିଭିନ୍ନ ବିଭାଗକୁ ମୋଟିଫ୍ ଦ୍ୱାରା ବିଶ୍ଳେଷଣ କରାଗଲେ ହେଁ, ଲୋକକାହାଣୀର ଅନୁଶୀଳନ କ୍ଷେତ୍ରରେ ଏହାର ଭୂମିକା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଲୋକାଖ୍ୟାନ ଅନୁଶୀଳନରେ ଷ୍ଟିଥ୍ ଥମ୍ପସନ୍ ଙ୍କ "ମୋଟିଫ୍ ଇଣ୍ଡେକ୍ସ" ଏକ ବିଶାଳ ବିଶ୍ୱକୋଷ । ଲୋକକଥାର ପରିଚୟ ଟାଇପ୍ର ଶ୍ରେଣୀ ବିଭାଗରେ ଉପଲବ୍ଧ ହେବା ସମୟରେ, ତା'ର ଅଭ୍ୟନ୍ତରରେ ଅବସ୍ଥିତ ଉପାଦାନ ମଧ୍ୟରେ ମୋଟିଫ୍ର ବୈଶିଷ୍ଟ୍ୟ ସୂଚିତହୁଏ । ଥମ୍ପସନ୍ ତାଙ୍କର ଡକ୍ଟରେଟ୍ ଉପାଧି ନିମିତ "European Tales Among the North American Indians" ଗବେଷଣା ଗ୍ରନ୍ଥ ପ୍ରସ୍ତୁତକରିବା ସମୟରେ ଲୋକକଥାର ବୈଶିଷ୍ଟ୍ୟମୟ ଉପାଦାନ ଓ କଥାଭିପ୍ରାୟ ସୂଚୀ ତାଲିକାଭୁକ୍ତ କାର୍ଯ୍ୟରେ ଆତ୍ମନିୟୋଗ କରିଥିଲେ । ୧୯୨୨ ଖ୍ରୀ.ରେ ଆମେରିକା-ଇଣ୍ଡିଆନ୍ ଲୋକକଥାରୁ ପ୍ରାପ୍ତ ମୋଟିଫ୍ ସମୂହର ଆଲୋଚନାରେ ମତରହି ସେ ଗୋଟିଏ ବିସ୍ତୃତ ମୋଟିଫ୍ ସୂଚୀ ପ୍ରଣୟନର ଆବଶ୍ୟକତା ଅନୁଭବ କଲେ ଏବଂ ପରେପରେ ବ୍ୟାପକତର ଅଧ୍ୟୟନ ଓ ତଥ୍ୟ ସଂଗ୍ରହ ମାଧ୍ୟମରେ ବିଶ୍ୱର ବିଭିନ୍ନ ଅଂଚଳରୁ ସଂଗୃହୀତ ଲୋକକଥାର ଟାଇପ୍ଠାରୁ କାହାଣୀ ବିବୃତ ବୈଶିଷ୍ଟ୍ୟ ଅନୁସରଣରେ ମୋଟିଫ୍ ସଂଗ୍ରହକରି ଗୋଟିଏ ପୂର୍ଣ୍ଣାଙ୍ଗ ମୋଟିଫ୍ ସୂଚୀ ପ୍ରଣୟନରେ ପ୍ରୟାସୀହେଲେ ଏହି ସୂଚୀର ପ୍ରସ୍ତୁତି କାର୍ଯ୍ୟ ଆରମ୍ଭହୁଏ ୧୯୨୮ ମସିହାରେ ଏବଂ ପ୍ରକାଶ ଲାଭକରେ ୧୯୩୦ ରୁ ୧୯୩୬ ମସିହା ମଧ୍ୟରେ । ଏହି ସୂଚୀଗୁଡ଼ିକୁ ପ୍ରଥମେ କେତୋଟି ଅଧ୍ୟାୟରେ ବିଭକ୍ତ କରାଯାଇ ଅଧ୍ୟାୟଗୁଡ଼ିକୁ ଇଂରାଜୀ ବର୍ଣ୍ଣମାଳାର ବଡ ଅକ୍ଷର ମାଧ୍ୟମରେ ଚିହ୍ନିତ କରାଯାଇଛି । ପ୍ରତିଟି ଅଧ୍ୟାୟ ୧୦୦ଟି ସଂଖ୍ୟାରେ ବିଭକ୍ତ କରାଯାଇ ପ୍ରତି ୧୦୦ଟି ସଂଖ୍ୟାକୁ ପୁଣି ୧୦-ଏ ରେ ବିଭକ୍ତ କରାହୋଇଛି । ମୋଟିଫ୍ ସମୂହର ସମ୍ୟକ୍ ଉପଲବ୍ଧ ପାଇଁ ସଂଖ୍ୟା ନିରୂପରଣ ପଦ୍ଧତି ଅନୁସରଣ କରାଯାଇଛି । ପ୍ରତିଟି ମୋଟିଫ୍କୁ ସଂଖ୍ୟା ଦଶମିକ ସହଯୋଗେ ଏପରିଭାବେ ଚିହ୍ନିତ କରାଯାଇଥାଏ, ଯାହାଦ୍ୱାରା ସମଗ୍ର ସୂଚୀତ କେଉଁଠାରେ ତା'ର ପ୍ରକୃତ ସ୍ଥାନ, ତାହା ସୁନିର୍ଦ୍ଦିଷ୍ଟ ହୋଇଥାଏ । ପୁଣି ମୋଟିଫ୍ ସୂଚୀ ଏପରି ଭାବରେ ପରିକଳ୍ପିତ ହୋଇଛି ଯେ, ଆବଶ୍ୟକ ବେଳେ ତା'ର ସଂପ୍ରସାରଣ ସଂଶୋଧନ ସମ୍ଭବପର ହୋଇଥାଏ । (ଚଟ୍ଟୋପାଧ୍ୟାୟ ତୁଷାର - ଲୋକସଂସ୍କୃତି ତତ୍ତ୍ୱରୂପ ଓ ସ୍ୱରୂପ ସନ୍ଧାନ - ପୃ. ୧୫୦, ୧୮୦୧ ସାଲ) ।

ମୋଟିଫ୍ ବା କଥାଭିପ୍ରାୟ ଗୋଟିଏ ଘଟଣା, ଚରିତ୍ର ବା ବସ୍ତୁଟିଏ ହୋଇ ଥମ୍ପସନ୍ ଙ୍କ ମତାନୁଯାୟୀ ମୋଟିଫ୍ ଶବ୍ଦର ତାତ୍ପର୍ଯ୍ୟ କୌଣସି ତତ୍ତ୍ୱରେ ରହିପାରେ, ତାହାକୁ ଆଧାର ଉପରେ ଲୋକବିଦ୍ୟାର ବିଶ୍ଳେଷଣ କରାଯାଇପାରେ । ଲୋକକଳାରେ ସୂଚୀତ ଆଦି

କେତେକ ବିଶିଷ୍ଟ (Motif) ଅଭିପ୍ରାୟ ରହିଛି, ଯାହାର ବାରମ୍ବାର ପୁନଃ ଘଟିଥାଏ । ଏହିପରି କେତେକ ପ୍ରରୂପ ଲୋକ ସଙ୍ଗୀତ ଓ ଚିତ୍ରକଳାରେ ମଧ୍ୟ ଉପର ଲୋକସାହିତ୍ୟ ବିଶେଷରୂପେ ଲୋକ କାହାଣୀରେ ଏହି ମୋଟିଫ୍‌ର ସର୍ବାଧିକ ସତା ହୋଇଥିବାର ପରିଲକ୍ଷିତ ହୁଏ । ଲୋକ କାହାଣୀର କ୍ଷୁଦ୍ରତମ ଅଂଶ ମୋଟିଫ୍‌ର ଚିର ଅପରିବର୍ତନୀୟ । ସମସ୍ତ ପ୍ରତିକୂଳତା ସତ୍ୱେ ଲୋକ କାହାଣୀର ଯେଉଁ ଅଂଶଟି ଯୁଗଯୁଗ ଧରି ଅପରିବର୍ତିତ ରହିଥାଏ, ତାହା ହିଁ ମୋଟିଫ୍ । ସେଥିପାଇଁ ଥମ୍ପସନ୍ ଯଥାର୍ଥରେ କହିଛନ୍ତି, ମୋଟିଫ୍ କାହାଣୀ ମଧ୍ୟରେ ପାରମ୍ପରିକ ଭାବେ ବଚିଂରହିବାର କ୍ଷମତାଥିବା ଏକ କ୍ଷୁଦ୍ର ଉପାଦାନ । Encyclopaedia of Anthropologyରେ ମୋଟିଫ୍‌ର ସଂଜ୍ଞା ଦିଆଯାଇ କୁହାଯାଇଛି - A motif is a regularly recurrent thematic element in a body of art or folklore (P-246, 1976) ।

ମୋଟିଫ୍‌ର ବିଭାଗୀକରଣ ସମୟରେ କେତେକ କ୍ଷେତ୍ରରେ ମତାନୈକ୍ୟ ପରିଲକ୍ଷିତ ହୋଇଥାଏ । କେତେକ ଆଲୋଚକ ଲୋକବିଶ୍ୱାସ ଓ କଳ୍ପନାର ଆଧାର ଉପରେ ଏହାର ବିଭାଗୀକରଣ ଉପରେ ଗୁରୁତ୍ୱ ପ୍ରଦାନକରିବା ସମୟରେ ଅନ୍ୟ କେତେକ ଘଟଣାପ୍ରବାହ ଓ ଭାବବୋଧ ଦୃଷ୍ଟିରୁ ବିଭାଗୀକରଣର ପକ୍ଷପାତୀ । ଥମ୍ପସନ୍ ମୋଟିଫ୍ ଇଣ୍ଡେକ୍‌ସ ପ୍ରସ୍ତୁତି ସମୟରେ ଏହାର ସୀମା ସମ୍ପର୍କରେ ଗୁରୁତ୍ୱଦେଇ କେତେକ ମୋଟିଫ୍‌କୁ ସର୍ବଦେଶଜ ଓ ଅନ୍ୟ କେତେକ କୁ ଆଚଂଳିକ ଭେଦରେ ବିଭକ୍ତ କରିଛନ୍ତି । ଥମ୍ପସନ୍ ମୋଟିଫ୍‌ଗୁଡ଼ିକୁ ବିଭିନ୍ନ ଦୃଷ୍ଟିରୁ ଆଲୋଚନା କରି ସାମଗ୍ରିକ ଦୃଷ୍ଟିକୋଣରୁ ଏହାକୁ ତିନି ଭାଗରେ ବିଭକ୍ତ କରିଛନ୍ତି । ଯଥା -

୧. **ନାୟକନାୟିକା ଦୃଷ୍ଟିରୁ -** ଏହା ମଧ୍ୟରେ ଅନ୍ତର୍ଭୁକ୍ତ ଦେବତା, ମଣିଷ, ଅସାଧାରଣ ପ୍ରାଣୀ, ରାକ୍ଷସ, ପରୀ, ଭୂତପ୍ରେତ, ବିଧବା ଇତ୍ୟାଦି ।

୨. **ଘଟଣାପ୍ରବାହ ଦୃଷ୍ଟିରୁ -** ଏହା ମଧ୍ୟରେ ଅନ୍ତର୍ଭୁକ୍ତ ଅସାଧାରଣ ପ୍ରଥା, ଅଲୌକିକ ଦ୍ରବ୍ୟ, ଅଦ୍ଭୁତ ବିଶ୍ୱାସ, ଆଶ୍ଚର୍ଯ୍ୟଜନକ ବସ୍ତୁସମୂହ ।

୩. **ବୈଶିଷ୍ଟ୍ୟମୟ ଘଟଣା ଦୃଷ୍ଟିରୁ -** ମୂଳତଃ ଥମ୍ପସନ୍ ଏହିପରି ତିନୋଟି ଦୃଷ୍ଟିରୁ ବିଭାଗୀକରଣ କରିଥିଲେ ହେଁ, ବିଶ୍ୱର ବିଭିନ୍ନ କ୍ଷେତ୍ରରେ ପ୍ରଚଳିତ ଲୋକ କାହାଣୀର ମୋଟିଫ୍‌ଗୁଡ଼ିକୁ ମୋଟିଫ୍ ଇଣ୍ଡେକ୍‌ସରେ ନିମ୍ନଲିଖିତ ୨୩ ଭାଗରେ ବିଭକ୍ତ କରିଛନ୍ତି -

A - ପୌରାଣିକତାମୂଳକ
B - ଜୀବଜନ୍ତୁ ବିଷୟକ
C - ଆନୁଷ୍ଠାନିକ ନିଷେଧ ସମ୍ପର୍କୀୟ
D - ଇନ୍ଦ୍ରଜାଲ ବା ଯାଦୁବିଦ୍ୟା ବିଷୟକ
E - ମୃତପ୍ରାଣୀ ବା ମୃତ୍ୟୁ ସମ୍ପର୍କୀୟ
F - ବିସ୍ମୟକର ବସ୍ତୁ ଓ ଘଟଣା ବିଷୟକ
G - ଭୟଙ୍କର ବିଷୟକ
H - ପରୀକ୍ଷା ସଂକ୍ରାନ୍ତ
J - ବିଜ୍ଞ ଓ ନିର୍ବୋଧ ସମ୍ପର୍କୀୟ
K - ପ୍ରତାରଣା ବିଷୟକ
L - ଭାଗ୍ୟ ବିପର୍ଯ୍ୟୟମୂଳକ
M - ଭବିଷ୍ୟତ ବିଷୟକ
N - ସୁଯୋଗ ଓ ଭାଗ୍ୟ ବିଷୟକ
P - ସମାଜ-ସାମାଜିକତା ସମ୍ପର୍କୀୟ
Q - ପୁରସ୍କାର ଓ ଶାସ୍ତି ବିଷୟକ
R - ବନ୍ଦୀ ଓ ପଳାତକ ସମ୍ପର୍କିତ
S - ବର୍ବରତା ଓ ନିଷ୍ଠୁରତା ସମ୍ପର୍କିତ
T - ଯୌନ ସମ୍ପର୍କୀୟ
U - ଜୀବନର ବୈଶିଷ୍ଟ୍ୟ
V - ଧର୍ମକୈନ୍ଦ୍ରିକ
W - ଚାରିତ୍ରିକ ବୈଶିଷ୍ଟ୍ୟମୂଳକ
X - ହାସ୍ୟ ରସାତ୍ମକ
Z - ବିବିଧ ବିଷୟକ

ଉପରୋକ୍ତ ମୋଟିଫ୍‌ଗୁଡ଼ିକ ମଧ୍ୟରୁ କେତେକ ପରସ୍ପର ର ନିକଟବର୍ତ୍ତୀ । ଯେପରି E ବିଭାଗର ମୃତପ୍ରାଣୀ F ବିଭାଗର ବିସ୍ମୟକର ବସ୍ତୁ ଓ ଘଟଣା ତଥା G ବିଭାଗର ଭୟଙ୍କର ବିଷୟକ ମୋଟିଫ୍ ମଧ୍ୟରେ ଘନିଷ୍ଠ ସମ୍ପର୍କ ବିଦ୍ୟମାନ । ଏହା ମଧ୍ୟରେ ମଧ୍ୟ କେତେକ ଗୌଣ ବିଭାଗ ରହିଛି, ଯାହାର ଆବଶ୍ୟକତା ଥିବାପରି ମନେହୁଏ ନାହିଁ । ଥମ୍ପସନ୍‌ଙ୍କ ଏହି ବିଭାଗୀକରଣ ସମ୍ପୂର୍ଣ୍ଣ ଭାବରେ ଯୁକ୍ତିଯୁକ୍ତ ମନେ ନହେଲେ ହେଁ ପରବର୍ତ୍ତୀ କାଳରେ ମୋଟିଫ୍ ତତ୍ତ୍ୱର ବୈଜ୍ଞାନିକ ବିଶ୍ଳେଷଣ ନିମିତ ପଥ ପରିଷ୍କାର କରିପାରିଛି ।

ଲୋକାଖ୍ୟାନ ପରମ୍ପରାରେ ସମସ୍ତ ବସ୍ତୁ ମୋଟିଫ୍ ପର୍ଯ୍ୟାୟଭୁକ୍ତ ହୋଇପାରନ୍ତି ନାହିଁ । ପ୍ରପ୍ ଏହାର ବୈଜ୍ଞାନିକ ବିଶ୍ଳେଷଣ କରି ତାହାକୁ ୩୧ଟି କାର୍ଯ୍ୟ ସମ୍ପାଦକ ବର୍ଗରେ ପରିଣତ କରିଛନ୍ତି । ଉଦାହରଣ ସ୍ୱରୂପ - ଖଳନାୟକତ୍ୱ ପ୍ରପ୍‌ଙ୍କ ରଚନାରେ କେବଳ ଏକ କାର୍ଯ୍ୟ ସମ୍ପାଦନର ଭୂମିକା ଗ୍ରହଣକରେ । ଫିନିସ୍ ପରମ୍ପରାରେ ଖଳନାୟକ ବିଭିନ୍ନ ପ୍ରକାର, ପ୍ରତ୍ୟେକ ଅନ୍ୟଠାରୁ ସ୍ୱତନ୍ତ୍ର ଓ ସେହି ଦୃଷ୍ଟିକୋଣରୁ ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ମୋଟିଫ୍ । ମୋଟିଫ୍‌ର ଏପରି କେତେକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ବା ବିଶେଷ ଗୁଣ ରହିଛି, ଯାହାକୁ କି ଜନସାଧାରଣ ସର୍ବଦା ସ୍ମରଣରେ ରଖିପାରନ୍ତି । ସେହି କାରଣରୁ ସାଧାରଣ ମାତା ମୋଟିଫ୍‌ଟିଏ ହୋଇନପାରିବା ସମୟରେ କ୍ରୂର ବିମାତା ଗୋଟିଏ ମୋଟିଫ୍‌ର ରୂପ ଗ୍ରହଣ କରିଥାଏ । ଜୀବନର ସାମାନ୍ୟ ଘଟଣାଟିଏ ମୋଟିଫ୍ ବା କଥାଭିପ୍ରାୟ ହୋଇପାରିବ ନାହିଁ । କିନ୍ତୁ ଯଦି କେହି କୁହେ - ନାୟକ ଏକ ଘଟାଂରେ କୋଡ଼ିଏ କୋଶ ଗତି କରିପାରୁଥିବା କଠାଉ ପିନ୍ଧି ରାଜକୁମାରୀଙ୍କୁ ସନ୍ଧାନ କରିବାକୁ ଗଲା, ତେବେ ଏ କ୍ଷେତ୍ରରେ ଦୁଇଟି ମୋଟିଫ୍ ପରିଲକ୍ଷିତ ହୋଇଥାଏ (ପଣ୍ଡା, ଅଶ୍ୱିନୀକୁମାର - ଓଡ଼ିଆ ଲୋକ କାହାଣୀରେ ଆଖ୍ୟାନ ମୋଟିଫ୍ : ଏକ ଅଧ୍ୟୟନ - ପୃ. ୩୩, ୧୯୯୦ ପାଇଁ ଉପସ୍ଥାପିତ ଗବେଷଣା ନିବନ୍ଧ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ) ।

କଥାଭିପ୍ରାୟ ନିଜର ବିଲକ୍ଷଣ ତତ୍ତ୍ୱ କାରଣରୁ ପରମ୍ପରାରେ ଜୀବିତ ରହିଥାଏ । ଭାରତର ଅନେକ କଥାଭିପ୍ରାୟ ସଂସ୍କୃତ, ପ୍ରାକୃତ ଏବଂ ଅପଭ୍ରଂଶ ସାହିତ୍ୟରେ ଉପଲବ୍ଧ ହୋଇଥାଏ । କଥାସରିତ୍ ସାଗର, ଦଶକୁମାର ଚରିତ, ଭବିଷ୍ୟଦତ କଥା ଆଦି ରଚନାରେ ବିଭିନ୍ନ ଉଦ୍ଦେଶ୍ୟରେ ପୂର୍ତ୍ତି ନିମିତ ବହୁ ଲୋକପ୍ରିୟ ମୋଟିଫ୍ ଦେଖିବାକୁ ମିଳେ । ଯଥା - ପରକାୟାରେ ପ୍ରବେଶ, ଲିଙ୍ଗ ପରିବର୍ତ୍ତନ, ବାହ୍ୟବସ୍ତୁରେ ପ୍ରାଣର ସ୍ଥିତି, ଅରଣ୍ୟ ମଧ୍ୟରେ ମନୋରମ ନଗର ଇତ୍ୟାଦି । କଥାନକର ପ୍ରବାହକୁ ତ୍ୱରାନ୍ୱିତ କରିବାପାଇଁ ମୋଟିଫ୍ ବା କଥାଭିପ୍ରାୟ ଦୀର୍ଘକାଳ ଧରି ପ୍ରଯୁକ୍ତ ହୋଇଆସୁଛି । ଲୋକକଥାରେ ରୋଚକତା ସୃଷ୍ଟିକରିବା, କଥାର ନୂତନ ଦିଶା ପ୍ରଦାନକରିବା, କୌଣସି ବ୍ୟକ୍ତିର ବ୍ୟକ୍ତିତ୍ୱକୁ ସ୍ପଷ୍ଟକରିବା ଓ ସମକାଳୀନ ସ୍ଥିତିର ପରିଚୟ ପ୍ରଦାନକରିବା ମୋଟିଫ୍‌ର ପ୍ରଧାନ ଲକ୍ଷ୍ୟ (ପାଣ୍ଡେୟ, ତ୍ରିଲୋଚନ - ଲୋକ ସାହିତ୍ୟିକା ଅଧ୍ୟୟନ, ପୃ. ୨୬୬, ୧୯୭୮) । କାହାଣୀର ଜଟିଳତା ବୃଦ୍ଧି ଓ ସମାଧାନ କ୍ଷେତ୍ରରେ ଏହି କଥାଭିପ୍ରାୟ ସହାୟତା ପ୍ରଦାନ କରିଥାଏ । ମୋଟିଫ୍ ସ୍ୱୟଂ ଏକ ସଂକ୍ଷିପ୍ତ କାହାଣୀଟିଏ ବି ମଧ୍ୟ ହୋଇପାରେ । ମୋଟିଫ୍ ନିଜେ ଚରିତ୍ର ହେବା ସଙ୍ଗେସଙ୍ଗେ ଚରିତ୍ର ଦ୍ୱାରା ମଧ୍ୟ ବ୍ୟବହୃତ ହୋଇଥାଏ । ଲୋକକଥାର କେବଳ ତାତ୍ତ୍ୱିକ ବିଶ୍ଳେଷଣ କ୍ଷେତ୍ରରେ ନୁହେଁ, ଏହାର ଗତିପ୍ରବାହକୁ ତ୍ୱରାନ୍ୱିତ କରିବା ତଥା ଗଳ୍ପର ମହତ୍ତ୍ୱ ପ୍ରତିପାଦନ କ୍ଷେତ୍ରରେ ମୋଟିଫ୍‌ର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ ହୋଇଥିବାରୁ ବିଂଶ ଶତକରେ ଏହାର ବିପୁଳ ଆଲୋଚନା ସମ୍ଭବ ହୋଇପାରିଛି ।

## ଓଡ଼ିଆ ସାହିତ୍ୟ ର ସୁଲେଖକ
## ପ୍ରଫେସର ଡକ୍ଟର ବିଜୟାନନ୍ଦ ସିଂହ

ବିଜୟାନନ୍ଦ ସିଂହ (ଜନ୍ମ - ୦୪/୦୩/୧୯୫୯) -

ଜଣେ ଓଡ଼ିଆ ଗାଳ୍ପିକ, ପ୍ରାବନ୍ଧିକ, ସଂକଳକ ସର୍ବୋପରି ଓଡ଼ିଆ ଭାଷା ଓ ସାହିତ୍ୟ ର ଜଣେ ଅଧ୍ୟାପକ । ତାଙ୍କର ଏଯାବତ୍ ଦୀର୍ଘ ୫୦ ଗୋଟିରୁ ଅଧିକ ପୁସ୍ତକ ପ୍ରକାଶିତ ହୋଇସାରିଛି । ଓଡ଼ିଶାର ଅନେକ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସେ ଜଡ଼ିତ । ବର୍ତମାନ ସେ କେନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ଉପଦେଷ୍ଟା ମଣ୍ଡଳୀର ଆବାହକ ଭାବରେ କାର୍ଯ୍ୟରତ । ଓଡ଼ିଶାର ଶତାୟୁ ସାରସ୍ୱତ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ସେ ସର୍ବକନିଷ୍ଠ ସଭାପତି ପଦବୀରେ କାର୍ଯ୍ୟ କରିଅଛନ୍ତି ।

କଟକ ଜିଲ୍ଲା ମାହାଙ୍ଗା ଠାରେ ସେ ଜନ୍ମଗ୍ରହଣ କରିଥିଲେ । ବାପା ଥିଲେ - କୈଳାସ ଚନ୍ଦ୍ର ସିଂହ ଓ ମା' ଥିଲେ - ଚାରୁଚନ୍ଦ୍ରମା ଦେବୀ । ପ୍ରାଥମିକ ଶିକ୍ଷା ସମାପ୍ତକରି ହାଇସ୍କୁଲରେ ଅଧ୍ୟୟନ କରିବା ସମୟରେ ସାହିତ୍ୟ ସାଧନା ଓ ସାଂଗଠନିକ କାର୍ଯ୍ୟରେ ସେ ଲିପ୍ତ ଥିଲେ । ସେ ନବମ ଶ୍ରେଣୀରେ ପଢୁଥିବା ସମୟରେ ତାଙ୍କ କବିତା - ଶିଶୁ ପତ୍ରିକା - "ପବନସୂତ" ରେ ପ୍ରକାଶିତ ପାଇଥିଲା । ତାଙ୍କ ନେତୃତ୍ୱରେ ସ୍କୁଲରେ ପ୍ରତିଷ୍ଠା ହୋଇ ପାରିଥିଲା – ଲଳିତ ସାହିତ୍ୟ ସଂସଦ । ଉଚ୍ଚ ମାଧ୍ୟମିକ (ଆଇ.ଏ.) ରେ ପାଠ ପଢୁଥିବା ସମୟରେ "ସ୍ରୋତସୂତୀ" ନାମରେ କଲେଜ ପତ୍ରିକା ସମ୍ପାଦନା କରୁଥିଲେ । ସାଲେପୁର କଲେଜରେ ସ୍ନାତକ (ବି.ଏ.) ପଢିବା ସମୟରେ ସେ ଛାତ୍ର ୟୁନିୟନର ସଭାପତି ଥିଲେ ।

କଟକର ରେଭେନ୍ସା କଲେଜରେ ଓଡ଼ିଆ ଭାଷା ଓ ସାହିତ୍ୟରେ ସ୍ନାତକୋ ର ଏମ୍.ଏ. ପଢିବା ସମୟରୁ ପତୁରା ନନ୍ଦଙ୍କ "ଡଗର" ପତ୍ରିକାରେ ସହ-ସମ୍ପାଦକ ଭାବରେ କର୍ମମୟ ଜୀବନ ଆରମ୍ଭ କରିଥିଲେ । "ଫତୁରା ନନ୍ଦଙ୍କ ସାହିତ୍ୟରେ ହାସ୍ୟ ଓ ବ୍ୟଙ୍ଗ" ପ୍ରସଙ୍ଗରେ ଗବେଷଣାତ୍ମକ ସନ୍ଦର୍ଭ କରି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ (ପିଏଚ୍.ଡି.) ଡିଗ୍ରୀ ପାଇଥିଲେ ।

ପରବର୍ତୀ ପର୍ଯ୍ୟାୟରେ କର୍ମମୟ ଜୀବନରେ ଜଣେ ଓଡ଼ିଆ ଭାଷା ଓ ସାହିତ୍ୟ ର ଅଧ୍ୟାପକ ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । ସାଲେପୁର କଲେଜର ଅଧ୍ୟାପକ ଥିବା ସମୟରେ ସାମୟିକ ବିରତି ନେଇ ସେ ଓଡ଼ିଶାର ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନର ପଦବୀରେ ଅଳଙ୍କୃତ ହୋଇଥିଲେ ।

ସେଥିମଧ୍ୟରୁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ଉପନିର୍ଦ୍ଦେଶକ (୨୦୦୫-୨୦୦୮), ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ (୨୦୧୦-୨୦୧୧) ଓ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ (୨୦୦୯-୨୦୧୧) ପ୍ରମୁଖ ପଦବୀରେ କାର୍ଯ୍ୟ କରିଥିଲେ ।

ଅଧ୍ୟାପକ ଡକ୍ଟର ବିଜୟାନନ୍ଦ ସିଂହ ଯେପରି ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଥିଲେ ଠିକ୍ ସେହିପରି ଜଣେ ଜ୍ଞାନପିପାସୁ ଗବେଷକ ଥିଲେ । ଓଡ଼ିଆ ସାହିତ୍ୟରେ ଡକ୍ଟରେଟ୍ (ପିଏଚ୍.ଡି.) ଉପାଧି ସହ ଉଚ୍ଚତର ଗବେଷଣା ପୋଷ୍ଟ ଡକ୍ଟରାଲ / ଡକ୍ଟର ଅଫ୍ ଲିଟେରାଚର (ଡି.ଲିଟ୍.) ଉପାଧି ମଧ୍ୟ ପାଇଥିଲେ । ତାହା ସହିତ ଅନେକ ଶିକ୍ଷାର୍ଥୀଙ୍କର ଗବେଷଣା ଗାଇଡ଼ (ତତ୍ତ୍ୱାବଧାରକ) ଭାବରେ କାର୍ଯ୍ୟକରି ଓଡ଼ିଆ ସାହିତ୍ୟ ର ଗବେଷଣା କ୍ଷେତ୍ରରେ ଜଣେ ଗବେଷକ ଭାବରେ ପରିଚିତ ଥିଲେ । ତାଙ୍କ ଦ୍ୱାରା ରଚିତ ଅନେକ ଗବେଷଣା ପତ୍ର (ରିସର୍ଚ୍ଚ ପେପର) ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରୀୟ ପତ୍ର ଓ ପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଅଛି ।

ଓଡ଼ିଆ ସାହିତ୍ୟ ର ଜଣେ ସାରସ୍ୱତସାଧକ ଭାବରେ ବିଜୟାନନ୍ଦ ସିଂହ ଅନେକ ପୁସ୍ତକର ରଚୟିତା । ତାଙ୍କର କାଳଜୟୀ ସୃଷ୍ଟି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

### ସାରସ୍ୱତ ସୃଷ୍ଟି -

**ପ୍ରବନ୍ଧ -**

ମନସ୍ୱୀ ଗଦ୍ୟ ସ୍ରଷ୍ଟା ଫକୀରମୋହନ
ଫତୁରା ନନ୍ଦଙ୍କ ସୃଷ୍ଟିରେ ହାସ୍ୟ
ସାରସ୍ୱତ ସାକ୍ଷାତକାର
ଭିନ୍ନ ଭୂମି
ସମୟ ଓ ସମାଲୋଚନା
ସମ୍ପର୍କ ଓ ସମୀକ୍ଷା

**ଉପନ୍ୟାସ, ଜୀବନୀ ଓ ଅନୁବାଦ -**

ଓଡ଼ିଆ କ୍ଲାସିକ୍ (ଉପନ୍ୟାସ)
କିଶୋର ଚରଣ ଅନନ୍ତ ପ୍ରସାଦ (ଜୀବନୀ)
ତମସାର ହୃଦୟ (ଅନୁବାଦ)

**ଗଳ୍ପ -**

ଅନେକ ଜୀବନ

ନିରବ ଆଳାପ

ତଥାପି ଅପେକ୍ଷା କରାଯାଉ

**ସମ୍ପାଦନା -**

ପତ୍ରିକା ସମ୍ପାଦନା -

ବିଜୟାନନ୍ଦ - ସମ୍ପାଦନା କ୍ଷେତ୍ରରେ ସିଦ୍ଧିହସ୍ତ ଥିଲେ ।

କୋଣାର୍କ ପତ୍ରିକା

ଡଗର

ଏଷଣା

ଗ୍ରନ୍ଥ ତରଙ୍ଗ

ସାହିତ୍ୟ ଯାତ୍ରା

ବାଲି ଯାତ୍ରା - ସ୍ମରଣୀକା

ଆଦି କ୍ଷେତ୍ରରେ ଜଣେ ଦକ୍ଷ ସମ୍ପାଦକ ଭାବରେ କାର୍ଯ୍ୟକରି ଓଡିଆ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

**ସାହିତ୍ୟ ସଂକଳନ ସମ୍ପାଦନା -**

ମୁଁ କାହିଁକି ଲେଖେ

ଫତୁରା ନନ୍ଦଙ୍କ ଦୁଷ୍ପ୍ରାପ୍ୟ ରଚନା

ଶତାବ୍ଦୀର ସପ୍ତ ସାରଥି

କାଳୀଚରଣ ଗ୍ରନ୍ଥାବଳୀ

ବିଣାପାଣୀ ମହାନ୍ତି ଙ୍କ ଶ୍ରେଷ୍ଠ ଗଳ୍ପ ସଂକଳନ

ବୈଷ୍ଣବ ପାଣିଙ୍କ ଗ୍ରନ୍ଥାବଳୀ

କୃଷ୍ଣ ଚରଣଙ୍କ କୃତି ଓ କୃତିତ୍ୱ

ଉପରୋକ୍ତ ସାହିତ୍ୟ ସଂକଳନ କରି ଅଧ୍ୟାପକ ବିଜୟାନନ୍ଦ ସିଂହ ଓଡିଆ ସାହିତ୍ୟରେ ଜଣେ ସୁନାମଧନ୍ୟ ସଂକଳକ ଭାବରେ ପ୍ରତିଷ୍ଠା ପାଇଛନ୍ତି ।

ବିଭିନ୍ନ ସାହିତ୍ୟିକ ମାନଙ୍କର ଜୀବନ ଓ ସୃଜନକୁ ସଂକଳିତ ପୁସ୍ତକ କରି ସେମାନଙ୍କର ସୃଷ୍ଟିକୁ ଉତ୍କଳୀୟ ପାଠକ ଙ୍କ ପାଖରେ ସେ ସହଜରେ ପହଚାଂଇ ପାରିଅଛନ୍ତି ।

**ପଦ ଓ ପଦବୀ -**

ଅଧ୍ୟାପକ ବିଜୟାନନ୍ଦ ସିଂହ ଜଣେ ଦୃଢ ସାହିତ୍ୟ ସଂଗଠକ ଭାବରେ ଓଡିଶାରେ ପରିଚିତ । ଓଡିଶାର ବିଭିନ୍ନ ସାରସ୍ୱତ ସଂଗଠନର ପ୍ରମୁଖ କାର୍ଯ୍ୟ କର୍ତା ଭାବରେ କାର୍ଯ୍ୟକରି ସାହିତ୍ୟିକ ମାନଙ୍କୁ ଗୋଟିଏ ଡୋରିରେ ବାନ୍ଧିରଖି ଓଡିଆ ସାହିତ୍ୟ ର ବିକାଶ ଦିଗରେ ତାଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ ।

ଆବାହକ - ଓଡିଆ ଉପଦେଷ୍ଟା ମଣ୍ଡଳୀ

କେନ୍ଦ୍ର ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀ

କାର୍ଯ୍ୟକାରିଣୀ ସଦସ୍ୟ - ଓଡିଶା ସାହିତ୍ୟ ଏକାଡେମୀ

ସଭାପତି - ଉତ୍କଳ ସାହିତ୍ୟ ସମାଜ

(ଶତାୟୁ ସାରସ୍ୱତ ଅନୁଷ୍ଠାନ - ଓଡିଶା)

ଆଜୀବନ ସଭ୍ୟ - ଓଡିଆ ଗବେଷଣା ପରିଷଦ

ଆଜୀବନ ସଭ୍ୟ - ନିଖିଳ ଭାରତ ଓଡିଆ ଅଧ୍ୟାପକ ସମ୍ମିଳନ

ପ୍ରମୁଖ ପଦ ପଦବୀରେ ବିଜୟାନନ୍ଦ ସିଂହ ସୂଚାରରୂପେ କାମ କରୁଥିଲେ ।

**ସମ୍ମାନ ଓ ସମ୍ବର୍ଦ୍ଧନା -**

ଅଧ୍ୟାପକ ବିଜୟାନନ୍ଦ ସିଂହ ନିଜର ସାରସ୍ୱତ ପ୍ରତିଭା ପାଇଁ ଅନେକ ଅନୁଷ୍ଠାନରୁ ପୁରସ୍କୃତ ବା ସମ୍ବର୍ଦ୍ଧୀତ, ଏଥିଯୋଗୁଁ ତାଙ୍କୁ ସାରସ୍ୱତ ସୃଷ୍ଟିପାଇଁ ଅଧିକରୁ ଅଧିକ ପ୍ରେରଣା ଯୋଗାଇଥିଲା ।

ଜ୍ଞାନମଣ୍ଡଳ ଫାଉଣ୍ଡେସନ ପୁରସ୍କାର

ସୁବ୍ରତ ସ୍ମୃତି ପୁରସ୍କାର

ଭଞ୍ଜଭୂମି ସମ୍ମାନ
ପୁନଃର୍ନବା ସାହିତ୍ୟ ସମ୍ମାନ
କଳିଙ୍ଗ ସାହିତ୍ୟ ଏକାଡେମୀ ସମ୍ମାନ
ଆଦି ସମ୍ମାନରେ ବିଜୟାନନ୍ଦ ସିଂହ ପ୍ରାପ୍ତଥିଲେ ।

ଜଣେ ଦକ୍ଷ ସାହିତ୍ୟ ସଂଗଠକ ସର୍ବୋପରି ସାହିତ୍ୟ ର ଅଧ୍ୟାପକ ଥାଇମଧ ବିଜୟାନନ୍ଦ ଭୁଲିପାରି ନଥିଲେ ସାରସ୍ୱତ ସାଧନାକୁ । ତାଙ୍କର କଲମ ମୁନ ଅଦ୍ୟାବଧି ଓଡିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଅଛି ।

ସାଲେପୁର କଲେଜର ଓଡିଆ ଭାଷା ଓ ସାହିତ୍ୟ ବିଭାଗର ଆସୋସିଏଟ୍ ପ୍ରଫେସର ପଦବୀରୁ ଅବସର ଗ୍ରହଣକରି ଡକ୍ଟର ସିଂହ ବର୍ତମାନ ନବନିଯୁକ୍ତି - ଗୋପବନ୍ଧୁ ରିସର୍ଚ୍ଚ ଚେୟାର ପ୍ରଫେସର - କିସ୍ ଡିମଣ୍ଡ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରରେ କାର୍ଯ୍ୟରତ ।

ବିଜୟାନନ୍ଦ ସିଂହଙ୍କ ସାରସ୍ୱତ ସୃଷ୍ଟିର ଏକ ଝଲକ -

**ବିଜୟାନନ୍ଦ ସିଂହଙ୍କ**
**"ସମୟ ଓ ସମାଲୋଚନା"**
**ପ୍ରବନ୍ଧରୁ ଏକ ପ୍ରବନ୍ଧ**

## "ଆଧୁନିକ ଓଡିଆ ସାହିତ୍ୟ ର ଆଦ୍ୟ ଝଙ୍କାର ଉତ୍କଳଦୀପିକା, ଉତ୍କଳପୁତ୍ର, ଉତ୍କଳସାହିତ୍ୟ"

ମହାନଦୀରୁ ଚିତ୍ରୋତ୍ପଳା, ବିରୂପା ଏବଂ ଗେଙ୍ଗୁଟିରୁ ଲୁଣା ପର୍ଯ୍ୟନ୍ତ ପରିବ୍ୟାପ୍ତ ତ୍ରିକୋଣ ଭୂମି ଅଚଂଳ ଓଡିଆ ଭାଷା, ସାହିତ୍ୟ ସଂସ୍କୃତିର ସର୍ବୋପରି ଓଡିଆ ସାହିତ୍ୟ, ସଂସ୍କୃତି, ଆଧ୍ୟାତ୍ମିକ ବିପ୍ଳବ, ସ୍ୱାଧୀନତା ଆନ୍ଦୋଳନରେ ଏହି ମାଟିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହି ମାଟିର ବରପୁତ୍ରମାନଙ୍କ ସାଧନା ଓ ସିଦ୍ଧିରେ ସମୃଦ୍ଧ ହୋଇଛି ଓଡିଶାର ଇତିହାସ । ଏହି ଅଚଂଳ ସବୁଜ ଶସ୍ୟର ଭଣ୍ଡାର । ସୌନ୍ଦର୍ଯ୍ୟର ଗନ୍ତାଘର ଏହି ଭୂଖଣ୍ଡ । ପ୍ରକୃତରେ ଏହି ସ୍ଥାନସବୁକୁ ଓଡିଶାର "ଶସ୍ୟ ଭଣ୍ଡାର" କହିଲେ ଅତ୍ୟୁକ୍ତି ହେବନାହିଁ ।

ମନେହୁଏ ବିରୂପା-ଚିତ୍ରୋତ୍ପଳା ଆଶୀର୍ବାଦର ଝରଣା ହୋଇ ପ୍ରବାହିତ ହେଉଛନ୍ତି । ଏହି ଭୂମି, ଆକାଶ, ପାଣି, ପବନରେ ସତେ ଯେପରି ବହିଯାଉଛି - ଭାଷା, ସାହିତ୍ୟ, ଦେଶ ଓ ଜାତିର କଥା । ମଥା ନଇଁଯାଏ ଏହି ପବିତ୍ର ମାଟି ନିକଟରେ । ଓଡିଆ ଭାଷା, ସାହିତ୍ୟ ର ସନ୍ଧିକ୍ଷଣରେ ଏ ଅଚଂଳର ବରପୁତ୍ରମାନେ ଯେପରି ନେତୃତ୍ୱ ଦେଇଛନ୍ତି ସେହିପରି ସ୍ୱାଧୀନତା ଆନ୍ଦୋଳନ, ଆଧ୍ୟାତ୍ମିକ ଆନ୍ଦୋଳନ, ସଂସ୍କାର ଆନ୍ଦୋଳନରେ ନିଜର କୃତିତ୍ୱ ପ୍ରମାଣ କରିଛନ୍ତି । କେବଳ ଏତିକି ନୁହେଁ ଆଧୁନିକ ଓଡିଆ ସାହିତ୍ୟ ର ପ୍ରାରମ୍ଭିକ ପର୍ଯ୍ୟାୟରେ ଏହି ପବିତ୍ର ମାଟିରେ ଜନ୍ମଗ୍ରହଣ କରିଥିବା ତିନିଜଣ ବରପୁତ୍ରଙ୍କ ଦୃଢ ନେତୃତ୍ୱରେ ତିନୋଟି ପତ୍ରପତ୍ରିକା ପ୍ରକାଶିତ ହୋଇ ଏହାର ଦିଗ ନିର୍ଦ୍ଦେଶ କରିଥିଲା ।

"ଉତ୍କଳଦୀପିକା", "ଉତ୍କଳପୁତ୍ର" ଓ "ଉତ୍କଳସାହିତ୍ୟ" ପତ୍ରିକା ଆଧୁନିକ ଓଡିଶାର ଓଡିଆ ଭାଷା, ସାହିତ୍ୟ ସଂସ୍କୃତିର ଇତିହାସରେ ଯେଉଁ ଅବିସ୍ମରଣୀୟ ଭୂମିକା ଗ୍ରହଣ କରିଛନ୍ତି ତାହାର ତୁଳନା ନାହିଁ । ଉତ୍କଳୀୟ ଜାତୀୟ ଚେତନା, ଭାଷା, ସାହିତ୍ୟ, ସଂସ୍କୃତିର ବଳିଷ୍ଠ ସ୍ୱାଭିମାନର ପ୍ରତୀକ "ଉତ୍କଳଦୀପିକା", "ଉତ୍କଳପୁତ୍ର" ଓ "ଉତ୍କଳସାହିତ୍ୟ" ପତ୍ରିକା । ବାସ୍ତବତଃ ଏହି ପତ୍ରିକାତ୍ରୟୀ ଜାତୀୟ ଭାବ, ଭାବନା, ଭାଷା ସାହିତ୍ୟ, ସଂସ୍କୃତି ତଥା ନବଜାଗରଣର ଆଦ୍ୟ ଓଁକାର ଧ୍ୱନିର ପ୍ରସାରକ ଓ ପ୍ରଚାରକ ଅଟନ୍ତି । ସାଧାରଣ ପତ୍ରପତ୍ରିକା ପରି ଏମାନଙ୍କର ଆତ୍ମପ୍ରକାଶ ହୋଇନଥିଲା । ବରଂ ଏକ ଐତିହାସିକ ଆବଶ୍ୟକତା ପୂରଣ ପାଇଁ ଏହି ତିନି ପତ୍ରିକାର ସୃଷ୍ଟି ହୋଇଥିଲା - କହିଲେ ଅତ୍ୟୁକ୍ତି ହେବନାହିଁ ।

### ଉତ୍କଳଦୀପିକା-

"ଉତ୍କଳଦୀପିକା" ଓଡିଆ ଜନଜୀବନର ଆଶା, ଆକାଂକ୍ଷାର ଯଥାର୍ଥ ପ୍ରତୀକ ଥିଲା । "ଉତ୍କଳଦୀପିକା" ଥିଲା ଓଡିଆ ଜାତିର ଏକ ଦୀପସ୍ତମ୍ଭ । "ଦୀପିକା ଓଡିଆ ଜୀବନର ଅସଂଖ୍ୟ ଆକୁଳ ଆକାଂକ୍ଷା, ଅଭୀପ୍ସା, ଅନୁଭୂତି, ଅନୁଯୋଗ ବହନ କରି ଏ ଜାତିର 'ଅର୍ଦ୍ଧ ଶତାବ୍ଦୀର ମହାକାବ୍ୟ' ହୋଇଛି । ବାଣୀ ତା'ର ଲୋକବାଣୀ, ଭାଷା ତା'ର ସର୍ବଗ୍ରାହୀ, ହୃଦ୍ୟ, ସର୍ବବୋଧ୍ୟ ।" (୧) ପ୍ରକୃତରେ ଉତ୍କଳଦୀପିକା ଓଡିଶାର ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ବ୍ୟାପିଥିଲା - ସାହିତ୍ୟିକ, ସାମାଜିକ, ଆଧ୍ୟାତ୍ମିକ ତଥା ଜାତୀୟ ଜୀବନର ମୁଖପତ୍ର । ତେଣୁ କହିବାକୁ ଗଲେ ଉତ୍କଳଦୀପିକା ଓଡିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ । ଏହା ଯେପରି ଓଡିଶାର ସାମଗ୍ରିକ ସ୍ୱାର୍ଥ, ଭାଷା, ସାହିତ୍ୟ, ସଂସ୍କୃତିର ସୁରକ୍ଷାରେ ଭୂମିକା ନିର୍ବାହ କରିଥିଲା, ତାହା ବାସ୍ତବିକ୍ ଏକ ଅବିସ୍ମରଣୀୟ ଅଧ୍ୟାୟ ।

ଆଧୁନିକ ଓଡିଆ ଭାଷା, ସାହିତ୍ୟ ବିକାଶରେ ଉତ୍କଳଦୀପିକାର ଅବଦାନ ଅସୀମ । ଏହାର ଜନ୍ମ ଇତିହାସ ମଧ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା - ଆମ ଜାତିର ଇତିହାସରେ "ପ୍ରବୋଧଚନ୍ଦ୍ରିକା" ପ୍ରକାଶର ପ୍ରାୟ ନଅବର୍ଷ ପରେ ଓଡିଶାର ପ୍ରଥମ ସମ୍ବାଦପତ୍ର "ଉତ୍କଳଦୀପିକା" ପ୍ରକାଶ ପାଇଲା ୧୮୬୬ ମସିହାରେ । ତାହାର ସୁଯୋଗ୍ୟ ସମ୍ପାଦକ ଥିଲେ - ବରେଣ୍ୟ କର୍ମଯୋଗୀ ଗୌରୀଶଙ୍କର ରାୟ ।

ଏହି ପତ୍ରିକା ୦୪/୦୮/୧୮୬୬ ରେ ଆରମ୍ଭହୋଇ ପ୍ରଥମେ ସାପ୍ତାହିକ ଓ ପରେ ଦୈନିକ ସମ୍ବାଦପତ୍ର ଭାବେ ୬୬ ବର୍ଷକାଳ ଓଡିଆ ଭାଷା ସାହିତ୍ୟ ଓ ସାମାଜିକ ଜୀବନକୁ ପ୍ରଭାବିତ କରିଥିଲା । କଟକର ଆଲାମଚାନ୍ଦ ବଜାରସ୍ଥ କଟକ ପ୍ରିଟିଂ କମ୍ପାନୀରୁ ଏହା ପ୍ରକାଶ ଲାଭ କରିଥିଲା । ସେତେବେଳେ ଓଡିଆ ଟାଇପ୍ ଅଭାବରୁ "ଉତ୍କଳଦୀପିକା" ଦେଢବର୍ଷ ପର୍ଯ୍ୟନ୍ତ ଆଧୁନିକ ଲିଥୋର ପଥର ଛାପାରେ କରାଯାଇଥିଲା । ସେହି ସମୟରେ ଓଡିଶାରେ ଦେଖା ଦେଇଥିଲା କରାଳ ନ'ଅଙ୍କ ଦୁର୍ଭିକ୍ଷ । ସେତେବେଳେ ଓଡିଶାବାସୀଙ୍କ ଦୁଃଖଦୁର୍ଦ୍ଦଶା ବାହାରେ ଓ ଭିତରେ ପ୍ରକାଶ କରାଇଦେବା ପାଇଁ ଏହି ପତ୍ରିକା ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲା ।

କର୍ମବୀର ଗୌରୀଶଙ୍କର ଙ୍କ ବଳିଷ୍ଠ ସମ୍ପାଦନାରେ "ଉତ୍କଳଦୀପିକା" ଓଡିଶାର ସାମଗ୍ରିକ ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ନିଜର ବହୁ ଶ୍ରମ ଓ ବହୁ ଚେଷ୍ଟା ଦ୍ୱାରା ବିଭିନ୍ନ ଅଚଂଳରୁ ସମ୍ବଳମାନ ସଂଗ୍ରହ କରି ଗୌରୀଶଙ୍କର ଉତ୍କଳଦୀପିକାରେ ସରକାର ଓ ରାଜ୍ୟବାସୀଙ୍କ ଦୃଷ୍ଟିକୁ ଆଣୁଥିଲେ । ସେଥିରେ ୧୮୬୬ ରୁ ୧୮୬୯ ପର୍ଯ୍ୟନ୍ତ ଆମ ରାଜ୍ୟର ବାସ୍ତବ ଚିତ୍ର ପ୍ରକାଶିତ ହୋଇଥିଲା । ଯାହାକୁ ପଢିଲେ ମଣିଷର ହୃଦୟ ଥରିଉଠେ । ସେତେବେଳର ଓଡିଶାର କଥା ଚିନ୍ତା କରାଯାଇ ନପାରେ । ଓଡିଶା ଥିଲା ପାହାଡ, ବଣ, ଜଙ୍ଗଲରେ ପରିପୂର୍ଣ୍ଣ । ରେଳପଥ, ସଡକପଥ ବା କେନାଲଟିଏ ନଥିଲା । ଜନସାଧାରଣ ଦୁଃଖ, ଦୈନ୍ୟ, ଯନ୍ତ୍ରଣାରେ ଦିନ ବିତାଉଥିଲେ ।

ପରାଧୀନ ଭାରତବର୍ଷରେ ଏହି ଦୁର୍ଦ୍ଦିନ ସମୟରେ ସାଧାରଣ ମଣିଷର କଥା ଉତ୍କଳଦୀପିକା ହିଁ କହୁଥିଲା । କେବଳ ଜନ ସମସ୍ୟା, ସାମାଜିକ ସମସ୍ୟା, ଶିକ୍ଷା ସମସ୍ୟା, ସ୍ୱାସ୍ଥ୍ୟ ସାହିତ୍ୟ ସମସ୍ୟାକୁ ଉତ୍କଳଦୀପିକା ପ୍ରକାଶ କରୁଥିଲା । "୧୮୬୬ ଦୁର୍ଭିକ୍ଷ ବେଳେ ଜନତାର ମୁଖପତ୍ର ଉତ୍କଳଦୀପିକା ଯଦି ପ୍ରକାଶ ପାଇନଥାନ୍ତା ତେବେ ଆହୁରି ଯେ କେତେ ଲକ୍ଷ ଲୋକ ମୃତ୍ୟୁବରଣ କରିଥାନ୍ତେ ତାହା କହି ହୋଇନଥାନ୍ତା । ସେ କାଳ ଓଡିଶାର ଯଥାଯଥ ପ୍ରୟୋଜନୀୟତା ଯଥା : ଶିକ୍ଷା, ସ୍ୱାସ୍ଥ୍ୟ, ସାହିତ୍ୟ ଓ ଦେଶର ନାନାବିଧ ସମସ୍ୟା ପ୍ରତି ଦୀପିକା ସ୍ୱର ଉତୋଳନ କରିବା ଫଳରେ ବହୁ ସମସ୍ୟାର ସମାଧାନ ହୋଇଛି । ଓଡିଶା ଭୂଇଁରେ ଜାତୀୟ ଜାଗରଣ ଦେଖା ଦେଇଛି ।" (୩)

ଉତ୍କଳଦୀପିକାର ପ୍ରତିଟି ପୃଷ୍ଠା ଥିଲା ଦୈନିକ ମାନବିକ ସମସ୍ୟାରେ ପରିପୂର୍ଣ୍ଣ । ଜନସାଧାରଣଙ୍କ ମନର କଥା ଯାହା ମୁହଁରେ ପ୍ରକାଶ ପାଇପାରିବା ସମ୍ଭବ ହେଉନଥିଲା - ତାହା ଦୀପିକାରେ ପ୍ରକାଶିତ ହୋଇ ଏକ ଆଲୋଡନ ସୃଷ୍ଟି କରିବାରେ ସମର୍ଥ ହେଉଥିଲା । ବର୍ତମାନ ଯେପରି ଜନ ସମସ୍ୟା, ଜନତାର ଦାବି, ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରୁଛି, ସେତେବେଳେ ଅର୍ଥାତ୍ ନ'ଅଙ୍କ ଦୁର୍ଭିକ୍ଷ ସମୟରେ ବି ଏଭଳି ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ପ୍ରକାଶିତ ହେଉଥିଲା - "କଟକରେ ଚାଉଳ ଲାଭ ଏକ ନୂତନ ନିୟମରେ ବଢୁଅଛି । ଦିନ ମଧ୍ୟରେ ତିନି ଚାରିଥର ଭାଉ ବଦଳି ହେଉଅଛି । ମାତ୍ର ସୌଭାଗ୍ୟର ବିଷୟ ଯେ ପ୍ରତି ପରିବର୍ତନରେ କିଛି ଚାଉଳ ଅଧିକ ହେଉଅଛି । ବର୍ତମାନ ସହରରେ ଟଙ୍କାକୁ ୧୩ ସେର ପର୍ଯ୍ୟନ୍ତ ଚାଉଳ ପ୍ରାପ୍ତ ହୁଅଇ ।" (୪)

ସେହିପରି ୧୮୭୦ ମସିହାରେ ଆୟାରଲାଣ୍ଡର ପ୍ରୋଟେଷ୍ଟାଟଂ ପୁରୋହିତମାନେ ଅଧିକ ବେତନ ପାଉଥିବାରୁ ଯେତେବେଳେ ବାଦ, ପ୍ରତିବାଦ ହେଲା - ସେତେବେଳେ ସମ୍ପାଦକ ଗୌରୀଶଙ୍କର ଲେଖିଥିଲେ - "ଯେତେବେଳେ ଏକ ଶାଖାଭୁକ୍ତ ଖ୍ରୀଷ୍ଟିୟାନଙ୍କ କର ଦ୍ୱାରା ଅନ୍ୟ ଶାଖାଭୁକ୍ତ ପୁରୋହିତ ରଖିବା ଅନାବଶ୍ୟକ ବୋଧ ହେଉଅଛି, ସେ ସ୍ଥଳେ ପୃଥକ ଧର୍ମାବଲମ୍ବୀ ହିନ୍ଦୁ ଓ ମୁସଲମାନମାନଙ୍କ କର ଦ୍ୱାରା ଯେ ଖ୍ରୀଷ୍ଟିୟାନ ପୁରୋହିତଙ୍କୁ ବେତନ ଦିଆଯାଏ, ଏହାକି ନିତାନ୍ତ ଅନ୍ୟାୟାଚରଣ ନୁହେଁ ? ପ୍ରତିବର୍ଷ ଆମ୍ଭମାନଙ୍କ ଗଭର୍ଣ୍ଣମେଟଂ ଭାରତୀୟ କରରୁ ଖ୍ରୀଷ୍ଟିୟାନ ପୁରୋହିତଙ୍କୁ ବେତନ ଦେବାରେ ପନ୍ଦର ଲକ୍ଷ ଟଙ୍କା ବ୍ୟୟ କରୁଛନ୍ତି ଅଥଚ ଅନ୍ୟାନ୍ୟ ବ୍ୟୟ ପାଇଁ ଧନ ଅଟୁଂ ନାହିଁ ବୋଲି ନୂତନ କର ବସାଇବାର ଚେଷ୍ଟା ହେଉଅଛି । ଏ ରୂପ ଆଚରଣ ଅବଶ୍ୟ ଅନ୍ୟାୟ ଅଟଇ । ବିଶେଷତଃ, ଗଭର୍ଣ୍ଣମେଟଂ ଧର୍ମ ବିଷୟରେ ଅପକ୍ଷପାତ ବିଚାର କରିବାର କହନ୍ତି, କିନ୍ତୁ ତଦ୍ରୂପ କାର୍ଯ୍ୟ କରୁନାହାଁନ୍ତି ।" (୫)

ଓଡିଆ ଭାଷା, ସାହିତ୍ୟ ସତ୍ୱକୁ ବିଲୋପ କରିଦେବା ପାଇଁ ସେତେବେଳେ ଯେଉଁ ହୀନ ଉଦ୍ୟମ ଆରମ୍ଭ ହୋଇଥିଲା, ତାହାର ପ୍ରତିରୋଧ କରିଥିଲା "ଉତ୍କଳଦୀପିକା" । ଓଡିଆ ସାହିତ୍ୟ ର ବିକାଶ ପାଇଁ ଉତ୍କଳଦୀପିକା ଦେଇଛି ପ୍ରେରଣା । ସେତେବେଳେ ରାଜେନ୍ଦ୍ରଲାଲ ମିତ୍ର କଟକର "ଡିବେଟିଙ୍ଗ ସୋସାଇଟି" ରେ ଭାଷଣ ଦେଇ କହିଥିଲେ ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ, ସର୍ବାଗ୍ରେ ଉତ୍କଳ ଭାଷା ଉଠାଇଦେଇ ବଙ୍ଗଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ, କାରଣ ଯେତେକାଳ ଉତ୍କଳ ଭାଷା ଉଠିଯାଇ ନାହିଁ, ସେତେ କାଳଯାଏଁ ଉତ୍କଳର ଉନ୍ନତି ହେବା ଅସମ୍ଭବ । (୬) ଏହି ଭାଷଣର ତୀବ୍ର ପ୍ରତିବାଦ ଉତ୍କଳଦୀପିକାରେ ପ୍ରକାଶିତ ହୋଇଥିଲା । ତାହା କର୍ମବୀର ଗୌରୀଶଙ୍କର ଭାଷା, ସାହିତ୍ୟ ପ୍ରୀତିର ପ୍ରମାଣ ପ୍ରଦାନ କରେ । "ଆମ୍ଭେମାନେ ଜ୍ଞାନ କରିଥିଲୁଁ ଯେ ରାଜେନ୍ଦ୍ର ବାବୁ ଉତ୍କଳକୁ ଆସି ଏଠାରେ ଅନେକ ବିଷୟ ଅବଗତ ହୋଇଅଛନ୍ତି । କିନ୍ତୁ ଉପଯୁକ୍ତ କଥାମାନ ତାଙ୍କର ଶୁଣି ବିସ୍ମିତ ହେଲୁଁ । ବାସ୍ତବରେ ସେ ଆପଣା ଅନ୍ତର୍ଗତ ଭାବ ବ୍ୟକ୍ତ କଲେ କିମ୍ବା ସ୍ୱଦେଶାନୁରାଗୀ ହୋଇ ମିଥ୍ୟା କାରଣ ପ୍ରଦର୍ଶନ ପୂର୍ବକ ଆପଣା ମତ ସ୍ଥାପନ କରିବାକୁ ଚେଷ୍ଟାକଲେ ତାହା ସ୍ଥିର କରିବା କଠିନ ବୋଧ ହେଉଅଛି ।" (୭) ଉତ୍କଳଦୀପିକାରେ ସମ୍ମାନ ବା ଭାଷା ବିରୋଧୀ ଅଭିଯାନର ଲେଖା ଯେ ପ୍ରକାଶ ପାଉଥିଲା ତାହା ନୁହେଁ କବିତା, ଗଳ୍ପ ପ୍ରଭୃତି ପ୍ରକାଶିତ ହୋଇ ଜନତାଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା ।

"ମାଣ୍ଡିଆ ଚାଉଳ ହେଲା ଏ କି ମୂଲ ନକହୁ ଆଉ ସଂସାର
ବଡ ଲୋକ ଘୋଡା ହୋଇଲାତ ମଡା ନପାଇ କୋଳଥ ଫଳ ସେ ପୁଣ ।
ଶାଗ ସଜନା ହେଲା ଓଜନ । ଭାତ ନାହିଁ କେ ଲୋଡେ ତିଉଣ ॥
କେତେ କହିବା ତା ପୁଣ ପୁଣ ସେ ।" (୮)

ଏହି କବିତାରେ ନ'ଅଙ୍କ ଦୁର୍ଭିକ୍ଷର କରାଳ ଚିତ୍ର ପ୍ରକାଶିତ ହୋଇଛି । ସମ୍ପାଦକ ଭାବରେ କର୍ମବୀର ଗୌରୀଶଙ୍କରଙ୍କର ବୈଶିଷ୍ଟ୍ୟ ଥିଲା ଯେ ସେ କୌଣସି ପ୍ରକାର ଦ୍ୱନ୍ଦ୍ୱ ବା ଅଯଥା ଯୁକ୍ତି, କଳି ତକରାଳରେ ନପଶି ସ୍ଥିର, ଧୀର ମନରେ ଯାହା ଭାବୁଥିଲେ ତାହାହିଁ ପ୍ରକାଶ କରୁଥିଲେ । ଅନ୍ୟାୟ, ଅତ୍ୟାଚାର, ଶୋଷଣ, କଷଣ ବିରୋଧରେ ସେ ତୀବ୍ର ସ୍ୱର ଉତୋଳନ କରି ଉତ୍କଳଦୀପିକାରେ ତା'ର ଦୃଢ ପ୍ରତିବାଦ କରୁଥିଲେ ।

ଉତ୍କଳଦୀପିକା ତେଣୁ ଯଥାର୍ଥରେ ଥିଲା ନବ ଯୁଗର ଆଲୋକ । ନୂତନ ବାର୍ତା, ନୂତନ ଚିନ୍ତା ଉତ୍କଳୀୟମାନଙ୍କ ମନରେ ପୂର୍ଣ୍ଣ କରିବାରେ ଉତ୍କଳଦୀପିକାର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଦୀପିକା ଏ ଦେଶକୁ ନେଇ ଆସିଲା ନବ ଯୁଗର ଆଲୋକ । ତାହା ସାହାଯ୍ୟରେ ଓଡିଆମାନେ ନିଜ ଦେଶକୁ ଚିହ୍ନିଲେ । ବିଦେଶ ଓ ସାଇପଡିଶାକୁ ଚିହ୍ନିଲେ । କୂପମଣ୍ଡୁକତ୍ୱ ଦୂର ହେଲା । ଜାତିର ଜ୍ଞାନ, ଅଭିଜ୍ଞତା ବଢିଲା । ଜାତିର ଆକାଂକ୍ଷା ସଂଗଠିତ ଓ ଉର୍ଦ୍ଧ୍ୱଗାମୀ ହେଲା । ଗ୍ରନ୍ଥ ପାଠ, ଗ୍ରନ୍ଥ ରଚନା, ପୁସ୍ତକ ପ୍ରକାଶ ଆରମ୍ଭ ହେଲା ବ୍ୟାପକ ଭାବରେ । ସାହିତ୍ୟ କଳା, ସଙ୍ଗୀତ, ବାଣିଜ୍ୟ, ବ୍ୟବସାୟ, ରାଜନୀତିକ ଚେତନା ସବୁ ଆରମ୍ଭ ହୋଇଗଲା । ଜାତି ଶତାବ୍ଦୀର ମୋହ ନିଦ୍ରା ଭାଙ୍ଗି ଉଠିଲା । ନବ ଜାଗରଣର ଧାରା ଦେଶରେ ବହିଲା । ଦୀପିକା ଥିଲା ସେ ଧାରାର ଆଧାର । ବୈଦେଶିକ ସାହିତ୍ୟ ଓ ଚିନ୍ତାଧାରା ବହି ଆସିଲା ଦେଶକୁ । ନୂଆ ସାହିତ୍ୟ ସୃଷ୍ଟିହେଲା । (୯)

ଏହିପରି ନବ ଜାଗରଣର ନବୀନ ଚିନ୍ତା ଚେତନାର ବାହକ ଓ ଉତ୍କଳଦୀପିକାର ସମ୍ପାଦକ କର୍ମବୀର ଗୌରୀଶଙ୍କର ଥିଲେ ଓଡିଶାର ପ୍ରଥମ ସାମ୍ବାଦିକ । କଟକ ପ୍ରିଟିଂ ପ୍ରେସ୍‌ର ପ୍ରତିଷ୍ଠାତା, ଓଡିଆ ଭାଷା ସାହିତ୍ୟ ର ରକ୍ଷକ । କର୍ମବୀର ଗୌରୀଶଙ୍କର ଙ୍କ ସମଗ୍ର ଜୀବନ ଥିଲା ଓଡିଆ ଜାତି ଓ ଭାଷା, ସାହିତ୍ୟ ପାଇଁ ସମର୍ପିତ । ଏହି ମହାପୁରୁଷ ଚିତ୍ରୋତ୍ପଳା ବିରୂପା ଭୂଖଣ୍ଡର ସାଲେପୁର ଥାନା ଅନ୍ତର୍ଗତ ଅସୁରେଶ୍ୱର ନିକଟସ୍ଥ ଦୀକ୍ଷିତପଡାରେ ୧୮୩୮ ଜୁଲାଇ ମାସ ୧୩ ତାରିଖ ଆଷାଢ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ସଦାଶିବ ପ୍ରସାଦ ରାୟ । ୧୯୧୭ ମସିହା ମାର୍ଚ୍ଚ ମାସ ୭ ତାରିଖରେ ସେ ଇହଲୀଳା ସମ୍ବରଣ କରିଥିଲେ ।

## ଉତ୍କଳପୁତ୍ର -

ପ୍ୟାରୀମୋହନ ଆଚାର୍ଯ୍ୟ ଥିଲେ ଓଡିଆ ଜାତିର ପଥ ପ୍ରଦର୍ଶକ । ତେଣୁ ସେ ଉତ୍କଳର ଜନ ଜୀବନର ଚିତ୍ର ତଥା ସମସ୍ୟାକୁ ଲୋକ ଲୋଚନକୁ ଆଣିବା ପାଇଁ "ଉତ୍କଳପୁତ୍ର" ନାମରେ ଏକ ନୂତନ ପତ୍ରିକା ୧୮୭୧ ମସିହାରେ ପ୍ରକାଶ କଲେ । ପ୍ୟାରୀମୋହନ ହେଲେ ଏହାର ସମ୍ପାଦକ, ସେତେବେଳେ ପ୍ୟାରୀମୋହନ ଙ୍କ ଛାତ୍ରାବସ୍ଥା । ପ୍ୟାରୀମୋହନ ଙ୍କ ଉତ୍କଳପୁତ୍ର ଏକ ନୂତନ ପରୀକ୍ଷା, ଏକ ନୂତନ ଆବେଦନ ।

୧୮୬୬ର ନ'ଅଙ୍କ ଦୁର୍ଭିକ୍ଷ । ଉତ୍କଟ ଖାଦ୍ୟାଭାବରେ ଅସଂଖ୍ୟ ଲୋକ ମୃତ୍ୟୁବରଣ କଲେ । ଓଡିଶାର ଆର୍ଥନୀତିକ, ସାମାଜିକ, ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ ହୋଇପଡିଲା । ଓଡିଆ ଭାଷାକୁ ଲୋପ କରିବା ପାଇଁ ହୀନ ଚକ୍ରାନ୍ତ ହେଲା । ସର୍ବୋପରି ଓଡିଶାର ଅଭିମାନ ଭୂଲୁଣ୍ଠିତ ହେଲା । ଏହି ବିରାଟ ବିପର୍ଯ୍ୟୟ ପରେ ଓଡିଶା ଓ ଓଡିଆ ଭାଷା ସାହିତ୍ୟ ର ବିକାଶ ପାଇଁ ପ୍ୟାରୀମୋହନ ଶତ ଉଦ୍ୟମ କଲେ । ଭାଙ୍ଗି ପଡିଥିବା ଜାତିକୁ ଉଠାଇବା ପାଇଁ ବହୁ ଉଦ୍ୟମ କଲେ । ଏହି ଉଦ୍ୟମ ଥିଲା ବାସ୍ତବିକ୍ ଐତିହାସିକ । ଆଚାର୍ଯ୍ୟ ମହାଶୟଙ୍କ ଏହି ସାର୍ଥକ ଉଦ୍ୟମର ପ୍ରତିଲିପି "ଉତ୍କଳପୁତ୍ର" ପତ୍ରିକାରେ ପ୍ରଥମେ ହାତରେ ଲେଖାହୋଇ ପ୍ରକାଶିତ ହେଉଥିଲା । ପରେ କର୍ମବୀର ଗୌରୀଶଙ୍କର ଙ୍କ ସହଯୋଗରେ ମୁଦ୍ରିତ ହୋଇ ପ୍ରକାଶିତ ହେଉଥିଲା । କଟକ ପ୍ରିଟିଂ କମ୍ପାନୀ ଦ୍ୱାରା ଏହା ମୁଦ୍ରିତ ହେଉଥିଲା ବୋଲି ଜଣାଯାଏ । "ଏ ସମ୍ପର୍କରେ ବିଜ୍ଞାପନ 'ଉତ୍କଳପୁତ୍ର' ରେ ପ୍ରକାଶିତ ହୋଇଥିଲା - ପାଠକ ଙ୍କୁ ଜଣାଅଛି ଯେ ଉତ୍କଳଦୀପିକା ପ୍ରତି ଶନିବାର କଟକ ପ୍ରିଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୁଏ ।" (୧୦) ପ୍ୟାରୀମୋହନ ଙ୍କ "ଉତ୍କଳପୁତ୍ର" ଓଡିଆ ଭାଷା, ସାହିତ୍ୟ ଜଗତର ଏକ ଅମୂଲ୍ୟ ସାରସ୍ୱତ ସମ୍ପଦ । ବିଖ୍ୟାତ ସାହିତ୍ୟିକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଏହି ପତ୍ରିକା ସମ୍ପର୍କରେ ଲେଖିଛନ୍ତି - "ବାଲେଶ୍ୱର ରେ ଉତ୍କଳ ଦର୍ପଣ ଦେଖାଯିବାର ଅଳ୍ପ ଦିନ ପରେ କଟକରେ 'ଉତ୍କଳପୁତ୍ର' ର ଆବିର୍ଭାବ । ଆଚାର୍ଯ୍ୟ ପ୍ୟାରୀମୋହନ ଏ ପାକ୍ଷିକ ପତ୍ରିକାର ପ୍ରାଣ ପ୍ରତିଷ୍ଠାତା ଓ ସମ୍ପାଦକ ଥିଲେ ।"

"ଉତ୍କଳପୁତ୍ର" ର ପ୍ରତ୍ୟେକ ସମାଲୋଚନା ଅତ୍ୟନ୍ତ ଓଜସ୍ୱିନୀ ଥିଲା । ମହାତ୍ମା ପ୍ୟାରୀମୋହନ ଙ୍କ ତୁଲ୍ୟ ସ୍ପଷ୍ଟବାଦୀ, ନିର୍ଭୀକ କହିଲେ ଚଳେ । ଅତ୍ୟଧିକ ଓଜସ୍ୱିତା ଯୋଗୁଁ ଅଥବା ପ୍ରଗଲ୍‌ଭତା ବଶରୁ "ଉତ୍କଳପୁତ୍ର" ସେତେବେଳେ ସମସ୍ତଙ୍କ କୋପ ଦୃଷ୍ଟିରେ ପଡି ଉତ୍କଳର ଦୁର୍ବଳ ସମାଜରେ ଅଧିକ କାଳ ସ୍ଥାୟୀହୋଇ ପାରିଥିଲା । (୧୧) ୧୮୭୩ ମସିହା ଏପ୍ରିଲ୍ ମାସ ୧୬ ତାରିଖ ବୁଧବାର ଦିନ "ଉତ୍କଳପୁତ୍ର" ର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା ।

ସେ କାଳରେ ପତ୍ରିକା ସଂଖ୍ୟାର ସ୍ୱଳ୍ପତା ଏବଂ ପାଠକ ସଂଖ୍ୟା ସୀମିତ । ମାସିକ ପାକ୍ଷିକ ପତ୍ରିକାରେ ସବୁ ବିଷୟକୁ ଅନ୍ତର୍ଭୁକ୍ତ କରିବା ସମ୍ଭବ ହେଉନଥିଲା । ତଥାପି "ଉତ୍କଳପୁତ୍ର" ର ପ୍ରତିଟି ପୃଷ୍ଠା ବିଭିନ୍ନ ସ୍ୱାଦର ଲେଖାରେ ସୁଶୋଭିତ ହେଉଥିଲା । ବିଭିନ୍ନ ସମ୍ବାଦ, ପ୍ରାକୃତିକ ପରିସ୍ଥିତି ଅର୍ଥାତ୍ ପାଣିପାଗ ସମ୍ବାଦ, ହାସ୍ୟ ସମ୍ବନ୍ଧୀୟ ଲେଖା, ବିଜ୍ଞାପନ, ପତ୍ର ପ୍ରେରକ ଙ୍କ ପ୍ରତି ଲେଖା ସର୍ବୋପରି ବିଭିନ୍ନ ସାର ଗର୍ଭକ ଆଲୋଚନାରେ ଋଦ୍ଧିମନ୍ତ ହେଉଥିଲା । "ଉତ୍କଳପୁତ୍ର" ପତ୍ରିକା ପ୍ୟାରୀମୋହନ ଙ୍କ ନିର୍ଭୀକ ନ୍ୟାୟ ସମ୍ମତ, ସତ୍ୟନିଷ୍ଠ ଲେଖାରେ ପରିପୂର୍ଣ୍ଣ ହୋଇଥିଲା । ବ୍ରିଟିଶ ଶାସନର ତ୍ରୁଟି, ପ୍ରଶାସନରେ ଶୋଷଣ, ସାମାଜିକ ଜୀବନରେ କଷଣ, ପୁଣି କୁସଂସ୍କାର ବିରୋଧରେ ପ୍ୟାରୀମୋହନ ନିର୍ଭୀକ ଭାବରେ ଲେଖନୀ ଚାଳନା କରିଥିଲେ ଉତ୍କଳପୁତ୍ରରେ । ଏପରିକି "ଉତ୍କଳପୁତ୍ର" ରେ ପ୍ରକାଶିତ ଏକ ଲେଖା "ଦରଖାସ୍ତର ଯୁଡିଆନ" ଅର୍ଥାତ୍ "ଜୋତାମାନଙ୍କର ନିବେଦନ" ପ୍ରବନ୍ଧ ପାଇଁ ପ୍ୟାରୀମୋହନ ଙ୍କୁ କଲେଜରୁ ବହିଷ୍କୃତ ହେବାକୁ ପଡିଥିଲା

ଉତ୍କଳପୁତ୍ରରେ ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ସର୍ବୋପରି ଜନ ସମସ୍ୟା ଚିତ୍ର ପ୍ରକାଶିତ ହେଉଥିଲା । ସେହିପରି ତତ୍କାଳୀନ ବାସ୍ତବ ଚିତ୍ର ଅତି ନିଖୁଣ ଭାବରେ ପ୍ରକଟିତ ହେଉଥିଲା । ଉତ୍କଳପୁତ୍ରରେ ଆଜିକାଲି ଦଶହରା ଘଡି । ହିନ୍ଦୁ ସମାଜ ଆନନ୍ଦୋତ୍ସବରେ ମାତିଅଛି । କେଉଁଠାରେ ତାସ୍ ପକାର ଧୂମ୍ ଲାଗିଅଛି ତ କେଉଁଠି ଅବା ଗାନ ବାଦ୍ୟ, ନାଚ, ତାମସାରେ ଲୋକ ମାତାଲ, କେଉଁଠାରେ ବୋତଲ ଢଳା, ଛିଟା ଚିତ୍ର ଲାଗିଅଛି । କେଉଁଠି ଅବା ଛେଳି, କୁକୁର, ମୂଷା, ଘୁଷୁରି, ଚୁଚୁନ୍ଦ୍ରାଙ୍କ ଉପରେ ମାଡ । ଏହି ରୂପେ ଯେ ଯାହା ଆପଣା କାମରେ ଲାଗିରହି ଅଛନ୍ତି । ଏପରି ଗୋଳମାଳ ଓ ଭିଡ ମଧ୍ୟରେ "ପୁତ୍ର" ଆପଣା କର୍ତ୍ତବ୍ୟ କାର୍ଯ୍ୟସାଧିକ ସକାଶେ ବାହାରିଅଛି । (୧୨)

ପ୍ୟାରୀମୋହନ ଉତ୍କଳପୁତ୍ରରେ ତତ୍କାଳୀନ ଶାସକମାନଙ୍କୁ ତୀବ୍ର ସମାଲୋଚନା କରିଛନ୍ତି । ତାଙ୍କର ସମାଲୋଚନା ଥିଲା ପ୍ରତ୍ୟେକ ଙ୍କ ପାଇଁ ଆଜିକାଲିକା ଓ ମୂଳ ସାହେବଙ୍କର ରାଜତ୍ୱ, ତାଙ୍କ ଶାସନରେ ଯେମନ୍ତ କେତେକ ଶୁଭ ଫଳୁଅଛି, ସେହି ରୂପେ ଅଶୁଭ ମଧ୍ୟ ଅଳ୍ପ ନୁହେଁ । ତାଙ୍କ ଶାସନରେ ଗୋଟିଏ ବିଶେଷ ଦୋଷ ସ୍ୱେଚ୍ଛାଚାରିତା । (୧୩) ଉତ୍କଳପୁତ୍ର ଚାରି ବର୍ଷରୁ ଅଧିକ ସମୟ ଜାତୀୟ ସେବାରେ ନିଜକୁ ନିୟୋଜିତ କରି ଅକାଳରେ ନିରବ ହୋଇ ଯାଇଥିଲା ।

ପ୍ରକୃତରେ ଜାତୀୟ ଇତିହାସ ପୃଷ୍ଠାରେ ପ୍ୟାରୀମୋହନ ଆଚାର୍ଯ୍ୟ ଙ୍କ ପରି ବ୍ୟକ୍ତିତ୍ୱ ବିରଳ । ସେ ଥିଲେ ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନ । ଉତ୍କଳପୁତ୍ର ତାଙ୍କ ଜୀବନର ଚିତ୍ରଶାଳା । ସତ୍ୟ ଓ ନିର୍ଭୀକ ଚେତନାର ଏକ ବଳିଷ୍ଠ ସ୍ୱାକ୍ଷର ଉତ୍କଳପୁତ୍ର ପତ୍ରିକା । ତେଣୁ ଓଡିଶାର ଇତିହାସରେ ଉତ୍କଳପୁତ୍ରର ସ୍ଥାନ ସ୍ୱତନ୍ତ୍ର । କେବଳ ଭାଷା ଆନ୍ଦୋଳନ ରାଜ୍ୟ ତଥା ଜାତୀୟ ସମସ୍ୟାର ଉତ୍‌ଥାପନ ପାଇଁ ପ୍ୟାରୀମୋହନ ଉତ୍କଳପୁତ୍ର ପତ୍ରିକା ପ୍ରକାଶ କରିନଥିଲେ, ଅଧିକନ୍ତୁ ସେ ଥିଲେ ପ୍ରଥମ ଓଡିଆ ଭାଷାଭିତିକ ଓଡିଶା ଇତିହାସର ପ୍ରଣେତା । ବେସରକାରୀ ସ୍ତରରେ ପ୍ରଥମ ଶିକ୍ଷାନୁଷ୍ଠାନ ମଧ୍ୟ ଓ ଉଚ୍ଚ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ତଥା ସମାଜ ଜୀବନର ପଥ ପ୍ରଦର୍ଶକ ।

ପ୍ୟାରୀମୋହନ ୧୮୫୧ ମସିହା ଅଗଷ୍ଟ ମାସ ୫ ତାରିଖରେ କଟକ ଜିଲ୍ଲା ଅନ୍ତର୍ଗତ ମାହାଙ୍ଗା ଥାନା ନିକଟସ୍ଥ ପଣ୍ଡୁଲୁଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ - ଭୁବନ ମୋହନ ଆଚାର୍ଯ୍ୟ । ଏହି ମହାନ୍ ସାଧକ ଉତ୍କଳମାତାର ସୁଯୋଗ୍ୟ ପୁତ୍ର ପ୍ୟାରୀମୋହନ ୧୮୮୧ ମସିହା ଡିସେମ୍ବର ୨୮ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ । ପ୍ୟାରୀମୋହନ ଙ୍କ ଆୟୁଷ ଥିଲା ମାତ୍ର ତିରିଶ ବର୍ଷ । କିନ୍ତୁ ତାଙ୍କ ସମଗ୍ର ଜୀବନ ଥିଲା - ନିଷ୍ଠା, ତ୍ୟାଗ ଓ ତପସ୍ୟାର ଜୀବନ ।

## ଉତ୍କଳସାହିତ୍ୟ -

ବାଗ୍ମୀ ବିଶ୍ୱନାଥ କର ଓଡିଆ ଭାଷା, ସାହିତ୍ୟ, ସଂସ୍କୃତିର ଅଗ୍ରଣୀ ପୁରୁଷ । ବାଗ୍ମୀ ବିଶ୍ୱନାଥ ଊନବିଂଶ ଶତାବ୍ଦୀର ଶେଷ ଦଶକରୁ ବିଂଶ ଶତାବ୍ଦୀର ଚାରି ଦଶକ ପର୍ଯ୍ୟନ୍ତ ଉତ୍କଳର ଭାଷା, ସାହିତ୍ୟ, ସଂସ୍କୃତି ପାଇଁ ଯଥାର୍ଥ ନେତୃତ୍ୱ ପ୍ରଦାନ କରି ଅବିସ୍ମରଣୀୟ ଭୂମିକା ଗ୍ରହଣ କରିଛନ୍ତି । ସଂସ୍କାର, ଆନ୍ଦୋଳନ, ସର୍ବୋପରି ଆଧୁନିକ ଚିନ୍ତା ଚେତନାର ମହାନ୍ ପ୍ରତିନିଧି ବାଗ୍ମୀ ବିଶ୍ୱନାଥ । ତାଙ୍କ ଜୀବନୀ ଗୋଟିଏ ଜାତିର ତ୍ୟାଗ, ନିଷ୍ଠା, ସଂଗ୍ରାମ ତଥା ଆତ୍ମଜାଗରଣର ଇତିହାସ । ସେ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ଓଡିଶାର ଜନ ଜୀବନକୁ ନେତୃତ୍ୱ ଦେଇ ଯେପରି ଆଲୋଡିତ କରିଥିଲେ ତାହାର ତୁଳନା ନାହିଁ । ତାଙ୍କ ସମ୍ପାଦିତ ଉତ୍କଳସାହିତ୍ୟ ତତ୍କାଳୀନ ଓଡିଶାର ଏକ ସଂଭ୍ରାନ୍ତ ସାରସ୍ୱତ ପତ୍ରିକା । ଐତିହାସିକ ଆବଶ୍ୟକତାକୁ ପୂରଣ କରିବାରେ ସେ ସଫଳ ହୋଇ ଏ ଜାତିର ପ୍ରଣମ୍ୟ ପୁରୁଷ ହୋଇଛନ୍ତି ।

ଓଡିଆ ଭାଷା ସାହିତ୍ୟ ର ଏକ ସଙ୍କଟ କାଳରେ ଉତ୍କଳସାହିତ୍ୟକୁ ପ୍ରକାଶ କରି ପରାଧୀନ ଓଡିଶାର ଲୋକମାନଙ୍କ ମଧ୍ୟରେ ନବ ପ୍ରେରଣା, ନବ ଚେତନା ସୃଷ୍ଟି କରିବାରେ ସେ ସମର୍ଥ ହୋଇଥିଲେ । "ଉତ୍କଳସାହିତ୍ୟ" ଓଡିଆ ସାହିତ୍ୟକୁ ଦିଗ୍‌ଦର୍ଶନ ଦେବା ସହିତ ନବ ଜାଗରଣ ସୃଷ୍ଟି ପ୍ରକ୍ରିୟାର ଶୁଭାରମ୍ଭ କରିଥିଲା । "ଉତ୍କଳସାହିତ୍ୟ" ଏକ ଆଦର୍ଶ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ପ୍ରକାଶିତ ହୋଇଥିଲା । ସେତେବେଳେ ଆଧୁନିକ ଚେତନାର ସଂସ୍ପର୍ଶରେ ଭାଷା, ସାହିତ୍ୟ, ରାଜନୀତି, ସମାଜ, ଧର୍ମୀୟ ଦୃଷ୍ଟିକୋଣରୁ ବ୍ୟାପକ ପରିବର୍ତନ ସମ୍ଭବ ହୋଇଥିଲା । ଉତ୍କଳପ୍ରଭା, ଉତ୍କଳଦୀପିକା, ବାଲେଶ୍ୱର ସମ୍ବାଦ ବାହିକା, ଉତ୍କଳ ହିତୈଷିଣୀ ପତ୍ରିକାମାନ ପ୍ରକାଶିତ ହେଉଥିଲେ ହେଁ ପାରସ୍ପରିକ ସମନ୍ୱୟର ଘୋର ଅଭାବ ଥିଲା । ପୁଣି ୧୯୯୩-୯୪ । ଇନ୍ଦ୍ରଧନୁ ଓ ବିଜୁଳି ସଂଘର୍ଷ ସେତେବେଳକାର ସାରସ୍ୱତ ଜଗତକୁ କଳୁଷିତ କରି ଦେଇଥିଲା ।

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଅର୍ଥାତ୍ ଏହିପରି ଏକ ସାହିତ୍ୟିକ, ସାଂସ୍କୃତିକ ପରିବେଶ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଉଦ୍ଦେଶ୍ୟ ନେଇ "ଉତ୍କଳସାହିତ୍ୟ" ର ସୃଷ୍ଟି । ଊନବିଂଶ ଶତାବ୍ଦୀକୁ ବିଦାୟ ଓ ବିଂଶ ଶତାବ୍ଦୀକୁ ଅଭିନନ୍ଦନ ଜଣାଇ ଉତ୍କଳସାହିତ୍ୟର ଜନ୍ମହେଲା - ୧୮୯୭, ଜାନୁୟାରୀ ମାସରେ । ପ୍ରାଚୀନ ସାହିତ୍ୟ ର ଯଥାର୍ଥ ମୂଲ୍ୟାୟନ ଓ ତା'ର ଉତମ ଗୁଣଗୁଡିକର ପ୍ରଶଂସା ଏବଂ ନବୀନ ସୃଷ୍ଟି ପାଇଁ ପ୍ରେରଣା ଦେବା ହେଲା ଏହି ଐତିହାସିକ ସାହିତ୍ୟ ପତ୍ରିକାର ଲକ୍ଷ୍ୟ । ଦୀର୍ଘ ଦିନରୁ ଚାଲି ଆସିଥିବା କଳଙ୍କିତ ମସୀ ଯୁଦ୍ଧ ଯଥାର୍ଥରେ "ଉତ୍କଳସାହିତ୍ୟ" ପ୍ରକାଶିତ ହେଲା ପରେ ଅବସାନ ହେଲା ।

"ବାସ୍ତବିକ୍ ଉତ୍କଳସାହିତ୍ୟ ହିଁ ନବ ଉତ୍କଳର ଆଶା ଓ ଆକାଂକ୍ଷାର ଏକ ବାଣୀ ମୂର୍ତି ଅଭିବ୍ୟକ୍ତି ।" (୧୪) ଭକ୍ତକବି ମଧୁସୂଦନ ରାଓ ଏକ ସାହିତ୍ୟ ପତ୍ରିକା ପ୍ରକାଶ ପାଇଁ ମତ ପ୍ରକାଶ କରିଥିଲେ । ଫକୀରମୋହନ ସେନାପତି, ଚନ୍ଦ୍ରମୋହନ ମହାରଣା, କୃଷ୍ଣପ୍ରସାଦ ଚୌଧୁରୀ, ବିଶ୍ୱନାଥ କରଙ୍କ ମିଳିତ ଉଦ୍ୟମରେ ପତ୍ରିକା ପ୍ରକାଶ ପାଇଁ ସ୍ଥିର ହେଲା । କିନ୍ତୁ ବିଶ୍ୱନାଥ କର ସମ୍ପାଦନା ଦାୟିତ୍ୱ ଗ୍ରହଣ କଲେ । କିନ୍ତୁ କୃଷ୍ଣପ୍ରସାଦ ହେଲେ ଏହାର ପରିଚାଳକ । ୧୩୦୪ ସାଲ ବୈଶାଖ ପ୍ରଥମ ମହାବିଷୁବ ସଂକ୍ରାନ୍ତି ଦିନ ଉତ୍କଳସାହିତ୍ୟର ପ୍ରଥମ ସଂଖ୍ୟା ଉନ୍ମୋଚିତ ହେଲା । ୧୮୯୭ ରୁ ୧୯୩୪ ମସିହା ପର୍ଯ୍ୟନ୍ତ ଉତ୍କଳସାହିତ୍ୟ ପ୍ରକାଶିତ ହୋଇ ତା'ର ଲକ୍ଷ୍ୟ ପୂରଣ କରିବାରେ

ସମର୍ଥ ହୋଇଛି । ଏହି ପତ୍ରିକା ନୂତନ ଲେଖକ ସୃଷ୍ଟି କରିବାରେ ସମର୍ଥ ହୋଇଛି । ପ୍ରକୃତରେ ଉତ୍କଳସାହିତ୍ୟ ପତ୍ରିକା ପ୍ରେସ୍ ଥିଲା ତତ୍କାଳୀନ ଓଡିଶାର ଲେଖକ ତିଆରି କାରଖାନା

"ଉତ୍କଳସାହିତ୍ୟ" ତିନି ପିଢିର ସାହିତ୍ୟିକମାନଙ୍କୁ ପ୍ରେରଣା ଓ ଉତ୍ସାହ ଯୋଗାଇ ପାରିଛି । ବାସ୍ତବରେ "ଉତ୍କଳସାହିତ୍ୟ" ଓଡିଆ ସାହିତ୍ୟ ର ଏକ ବିପ୍ଳବ । ଉତ୍କଳସାହିତ୍ୟର ଧର୍ମ, ସାହିତ୍ୟ, ରାଜନୀତି, ଇତିହାସ, ଜୀବନୀ, ଭ୍ରମଣ ବୃତାନ୍ତ, ଆଧୁନିକ ଗଳ୍ପ, ଉପନ୍ୟାସ, କବିତା, ବିଜ୍ଞାନଭିତିକ ପ୍ରବନ୍ଧ, ପୁସ୍ତକ ପରିଚୟ, ପରଲୋକଗତ ଲେଖକ ଙ୍କ ଉପରେ ଆଲୋଚନା, ଧର୍ମ ଆଲୋଚନା ଗ୍ରନ୍ଥ ପ୍ରକାଶିତ ହୋଇ ଅଗଣିତ ପାଠକମାନଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା ।

ଉତ୍କଳସାହିତ୍ୟ ପତ୍ରିକା ପ୍ରାଚୀନ ଓ ନବୀନ ଲେଖକମାନଙ୍କର ମିଳନ ପୀଠ । ନିରୋଳା ସାହିତ୍ୟ ପତ୍ରିକାର ବାସ୍ନାନେଇ ପ୍ରକାଶ ପାଇଥିବା "ଉତ୍କଳସାହିତ୍ୟ" ପତ୍ରିକା ତା'ର ଲକ୍ଷ୍ୟ ପୂରଣ କରିଛି । ଉତ୍କଳସାହିତ୍ୟ ପତ୍ରିକା ବାଗ୍ମୀ ବିଶ୍ୱନାଥ ଙ୍କ ପ୍ରତିଭାର ସର୍ବଶ୍ରେଷ୍ଠ ପରିଚୟ ।

ପ୍ରବନ୍ଧ ସାହିତ୍ୟ ର ବିକାଶରେ ଉତ୍କଳସାହିତ୍ୟ ଭୂମିକା ସବୁଠାରୁ ମହତ୍ୱପୂର୍ଣ୍ଣ । ଏଥିରେ ବିଶ୍ୱନାଥ କର, କୃଷ୍ଣପ୍ରସାଦ ଚୌଧୁରୀ, ମଧୁସୂଦନ ରାଓ, ମୃତ୍ୟୁଞ୍ଜୟ ରଥ, ଫକୀରମୋହନ ସେନାପତି, ଗୋପାଳ ଚନ୍ଦ୍ର ପ୍ରହରାଜ, ଗୋପିନାଥ ନନ୍ଦ, ଶ୍ୟାମସୁନ୍ଦର ରାଜଗୁରୁ, ମୋହିନୀ ମୋହନ ସେନାପତି ପ୍ରବନ୍ଧ ଲେଖି ପ୍ରବନ୍ଧ ସାହିତ୍ୟକୁ ବିକାଶ ପଥରେ ଅଗ୍ରସର କରାଇଥିଲେ । ଓଡିଆ ଗଳ୍ପ, ଉପନ୍ୟାସକୁ ଜନମାନସରେ ପାଠକୀୟ ମର୍ଯ୍ୟାଦା ପ୍ରଦାନ କରିବାରେ ଉତ୍କଳସାହିତ୍ୟର ଭୂମିକା ପ୍ରଶଂସନୀୟ ।

ଫକୀରମୋହନ ଙ୍କ "ରେବତୀ" ଠାରୁ ଆରମ୍ଭ କରି "ଗାରୁଡି ମନ୍ତ୍ର" ପର୍ଯ୍ୟନ୍ତ ସମସ୍ତ ଗଳ୍ପ, "ଛ ମାଣ ଆଠଗୁଣ୍ଠ" ଉପନ୍ୟାସ ଉତ୍କଳସାହିତ୍ୟରେ ପ୍ରକାଶିତ ହୋଇଥିଲା । ସେତେବେଳେ ଏହି ଉପନ୍ୟାସ ଏତେ ପ୍ରଭାବ ପକାଇଥିଲା ଯେ ମଙ୍ଗରାଜ ଙ୍କ ମକଦ୍ଦମାର ବିଚାର ଦେଖିବା ପାଇଁ ଗାଁ ଲୋକେ କଚେରିକୁ ଆସିଥିଲେ ।

ଦିବ୍ୟସିଂହ ପାଣିଗ୍ରାହୀ, ବାଙ୍କନିଧି ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରମୁଖଙ୍କ କଥାସାହିତ୍ୟ ଉତ୍କଳସାହିତ୍ୟରେ ପ୍ରକାଶିତ ହେଉଥିଲା । କାବ୍ୟ କବିତା ପ୍ରକାଶନର ଅନ୍ୟ ଏକ ସଫଳ ମାଧ୍ୟମ ଥିଲା "ଉତ୍କଳସାହିତ୍ୟ" । ରାଧାନାଥ ରାୟ ଙ୍କ "ଦରବାର", ଗଙ୍ଗାଧର ମେହେର ଙ୍କ "ମହିମା", ନନ୍ଦକିଶୋର ବଳ ଙ୍କ "ପୁଷ୍ପ", ପଦ୍ମଚରଣ ପଟ୍ଟନାୟକ ଙ୍କ "ତ୍ରିବେଣୀ ତଟେ", "ଧଉଳି ପାହାଡ", "ଖୋରଧା ପ୍ରଥମ ଦର୍ଶନେ", ଅନ୍ନଦା ଶଙ୍କର ରାୟ ଙ୍କ "ପରୀମହଲ" ଓ ବୈକୁଣ୍ଠ ନାଥ ଙ୍କ "ସବୁଜ ବନ୍ଧୁପ୍ରତି" କବିତା ପ୍ରଭୃତି ଉତ୍କଳସାହିତ୍ୟରେ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଥିଲା । କାନ୍ତକବି ଲକ୍ଷ୍ମୀକାନ୍ତ, ଗୋଦାବରୀଶ ମିଶ୍ର, ଗୋପବନ୍ଧୁ ଦାସ, କୁନ୍ତଳା କୁମାରୀ ସାବତ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ମାୟାଧର ମାନସିଂହ, ରାଧାମୋହନ ଗଡନାୟକ, ସଚ୍ଚିଦାନନ୍ଦ ରାଉତରାୟ ଙ୍କ ସାରସ୍ୱତ ଜୀବନର ଏନ୍ତୁଡିଶାଳ ଥିଲା "ଉତ୍କଳସାହିତ୍ୟ" ପତ୍ରିକା ।

ଜୀବନୀ ଓ ଆତ୍ମଜୀବନୀ ମଧ୍ୟ ଏକ ବିଭାଗ ଥିଲା । ଉତ୍କଳସାହିତ୍ୟରେ ଫକୀରମୋହନ ସେନାପତି ଙ୍କ ଆତ୍ମଜୀବନୀ ଚରିତର କେତେକ ଅଂଶ ଓ ପଣ୍ଡିତ ନୀଳକଣ୍ଠ, ରାଧାନାଥ, ମଧୁସୂଦନ, ସାମନ୍ତ ଚନ୍ଦ୍ରଶେଖର ଙ୍କ "ତ୍ରିକନ୍ୟା" ପ୍ରଭୃତି "ଉତ୍କଳସାହିତ୍ୟ" ର ପୃଷ୍ଠା ମଣ୍ଡନ କରିଥିଲା । ସେହିପରି ଜ୍ଞାନଭିତିକ ଲେଖା ପ୍ରାଣକୃଷ୍ଣ ପରିଜା, ବିରାଜମୋହନ ସେନାପତି, ଅଖିଳ ଚନ୍ଦ୍ର ପାଲିତ, ଚନ୍ଦ୍ରମୋହନ ମହାରଣା ପ୍ରମୁଖ ଲେଖୁଥିଲେ । ଜଳନ୍ଧର ଦେବ ଙ୍କ "ଡାଏରୀ ର କିୟଦଂଶ", ଶଶିଭୂଷଣ ରାୟ ଙ୍କ "ଚିଲିକାରେ ଚାରିଦିନ", ଶୈଳବାଳା ଦାସ ଙ୍କ "ବିଲାତ ପ୍ରବାସ" ପ୍ରଭୃତି ଭ୍ରମଣ ବୃତାନ୍ତ "ଉତ୍କଳସାହିତ୍ୟ" ରେ ପ୍ରକାଶିତ ହୋଇ ବହୁ ପ୍ରଶଂସା ଅର୍ଜନ କରିଥିଲା । ସାମୟିକ ପ୍ରସଙ୍ଗ ଏକ ନୂତନ ଆକର୍ଷଣୀୟ ବିଭାଗ ।

"ଉତ୍କଳସାହିତ୍ୟ" ରେ ସେତେବେଳେ ପାଠକମାନଙ୍କ ବୌଦ୍ଧିକ, ମାନସିକ ଆନନ୍ଦ ପ୍ରଦାନ କରୁଥିଲା । ଗୋପାଳ ଚନ୍ଦ୍ର ପ୍ରହରାଜ ଙ୍କ "ଦୁନିଆଁର ହାଲଚାଲ", "ଭାଗବତ ଟୁଙ୍ଗୀରେ ସନ୍ଧ୍ୟା" ପ୍ରଭୃତି ଲେଖା, ନନ୍ଦକିଶୋର ଙ୍କ "ଓଡିଆ ଲଳନା" ବ୍ୟଙ୍ଗ କବିତା ପ୍ରଭୃତି ଉତ୍କଳସାହିତ୍ୟର ଏହି ବିଭାଗରେ ସ୍ଥାନିତ ହୋଇଥିଲା ।

"ଉତ୍କଳସାହିତ୍ୟ" ପତ୍ରିକା ପରି ପତ୍ରିକା ନଥିଲା । ଉତ୍କଳସାହିତ୍ୟର ପ୍ରେରଣା, ପ୍ରୋତ୍ସାହନ ଫଳରେ ଜନ୍ମ ନେଇଥିଲା ଓଡିଆ ସ୍ୱାଭିମାନ, ଆତ୍ମଚେତନାର ଯଥାର୍ଥ ଜାତୀୟ ମଚଂ ଉତ୍କଳ ସମ୍ମିଳନୀ ୧୯୦୩ ମସିହାରେ । ଭାଷା ବିଲୋପ ବିରୋଧୀ ଆନ୍ଦୋଳନକୁ ସକ୍ରିୟ କରିବା ସହ ନୂତନ, ସ୍ୱତନ୍ତ୍ର ଓଡିଶା ଗଠନର ସ୍ୱପ୍ନକୁ ସାକାର କରିବାରେ ଉତ୍କଳସାହିତ୍ୟର ଭୂମିକା ଥିଲା ଐତିହାସିକ ।

ନବ ଆନ୍ଦୋଳନ, ଜାତୀୟ ଜାଗରଣ ସର୍ବୋପରି ଭାଷା, ସାହିତ୍ୟ ର ବିକାଶରେ "ଉତ୍କଳସାହିତ୍ୟ" ଯେପରି ଦାୟିତ୍ୱ ସମ୍ପାଦନ କରିଥିଲା ତାହା ଏବେବି ଭାବିଲେ ବିସ୍ମିତ ହେବାକୁ ପଡେ । ଉତ୍କଳୀୟ ଭାବ ଭାବନାର ଯଥାର୍ଥ ପ୍ରତିଲିପି ଥିଲା ଉତ୍କଳସାହିତ୍ୟ । ସାମଗ୍ରିକ ଭାବରେ ଓଡିଶାର ଲେଖକ, ଚିନ୍ତାଶୀଳ ବ୍ୟକ୍ତିମାନଙ୍କୁ ଏକତ୍ରିତ କରି ସେମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ କରୁଥିଲା ଉତ୍କଳସାହିତ୍ୟ । ଏହା ସଂଯୋଗ ସେତୁ ଭାବରେ କାର୍ଯ୍ୟ କରୁଥିଲା । ତେଣୁ ଆଧୁନିକ ଓଡିଆ ସାହିତ୍ୟ ର ଏହି ପୁରୁଷ ଫକୀରମୋହନ ସେନାପତି ଯଥାର୍ଥରେ ସେଥିପାଇଁ ଲେଖିଥିଲେ -

"ମାସିକ ପତ୍ରିକା ହେଲା ଦେଶର ଗୌରବ
ଉତ୍କଳ ଦେଶରେ ଥିଲା ତା' ନାମ ନୀରବ ।

ମାସିକ ପତ୍ରିକା ଢେର ସ୍ୱରୂପ ଦେଖାଇ
ପାଣିର ଫୁଟୁକା ଗଲେ ପାଣିରେ ଉଭାଇ ।
କୋଡିଏ ବରଷ କାଳ ପାଶ ଲାଗି ଲାଗି
ସାହିତ୍ୟ ପ୍ରଚାର ପାଇଁ ପଡିଅଛ ଲାଗି ।" (୧୫)

ଆଧୁନିକ ଓଡିଆ ସାହିତ୍ୟ ର ଅନ୍ୟତମ ସୁଖ୍ୟାତ ସ୍ରଷ୍ଟା ସୁରେନ୍ଦ୍ର ମହାନ୍ତି "ଉତ୍କଳସାହିତ୍ୟ" କୁ ଏକ ତୀର୍ଥକ୍ଷେତ୍ର ବୋଲି ବର୍ଣ୍ଣନା କରିଥିଲେ । "ଉତ୍କଳସାହିତ୍ୟ ବିଂଶ ଶତାବ୍ଦୀର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଦଶକରେ ଓଡିଆ ସାହିତ୍ୟ ର ଏକ ତୀର୍ଥକ୍ଷେତ୍ର ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ରୁଚି ଓ ମତବାଦ ନିର୍ବିଶେଷରେ ସେ କାଳର ପ୍ରତ୍ୟେକ ଶିକ୍ଷିତ, ସାହିତ୍ୟ ପ୍ରେମୀ ଓ ଲେଖକ ବିଶ୍ୱନାଥ ଙ୍କୁ କି ଭକ୍ତି, ଶ୍ରଦ୍ଧା ଓ ବିଶ୍ୱାସ ଚକ୍ଷୁରେ ଦେଖୁଥିଲେ, ତାହାର ପ୍ରମାଣ ସେ କେତେଖଣ୍ଡ ଚିଠିରୁ ମୁଁ ପାଇଥିଲି । ସେଦିନର ଓଡିଆ ଲେଖକମାନେ ଥିଲେ ଯେପରିକି ଗୋଟିଏ ଗୋଷ୍ଠୀର, ଗୋଟିଏ ପରିବାର ର । ଓଡିଆ ସାହିତ୍ୟ ର ଅଭିବୃଦ୍ଧି ଥିଲା ସେମାନଙ୍କର ଏକମାତ୍ର କାମନା । ଉତ୍କଳସାହିତ୍ୟ ଥିଲା ସେ ସାଧନାର ଏକମାତ୍ର ପୀଠ ଓ ବିଶ୍ୱନାଥ ଥିଲେ ତାହାର ମନ୍ତ୍ରଗୁରୁ ।" (୧୬)

ଓଡିଆ ସାହିତ୍ୟ ର ଦିଗ ନିର୍ଦ୍ଦେଶ କରିବାରେ ଉତ୍କଳସାହିତ୍ୟ ଶ୍ରେଷ୍ଠ କର୍ଣ୍ଣଧାର ଭାବରେ କାର୍ଯ୍ୟ ସମ୍ପାଦନ କରିଥିଲା । ଉତ୍କଳସାହିତ୍ୟ ଥିଲା ଓଡିଆ ସାହିତ୍ୟ ର ପ୍ରତିବିମ୍ବ ସଦୃଶ - "ଏହି ପତ୍ରିକା (ଉତ୍କଳସାହିତ୍ୟ) ଓଡିଆ ସାହିତ୍ୟ ର ଗତିଧାରା ନିର୍ଣ୍ଣୟର ଜଣେ ଶ୍ରେଷ୍ଠ କର୍ଣ୍ଣଧାର ଭାବରେ ନିଜର ଭୂମିକା ନିର୍ବାହ କରିଛନ୍ତି ଦୀର୍ଘକାଳ ଧରି । ୧୮୯୭ ମସିହାରୁ ୧୯୩୪ ମସିହା ପର୍ଯ୍ୟନ୍ତ ଦୀର୍ଘ ୩୮ ବର୍ଷଧରି ଉତ୍କଳସାହିତ୍ୟ ହେଉଛି ଓଡିଆ ସାହିତ୍ୟ ର ପ୍ରତିବିମ୍ବ ମାତ୍ର ।" (୧୭)

ଏହି ମହାମନୀଷୀ ଓଡିଆ ଜାତୀୟ ଜୀବନର ଶ୍ରେଷ୍ଠ ଦିଗ୍‌ଦର୍ଶକ ବାଗ୍ମୀ ବିଶ୍ୱନାଥ କରଙ୍କର ୧୮୬୪ ମସିହା ଡିସେମ୍ବର ୨୪ ତାରିଖ ଦିନ କଟକ ଜିଲ୍ଲାର ମାହାଙ୍ଗା ଥାନା ସନ୍ନିକଟ ମୂଳବସନ୍ତ ଗ୍ରାମରେ ଜନ୍ମଲାଭ କରିଥିଲେ । ତାଙ୍କ ପିତାଙ୍କ ନାମ - ନାରାୟଣ କର । ମାତାଙ୍କ ନାମ - ବୈଦେହୀ । ୧୯୩୪ ମସିହା ଅକ୍ଟୋବର ୧୯ ତାରିଖର ଏହି ମହାନ୍ ବିପ୍ଳବୀ ବାଗ୍ମୀ ବିଶ୍ୱନାଥ ଙ୍କ ପରଲୋକ ଘଟିଥିଲା

କର୍ମବୀର ଗୌରୀଶଙ୍କର, ଆଚାର୍ଯ୍ୟ ପ୍ୟାରୀମୋହନ ଓ ବାଗ୍ମୀ ବିଶ୍ୱନାଥ ଓଡିଆ ଜାତିର ଗର୍ବ ଓ ଗୌରବ ।

## ଓଡ଼ିଆ ସାହିତ୍ୟରେ ନାରୀସ୍ୱର
## ପ୍ରଫେସର ଡକ୍ଟର ବିଷ୍ଣୁପ୍ରିୟା ଓତା

ବିଷ୍ଣୁପ୍ରିୟା ଓତା (୧୯୫୯) -

ଜଣେ ପ୍ରତିଶ୍ରୁତିପୂର୍ଣ୍ଣ ସମାଲୋଚିକା ଭାବରେ ନିଜକୁ ପରିଚିତ କରାଇପାରିଅଛନ୍ତି । ବିଭିନ୍ନ ସମୟରେ ପ୍ରକାଶିତ ନିଜର ଆଲୋଚନା ମାଧ୍ୟମରେ ତାଙ୍କ ଦୃଷ୍ଟିଭଙ୍ଗୀ ପରିଚ୍ଛନ୍ନ ଓ ପ୍ରକାଶଭଙ୍ଗୀ ରୁଚିଶୀଳ ।

"କାଳିନ୍ଦୀଚରଣ ଙ୍କ କଥା ସାହିତ୍ୟ" ତାଙ୍କ ଗବେଷଣାତ୍ମକ ଗ୍ରନ୍ଥ ପ୍ରକାଶିତ । "ଶ୍ରୀ ଜଗନ୍ନାଥ ବଲ୍ଲଭ", ନାଟକର ଅନୁବାଦ ଓ ସମୀକ୍ଷା ତାଙ୍କ ଅନ୍ୟତମ କୃତି । "କଥାସାହିତ୍ୟ ର କଥନିକା", "କାବ୍ୟାନୁଭାବ" ତାଙ୍କ ପ୍ରତିଭାଦୀପ୍ତ ସମୀକ୍ଷା ଦୃଷ୍ଟିର ଯଥାର୍ଥ ପରିଚୟ ବହନ କରୁଥିବା ଦୁଇଟି ଆଲୋଚନା ଗ୍ରନ୍ଥ । ପରବର୍ତ୍ତୀ କୃତି - "ନାଟ୍ୟ ସୃଷ୍ଟି ଓ ନାଟ୍ୟ ଦୃଷ୍ଟି" ତାଙ୍କ ନାଟ୍ୟ ଦୃଷ୍ଟିର ନୂତନ ସୃଷ୍ଟି ।

ବିଷ୍ଣୁପ୍ରିୟା ଙ୍କ ଜନ୍ମ - ମେ ମାସ ୨ ତାରିଖ ୧୯୫୯ ମସିହା, ବାପା - ବୀରବର ଓତା ଓ ମା' - ସ୍ୱର୍ଣ୍ଣମୟୀ ଦେବୀ, ନୂଆଶାସନ, ବଡଚଣା, ଯାଜପୁର ନିବାସୀ । ପ୍ରାଥମିକ, ମାଧ୍ୟମିକ ଶିକ୍ଷା ସମାପ୍ତ ପରେ ଉଚ୍ଚଶିକ୍ଷା ଗ୍ରହଣ କରିଛନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟରେ ସ୍ନାତକୋତର (ଏମ୍.ଏ.) - ରେଭେନ୍ସା କଲେଜ ଓ ଏମ୍.ଫିଲ୍ - ରେଭେନ୍ସା କଲେଜ । ପରେ "କାଳିନ୍ଦୀଚରଣ ଙ୍କ କଥାସାହିତ୍ୟ" ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ସେ ଉଚ୍ଚତର ଗବେଷଣା - ପୋଷ୍ଟ-ଡକ୍ଟରାଲ / ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) - "ସ୍ୱାଧୀନତା ପରବର୍ତ୍ତୀ ରାଜନୈତିକ ଚିନ୍ତା ଓ ଚେତନା" ପ୍ରସଙ୍ଗରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉପାଧିପ୍ରାପ୍ତ ।

କର୍ମମୟ ଜୀବନରେ ବିଷ୍ଣୁପ୍ରିୟା ଜଣେ ଅଧ୍ୟାପିକା ଭାବରେ କାର୍ଯ୍ୟକରନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପିକା ଭାବରେ ୧୯୮୧, ନଭେମ୍ବର ୨ ତାରିଖରେ ରମାଦେବୀ ମହିଳା ମହାବିଦ୍ୟାଳୟ, ଭୁବନେଶ୍ୱର - ଅବସର ଗ୍ରହଣ କରିଛନ୍ତି - ଉତ୍କଳ ବିଶ୍ୱବିଦ୍ୟାଳୟ - ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ମୁଖ୍ୟ ପ୍ରଫେସର ପଦବୀରୁ । ଜଣେ ଛାତ୍ର ଓ ଛାତ୍ରୀ ବତ୍ସଳ ଅଧ୍ୟାପିକା ଭାବରେ ବିଷ୍ଣୁପ୍ରିୟା ଙ୍କ ସୁନାମ ରହିଅଛି ।

ବିଷ୍ଣୁପ୍ରିୟା ଯେପରି ଜଣେ ଅଧ୍ୟାପିକା ଠିକ୍ ସେହିପରି ଜଣେ ଗବେଷିକା ଓ ସାହିତ୍ୟିକା । ଅନେକ ଶିକ୍ଷାର୍ଥୀ ତାଙ୍କ ଅଧୀନରେ ଗବେଷଣା କରି ଏମ୍.ଫିଲ୍. ଓ ପିଏଚ୍.ଡି. ଡିଗ୍ରୀପ୍ରାପ୍ତ ହୋଇଅଛନ୍ତି ଓ ସମାଜରେ ଶିକ୍ଷକ / ଶିକ୍ଷୟତ୍ରୀ ଓ ଅଧ୍ୟାପିକା / ଅଧ୍ୟାପକ ଭାବରେ ଜୀବିକା ନିର୍ବାହ କରୁଛନ୍ତି ।

### ସାରସ୍ୱତସାଧିକା ବିଷ୍ଣୁପ୍ରିୟା -

ବିଷ୍ଣୁପ୍ରିୟା ଓତା ଜଣେ ସାରସ୍ୱତସାଧିକା । ଓଡ଼ିଆ ସାହିତ୍ୟ ର ଜଣେ ବିଶିଷ୍ଟ ଲେଖିକା । ତାଙ୍କ କଲମ ମୁନ ଚଳନ୍ତି ଜୀବନୀ ଦର୍ଶନ ଉପରେ ଆଧାରିତ । ଅନେକଗୁଡିଏ ପୁସ୍ତକ ରଚନାକରି ସେ ଓଡ଼ିଆ ବାଣୀଭଣ୍ଡାରକୁ ସମୃଦ୍ଧ କରିଅଛନ୍ତି ।

ତାଙ୍କ ସାରସ୍ୱତ ସୃଷ୍ଟି ମଧ୍ୟରେ -

୧. ରାୟ ରାମାନନ୍ଦ ବିରଚିତ ସଂସ୍କୃତ ନାଟକ
ଶ୍ରୀ ଜଗନ୍ନାଥ ବଲ୍ଲଭର ଅନୁବାଦ ଓ ସମୀକ୍ଷା - ୧୯୮୨

୨. କାଳିନ୍ଦୀଚରଣ ଙ୍କ କଥା ସାହିତ୍ୟ
ଫ୍ରେଣ୍ଡସ୍ ପବ୍ଲିଶର୍ସ - ୧୯୯୩

୩. ବଡମଣିଷ (୧ମ, ୨ୟ, ୩ୟ ଭାଗ)
ଶିଶୁ ସାହିତ୍ୟ - ୨୦୦୭

୪. କଥା ସାହିତ୍ୟ ର କଥନିକା
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ - ୨୦୦୭

୫. ପ୍ରବନ୍ଧ କତିପୟ
ଜ୍ଞାନଯୁଗ ପବ୍ଲିକେଶନ୍ - ୨୦୧୨

୬. ନାଟ୍ୟ ସୃଷ୍ଟି, ନାଟ୍ୟ ଦୃଷ୍ଟି, ଶିଶୁ କଲମ - ୨୦୧୫

୭. କାବ୍ୟାନୁଭବ
ଅନ୍ନପୂର୍ଣ୍ଣା ପ୍ରକାଶନୀ - ୨୦୧୫

୮. କଥା ଦୃଷ୍ଟି - କଥା ସୃଷ୍ଟି
ଓଜେଆର ପବ୍ଲିକେଶନ୍, ରାଜାବଗିଚା, କଟକ - ୨୦୧୬

୯. ମୟୂରଭଞ୍ଜର ଜନଜାତି ଓ ଲୋକ ସାହିତ୍ୟ
ସ୍ୱର୍ଣ୍ଣ ପ୍ରକାଶନୀ - ୨୦୧୬ (ପ୍ରୋଜେକ୍ଟ ୱାର୍କ)

୧୦. ଅଧାତ୍ମିକା -
ପ୍ରଜ୍ଞା ପ୍ରକାଶନୀ - ୨୦୧୭
୧୧. ସବୁଜ ଓ ଛାୟାବତୀ ଏକ ତୁଳନାତ୍ମକ ଅଧ୍ୟୟନ
ଏଥେନା ପ୍ରକାଶନ - ୨୦୧୮
୧୨. ପାଦପଦ୍ମ - କବିତା ସଂକଳନ -
ପ୍ରଜ୍ଞା ପ୍ରକାଶନୀ - ୨୦୧୮
୧୩. ସାଧବ ବୋହୂ -
ଶିଶୁ କବିତା ସଂକଳନ
ପ୍ରଜ୍ଞା ପ୍ରକାଶନୀ - ୨୦୧୯

ଇତ୍ୟାଦି ସାରସ୍ୱତ ସୃଷ୍ଟି ପାଠକୀୟ ଆଦୃତି ଲାଭ କରିଅଛି ଓ ବିଷ୍ଣୁପ୍ରିୟା ଙ୍କୁ ଓଡିଆ ସାହିତ୍ୟ ର ଜଣେ ସାହିତ୍ୟିକା ଭାବରେ ମାନ୍ୟତା ଦେଇଅଛି, ଏଥିରେ ଅବକାଶ ନାହିଁ ।

**ପୁରସ୍କାର ଓ ସମ୍ବର୍ଦ୍ଧନା -**

ଅଧାପିକା ଡକ୍ଟର ବିଷ୍ଣୁପ୍ରିୟା ଓତା ନିଜର ସାରସ୍ୱତ ସୃଷ୍ଟିପାଇଁ ଅନେକ ଅନୁଷ୍ଠାନରୁ ପୁରସ୍କାରପ୍ରାପ୍ତ, ଯାହାକି ତାଙ୍କୁ ଅଧିକରୁ ଅଧିକ ସାହିତ୍ୟ ରଚନାରେ ମନୋନିବେଶ କରାଇପାରିଥିଲା ।

୧. ବାର୍ତ୍ତା ପ୍ରତିଷ୍ଠାନ - ବାଲେଶ୍ୱର - ୧୯୮୪
୨. ରୂପା ଥାଳିଆ ସମ୍ମାନ - ବେତନଟୀ, ମୟୂରଭଞ୍ଜ - ୧୯୮୬
୩. ପ୍ରଜାତନ୍ତ୍ର ପ୍ରଚାର ସମିତି - ବିଷୁବ ସମ୍ମାନ - ୧୯୮୯
୪. ଚଲାପଥ ସମ୍ମାନ (ପ୍ରବନ୍ଧ) - ୧୯୯୬
୫. ବାଙ୍କି ସାହିତ୍ୟ ଓ ସଂସ୍କୃତି ଅନୁଷ୍ଠାନ - ବାଙ୍କି - ୧୯୯୬
୬. ସୁଧନ୍ୟା ପ୍ରବନ୍ଧ ସମ୍ମାନ - ୧୯୯୮
୭. ଆଶାସ୍ରୋତ ସୃଜନୀ (ପ୍ରବନ୍ଧ) ସମ୍ମାନ - ୨୦୦୦
୮. ଶ୍ୱେତ ସଙ୍କେତ (ପ୍ରବନ୍ଧ) ସମ୍ମାନ - ୨୦୧୨
୯. ନିଖିଳ ଓଡିଶା ଲେଖିକା ସଂସଦ (ପ୍ରବନ୍ଧ) ସମ୍ମାନ - ୨୦୧୨
୧୦. ନିଖିଳ ଓଡିଶା ପ୍ରଗତିବାଦୀ ଲେଖକ ମହାସଂଘ - ୨୦୧୩
୧୧. ବୀର କଳିଙ୍ଗ ସମ୍ମାନ - ୨୦୧୩
୧୨. ଆଶା ପ୍ରଦୀପ - ୨୦୧୮
୧୩. କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର - ଓଡିଆ ଗବେଷଣା ପରିଷଦ - କଟକ - ୨୦୧୮
୧୪. ବୈକୁଣ୍ଠନାଥ ସ୍ମୃତି ସମ୍ମାନ - ଗୋକର୍ଣ୍ଣିକା - ଜୁଲାଇ, ୨୦୧୮
୧୫. ପ୍ରବନ୍ଧ ସମ୍ମାନ - ଗୋକର୍ଣ୍ଣିକା - ୨୦୧୮
୧୬. ଅଳାକା ପୁରସ୍କାର - ଜଗତ୍‌ସିଂହପୁର ସାହିତ୍ୟ ସଂସଦ - ୨୦୧୮
୧୭. ଯଶୋବନ୍ତ ସାହିତ୍ୟ ସଂସ୍କୃତି ସମ୍ମାନ - ଯଶୋବନ୍ତ ପୀଠ - ଜଗତ୍‌ସିଂହପୁର - ୨୦୧୮
୧୮. ଫକୀରମୋହନ ସାହିତ୍ୟ ପରିଷଦ - ୨୦୧୯
୧୯. ରେଟାରୀ ସାରସ୍ୱତ ସମ୍ମାନ - କଟକ - ୨୦୧୯
୨୦. ବାଙ୍କି ସ୍ୱୟଂଶାସିତ କଲେଜ - ଆନ୍ତର୍ଜାତୀୟ ସେମିନାର ସମ୍ବର୍ଦ୍ଧନା - ୨୦୧୯

**ପଦପ୍ରଯୁକ୍ତା ଅଧ୍ୟାପିକା ବିଷ୍ଣୁପ୍ରିୟା -**

ଅଧ୍ୟାପିକା ବିଷ୍ଣୁପ୍ରିୟା ଓତା ନିଜର ସୃଷ୍ଟି ସର୍ଜନା, ଗବେଷଣା ଆଦିରେ ସ୍ୱାକ୍ଷରପାଇଁ ଅନେକ ଅନୁଷ୍ଠାନରେ ପଦପ୍ରଯୁକ୍ତା ଭାବରେ କାର୍ଯ୍ୟ କରିଛନ୍ତି । ସେଥିମଧ୍ୟରେ ପ୍ରମୁଖ ଅନୁଷ୍ଠାନଗୁଡିକ ହେଲା -

୧. ଓଡିଶା ଲେଖିକା ସଂସଦ
୨. ଓଡିଆ ଗବେଷଣା ପରିଷଦ
୩. ସ୍ରଷ୍ଟା
୪. ରେଡକ୍ରସ୍ ସୋସାଇଟ୍
୫. ଶ୍ୱେତ ସଙ୍କେତ
୬. ସୁଧନ୍ୟା

୭. ଆଶା ସ୍ରୋତସ୍ୱିନୀ
୮. ଫକୀରମୋହନ ସାହିତ୍ୟ ପରିଷଦ
୯. କେନ୍ଦ୍ର ସାହିତ୍ୟ ଏକାଡେମୀ
୧୦. ଉତର ଓଡିଶା ସାହିତ୍ୟ ସଂସଦ
୧୧. ଭାଷା ସାହିତ୍ୟ ସମ୍ମିଳନୀ

ଆଦି ଅନୁଷ୍ଠାନରେ ସକ୍ରିୟ ଭାବରେ କାର୍ଯ୍ୟକରି ଅନୁଷ୍ଠାନର ଗୌରବ ବୃଦ୍ଧିରେ ସହାୟକ ହୋଇପାରିଛନ୍ତି ।

ପ୍ରଫେସର ବିଷ୍ଣୁପ୍ରିୟା ଓତା ଅବସର ପରେ କାନନବିହାର, ପଟିଆ, ଭୁବନେଶ୍ୱର ଠାରେ ସପରିବାରେ ରହିବା ସହିତ ସାହିତ୍ୟ ରଚନାରେ ସମୟ କାଟିଥାନ୍ତି ।

ବିଷ୍ଣୁପ୍ରିୟା ଙ୍କ ସୃଷ୍ଟିର ଏକ ଝଲକ -

ପ୍ରଫେସର ବିଷ୍ଣୁପ୍ରିୟା ଓତା ନିଜ ସାଧନାପାଇଁ ଜଣେ ସାହିତ୍ୟିକ ଭାବରେ ଓଡିଆ ସାହିତ୍ୟରେ ପରିଚିତ । ପ୍ରଫେସର ବିଷ୍ଣୁପ୍ରିୟା ଓତାଙ୍କ ଗଳ୍ପ ଓ ଉପନ୍ୟାସ ପ୍ରବନ୍ଧ ସମାଲୋଚନା ପୁସ୍ତକ - "କଥା ଦୃଷ୍ଟି - କଥା ସୃଷ୍ଟି" ରୁ

## ପାରମ୍ପରିକତାରେ ବ୍ୟତିକ୍ରମ ଭୀମାଭୂୟାଁ ଉପନ୍ୟାସ

ଓଡିଆ ଉପନ୍ୟାସ ସାହିତ୍ୟରେ ଶ୍ରୀ ଗୋପାଳ ବଲ୍ଲବ ଦାସଙ୍କ ରଚିତ "ଭୀମାଭୂୟାଁ" ଉପନ୍ୟାସ ଏକଭିନ୍ନ ସ୍ୱାଦର ଉପନ୍ୟାସ । ଏହି ଉପନ୍ୟାସଟି ସମ୍ପର୍କରେ ଆଲୋଚନା କାଳରେ ସମସାମୟିକ ଧନ୍ୟାନ୍ୟ ଉପନ୍ୟାସ ସମ୍ପର୍କରେ କିଛିଟା ଆଲୋଚନା ନିତାନ୍ତ ଜରୁରୀ । ଊନବିଂଶ ଶତାବ୍ଦୀର ଶେଷଭାଗରେ "ପଦ୍ମମାଳୀ", "ବିବାସିନୀ" ଓ "ଭୀମାଭୂୟାଁ" ତିନିଗୋଟି ଉପନ୍ୟାସ । ଉପନ୍ୟାସ ସାହିତ୍ୟ ର ଆଦିଲଗ୍ନରେ ଭିନ୍ନଭିନ୍ନ ଚିନ୍ତାଧାରା ଉପସ୍ଥାପିତ କରିଥାଏ । ଉମେଶ ଚନ୍ଦ୍ର ସରକାରଙ୍କର ଲିଖିତ ପଦ୍ମମାଳୀ ଉପନ୍ୟାସ ପ୍ରଥମ ଉପନ୍ୟାସ ଭାବରେ ସ୍ୱୀକୃତ । "ପଦ୍ମମାଳୀ" ଉପନ୍ୟାସ ପୂର୍ବରୁ ରାମଶଙ୍କର ରାୟଙ୍କ "ସୌଦାମିନୀ" ନାମକ ଏକ ଉପନ୍ୟାସ ରଚନା କରିଥିଲେ ଓ ତାହାର କିଛିଅଂଶ ଉତ୍କଳ ମଧୁପ ମାସିକ ପତ୍ରିକାରେ ପ୍ରକାଶ ପାଇଥିଲା ।

ଉମେଶ ଚନ୍ଦ୍ର ସରକାରଙ୍କ "ପଦ୍ମମାଳୀ" ଏକ ଐତିହାସିକ ରୋମାନ୍ସ ସମ୍ବଳିତ ଉପନ୍ୟାସ । ବ୍ରିଟିଶ୍ ଶାସନର ପ୍ରାରମ୍ଭକାଳରେ କ୍ଷୁଦ୍ର ଦେଶୀୟ ରାଜ୍ୟ ନୀଳଗିରି ର ଗଡଜାତି ଅତ୍ୟାଚାର ର ଏକ ବାସ୍ତବ କାହାଣୀକୁ ନେଇ ଉପନ୍ୟାସଟି ରଚନା କରାଯାଇଛି । "ପଦ୍ମମାଳୀ" ଠାରୁ ବିବାସିନୀ ଉପନ୍ୟାସ ଆଉଟିକେ ଭିନ୍ନ ତଥା ଉନ୍ନତଧରଣର । ଓଡିଆ ଉପନ୍ୟାସର ପ୍ରାକ୍ କାଳରେ ପଦ୍ମମାଳୀ ଉପନ୍ୟାସ ପ୍ରକାଶନ ପରେପରେ ରାମଶଙ୍କରଙ୍କର ପଦକ୍ଷେପ ପାଠକ ସମାଜରେ ଆଶା ଓ ସମ୍ଭାବନାର ପଥ ଉନ୍ମୁକ୍ତ କରିଛି । ଏଠାରେ ଲେଖକ ପାଶ୍ଚାତ୍ୟ ସଭ୍ୟତାର ସଂକ୍ରମଣ ଫଳରେ ଆମ ସଂସ୍କୃତିର ମାତୃଭକ୍ତିର ଆଦର୍ଶ ସ୍ଥାନରେ ବରଂ ପତ୍ନୀ ସେବା ମୁଖ୍ୟ ହୋଇଛି । ଅତୀତର ନାରୀମାନେ କିପରି ଗୃହକର୍ମ ନିପୁଣାଥିଲେ ମାତ୍ର ବର୍ତମାନର ଶିକ୍ଷିତା ନାରୀଙ୍କର କର୍ମକରିବା ନିମନ୍ତେ କୁଣ୍ଠିତଭାବ ପରିଶ୍ରମ ପରିବର୍ତେ ଆଳସ୍ୟ, ସରଳତା ପରିବର୍ତେ ଜଟିଳତା ଯୋଗୁଁ ଜାତୀୟ ଜୀବନରେ କିପରି ରୁଗ୍ଣତା ଦେଖାଦେଇଛି ଉପନ୍ୟାସଟିରେ ସମାଲୋଚନା ମାଧ୍ୟମରେ ତାହା ଦର୍ଶାଇଛନ୍ତି ।

"ବିବାସିନୀ" ଉପନ୍ୟାସର ୧ପ୍ର. ବର୍ଷପରେ ହଠାତ୍ ୧୯୦୮ ସାଲରେ "ଭୀମାଭୂୟାଁ" ଉପନ୍ୟାସ । ଉପନ୍ୟାସ ସାହିତ୍ୟ ଜଗତରେ ଏକଭିନ୍ନ ଆସନ ସୃଷ୍ଟି କରିପାରିଛି । ଲେଖକ ଗୋପାଳ ବଲ୍ଲଭ ଦାସ ଗଡଜାତ ମାହୋଲର କମିସନରଙ୍କ ଦପ୍ତରରେ କାମ କରୁଥିଲେ, ଫଳରେ ଗଡଜାତର ଅଭ୍ୟନ୍ତର ଆଳରେ ସାହେବମାନଙ୍କ ସହ ବଣ ଜଙ୍ଗଲ ସର୍ବତ୍ର ଭ୍ରମଣ କରିବାର ସୁଯୋଗ ପାଇଥିଲେ । ଗଡଜାତର ସୌନ୍ଦର୍ଯ୍ୟପୂର୍ଣ୍ଣ ପ୍ରାକୃତିକ ପରିବେଶରେ ପ୍ରକୃତିର ସନ୍ତାନ ଭୂୟାଁମାନଙ୍କର ସମାଜ ଜୀବନ ପ୍ରଣାଳୀ, ଏକତା ସାଧୁତା ଓ ଅତିଥି ପରାୟଣତାରେ ମୁଗ୍ଧହୋଇ ଏହି ଉପନ୍ୟାସଟି ରଚନା କରିଛନ୍ତି । ସେ ସମୟରେ ବ୍ରିଟିଶ୍ ସରକାର ଭୂୟାଁ, କନ୍ଧ, କୋହ୍ଲ ଓ ଜୁଆଙ୍ଗ ପ୍ରଭୃତି ଆଦିବାସୀଙ୍କ ମଧ୍ୟରେ ସଭ୍ୟତାର ଆଲୋକ ବିକିରଣ କରିବାପାଇଁ ପ୍ରାଥମିକ ଉଦ୍ୟମ ଚଳାଇଥିଲେ । ଲେଖକ ଗୋପାଳ ବଲ୍ଲଭ ଓଡିଆ ଜାତି, ଓଡିଆ ଭାଷାକୁ ଶ୍ରଦ୍ଧା ପ୍ରକାଶ କରୁଥିବା ଉପରିସ୍ଥ ସାହେବ କର୍ମଚାରୀଙ୍କ ପ୍ରେରଣାରେ ଏହି ଉପନ୍ୟାସଟି ରଚନାକରି ପ୍ରଥମ ଲେପ୍‌ନାଟଂ ଗଭର୍ଣ୍ଣର ସାର୍ ଆଣ୍ଡୁହେଣ୍ଡସନଲିଥ ଫ୍ରେଜର ଙ୍କ ନାମରେ ଉତ୍ସର୍ଗ କରିଥିଲେ ।

ବିଷୟବସ୍ତୁ ଦୃଷ୍ଟିରୁ ବିଚାରକଲେ ବିବାସିନୀର ଜାଗ୍ରତ ଜନଚେତନାର ଚିତ୍ର । "ଭୀମାଭୂୟାଁ" ରେ ନଥିଲେ ମଧ୍ୟ ଜଣେ ରାଜା ପ୍ରତିବେଶୀ ରାଜାଙ୍କର ଅତ୍ୟାଚାର ର ଶିକାରହେବା ଓ ଅତ୍ୟାଚାର ର ଅବସାନ ଘଟିବାର ଚିତ୍ରର କାହାଣୀଟିର ପରିକଳ୍ପନା । ଗତାନୁଗତିକ ସାହିତ୍ୟରେ ଦେଖା ଦେଇଥିବା ଅଭିଜାତ ପରମ୍ପରା ର ବ୍ୟତିକ୍ରମ ଆଣି ନିଜର ଅଭିନବ ତଥା ଦୁଃସାହସିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ଉପନ୍ୟାସର ରୋମାନ୍ସ ପ୍ରାଣକେନ୍ଦ୍ର ହେଲେ ହେଁ ଲେଖକ ଅସମ ସାମାଜିକ ପରିବେଶରୁ ମୁଖ୍ୟ ପୁରୁଷ ଓ ନାରୀ ଚରିତ୍ର ଚୟନକରି ସେମାନଙ୍କ ପ୍ରେମର ଯେଉଁ ହୃଦୟସ୍ପର୍ଶୀ ଚିତ୍ର ପ୍ରଦାନ କରିଛନ୍ତି, ତତ୍କାଳୀନ ରକ୍ଷଣଶୀଳ ଅଭିଜାତ ପରିବେଶ ଓ ପ୍ରତୀୟ ଚେତନାରେ ଗତାନୁଗତିକତା ଦୃଷ୍ଟିକୋଣରୁ ଏକ ଦୁଃସାହସିକ ପଦକ୍ଷେପର କଥା ଉପଲବ୍ଧ ହୋଇଥାଏ । ଏଥିରେ ଉଭୟ ଅଭିଜାତ ଗୋଷ୍ଠୀ ଓ ଆଦିବାସୀ ଜୀବନର ଚିତ୍ରରହିଛି ।

ଉପନ୍ୟାସର ନାୟକ ଭୀମା ଜଣେ ବଳିଷ୍ଠ ଜଙ୍ଗଲି ଭୂୟାଁ ଯୁବକ ନାୟିକା ଆଭିଜାତ୍ୟ ସମ୍ପନ୍ନା ରାଜଜେମା । ଆରଣ୍ୟକ ଯୁବକ ଭୀମା ଓ ଅନ୍ତଃପୁର ବାସିନୀ ରାଜଜେମା ଙ୍କ ମଧ୍ୟରେ ପ୍ରଣୟର ଚିତ୍ର ପ୍ରଦାନ ମାଧ୍ୟମରେ ଲେଖକ ଏକ ନାଟକୀୟ ତଥା ବୈଷ୍ଟବିକ ରୋମାଟିଂକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ବହୁ ଚରିତ୍ରର ସମାବେଶରେ ଉପନ୍ୟାସଟିର ଆରମ୍ଭ ଓ ପରିସମାପ୍ତି ପ୍ରାରମ୍ଭରୁ ଭୀମାର ବାପା କେନ୍ଦୁଝର ର ଏକ ଅଖ୍ୟାତ ଭୂୟାଁ ପଲ୍ଲୀର ଅଧିବାସୀ ସାଧୁ ସର୍ଦ୍ଦାର । ସାଧୁର ବଡପୁଅ ବାଣାସୁର ଓ ସାନପୁଅ ଭୀମା ପଡୋଶୀ ତିଳ ସର୍ଦ୍ଦାର ଓ ତା'ର ଏକମାତ୍ର କନ୍ୟା ଚୀନାମାଳୀର ପରିଚୟ ପ୍ରଦାନ କରିଛନ୍ତି । ଦୁଇଭାଇଙ୍କର ଚିନାମାଳୀ ପ୍ରତି ପ୍ରେମ, ବଡଭାଇ ବାଣାସୁର ସହ ଚିନାମାଳୀର ବିବାହ, ଭୀମା ମନରେ ଏଥିନିମନ୍ତେ ସାମୟିକ ବିଷାଦ, ବାପାଙ୍କର ଅନିଚ୍ଛା ସତ୍ୱେ ରାଜା ଜଗଦେବ ଙ୍କ ନିର୍ଦ୍ଦେଶରେ ଭୀମା ରାଜନଅରକୁ ଯିବା, ରାଜ୍ୟରେ ଜଗଦେବ ଙ୍କ ବେବର୍ତା, ତ୍ରିଲୋଚନ ମହାପାତ୍ର ଙ୍କ ଅତ୍ୟାଚାର ର ରାଜ୍ୟର ଅରାଜକତା ଦୁଇରାଜ୍ୟ ମଧ୍ୟରେ ଓ ରାଜାଙ୍କର ଅଶାନ୍ତିର ଶିକାରହୋଇ ଭୀମା ପ୍ରତିପକ୍ଷର ରାଜା ମର୍ଦ୍ଦରାଜ ଙ୍କ ରାଜ୍ୟକୁ ପଳାଇଆସିବା ଇତ୍ୟାଦି ବିଷୟ ମଧ୍ୟରେ ଉପନ୍ୟାସଟି ଗତିଶୀଳ ହୋଇଛି ।

ରାଜା ଜଗଦେବ ଓ ମର୍ଦ୍ଦରାଜ ଙ୍କ ଯୁଦ୍ଧରେ ଭୀମାର ଅପୂର୍ବ ସାହସିକତା ନିକଟରେ ବେବର୍ତା ତ୍ରିଲୋଚନ ମହାପାତ୍ର ପରାସ୍ତହୋଇ ବନ୍ଦୀହୁଏ । ଭୀମାର ବୀରତ୍ୱପାଇଁ ସେ ରଣଚିତ୍ ସିଂହ ପଦ ଓ ଶାଢୀ ପାଏ । ଏଥିରୁ ଭୀମା ଚରିତ୍ରର ସାହସିକତା ବୀରତ୍ୱ ଓ ନିଷ୍ଠାପରତାର ପରିଚୟ ମିଳିଥାଏ । ରାଜା ମର୍ଦ୍ଦରାଜ ବେବର୍ତା ଙ୍କୁ ଶୂଳୀ ଆଦେଶ ଦିଅନ୍ତି ଓ ନିଜର ପ୍ରତ୍ୟେକ ସୈନ୍ୟଙ୍କୁ ପାଟି ଲେଖାଏଁ ବନ୍ଦୀର ଶିରୋଛେଦନ କରିବାପାଇଁ ଆଦେଶ ଦିଅନ୍ତି । ଏହିଠାରେ ଆସୁଛି ଭୀମାର ମାନସିକ ଦ୍ୱନ୍ଦ । ବନ୍ଦୀମାନଙ୍କ ଭିତରେ ନିଜର ବାପା ଓ ଭାଇ ରହିଥିବାରୁ ସେ କିଂକର୍ତବ୍ୟବିମୂଢ ହୋଇ ମାନସିକ ଦ୍ୱନ୍ଦ ଭିତରେ ଗତିକରୁଛି । ଗୋଟେ ପଟେ ରାଜାଙ୍କର ବିଶ୍ୱସ୍ତ ସୈନ୍ୟ ଭାବରେ କର୍ତବ୍ୟ ଓ ଅପର ପଟରେ ବାପା ଓ ଭାଇଙ୍କ ପ୍ରତି ରକ୍ତ ସମ୍ପର୍କ ଜନିତ ମମତା ଏଇଠି ଭୀମା ମମତା ନିକଟରେ ହାରମାନିଛି ଓ ବାପା ଭାଇଙ୍କୁ ଛାଡି ଅନ୍ୟ ସୈନ୍ୟମାନଙ୍କର ମୁଣ୍ଡକାଟି ଛାଉଣୀ ଆଗର ଖୁଣ୍ଟରେ ରଖିଛି । ବୀରତ୍ୱ ଓ ଦକ୍ଷ ସୈନିକ ଭାବରେ ରାଜାଙ୍କ ଦ୍ୱାରା ଖୁବ୍ ପ୍ରଶଂସିତ ହୋଇଛି ଓ ରାଜା ସେହିଦିନ ଉପରଓଳି ପୀଡାଗ୍ରସ୍ତ ହୋଇ ପଡିଛନ୍ତି । ରାଜାଙ୍କର ପୀଡା ବୃଦ୍ଧିପାଇବା ଯୋଗୁଁ ସେ ଚିକିତ୍ସିତ ହୁଅନ୍ତି ଓ ପାଖଲୋକ ଓ ରାଜଜେମା ଙ୍କ ବ୍ୟତୀତ ରାଜାଙ୍କ ନିକଟରେ ଆଉ କେହି ନରହିବା ପାଇଁ ନିର୍ଦ୍ଦେଶଥାଏ । ବହୁ ବୈଦ୍ୟଙ୍କ ଚିକିତ୍ସା ସତ୍ୱେ ରାଜାଙ୍କର ରୋଗ ଉପସମ ହୁଏନାହିଁ । କୌଶଳକରି ଭୀମା ନିଜ ବାପା ସାଧୁର କୌଣସି ପରିଚୟ ନଦେଇ ତାଙ୍କ ଦ୍ୱାରା ରାଜାଙ୍କର ଚିକିତ୍ସା କରାଇଛି । ସାଧୁର ଚିକିତ୍ସାରେ ରାଜା ସୁସ୍ଥ ହୋଇଯାଆନ୍ତି, ତାକୁ ଖୁବ୍ ପ୍ରଶଂସା କରିଛି ଓ ତାକୁ ଭୀମା ନିକଟରେ ରହିବାର ଆଦେଶ ଦିଅନ୍ତି । ସାଧୁ ଓ ଭୀମା ରାଜାଙ୍କ ନିକଟରେ ରହିଥିଲାବେଳେ ରାଜଜେମା ରୁଗ୍ଣ ଓ ପୀଡିତ ପିତାଙ୍କୁ ଦେଖିବାକୁ ଆସନ୍ତି ଉଭୟଙ୍କ ପ୍ରତି କୃତଜ୍ଞତା ପ୍ରକାଶ ପୂର୍ବକ ଭୀମାଙ୍କ ପ୍ରତି କଟାକ୍ଷପାତ କରନ୍ତି । ବାରମ୍ବାର ସାକ୍ଷାତ ଓ ଚାରିଚକ୍ଷୁର ମିଳନ ଫଳରେ ଭୀମାପ୍ରତି ରାଜଜେମାଙ୍କର ପ୍ରଣୟ ସଚାଂରହୁଏ ଓ ଭୀମା ମନରେ ମଧ ଏକ ନୂତନ ଭାବତରଙ୍ଗ ସୃଷ୍ଟିହୁଏ । ରାଜାଙ୍କ ନିର୍ଦ୍ଦେଶକ୍ରମେ ଭୀମାର ବାପା ସାଧୁଙ୍କୁ ପୁରସ୍କାର ଦେବାପାଇଁ ଖଡୁନୋଳି ଘେନି ଖୁଆ ଯିବା ସମୟରେ ସାଧୁ ଓ ବାଣାସୁରକୁ ଚିହ୍ନିଦେଇଛି ଓ ରାଜାଙ୍କ ନିକଟରେ ସମସ୍ତ କଥା ପ୍ରକାଶ କରିଛି । ରାଜା ଏବଂ ମନ୍ତ୍ରୀଙ୍କର ପରାମର୍ଶକ୍ରମେ ସାଧୁଦୋଷୀ ହେଲେ ବି ଉପକାର କରିଥିବାରୁ ତାକୁ ଦଣ୍ଡମୁକ୍ତ କରାଗଲା ଏବଂ ଜଣେ ଶାସକର ଧର୍ମ ବଜାୟରଖି ରାଜା ଆଦେଶଦେଲେ ଯେ ସାଧୁ ଦୁଇପୁଅଙ୍କ ଭିତରୁ ଜଣଙ୍କୁ ବଳିଦାନ କରିବ । ଏଇଠି ଲେଖକ ରାଜାଙ୍କର ଧର୍ମ ଅନ୍ୟାୟ ବିରୁଦ୍ଧରେ ଦୋଷୀକୁ ଦଣ୍ଡପ୍ରଦାନ କରିବାର କଥା ଉପସ୍ଥାପନ କରିଛନ୍ତି ।

ସାଧୁ ମନରେ ଅନ୍ତଃଦ୍ୱନ୍ଦର ଚିତ୍ର ମାଧ୍ୟମରେ ଲେଖକ ପିତୃ ହୃଦୟର ବାତ୍ସଲ୍ୟ ମମତା ସମ୍ପର୍କରେ ଦର୍ଶାଇଛନ୍ତି । ମିଛକଥା କହିଥିବାରୁ ଭୀମାର ମୁଣ୍ଡକାଟ ହେବାକଥା ମାତ୍ର ସାଧୁର ଉପକାର ହେତୁ ଗୋଟିଏ ପୁଅର ମୁଣ୍ଡକାଟ ହେବ ତାହା ସାଧୁର ଇଚ୍ଛାନୁସାରେ ସାଧୁ, ଚରିତ୍ର ବେଦନା ବିଧୁର ହୋଇପଡେ, ବଡପୁଅ ବାଣାସୁର ଓ ସାନପୁଅ ଭୀମାକୁ ଧରି କାନ୍ଦି ବାରମ୍ବାର ସଂଜ୍ଞାହୀନ ହୋଇପଡେ । ବାପାଙ୍କର ଏହି ଅବସ୍ଥା ଦେଖି ରାମାୟଣର ରାମଚନ୍ଦ୍ରଙ୍କର ପରି ଭୀମା ନିଜର ମୁଣ୍ଡକାଟ ପାଇଁ ଆଦେଶ ଭିକ୍ଷାକରେ ଏବଂ ବାଧହୋଇ ରାଜା ଖୁବ୍ ଦୁଃଖର ସହିତ ଆଦେଶ ଦିଅନ୍ତି । ଭୀମା ନିର୍ବିକାର ଚିତରେ ଜହ୍ଲାଦ ନିକଟରେ ଠିଆ ହୋଇରହେ । ସଂଜ୍ଞା ଫେରିଆସିବା ପରେ ବୁଢା ସାଧୁ ପୁଅ ଭୀମା ଉପରେ ଆସ ପଡିଯାଉଥାଏ । ଏହି କରୁଣ ଦୃଶ୍ୟର ସମ୍ବାଦଶୁଣି ରାଜଜେମା ଧୈର୍ଯ୍ୟଧରି ନପାରି ପିତାଙ୍କ ନିକଟରେ ଭୀମାର ପ୍ରାଣଭିକ୍ଷା କରନ୍ତି ଏବଂ ଖୁବ୍ ନାଟକୀୟ ଭାବରେ ଭୀମାର ପ୍ରାଣଦଣ୍ଡରୁ ମୁକ୍ତହୁଏ । ଭୀମା ଓ ଜେମାଙ୍କ ମଧ୍ୟରେ ପ୍ରଣୟ ନିବିଡରୁ ନିବିଡତାର ହୋଇଥାଏ । ଉଭୟଙ୍କ ମିଳନରେ କିନ୍ତୁ ଅନେକ ପ୍ରତିବନ୍ଧକ । ଆଭିଜାତ୍ୟର ମେଘନାଦ ପାଚେରୀ ସତେ ଯେପରି ସେମାନଙ୍କ ମଝିରେ ଖୁବ୍ ଶକ୍ତ ପ୍ରତିବନ୍ଧକ ରୂପରେ ଠିଆ ହୋଇଥାଏ । ଏହିପରି ଭାବରେ ଉପନ୍ୟାସଟିର ବିଷୟବସ୍ତୁ ଆଗକୁ ଗତିଶୀଳ ହୁଏ । ରାଜା ଉଭୟଙ୍କ ସମ୍ପର୍କରେ ଜାଣନ୍ତି ମାତ୍ର ଏହିଠାରେ ଲେଖକ ଙ୍କ ଭିନ୍ନ ଦୃଷ୍ଟିକୋଣ ପ୍ରେମର ଏକଭିନ୍ନ ଦିଗକୁ ଇଙ୍ଗିତ କରନ୍ତି ।

ରାଜଜେମାଙ୍କର ସଖୀ ଇନ୍ଦୁମତୀ ରାଜାଙ୍କ ନିକଟରେ ଜେମାର ମନକଥା ପ୍ରକାଶକରେ ଓ କୁହେ ଯେ ରଣଜିତ୍ ଶାଢୀନେଇ ଏଠାକୁ ଆସୁ ଓ ତା'ର ଆପତି ନଥିଲେ ତାକୁ ଏଠାରୁ ଅନ୍ତର କରାଯାଉ । ଭୀମା ଜେମା ଓ ରାଜାଙ୍କ ସମ୍ମୁଖରେ ହୃଦୟର ବେଦନା ପ୍ରକାଶକରେ । ଜେମାଙ୍କ ନିର୍ଦ୍ଦେଶରେ ଭୀମା ରଣଜିତ୍ ଶାଢୀ ରାଜାଙ୍କ ନିକଟରେ ଥୋଇଦିଏ, ଜେମା ମୁଣ୍ଡରୁ ମଥାମଣି କାଢି ଇନ୍ଦୁମତୀ ହାତରେ ଭୀମାକୁ ଦିଅନ୍ତି । ଭୀମା ମଥାମଣି ମୁଣ୍ଡରେ ମାରି ନିର୍ବାକ ଭାବରେ ଛିଡା ହୋଇରୁହେ । ଏଇଠି ଆସୁଛି ପ୍ରେମରେ ଚରମତ୍ୟାଗର କଥା । ଜେମାଙ୍କର ଅଭିଳାଷ ଇନ୍ଦୁମତୀ ଭୀମାକୁ ଜଣାଏ । "ତୁମେ ଇନ୍ଦ୍ରିୟ ଦମନକରି ନିର୍ବିକାର ନିର୍ମମ ପ୍ରେମମୟ ପୁରୁଷହୋଇ ଜେମାଙ୍କ ନିକଟରେ ଯଦି ଉପସ୍ଥିତ ହେବ ତାହାହେଲେ ରଣଜିତ୍ ସିଂହ ଶାଢୀକୁ ଜିତେନ୍ଦ୍ରୀୟ ଶାଢୀଭାବେ ପୁଣି ଲାଭକରିବ ।" ଭୀମା ପ୍ରଣାମକରି

ସେଠାରୁ ବିଦାୟନିଏ ଏବଂ ଜେମା ନିଜେ ଜଣେ ସାଧ୍ୱୀ ସନ୍ନ୍ୟାସୀନି ଭାବରେ ତ୍ୟାଗପୂତ ଜୀବନଯାପନ କରିଛି । ବହୁଦିନ ପରେ ଅନ୍ତିମକାଳରେ ନାୟମ ଭୀମା ଯେତେବେଳେ ପୂର୍ଣ୍ଣସଂଯତ ଓ ପ୍ରେମମୟ ସେତେବେଳେ ଜେମାଙ୍କ ସହିତ ତା'ର ସାକ୍ଷାତହୁଏ ।

ଲେଖକ ଉପନ୍ୟାସର ନାୟକ ଭୀମାର ଚରିତ୍ର ଭୂୟାଁ ସମାଜରୁ ଗ୍ରହଣ କରିଥିବାରୁ ଭୂୟାଁ ସମାଜର ଚଳଣି, ପ୍ରଥା, ଚିନ୍ତାଧାରା, ବିଶ୍ୱାସ, ଗୋଷ୍ଠୀଗତ ଜୀବନ, ସାମାଜିକ ଅନୁଷ୍ଠାନ ଓ ପର୍ବପର୍ବାଣୀ ସମ୍ପର୍କରେ ସୂଚନା ଦେଇଛନ୍ତି । ଭୂୟାଁ ଗ୍ରାମର ମନୋଜ୍ଞ ପ୍ରାକୃତିକ ପରିବେଶ, ସରଳ ଓ ପ୍ରୀତିପୂର୍ଣ୍ଣ ଜୀବନଯାପନ ପ୍ରଣାଳୀରେ ମୁଗ୍ଧହୋଇ ଲେଖକ ତଥାକଥିତ ଶିକ୍ଷିତ, ସଭ୍ୟ ସମାଜର କୃତ୍ରିମ ଜୀବନଯାପନ ପ୍ରଣାଳୀ ଓ ଅନୁଷ୍ଠାନର ଚିତ୍ରକୁ ବ୍ୟଙ୍ଗ କରିଛନ୍ତି । ତତ୍କାଳୀନ ସଭ୍ୟ ସମାଜର ଦୋଷତ୍ରୁଟି, ରାଜ ପରିବାର ର ଆଭିଜାତ୍ୟପୂର୍ଣ୍ଣ ଚଳଣି, ଜୀବନଯାପନ ପ୍ରଣାଳୀ ପ୍ରଭୃତି ରାଜାଙ୍କର କଠୋର ଦଣ୍ଡବିଧାନ ବ୍ୟବସ୍ଥା ସାମରିକ ବେଷଭୂଷା ଓ ଅନ୍ୟାୟ ଅତ୍ୟାଚାର ର କଥା ଉପସ୍ଥାପନ ମାଧ୍ୟମରେ କିଛି ବ୍ୟଙ୍ଗାତ୍ମକ ସମାଲୋଚନା ମଧ୍ୟ କରିଛନ୍ତି ।

ଲେଖକ ଗୋପାଳ ବଲ୍ଲଭ ଅତିମାତ୍ରାରେ ନୀତି ସଚେତନ, ସେତେବେଳର ସମାଜ, ଶିକ୍ଷା ଓ ସମାଜ ଯାପନ କ୍ଷେତ୍ରରେ ବହୁ ତ୍ରୁଟି ବିଚ୍ୟୁତି ଦେଖା ଦେଇଥିଲା । ସମାଜରେ ପାଶ୍ଚାତ୍ୟ ସଭ୍ୟତାର ଅନ୍ଧାନୁସରଣ ପ୍ରାଚୀନର ଅନ୍ଧବିଶ୍ୱାସ, ସମ୍ଭ୍ରାନ୍ତ ବା ଆଭିଜାତ୍ୟ ଗୋଷ୍ଠୀର ବ୍ୟବହାରରେ ସମାଜର ଅତିଷ୍ଠତା ପ୍ରଭୃତି ଏକ ଜଟିଳ ପରିସ୍ଥିତି ସୃଷ୍ଟି କରିଥିଲା । ଏହିପରି ଏକ ଜଟିଳ ପରିସ୍ଥିତିରେ ଗୋପାଳ ବଲ୍ଲଭ ଜାତୀୟ ମର୍ଯ୍ୟାଦା ସାମାଜିକ ସଂସ୍କାର ନୈତିକ ଚେତନା ଓ ପ୍ରଣୟ କ୍ଷେତ୍ରରେ ସଂଯମ ଓ ତ୍ୟାଗକୁ ବିଶେଷ ଗୁରୁତ୍ୱ ପ୍ରଦାନପୂର୍ବକ ଲେଖନୀ ଚାଳନା କରିଥିଲେ ।

କଥାବସ୍ତୁର ପରିକଳ୍ପନାରେ ବାସ୍ତବତା ରହିଥିଲେ ହେଁ ଉତ୍ତୁଙ୍ଗ ଆଦର୍ଶବୋଧର ଚାପରେ ଉପନ୍ୟାସ ତା'ର ସ୍ୱାଭାବିକ ସୌନ୍ଦର୍ଯ୍ୟ ହରାଇଛି । ମାନବର ପ୍ରେମ, ଈର୍ଷା, ଜୀବନର ସମସ୍ୟା ଓ ଦ୍ୱନ୍ଦର ଚିତ୍ର ଅଙ୍କନକରି ଲେଖକ ତା'ରି ମଧ୍ୟରେ ଜୀବନର ମୂଲ୍ୟାଙ୍କନ କରିଛନ୍ତି

ସମୟର ପରିବର୍ତ୍ତନ ସହ ଉପନ୍ୟାସର କଥାବସ୍ତୁ ଚରିତ୍ର ଓ ଶୈଳୀର ବହୁ ପରିବର୍ତ୍ତନ ଦେଖାଦେଇଛି । ଉପନ୍ୟାସ ସୃଷ୍ଟିର ଆଦି ପର୍ଯ୍ୟାୟରେ ଆଙ୍ଗିକ ଓ ଶିଳ୍ପଗତ ବହୁ ତ୍ରୁଟି ସତ୍ତ୍ୱେ ବିଷୟବସ୍ତୁ ନିର୍ବାଚନରେ ଔପନ୍ୟାସିକ ଯେଉଁ ଦୁଃସାହସିକ ପଦକ୍ଷେପ ନେଇଛନ୍ତି, ଜୀବନରେ ତ୍ୟାଗର ମୂଲ୍ୟବୋଧକୁ ଉପସ୍ଥାପନ କରିଛନ୍ତି ତାହା ସେ ସମୟର ଅନ୍ୟ ଦୁଇଟି ଉପନ୍ୟାସ "ପଦ୍ମମାଳୀ" ଓ "ବିବାସିନୀ" ପରି ଓଡ଼ିଆ ସାହିତ୍ୟରେ ଏକ କାନ୍ତୀକାରୀ ଉପନ୍ୟାସ ଭାବରେ ଗ୍ରହଣ କରାଯାଇପାରିବ ।

---

# ଓଡ଼ିଆ ସାହିତ୍ୟ ର
# ବିଶିଷ୍ଟ ଲେଖକ ଡକ୍ଟର ଗୌରହରି ଦାସ

ଗୌରହରି ଦାସ -

ଓଡ଼ିଆ ସାହିତ୍ୟ କାହିଁକି ଭାରତୀୟ ସାହିତ୍ୟ ର ଜଣେ ପରିଚିତ ବ୍ୟକ୍ତିତ୍ୱ । ୯ ଅକ୍ଟୋବର, ୧୯୬୦ ମସିହାର ଅବିଭକ୍ତ ବାଲେଶ୍ୱର ଜିଲ୍ଲା ତଥା ବର୍ତ୍ତମାନ ଭଦ୍ରକ ଜିଲ୍ଲାର ଷଣ୍ଢଗଡା ଠାରେ ତାଙ୍କର ଜନ୍ମ ।

ଉତର ଆଧୁନିକ ଓଡ଼ିଆ ଭାଷାରେ ଗଳ୍ପ, ଉପନ୍ୟାସ, ନାଟକ ତଥା ସ୍ତମ୍ଭ ଲେଖୁଥିବା ଜଣେ ବିଶିଷ୍ଟ ଲେଖକ ।

ଶିକ୍ଷାର୍ଥୀ ଜୀବନରୁ ତାଙ୍କ ସାରସ୍ୱତ ପ୍ରତିଭା ପ୍ରସ୍ଫୁଟିତ ହୋଇଥିଲା, ହାଇସ୍କୁଲରେ ପଢିବା ସମୟରେ ପ୍ରଥମ ଗଳ୍ପ - "କ୍ଷୀଣାଲୋକ" ପ୍ରକାଶ ପାଇଥିଲା । ଇତିମଧ୍ୟରେ ଡକ୍ଟର ଦାସଙ୍କ ପ୍ରାୟ ପଚାଶ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇଅଛି । ଏମ୍.ଏ., ପିଏଚ୍.ଡି. ଡିଗ୍ରୀ ସହିତ ମାଷ୍ଟର ଅଫ୍ ଜର୍ଣ୍ଣାଲିଜିମ୍ ଡିଗ୍ରୀଧାରୀ ।

ସମ୍ପ୍ରତି ସେ ଓଡିଶାର ଦୈନିକ ପ୍ରସାରିତ ଓଡ଼ିଆ ଖବରକାଗଜ "ସମ୍ବାଦ" ର ସାହିତ୍ୟ ସମ୍ପାଦକ ଭାବରେ କାର୍ଯ୍ୟ କରିବା ସହିତ "ସମ୍ବାଦ ସ୍କୁଲ ଅଫ୍ ମିଡିଆ ଆଣ୍ଡ କଲଚର" ର ପ୍ରିନିସ୍ପାଲ ପଦବୀରେ କାର୍ଯ୍ୟ କରୁଛନ୍ତି । ନିଜର ଲେଖନୀ ମାଧ୍ୟମରେ ସେ ସମାଜର ହିତ ସାଧନାରେ ଏ ଜାତିର ଗୌରବ ବଢାଇବାରେ ପ୍ରୟାସରତ ।

ପୂର୍ବରୁ ଡଃ. ଦାସ କେନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ଭାଷା ଉପଦେଷ୍ଟା ମଣ୍ଡଳୀର ଆବାହକ ଓ ଏହାର କାର୍ଯ୍ୟକାରୀ ପରିଷଦର ସଦସ୍ୟ ଥିଲେ ।

## ସାହିତ୍ୟ ସ୍ରଷ୍ଟା
## ଡକ୍ଟର ଗୌରହରି ଦାସ

ଓଡ଼ିଆ ସାହିତ୍ୟ ର ଏକ ପରିଚିତ ନାମ - ଗୌରହରି । ନିଜର ସୃଷ୍ଟିରେ ଭାରତୀୟ ଜୀବନଶୈଳୀ, ଭାରତୀୟ ଚିନ୍ତାଧାରା, ଭାରତୀୟ ମୂଲ୍ୟବୋଧକୁ ଆଧାରକରି ତାଙ୍କର କାହାଣୀଗୁଡିକ ରଚିତ । ସ୍ୱାର୍ଥପର, ଲୋଭଖୋର, ପୃଥିବୀର ଚଳନୀ ମଧ୍ୟରୁ ସେ ଭାରତୀୟ ଜୀବନଶୈଳୀ, ଭାରତୀୟ ଚିନ୍ତାଧାରା, ଭାରତୀୟ ମୂଲ୍ୟବୋଧ ଏବଂ ସର୍ବୋପରି ମଣିଷର ଅସ୍ତିତ୍ୱକୁ ଖୋଜି ଚାଲିଛନ୍ତି ।

ଜୀବନ ଧାରଣାର ମୂଲ୍ୟବୋଧକୁ ଆଧାରକରି ସେ ତାଙ୍କର କାହାଣୀଗୁଡିକୁ ରୂପ ଦେଇଛନ୍ତି । ତାଙ୍କ ଲେଖନୀରେ ଗଳ୍ପ ନୁହେଁ ସେ ଉପନ୍ୟାସ, କବିତା, ଫିଚର, ପ୍ରବନ୍ଧ, ଭ୍ରମଣ ଅନୁଭୂତି ଓ ଅନୁବାଦ କ୍ଷେତ୍ରରେ ସିଦ୍ଧିହସ୍ତ ଥିଲେ ।

**ଉପନ୍ୟାସ -**

ଛାୟାସୌଧର ଅବଶେଷ (୧୯୯୬)
ନିଜ ସାଙ୍ଗେ ନିଜର ଲଢେଇ (୧୯୯୯)
ଏଇଠୁ ଆରମ୍ଭ (୨୦୦୫)
ଆପଣଙ୍କ ଆଜ୍ଞାଧିନ (୨୦୧୦)
କେତେ ରଙ୍ଗର ଜୀବନ (୨୦୧୩)

**କ୍ଷୁଦ୍ରଗଳ୍ପ -**

ଜୁଆର ଭଟ୍ଟା (୧୯୮୧)
ଆଖଡା ଘର (୧୯୮୯)
ସ୍ୱପ୍ନ ପାଇଁ ରୀତି କାହିଁ (୧୯୯୧)
ଭାରତବର୍ଷ (୧୯୯୪)
ମାଟି କଣ୍ଢେଇ (୧୯୯୫)
ମାୟା (୧୯୯୮)
ଶେଷବାଜି (୧୯୯୭)
ପୁନରାବୃତି (୧୯୯୬)
ଘର (୨୦୦୦)
କାଗଜ ଡଙ୍ଗା (୨୦୦୨)
ଅହଲ୍ୟା ର ବାହାଘର (୨୦୦୪)
ପିଛିଲା ପଚିଶ (୨୦୦୭)
ମଥୁରା ର ମାନଚିତ୍ର (୨୦୦୭)

କଟାଂ ଓ ଅନ୍ୟାନ୍ୟ ଗଳ୍ପ (୨୦୦୯)
(କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ - ୨୦୧୨)
ଆକାଶ ଦିନେ ନୀଳ ଥିଲା (୨୦୧୦)
ଅଣଲେଉଟା ଓ ଅନ୍ୟାନ୍ୟ ଗଳ୍ପ (୨୦୧୫)

**ଫିଚର -**

ଜୀବନର ଜଳଛବି (୧୯୯୪)
ଚିହ୍ନା ଚୌହାଦି (୧୯୯୬)
ଭିନ୍ନ ଭୂମିକା (୧୯୯୮)
ପରିଚିତ ପରିଧି (୨୦୦୧)
ଅସମର୍ଥ ଈଶ୍ୱର (୨୦୦୭)
ହାତଲେଖା ଚିଠି (୨୦୧୨)
ଜୀବନର ଜଳଛବି ସମଗ୍ର (୧) - ୨୦୧୪

**ନାଟକ -**

ଅପରାଧ (୨୦୦୩)

**ମଚଂସ୍ଥ ନାଟକ -**

ଆସାମୀ
ମାୟା
ଶିକୁଳି

**କବିତା -**

ପାଉଁଶର ପାଣ୍ଡୁଲିପି (୨୦୧୦)

**ପ୍ରବନ୍ଧ -**

ଓଡିଶା ଡାଏରୀ (୨୦୦୧)
କାହାର ଓଡିଶା (୨୦୧୨)
କଥାବାର୍ତ୍ତା (୨୦୦୧)
କଥା ସରିନାହିଁ (୨୦୧୧)
ରାଜଧାନୀ ରାଜନୀତି (୧ମ ଖଣ୍ଡ)
ରାଜଧାନୀ ରାଜନୀତି (୨ୟ ଖଣ୍ଡ)

**ସମ୍ପାଦନା -**

ପିଲାଦିନ (୨୦୦୦)
ପ୍ରେମ (୨୦୦୧)
ସୂର୍ଯ୍ୟାସ୍ତର ରଙ୍ଗ (୨୦୦୨)
କର୍ମଯୋଗୀ ଫକୀରମୋହନ (୧୯୯୫)
ଭଲ ଗଳ୍ପ - ଭୂମି ଓ ଭୂମିକା (୨୦୦୪)
ସ୍ୱାଧିନୋତର - ଓଡିଆ କ୍ଷୁଦ୍ରଗଳ୍ପ (୨୦୦୪)
ଓଡିଆ ଗଳ୍ପ - କାଲି, ଆଜି ଓ ଆସନ୍ତାକାଲି (୨୦୧୫)
ଜଗଦିଶ ମହାନ୍ତି ଙ୍କ ଶ୍ରେଷ୍ଠଗଳ୍ପ (୨୦୧୫)
ନବଲେଖନ - ଓଡିଆ କ୍ଷୁଦ୍ରଗଳ୍ପ (୨୦୧୫)

**ଭ୍ରମଣ ଅନୁଭୂତି -**

ପ୍ରଥମ ପ୍ରବାସ (୧୯୯୭)
ଦୁଇ ଦିଗନ୍ତ (୨୦୦୩)
ଚିହ୍ନା ଅଚିହ୍ନା ଚୀନ୍ (୨୦୦୩)

**ଅନୁବାଦ -**

ଯଶପାଲ ଙ୍କ କାହାଣୀ (୨୦୦୩)

ମିତ୍ର ମରଜାଣି (୨୦୦୪)
ଭଗବାନ ରଜନୀଶ (୨୦୦୮)
ସେହିସବୁ ପିଲାଦିନ (୨୦୧୨)
ଗୋଟିଏ ଜୀବନ ଯଥେଷ୍ଟ ନୁହେଁ (୨୦୧୪)
ଛେଳି ଚରେଇବାର ଦିନ

**ହିନ୍ଦୀ ପୁସ୍ତକ -**

ଦୂର ଆକାଶ କି ପନ୍ଛି (୨୦୦୮)
ମଥୁରା କା ମାନଚିତ୍ର (୨୦୧୨)

**ଇଂରାଜୀ ପୁସ୍ତକ -**

ଦ ଲିଟିଲ୍ ମଙ୍କ୍ ଆଣ୍ଡ ଅଦର ଷ୍ଟୋରିଜ୍ (୨୦୧୧)
କୋରାପୁଟ ଆଣ୍ଡ ଅଦର ଷ୍ଟୋରିଜ୍ (୨୦୧୭)

**ଜୀବନୀ -**

କର୍ମଯୋଗୀ ଫକୀର ଚରଣ

**ଛଦ୍ମନାମ -**

ଶ୍ରୀ ନାରଦ

**ଅନୁଷ୍ଠାନ ସହ ସମ୍ପୃକ୍ତି -**

ସଭାପତି - ଶତାବ୍ଦୀର କଳାକାର, ଭୁବନେଶ୍ୱର
ଉପଦେଷ୍ଟା - ତ୍ରିଶକ୍ତି ମହିଳା ସମିତି, ଭୁବନେଶ୍ୱର

**ନିୟମିତ ସ୍ତମ୍ଭ -**

ଜୀବନର ଜଳଛବି
ରାଜଧାନୀ ରାଜନୀତି

**ବିଦେଶ ଭ୍ରମଣ -**

ଡକ୍ଟର ଗୌରହରି ଦାସ - ଆମେରିକା, ସ୍ୱିଡେନ୍, ଚାଇନା, ଜର୍ମାନୀ, ୟୁକେ, ନେଦରଲ୍ୟାଣ୍ଡ, ବେଲଜିୟମ୍, ଫ୍ରାନ୍ସ, ଚେକ୍ ରିପବ୍ଲିକ୍, ସ୍ଲୋଭାକିଆ, ଅଷ୍ଟ୍ରିଆ, ଇଟାଲୀ, ଭାଟିକାନ ସିଟି, ସ୍ୱିଜରଲ୍ୟାଣ୍ଡ ଆଦି ରାଷ୍ଟ୍ର ପରିଭ୍ରମଣରେ ଯାଇଛନ୍ତି ।

**ପୁରସ୍କାର ଓ ସମ୍ମାନ -**

ସାରସ୍ୱତ ବ୍ୟକ୍ତିତ୍ୱ ଡକ୍ଟର ଗୌରହରି ଦାସ ନିଜର କୃତିପାଇଁ ଅନେକ ଅନୁଷ୍ଠାନରୁ ସମ୍ମାନୀତ ଓ ପୁରସ୍କାରପ୍ରାପ୍ତ । ଯାହାକି ତାଙ୍କର ସାରସ୍ୱତ ସାଧନାରେ ଅଗ୍ରସର ହେବାରେ ସହାୟକ ହୋଇ ପାରିଅଛି ।

କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର - ୨୦୧୨
ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର - ୨୦୦୧
କୋରାପୁଟ ସାହିତ୍ୟ ସମ୍ମାନ - ୨୦୧୯
(କୋରାପୁଟ ସାହିତ୍ୟ ଉତ୍ସବରେ ପ୍ରଦ )
ସଙ୍ଗୀତ ନାଟକ ଏକାଡେମୀ, ନୂଆଦିଲ୍ଲୀ
ଯୁବ ନାଟ୍ୟକାର ସମ୍ମାନ - ୨୦୦୧
ଭୁବନେଶ୍ୱର ପୁସ୍ତକ ମେଳା ସମ୍ମାନ - ୧୯୯୯
ଉତ୍କଳ ସାହିତ୍ୟ ସମାଜ ପୁରସ୍କାର, କଟକ
ସମ୍ବଲପୁର ବିଶ୍ୱବିଦ୍ୟାଳୟ ସପ୍ତର୍ଷି ପୁରସ୍କାର
ସାହିତ୍ୟ ଭାରତୀ ଯୁବ ଲେଖକ ସମ୍ମାନ
ଫକୀରମୋହନ ସାହିତ୍ୟ ପରିଷଦ ସମ୍ମାନ, ବାଲେଶ୍ୱର
କନିକା ଗୌରବ - ୨୦୦୯
କଥା ଗୌରବ ସମ୍ମାନ, କଟକ - ୨୦୧୪
ସାରଳା ସାହିତ୍ୟ ସଂସଦ, ବିଶ୍ୱନାଥ ପଶାୟତ ପୁରସ୍କାର - ୨୦୧୬

**ଅନ୍ୟାନ୍ୟ ସମ୍ମାନ -**

ଭାରତ ସରକାରଙ୍କ ମାନବ ସମ୍ବଳ ମନ୍ତ୍ରଣାଳୟ

ସିନିୟର ଫେଲୋସିପ୍ - ୨୦୧୧

କେନ୍ଦ୍ର ସାହିତ୍ୟ ଏକାଡେମୀଙ୍କ ରାଇଟର ଇନ୍ ରେସିଡେନ୍ସି ସମ୍ମାନ - ୨୦୧୦

ଭାରତ ସରକାରଙ୍କ ମାନବ ସମ୍ବଳ ମନ୍ତ୍ରଣାଳୟର ଜୁନିୟର ଫେଲୋସିପ୍

ଆଚଂଳିକ ଚଳଚ୍ଚିତ୍ର ସେନ୍‌ସର ବୋର୍ଡ ସଦସ୍ୟତା - ୨୦୧୨-୨୦୧୬

ପ୍ରଭୃତି ସମ୍ମାନ ଲେଖକ ଡକ୍ଟର ଗୌରହରି ଦାସଙ୍କୁ ଓଡିଆ ସାହିତ୍ୟରେ ପ୍ରତିଷ୍ଠିତ କରାଇ ପାରିଅଛି ।

ତାଙ୍କ ସର୍ବଶ୍ରେଷ୍ଠ ସାହିତ୍ୟ କୃତି ମଧ୍ୟରେ -

ଅହଲ୍ୟା ର ବାହାଘର

ମଥୁରା ର ମାନଚିତ୍ର

ପିଛିଲା ପଚିଶ

ପାଠକୀୟ ଆଦୃତି ଲାଭକରି ଡକ୍ଟର ଦାସଙ୍କୁ ଓଡିଆ ସାହିତ୍ୟ ଜଗତରେ ପରିଚୟ ପ୍ରତିପାଦନ କରିଅଛି ।

କ୍ଷୁଦ୍ରଗଳ୍ପ "କଟାଂ ଓ ଅନ୍ୟାନ୍ୟ ଗଳ୍ପ" ପାଇଁ ଡକ୍ଟର ଗୌରହରି ଦାସ - ୨୦୧୨ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ, ଯାହାକି ତାଙ୍କର ସାହିତ୍ୟିକ ଜୀବନରେ ଏକ ଉଲ୍ଲେଖନୀୟ ଉଚ୍ଚ ସମ୍ମାନ ତାଙ୍କୁ ଅଧିକରୁ ଅଧିକ ପ୍ରେରଣା ଦେଇଥିଲା ସାହିତ୍ୟ ରଚନା କରିବାରେ ।

ଲେଖକ ଡକ୍ଟର ଗୌରହରି ଦାସଙ୍କ ସାରସ୍ୱତ ସୃଷ୍ଟିର ଏକ ଝଲକ -

## ଗୌରହରି ଦାସଙ୍କ
## ଗଳ୍ପ ସଂକଳନ
## "ଶ୍ରେଷ୍ଠଗଳ୍ପ" ରୁ ଏକଗଳ୍ପ "କଟାଂ"

ନକୁଳ ନାୟକ ତା' ଟିପାଖାତା ଉପରୁ ମୁହଁ ଟେକି ଦେଖିଲା, ପୁଅ ବ୍ରଜକିଶୋର ଦୁଆରବନ୍ଧ ପାଖରେ ଠିଆହୋଇଛି । କ'ଣ କହିବ କହିବ ବୋଲି ଭାବୁଛି, କହିପାରୁ ନାହିଁ । କାନ୍ଧରେ ପକେଇଥିବା ତଉଲିଆର କୋଣକୁ ଆଙ୍ଗୁଳିରେ ଗୁଡେଇ ମୋଡୁଛି ଓ ବାରମ୍ବାର ଛେପ ଢୋକୁଛି ।

ନକୁଳ ନାୟକ ଚିତ୍କାରକଲା, "କ'ଣ କହିବୁ କହୁନୁ ? ମାଇଚିଆ, ଦିନରାତି ତ ସାନ ସାନ ପିଲାଙ୍କ ସାଙ୍ଗେ ଡାଳ ମାଙ୍କୁଡି ଖେଳୁଛୁ, ନହେଲେ ଗାଁ ଟୋକୀଙ୍କ ସାଙ୍ଗରେ ବୋହୂଚୋରି ! ମୋଅରି କର୍ମରେ ଶେଷରେ ତୋ'ପରି ଅକାଳକୁଷ୍ମାଣ୍ଡ ଥିଲା ! କ'ଣ କହିବାର ଅଛି କହ, ନହେଲେ ନିଜ ରାସ୍ତାରେ ଯା' । ମୋର ଜରୁରୀ କାମଅଛି ।"

ଗୋପାଳ ମାଷ୍ଟ୍ରେ ..... ।

କଥାଟା ସାରିପାରିଲା ନାହିଁ ବ୍ରଜକିଶୋର । ନକୁଳ ନାୟକ ଆଉଥରେ ଖିଙ୍କାରି ଆସିଲା । "ଓ-ହୋ, ତୋ ପ୍ରାଣ ଉଛୁଳି ଉଠୁଛି ପରା ? ଆହାରେ ମୋର ଧର୍ମ ଯୁଝେଷ୍ଟି, ତୋତେ ତା' ମାଇପ ଶିଖେଇକି ପଠେଇଛି କିରେ ? ଯାଉଛୁ ନା ମୋ ଆଖି ସାମ୍ନାରୁ, ଦେଖିବୁ ଏଇନେ ! ଦିନରେ ତିନିବେଳା ଡଟିଂ ପର୍ଯ୍ୟନ୍ତ ଭୋଜନ ମିଳିଯାଉଛି ତ, ସେଇଥିଲାଗି ଧର୍ମାତ୍ମା ପାଲଟି ଯାଉଛୁ ।"

ବ୍ରଜକିଶୋର ସେଠୁ ଚାଲି ଯାଇଥିଲା । ତା'ର ସ୍ୱଭାବ ବଳଦ ପରି ନିରୀହ, ବାପା ନକୁଳ ନାୟକ ର ଜିଙ୍ଗାସ ଶୁଣି ସେ ଆହୁରି ଡରି ଯାଇଥିଲା । ବଡ ସାହସକରି ଆସିଥିଲା ସେ, କାଳେ ବାପା ତା' କଥା ଶୁଣିବ । କିନ୍ତୁ ସେ ଜାଣିଥିଲା, ସେଇଟା ଖୁବ୍ ଅସମ୍ଭବ କାମ । ଆଜି ପର୍ଯ୍ୟନ୍ତ କେବେ ତା' ବାପା କୌଣସି କାମରେ ପଛକୁ ଫେରିନାହିଁ । ସେ ଗୋଟେ ଏକମୁହାଁ ରାସ୍ତା । ବ୍ରଜକିଶୋର ମୁଣ୍ଡ ତଳକୁ କରି ନୂଆ ପୋଖରୀ ମୁହାଁ ଗୋଟିଏ ଗୋଟିଏ ପାହୁଣ୍ଡ ପକେଇ ଚାଲିଲା । ସେଇଠି ତା' ସାଙ୍ଗମାନେ ଖେଳୁଥିବେ ।

ବାପାଠାରୁ ଗାଳି ଶୁଣିବା ବ୍ରଜକିଶୋର ପାଇଁ ନୂଆ ନୁହେଁ । ହେତୁ ହେବା ଦିନରୁ ସେ ବାପାଠାରୁ ପ୍ରତିଦିନ ଗାଳିମନ୍ଦ ଶୁଣିଆସିଛି । ବାପାର ସ୍ନେହ କ'ଣ ସେ ଜାଣିନାହିଁ । ଘର ଭିତରେ ମା'-ପୁଅ ଦିହେଁ ଦିଇଟା ଅଦରକାରୀ ଜିନିଷ ପରି ଚଳପ୍ରଚଳ ହେଉଥାଆନ୍ତି । ଏମିତି ବାପାଠୁଁ ଅଧିକ ଆଦର ଆଶା କରିବା ମୂର୍ଖାମି । କିନ୍ତୁ ଆଜି କାହିଁକି ବ୍ରଜକିଶୋର କୁ ବାପାର ଗାଳି ଭାରି କଷ୍ଟ ଦେଉଥିଲା । ଭାବୁଥିଲା, କୁଆଡେ ପଳେଇଯାଆନ୍ତା କି ! ସୁରତ କି କଲିକତା, ହାଇଦ୍ରାବାଦ କି ବାଙ୍ଗାଲୋର । ରୋଜ ରୋଜ ଏସବୁ ଶୁଣିବା ଲାଗିପଡନ୍ତା ନାହିଁ । ଇଏ କ'ଣ ଜୀବନ !

ପର ମୁହୂର୍ତ୍ତରେ ନିଜର ହାତ ପାଦ ଯୋଡିକୁ ଚାହିଁ ସେ ନରମିଗଲା । ସେ ବାମନଟିଏ । କୁଆଡେ ଯିବ ? କିଏ ତାକୁ କାମରେ ଲଗେଇବ ? ସମସ୍ତେ ତ ତାକୁ ଥଟ୍ଟା ଟାପରା କରନ୍ତି । ସମବୟସ୍କମାନେ ତାକୁ ଦୂର୍‌ଦୂର୍ କରନ୍ତି । ସେଥିପାଇଁ ସେ ତା'ଠୁଁ ବୟସରେ ସାନ ପୁଅଝିଅଙ୍କ ସାଙ୍ଗରେ ଖେଳେ । ଖେଳି ଖେଳି ଥକିଗଲେ ଘରକୁ ଫେରେ । ମା' ଯାହା ବାଢିଦେଲା ତା' ଖାଇଦେଇ ଫାଁ ଗାଳି ଶୋଇଯାଏ । ନିଦରେ ବେଳେବେଳେ ସେ ସ୍ୱପ୍ନ ଦେଖେ, ସେଇତକ ସମ୍ପୂର୍ଣ୍ଣ ଭାବେ ତା'ର ।

ବ୍ରଜକିଶୋର ଏସବୁ ଭାବି ନୂଆ ପୋଖରୀ ଆଡିକୁ ଯାଉଥିବାବେଳେ ବାପ ନକୁଳ ନାୟକ ନିଜ ପିଣ୍ଡା ଉପର "ସିରସ୍ତା"ରେ

ବସି ପୁଅ କଥା ଚିନ୍ତା କରୁଥିଲା । ବାଇଶ ବର୍ଷର ଟୋକାଟା, ଦଶବାର ବର୍ଷର ପିଲାଟେ ପରି ଦିଶୁଛି । ବାଘ ଘରେ ମିରିଗ ଜନ୍ମହେଲା ଭଳି ଅସମ୍ଭବ କଥା । ସେଥିପାଇଁ ସେ ମନେ ମନେ ତା' ସ୍ତ୍ରୀକୁ ଗାଳିଦିଏ । ଅନେକ ଦିନୁ ତା'ର ସନ୍ଦେହ, ବ୍ରଜକିଶୋର ଟା ତା' କ୍ଷେତର ଫଳନୁହେଁ । କିନ୍ତୁ ଆଜି ଆଉ ସେ ବିଷୟରେ ଗାଳିମନ୍ଦ କରି ଲାଭନାହିଁ । ବ୍ରଜକିଶୋର ର ଜନ୍ମପରେ ସେ ଆଉ ଗୋଟେ ପିଲାପାଇଁ କେତେଥର ଉଦ୍ୟମ ନକରିଛି ! ନା, ତା' ସ୍ତ୍ରୀ ଆଉ ଫଳିନାହିଁ । ବ୍ରଜକିଶୋର ପ୍ରଥମ ଓ ଶେଷ; ଡେଙ୍ଗା ହୃଷ୍ଟପୁଷ୍ଟ ଗଛର ଭୂତଖିଆ ଗୋଟମା, ବାମନଟାଏ !

ମନ୍ଦିର ଆଡୁ ସର୍ବେଶ୍ୱର ପ୍ରଧାନ ଆସୁଥିଲା । ନକୁଳ ନାୟକ କୁ ଦେଖିଲା କ୍ଷଣି ଦୁଇହାତ ଯୋଡି ନମସ୍କାର କଲା । କହିଲା, "ଆଜି ବି ପୁଲିସ୍ ଗୋପାଳ ମାଷ୍ଟ୍ରଙ୍କୁ ଛାଡିନାହିଁ । ଶୁଣିଲି କୋର୍ଟ ଚାଲାଣ କରିଦେବେ ।"

ବଉଦ ଉହାଡରୁ ବାହାରି ଆସିଥିବା ଜହ୍ନପରି ନକୁଳ ନାୟକ ର ମୁହଁ ଉଜ୍ଜ୍ୱଳି ଉଠିଲା । ସେ ପାଟିର ପାନ ପିକତକ ପିଚ୍‌କିନା ପିଣ୍ଡା ତଳକୁ ପକେଇଦେଇ କହିଲା, "ସତ କହୁଛୁ ? ତା'ପରେ ଏଭଳି ଖୁସି ଖବର ଦେଇଥିବା ସର୍ବେଶ୍ୱର ଲାଗି କିଛି ଗୋଟେ ସତ୍କାରର ପ୍ରୟୋଜନ ମଣି ସେ ତାକୁ କହିଲା, "ଆ, ପାନଖଣ୍ଡେ ନେ । ସାଦା ପାନ ବା ! ମୁଁ କ'ଣ ଜାଣିନି ତୋର ଏସବୁ ଅମଳ ଟମଳ କିଛି ନାହିଁ ।"

ସର୍ବେଶ୍ୱର ପ୍ରଧାନ ର ପାନ ଖାଇବା ଲାଗି ଆଗ୍ରହ ନଥିଲା; ମାତ୍ର ନକୁଳ ନାୟକ ର ପ୍ରସ୍ତାବକୁ ଆଡେଇଦେବା ଲାଗି ମଧ ତା'ର ସାହସ ନଥିଲା । ସେ ପିଣ୍ଡା ତଳେ ଠିଆହେଲା । ନକୁଳ ନାୟକ ଗୋଟେ ପଲିଥିନ୍ ପୁଡିଆରୁ ଫାଳେ ପାନପତ୍ର ବାହାରକରି ତା' ଉପରେ ଗୁଆ ଓ ଗୁଣ୍ଡି ଥୋଇଲା । ନିଜ ଫତେଇ ପକେଟ୍‌ରୁ କରାଟଟିଏ ବାହାରକଲା । ତା' ଭିତରୁ ଲବଙ୍ଗଟିଏ ବାହାରକରି ତାକୁ ଦି'ଖଣ୍ଡ କରି ଖଣ୍ଡେ ପାନରେ ପକେଇ ଖିଲି ମୋଡିଦେଲା । ସର୍ବେଶ୍ୱର ହାତକୁ ପାନଖଣ୍ଡିକ ବଢେଇ ଦେଉଦେଉ କହିଲା, "ଇଏ କ'ଣ ସାମାନ୍ୟ କେସ୍ ହୋଇଛି ? ସରକାରୀ ଜଙ୍ଗଲରୁ ଗଛ କାଟିବା ଓ ବିରଳ ପ୍ରାଣୀ ମାରିବା କି ଜଘନ୍ୟ କାମ କହିଲୁ ?"

ସର୍ବେଶ୍ୱର କିଛି କହିଲା ନାହିଁ । ସେ କହିବାକୁ ଚାହୁଁଥିଲା ଯେ, ଏସବୁ ଅଭିଯୋଗ ସତ ନୁହେଁ । ମାତ୍ର ନକୁଳ ନାୟକ ଖଣ୍ଡେ ଧାରୁଆ ଛୁରୀ । ତା' ଉପରେ ତମେ ପଡିଲେ ଖଣ୍ଡିଆ, ସିଏ ତମ ଉପରେ ପଡିଲେ ବି ଖଣ୍ଡିଆ । ପାନଖିଲଟି ନକୁଳ ନାୟକ ହାତରୁ ନେଇ ସେ ନିଜ ବାଟରେ ଚାଲିଗଲା ।

ନକୁଳ ନାୟକ ଗଡ ଜିଣିଥିବା ଆନନ୍ଦରେ ନିଜର ତେଲଚିକିଟା ତକିଆକୁ ଆଉଜି ବସିଲା । ନିଜ ଘରର ପିଣ୍ଡା ଉପରେ ଏଇ ଅରାକ ତା'ର ସିରସ୍ତା । ବସି ବସି କାନ୍ଥର ଗୋଟାଏ ଜାଗା କଳା ପଡିଗଲାଣି । କଚେରି କି ଫାଣ୍ଡିକି ନ ଯିବାତକ ସମୟ ସେ ଏଇଠି ବସେ । ସାମ୍ନାପଟେ ଗୋଟେ ବେଣାଚେର ହେଁସ ବାନ୍ଧିଦେଇଛି, ଖରାପାଇଁ । ପାଖରେ ଗୋଟେ ଶାଗୁଆନ କାଠ ତିଆରି ଡେସ୍କ । ତା' ଉପରେ ସେ ଲେଖାଲେଖି କରେ, ଭିତରେ ଜରୁରୀ କାଗଜ ରଖି ତାଲା ପକେଇ ଦେଇଥାଏ । ସେହି ଡେସ୍କ-ବାକ୍ସ ଭିତରେ କେତେ ଯେ କାଗଜପତ୍ର, ସୀମା ନାହିଁ । ତା' ପାଖରେ ଗୋଟିଏ ବ୍ୟାଗ୍ । ସେଇଟା ବି ଗୋଟେ ଚଳନ୍ତି ଅଫିସ୍ । ତା' ଭିତରେ ଭାରତ ସମ୍ବିଧାନର କ୍ଷୁଦ୍ର ସଂସ୍କରଣ, ପିଙ୍ଗଳ କୋଡ୍‌ର ଅନୁବାଦ, କେତେ ଫର୍ଦ୍ଦ ଶାଗୁଆ ରଙ୍ଗର ପଇସିକିଆ କାଗଜ, ନାଲି, ନେଳି ଓ କଳା ରଙ୍ଗର ତିନି ତିନିଟି କଲମ, ଦିଇଟା ପେନ୍‌ସିଲ୍, ଗୋଟେ ପେନ୍‌ସିଲ୍ ଗାର ଲିଭା ଓ ଆଉ ଗୋଟେ କଲମ ଗାର ଲିଭା ରବର, ପୁଳାଏ ଆଲ୍‌ପିନ୍, ଗୋଟେ କଳା ଷ୍ଟାମ୍ପପ୍ୟାଡ୍, କେତୋଟି ରେଭେନ୍ୟୁ ଷ୍ଟାମ୍ପ, ପୁଳାଏ ପୁରୁଣା କେସ୍‌ର ନକଲ, ଗୋଟେ ଠିକଣା ଲେଖା ପୁରୁଣା ଖାତା ଓ ଓକିଲମାନଙ୍କ ଟେଲିଫୋନ୍ ନମ୍ବର ଥିବା ପୁରୁଣା ଡାଏରୀ । ତା' ଭିତରେ ଅସଂଖ୍ୟ ଚିରକୁଟି - କାଳେ ଖସି ପଳେଇବେ ବୋଲି ଗୋଟେ ରବର ସୂତୁଲି ବନ୍ଧା ଯାଇଥାଏ

ନକୁଳ ନାୟକ ର ବୟସ ଷାଠିଏ । ଡେଙ୍ଗା ଓ ଦୁର୍ବଳିଆ ଚେହେରା, ଆଖିଯୋଡିକ କିନ୍ତୁ ଚଟାଂଶର ଆଖିପରି ତୀବ୍ର । ମୁଣ୍ଡର ଉପରଭାଗ ଚନ୍ଦା, ତିନିପଟକୁ କିଛି କିଛି ଧଳା ଓ କଷରା ମୁଣ୍ଡବାଳ, ନାକ ଉପରେ ମୋଟା ଫ୍ରେମର ଚଷମା । ପୋଷାକ କହିଲେ ଖଣ୍ଡେ ଫତେଇ, ସମୟେ ସମୟେ ତା' ଉପରେ ଗୋଟେ ପୁରୁଣା ନେହରୁ ଜ୍ୟାକେଟ୍ ପଡେ । ତା' ସାଙ୍ଗକୁ ଚଉଡା କଳାଧଡିର ଧୋତି । ଶୀତଦିନେ କାନ୍ଧ ଉପରେ ସେ ଗୋଟେ ପୁରୁଣା ଶାଲ୍ ପକାଏ । ନିୟମିତ ପାନ ଖାଇବା ଅଭ୍ୟାସ ଯୋଗୁଁ ଦାନ୍ତଗୁଡିକ କଳା । ନକୁଳ ନାୟକ ର ଦେହସାରା ଲୋମଭର୍ତି, କାନ ଭିତରୁ ବି ଚୂଳଗୁଡାକ ଦିଶୁଥାଏ । ପାଦରେ ହଳେ ସ୍ୟାଣ୍ଡଲ । ସବୁଦିନ ସକାଳ ଆଠଟାରୁ ଘରୁ ବାହାରିଯାଏ, ଫେରୁଫେରୁ ଚାରିଟା । ନକୁଳ ନାୟକ ର ସରକାରୀ ଚାକିରୀ ନୁହେଁ, ମାତ୍ର ସବୁଦିନେ ବାହାରେ କାମ । ଯେଉଁଦିନ ଗାଁରେ ରହେ ସେଦିନ ଏଇ ସିରସ୍ତାରେ ବସି ନିଜକାମ କରେ । ଗାଁ ଲୋକଙ୍କ ସାଙ୍ଗେ ତା'ର କଥାବାର୍ତା କମ୍ । ସେମାନେ ନକୁଳ ନାୟକ ପାଖକୁ ବେଶି ଆସନ୍ତି ନାହିଁ ।

ନକୁଳ ନାୟକ ର ସ୍ୱଭାବ ସ୍ୱତନ୍ତ୍ର । ଅନ୍ୟର ଦୁଃଖ ଦେଖିଲେ ସେ ଖୁସିହୁଏ । ପୁଣି ସେ ଲୋକଟା ଦୁଃଖି ହେବାର କାରଣ ଯଦି ନକୁଳ ନାୟକ ନିଜେ ହୋଇଥାଏ, ତାହାହେଲେ ତା'ର ଖୁସିଟା ବେଶୀ ବଢିଯାଏ । ସେ କୁହେ, ଅନ୍ୟର ଭଲକରିବା ଯେତିକି କଷ୍ଟ, ମନ୍ଦକରିବା ତା'ଠାରୁ ଅଧିକ କଷ୍ଟ । ରାସ୍ତା ଉପରେ ନେଇ ପଥରଟିଏ ନ ପକେଇଲେ ସେ ରାସ୍ତାରେ ଆସୁଥିବା ଲୋକ ଝୁଟିଂବ ନାହିଁ । ଆଉ ପଥର ପକେଇବା ଲାଗି ପରିଶ୍ରମ କରିବାକୁ ପଡେ, ମୁଣ୍ଡ ବି ଖଟେଇବାକୁ ପଡେ ।

ନକୁଳ ନାୟକ ର ପରିଚୟ କ'ଣ ? ତା'ର ଚାକିରୀ କ'ଣ ? ଏକଥା ଅବଶ୍ୟ ତାକୁ କେହି ପଚାରନ୍ତି ନାହିଁ । ବହୁବର୍ଷ ତଳେ ଥରେ ଏ ପ୍ରଶ୍ନଟି ଗୋଟେ ଲୋକ ପଚାରିଥିଲା । ତା'ପରେ ସେ ଯେଉଁ ଦଶା ଭୋଗିଥିଲା ତାହା ସେ ଭୁଲିଥିବ ନା ନକୁଳ ନାୟକ ! ଲୋକଟା ଏବେ ବଚିଂଛି କି ମଲାଣି ନକୁଳ ନାୟକ ଜାଣେ ନାହିଁ । ସେତେବେଳେ ନକୁଳ ର ବୟସ ସତେଇଶ ବର୍ଷ । ପ୍ରତିଦିନ ଭଦ୍ରକ କଚେରି

ସାମ୍ନାରେ ଟହଲ ମାରିବା ତା'ର କାମ । ବାପା ଘରୁ ତଡିଦେବା ପରେ ସେ ରେଳରେ ବସି କଟକ ପଳେଇଥିଲା । ପାଖରେ ପଇସା କଉଡି ନଥିଲା, କିନ୍ତୁ ଭଲ ପୋଷାକପତ୍ର ତିନି ହଳ ଥିଲା । ସେଇଠି ଆକସ୍ମିକ ଭାବେ ତା'ର ନିଜ ଜୀବନର ଲକ୍ଷ୍ୟ ସହ ଭେଟ ହୋଇଗଲା । ଜଣେ ଓକିଲ ବାବୁ ତାକୁ ସାକ୍ଷୀ ପଡିବାକୁ ଡାକିଲେ ଓ ଦଶଟି ଟଙ୍କା ଦେଲେ । ନକୁଳ ନାୟକ ନିଜର ପ୍ରଥମ ଉପାର୍ଜନରେ ଯେତିକି ଖୁସି ହେଲା, ତା'ର ଆକସ୍ମିକତାରେ ତା'ଠାରୁ ଅଧିକ ଖୁସି ହେଲା । ସେ ସେହିଦିନୁ ସେ ଓକିଲଙ୍କର ଶିଷ୍ୟ ହୋଇଗଲା । ବିଭିନ୍ନ କେସ୍‌ରେ ମିଛ ସାକ୍ଷୀ ପଡିଲା, ବେଳେବେଳେ ସ୍ତ୍ରୀ ଲୋକଙ୍କ ନାଁରେ ବି ଟିପ, ଦସ୍ତଖତ ଦେଲା । ଧୀରେଧୀରେ ଗୋଟାଏ ନକଲି ଜମିପଟ୍ଟା ଯୋଗାଡ କଲା ସେ । ସାକ୍ଷୀରୁ ଜାମିନଦାର ହେଲା । ମାତ୍ର ଦିନେ ତା'ର ଆଶଙ୍କା ହେଲା, ସିଏ ଧରା ପଡିଯିବ । କଟକର ମାୟା ତୁଟେଇ ଚାଲିଆସିଲା ଭଦ୍ରକ

ଭଦ୍ରକ ଆସିବା ଆଗରୁ କିଛିଦିନ କଟକ ଡାକ୍ତରଖାନାରେ ସମାଜସେବା କରିଥିଲା ନକୁଳ ନାୟକ । ପ୍ରଥମ ଥର ନିଜ ଦେହର ରକ୍ତ ବିକି ଓ ତା'ପରେ ରୋଗୀମାନଙ୍କୁ ଡାକ୍ତରଙ୍କ ପାଖେ ପହଚେଂଇ କିଛି କିଛି ପଇସା ପାଉଥିଲା ସେ । ମାତ୍ର ସେ କାମଟା ତାକୁ ଉତ୍ସାହଜନକ ଲାଗୁନଥିଲା । ସମସ୍ତେ କେମିତି ଗୋଟାଏ ହୀନ ଦୃଷ୍ଟିରେ ଦେଖୁଥିଲେ । ତେଣୁ ସେ କୋର୍ଟ କଚେରି କାମକୁ ଜୀବିକା ଭାବରେ ଗ୍ରହଣ କରିନେଲା ।

ସେଇ ଲୋକଟାର କଥା ପୁଣି ମନେପଡିଲା । ଦିନେ ନକୁଳ କଚେରି ପାଖରେ ଓକିଲ ନରେନ୍ଦ୍ର ବାବୁଙ୍କୁ ଅପେକ୍ଷା କରୁଥିଲା । ସେତିକିବେଳେ ସେହି ଲୋକଟି ଆସି ପଚାରିଲା, "ତୁମେ ତ ଏଠି ସବୁଦିନ ବୁଲୁଛ ? ତୁମର କାମ କ'ଣ ?"

କେମିତି ଛିଗୁଲେଇଲା ଭଳିଆ କଥା ଦି' ପଦ ପଚାରିଥିଲା ଲୋକଟି । ନକୁଳ ନାୟକ ଦେହରେ ନିଆଁ ଲାଗି ଯାଇଥିଲା । ସେ ତାକୁ କିଛି କହିନଥିଲା । ଲୋକଟା ଯିବା ପରେ ତା'ର ନାଁ, ଗାଁ ଓ ବାପ ନାଁ ସଂଗ୍ରହ କରି ଥାନାରେ ଗୋଟେ ଏତଲା ଦେଇଥିଲା । ଲୋକଟା ତାକୁ ମୁନିଆ ମାରଣାସ୍ତ୍ର ଧରି ମାରିବାକୁ ଧାଇଁଆସିଲା - ଇଏ ଥିଲା ଅଭିଯୋଗ । ସପ୍ତାହେ ଯାଇ ନାହିଁ, ସେଇ ଲୋକଟି ଆସି ତା' ପାଖରେ ହାଜର । ଚେହେରାରେ ଆଉ ସେ ଦମ୍ଭିଲାଭାବ ନାହିଁ, ମୁହଁ ଶୁଖିଲା । ପଚାରିଥିଲା, "ନକୁଳ ବାବୁ, ମୁଁ ଆପଣଙ୍କୁ କେତେବେଳେ ମାରିବା ପାଇଁ ଧାଇଁଗଲି ? ମୋ ପାଖରେ ମାରଣାସ୍ତ୍ର ଆସିଲା କେଉଁଠୁ ?"

ନକୁଳ କହିଥିଲା, "ତୁମ ଛତାଟା କେଉଁଥିରେ ତିଆରି ? ତା' ମୁଣ୍ଡଟା ମୁନିଆ ନା ନୁହେଁ? ସେଥିରେ ଭୁଷିଦେଲେ ଜଣେ ଲୋକର କ୍ଷତିହେବ ନା ନାହିଁ, ସେକଥା କଚେରିରେ ସ୍ଥିରହେବ ।"

ଲୋକଟି ନକୁଳ କୁ ଟଙ୍କା ଦୁଇ ଶହ ହାତଗୁଞ୍ଜା ଦେଇ କେସ୍ ଉଠେଇ ନେବାକୁ କାକୁତି ମିନତି କରିଥିଲା । ଦୋଳ ସାହି ସ୍କୁଲର ଶିକ୍ଷକ ଥିଲା ଲୋକଟି । ନିଜ ନାଁରେ ପୁଲିସ୍ କେସ୍ ରହିଲେ ତା' ଚାକିରୀ ଉପରେ ବିପତି ଆସିଥାନ୍ତା !

ଟଙ୍କାତକ ପକେଟ୍‌ରେ ରଖୁରଖୁ ନକୁଳ ନାୟକ ମନକୁ ମନ କହିଥିଲା, "ଏ ଦୁନିଆଁ ବିଚିତ୍ର । ଏଠି ତୁଳସୀ ପତ୍ରକୁ ଲୋକେ ଦଳିଚକଟି ଚାଲିଯିବେ, କିନ୍ତୁ ବିଛୁଆତିକୁ ଡରି ଦୂରେଇ ରହିବେ ।"

ସେଇଦିନୁ ନକୁଳ ନାୟକ ତା' ଜୀବନର ଦ୍ୱିତୀୟ ଲକ୍ଷ୍ୟ ସ୍ଥିର କରିନେଲା । ଆଗରୁ ସାକ୍ଷୀ ଓ ଜାମିନ୍ ପଡୁଥିଲା, ଏଣିକି ନିଜେ ମିଛ କେସ୍ କଲା ଓ କରେଇଲା । ଗୋଟେ ଦିଇଟା ଆଫିଡାଭିଟ୍ କାମ ତ ସବୁଦିନେ ମିଳିଯାଏ । ବହୁ ଓକିଲଙ୍କ ସହ ସମ୍ପର୍କ । ସାଧାରଣ ସତ୍ୟପାଠରେ ଦଶ, କୋଡିଏ ଟଙ୍କା ଓ ବଡବଡ ଯେମିତି ଜମି କିଣା କି ନୂଆ ସଂସ୍ଥା ରେଜିଷ୍ଟ୍ରେସନ୍ - ସେଥିରେ ପଚାଶ ଟଙ୍କା ମିଳେ । ଜାମିନ୍‌ଦାର ହେଲେ ପାଁଚଶହ ଟଙ୍କା । ଜମି ଓ ଘରର ପଟ୍ଟା ପାଉତି ତା' ବ୍ୟାଗ୍‌ରେ ଥାଏ । ଓକିଲ ଡାକିବା କ୍ଷଣି ସେ ଯାଇ ହାଜର ହୋଇଯାଏ । ଗଲା ତିରିଶ ବର୍ଷ ହେଲା ତା'ର ଏଇ କାମ ।

ଅନ୍ୟ ନାଁରେ ମାମଲା ଦାୟର କରିବା ବା କରେଇବା, ସରକାରୀ ଓ ବେସରକାରୀ କର୍ମଚାରୀଙ୍କ ନାମରେ ମିଛ ସତ ପିଟିସନ୍ ପକେଇବା ନକୁଳ ନାୟକ ର ମୁଖ୍ୟ କାମ । ସେଥିପାଇଁ ନିଜ ଅଚଂଳର ଅଧିକାଂଶ ଲୋକ ତାକୁ ମନେମନେ ଡରନ୍ତି, କିଛିକିଛି କପଟ-ସମ୍ମାନ ବି ଦିଅନ୍ତି । ସ୍କୁଲ ମାଷ୍ଟରଠାରୁ ନେଇ ୱାର୍ଡ ମେମ୍ବର, କଣ୍ଟ୍ରୋଲ ଡିଲରଠାରୁ ନେଇ ଗ୍ରାମସେବକ ସମସ୍ତଙ୍କର ନକୁଳ ନାୟକ କୁ ଭୟ । ତା' ସାଙ୍ଗରେ କେହି ଯୁକ୍ତିତର୍କ କରନ୍ତି ନାହିଁ । କେହିକେହି ତାକୁ ଦେଖିଲେ ବାଟ ଭାଙ୍ଗି ଚାଲିଯାଆନ୍ତି । ପାଟପୁର ଗାଁକୁ ବିକି ଆସୁଥିବା ମାଛଶୁଖୁଆ ବିକାଳିଙ୍କଠାରୁ ଆରମ୍ଭକରି ନେତାମାନଙ୍କ ପର୍ଯ୍ୟନ୍ତ ସମସ୍ତେ ନକୁଳ ନାୟକ କୁ ଚିହ୍ନନ୍ତି । କୌଣସି ନୂଆ ବୁଲା ବିକାଳି ନକୁଳ କୁ ଚିହ୍ନି ନପାରିଲେ, ସେ ତାକୁ ପଦେ କଥା ପଚାରେ - "ନାଲି କୋଠା ଦେଖିବାକୁ ମନ ବଳିଲାଣି କିରେ ? ଥରେ ସେ ମାୟାରେ ପଡିଲେ ଜୀବନସାରା ଘିରିଘିରି ଘୂରୁଥିବୁ, ଯମ ବି ତୋ ସାକ୍ଷାତ ପାଇବ ନାହିଁ ।"

ତା'ପରେ ସେ ଲୋକ ନକୁଳ ନାୟକ କୁ ଚିହ୍ନିଯାଏ ।

ନକୁଳ ନାୟକ ର ସବୁଥିରେ ଆଗ୍ରହ, କୋଉଥିରେ ନାହିଁ । ତା' କାମ ଥିବା ପର୍ଯ୍ୟନ୍ତ ତା'ର ଆଗ୍ରହ, ତା'ପରେ ସେ ଅଚିହ୍ନା ପରଦେଶୀ । ରାଜନୀତି ସହ ତା'ର ଆଦୌ ସମ୍ପର୍କ ନାହିଁ । ଯେତେବେଳେ ଯିଏ କ୍ଷମତାରେ, ସେତେବେଳେ ସିଏ ତାଙ୍କର । କ୍ଷମତା ବଦଳିଗଲେ ସେ ବଦଳିଯାଏ । ପ୍ରତିପକ୍ଷ ଉପରୁ ମିଛ କେସ୍ ଉଠେଇନେଇ ପରବର୍ତ୍ତୀ ସୁଯୋଗକୁ ଅପେକ୍ଷା କରେ । ତା'ର ରଙ୍ଗବଦଳ ଦେଖି ନେତାମାନେ ଆଶ୍ଚର୍ଯ୍ୟ ହୁଅନ୍ତି । ନକୁଳ ନାୟକ କୁ ଚା'-ପାନ ଦେଇ କହନ୍ତି, "ତୁମଠାରୁ ଅନେକ କଥା ଶିଖିବାର ଅଛି ।"

ନକୁଳ ନାୟକ ଖୁସି ହୁଏ, ମାତ୍ର ପ୍ରଭାବିତ ହୁଏ ନାହିଁ । ସେ ଜାଣେ, ଏମାନେ ତାକୁ କେହି ଆଦର କରନ୍ତି ନାହିଁ । କିନ୍ତୁ ସେଥିପାଇଁ ସେ ହାଇଁପାଇଁ ହୁଏ ନାହିଁ । ପକେଟ୍‌ରେ ଟଙ୍କା ଅଛି ତ ସବୁ ଅଛି । ସିଏ ପାଟପୁର ଗାଁର ଡେଙ୍ଗା ତାଳ ଗଛ, ପାଖରେ କେହି ନଥାଉ, ସମସ୍ତେ ତାକୁ ଅନେଇ ଦେଖୁଥିବେ ।

ଆଜି ସେ ପ୍ରକୃତରେ ଖୁସି ଥିଲା । ତା'ର କାରଣ ହେଲା ଗୋପାଳ ମାଷ୍ଟର ଦରଖାସ୍ତ ଖାରଜ ହୋଇ ଯାଇଥିଲା । ଟୋକାଟା ଗାଁ ଲୋକଙ୍କୁ ମତେଇ ତା' ବିରୋଧରେ ରୀତିମତ ଗୋଟେ ଆନ୍ଦୋଳନ ଠିଆ କରଉଥିଲା । ଗାଁର ସବୁ ସମସ୍ୟାରେ ନାକ ଗଳଉଥିଲା । ତାକୁ କହୁଥିଲା "କଟାଂ" । ନକୁଳ ନାୟକ ରାଗରେ ଫୁଲି ଉଠିଲା । ଏବେ ସେ ଦେଖିବ, ଗୋପାଳ ମାଷ୍ଟର କେମିତି ଖଲାସ ହେବ ।

ଗୋପାଳ ଗାଁ ସ୍କୁଲର ବିଜ୍ଞାନ ଶିକ୍ଷକ । ତା' ପୁଅ ବ୍ରଜକିଶୋରଠୁଁ ପାଚଂ ବର୍ଷ ବଡ । ଗଲା ସପ୍ତାହରେ ସେ କେନ୍ଦ୍ରାପଡା ପାଖ ଭିତରକନିକା ଯାଇଥିଲା । ସାଙ୍ଗରେ ତା'ର ଜଣେ ବନ୍ଧୁ ଯାଇଥିଲା । ସେଇ କଥାକୁ ନେଇ ନକୁଳ ନାୟକ ଅଭିଯୋଗ ଦାଖଲ କରିଛି - ଗୋପାଳ ଓ ତା'ର ବନ୍ଧୁ ଭିତରକନିକାରେ ବିରଳ ପଶୁ ମାରି ଖାଇଛନ୍ତି ଏବଂ କଟାଂ ଗଛ ହାଣିଛନ୍ତି । ପ୍ରମାଣ ଯୋଗାଡ କରିବାକୁ ଅନେକ କଷ୍ଟ ହୋଇଛି ତାକୁ । ବନ ବିଭାଗ କର୍ମଚାରୀଙ୍କୁ ପ୍ରଭାବିତ କରି କିଛି ମାଉଁସ ଓ କଟାଡାଳ ଜବତ କରେଇଛି । ବନ୍ୟଜନ୍ତୁ ଆଇନ୍‌ର ଦଫା ନଅ, ଦଫା ଏକୋଇଶ ଓ ଓଡିଶା ବନ ସୁରକ୍ଷା ଆଇନ୍‌ର ସେକ୍ସନ ସତେଇଶ ଲଗେଇବା କ'ଣ ସହଜ ପାଠ ! ଦିଇଟାଯାକ ଜାମିନବିହୀନ ମାମଲା ।

ଗୋପାଳ ମାଷ୍ଟର ସ୍ତୀର ପିଲାପିଲି ହେବ । ସେଇ ଯୋଗୁଁ ବ୍ରଜକିଶୋର ଆସି ଫେରାଦୀ ହେଉଥିଲା । ମାଇପ ଏପଟେ ଶୂଳକଷ୍ଟ ପାଇବାବେଳକୁ ସିଆଡେ ସ୍ୱାମୀକୁ ପୁଲିସ୍ ଧରିନେଲାଣି । ଘରେ ଏକୁଟିଆ ଗୋପାଳ ବୁଢୀମା' । ନକୁଳ ର ସ୍ତୀ କହୁଥିଲା, ଗୋପାଳ ମାଷ୍ଟର ସ୍ତୀଟି ଦୁର୍ବଳିଆ, ପୁଣି ପେଟର ପିଲାଟି ଓଲଟି ପଡିଛି କି କ'ଣ ଭାରି ଦହଗଞ୍ଜ ହେଉଛି । ନକୁଳ ଏକଥା ଶୁଣି କିଛି କହିନଥିଲା । ମୁହଁ ବୁଲେଇ ଘୁଙ୍ଗୁଡି ମାରି ଶୋଇଥିଲା । ଏସବୁ ଶୁଣିଲା ପରେ ସତକୁ ସତ ତାକୁ କାଲି ଭଲ ନିଦ ହୋଇଥିଲା ।

ନକୁଳ ନାୟକ ର ମୁହେଁ ମୁହେଁ ଆଇନ୍ । କେଉଁ ଅପରାଧ ଲାଗି କେଉଁ ଧାରା ଲାଗିବ ସେକଥା ପୁଲିସ୍ କି ଓକିଲ ସ୍ଥିର କରିବା ଆଗରୁ ନକୁଳ କହିଦିଏ । ସିଏ କହେ, ଖାଲି ଅଭିଯୋଗ ଲେଖିଦେଲେ ହେବନାହିଁ, କେମିତି ଲେଖିଲେ ଟାଣ ଦଫା ଲାଗିବ ସେଇଟା ପ୍ରତି ଧ୍ୟାନ ଦେବାକୁ ପଡିବ । ସେ ଉଦାହରଣ ଦେଇ କହେ, "ଅମୁକ ଲୋକ ମୋତେ ମାରିବା ପାଇଁ ଧାଇଁ ଆସିଲା" ଅଭିଯୋଗରେ ଦମ୍ ନାହିଁ । "ଜୀବନରୁ ମାରିଦେବା ଲାଗି ଧାଇଁ ଆସିଲା" ଲେଖିଦେଲେ ଦଫା ଶହେ ତିନି ଲାଗିବ, ସେ ଜାଗାରେ ଯଦି ଲେଖିବ "ମାରଣାସ୍ତ୍ରଟେ ଧରି ଜୀବନରୁ ମାରି ଦେବାର ଧମକ ସହ ମାଡିଆସିଲା", ତାହାହେଲେ ତିନି ଶହ ଉଣେଇଶ କି କୋଡିଏ ଲାଗିବ । ଆଉ ଯଦି ଅଭିଯୋଗରେ ଲେଖାଯାଏ ଯେ, ଘରର କବାଟ ଭାଙ୍ଗି, ଲୁହା ତିଆରି ମାରଣାସ୍ତ୍ର ଧରି ମୋ ଆଡକୁ ଧାଇଁ ଆସିଲା ଏବଂ ମୋ ଛାତିରେ ଭୁଷି ଜୀବନରୁ ମାରିଦେବ ବୋଲି ଉଦ୍ୟମ କଲା ତାହାହେଲେ ଚାରି ଶହ ଛୟାଳିଶ ସାଙ୍ଗରେ ତିନି ଶହ ଚାରି ଦଫା ଲାଗିବ ।

ଭଦ୍ରକ କଚେରିରେ ନକୁଳ ନାୟକ ଓ କଚେରି ପଡିଆର ବୁଢା ବର ଗଛ ଦି' ଜଣ ଲୋକପ୍ରିୟତାରେ ପରସ୍ପରର ପ୍ରତିପକ୍ଷ । ସିଏ କଚେରି ହତାରେ ପହଚିଂଗଲେ ପରିବେଶଟା ଚଳଚଂଚଳ ହୋଇଯାଏ । ଆସାମୀଙ୍କୁ ନେଇ ଆସୁଥିବା ପୁଲିସ୍‌ଠାରୁ ଓକିଲ, ପେସ୍କାର, କୋର୍ଟ ପିଅନ ସମସ୍ତେ ତା'ର ଜଣାଶୁଣା । ସମସ୍ତଙ୍କ ପାଇଁ ସେ ଅଲଗା ଅଲଗା ମସଲା ଦେଇ ପାନ ଭାଙ୍ଗି ନେଇଥାଏ । ବର ଗଛ ମୂଳେ ଗୋଟେ ବେଚ୍ଂ, ସେଇଟା ତା'ର ଆସ୍ଥାନ । ତା'ପରେ ସାକ୍ଷୀ, ଜାମିନ୍, ମୁଦାଲା, ମୁଦେଇ, ବାଦୀ, ପ୍ରତିବାଦୀ ସବୁ ଆସି ନକୁଳ ପାଖରେ ମୁହଁ ମାରନ୍ତି । ଭଦ୍ରକ କଚେରିର ସେ ଗୋଟେ ଚଳନ୍ତି ବିଶ୍ୱକୋଷ ।

ଏ ସଂସାର ଭିତରେ ଦି' ଜଣ ଲୋକଙ୍କ ଉପରେ ନକୁଳ ର ବେଶି କ୍ରୋଧ । ଗୋଟେ ତା' ବାପା ଆଉ ଗୋଟେ ତା' ପୁଅ । ବାପଟି ଖାଲି, "ପାଠ, ପାଠ" କହି ମଲା, ପୁଅଟା ମାଇଚିଆ ବାମନ । ସେ ଘରଛାଡି ଚାଲିଯିବା ଦିନ ତା' ବାପାକୁ ପଚାରିଥିଲା, "କେତେଟା ଲୋକ ପାଠପଢି ଏ ଦେଶରେ ଧନୀ ମହାଜନ ଆଉ ବଡନେତା ହେଲେଣି ? କିରାଣୀ ହେବାକୁ ଚାହୁଁଥିବା ଲୋକ ପାଠ ପଢେ । ନହେଲେ ଅଷ୍ଟମ ନବମ ଶ୍ରେଣୀ ପାଠ କିଛି କମ୍ ନୁହେଁ । ମୁଁ ଚାଲିଲି ।"

ଆଉ ପୁଅ ବ୍ରଜକିଶୋର । ଥରେ ଦି' ଥର ତାକୁ ଆଦର କରି ଡାକିଥିବ, ମୋ ପାଖରେ ବସି କାମ ଶିଖ୍ । ଏଥିରେ ଖଟ ମୁଣ୍ଡେଇବା ଦରକାର ନାହିଁ, ଖାଲି ମୁଣ୍ଡ ଖଟେଇବା କାମ । ଲୋକେ ବଳେବଳେ ତୋ ପାଖକୁ ଆସିବେ । ଦେଖୁନୁ ମୋତେ । ବିଛାର ଲାଞ୍ଜରେ ବିଷ, ସାପର ମୁଣ୍ଡରେ ବିଷ । ମାତ୍ର ତୋ ବାପ ନକୁଳ ନାୟକ ର ସର୍ବାଙ୍ଗରେ ବିଷ । ଯୋଉଠି ଛୁଇଁଲ ମଲ । ତା'ଠୁଁ ଦୂରକୁ ଗଲେ ବିପଦ, ପାଖରେ ରହିଲେ ବିପଦ । ମାତ୍ର ମାଇଚିଆ ଗେଟମ୍ ଟୋକାଟା କିଛି ଶୁଣେନାହିଁ । ସେ କୁଆଡୁ ଜାଣିବ, ଏଇଠି ପହଚିଂବା ପାଇଁ ନକୁଳ ନାୟକ କୁ କେତେ ଲୋକଙ୍କ ହାତଗୋଡ ଧରିବାକୁ ପଡିଛି, କେତେ ଲୋକଙ୍କୁ ବସାଦହି, ଅରୁଆ ଚାଉଳ, ଗୁଆଘିଅ ଓ କାଠିଆ କଦଳୀ ଭେଟିଦେବାକୁ ପଡିଛି ! ସବୁଯାକ ଯେ ସେ ନିଜ ଖର୍ଚ୍ଚରୁ ଦେଇଛି ତା' ନୁହେଁ, ମାତ୍ର କାହାଠାରୁ ଆଦାୟ ହେବ, ସେ ମୁଣ୍ଡ ଖଟେଇଛି ନକୁଳ । ଏ କାରବାରରେ ଥାନାର କନେଷ୍ଟବଳ ଠାରୁ ନେଇ ଇନ୍‌ସପେକ୍ଟର, କଚେରିର ପିଅନଠାରୁ ନେଇ ପେସ୍କାର ଓ ବାଦୀ-ପ୍ରତିବାଦୀ ଉଭୟ ପକ୍ଷ ଓକିଲଙ୍କ ସହ ସମ୍ପର୍କ ନରଖିଲେ ଚଳେନାହିଁ ।

ଓକିଲମାନଙ୍କ ସହ ନକୁଳ ନାୟକ ର ଅତି ଭଲ ସମ୍ପର୍କ । ଭଲ ହେବନି କାହିଁକି ? ଯେତେ ମାଲିମକଦ୍ଦମା, ସେତେ ଉପାର୍ଜନ । ଦେଶରେ ରୋଗୀ ବଢିଲେ ଡାକ୍ତରଙ୍କ ଉପାର୍ଜନ, ମାମଲା ବଢିଲେ ଓକିଲଙ୍କର । ରୋଗ ଭଲହୁଏ କିମ୍ବା ରୋଗୀ ମରେ, ମାତ୍ର ମାମଲା ତୁଟେନାହିଁ କି ମହକିଲ ମରେନାହିଁ । ମରୁମରୁ ଜିଏଁ, ଜିଉଁଜିଉଁ ମରେ । ଏଣେ ଷ୍ଟାମ୍ପ ଭେଣ୍ଡରଠାରୁ ହାକିମଙ୍କ ପର୍ଯ୍ୟନ୍ତ ସମସ୍ତେ ତା' ଅର୍ଥରେ ପ୍ରତିପାଳିତ ହୁଅନ୍ତି । ନକୁଳ ନାୟକ ଜାଣେ, ଏ ଦେଶରେ ମୋକଦ୍ଦମାଟିଏ ଆରମ୍ଭ କରିବା ଅର୍ଥ ନଡିଆଗଛର ଚାରା ପୋତିବା । ନଡିଆଗଛ ବଢି, ଫଳଧରି ମରିଯିବ ସୁଦ୍ଧା ମୋକଦ୍ଦମା ଛିଣ୍ଡିବ ନାହିଁ, ନାତି ପାଇଁ ରଖି ଦେଇଯିବ । ଗୋଟେ ଅନ୍ଧାରି ସୁଡଙ୍ଗ ଏ କୋର୍ଟ କଚେରି କାରବାର । ସେଠି କିଭଳି ତତ୍ପରତାର ସହ ମୁଦାଲା ହାତରୁ ଟଙ୍କା ଯାଇ ପେସ୍କାର ପକେଟ୍‌ରେ ପଶେ, ତାହା ଅଭ୍ୟସ୍ତ ପକେଟ୍‌ମାର୍

ବି ଠଉରେଇ ପାରିବନାହିଁ । କୋଉଠି କାଗଜ ଟାଇପ୍ ହେବ, କୋଉଠି ସାକ୍ଷୀ ଯୋଗାଡ ହେବ, କୋଉଠି ଷ୍ଟାମ୍ପ ବସିବ ସେସବୁ ଜାଣିବା ସହଜ ନୁହେଁ । କେବେ ବିଜୁଳି ପରି କ୍ଷିପ୍ର ଗତିରେ ତ କେତେବେଳେ ଗେଣ୍ଡାପରି ମନ୍ଥର ଗତିରେ କାଗଜ ଚାଲେ । ସବୁଠି ପ୍ରୟୋଜନ ଟଙ୍କା । ଟଙ୍କା ପଚାଶ କି ଶହେ ଥୋଇଦେଲେ, ବନ୍ଧଭାଙ୍ଗି ବଢି ପାଣିବୋହି ଚାଲିଲା ପରି କାଗଜ ଆଗକୁ ମାଡିଚାଲେ ।

ସବୁ ମାମଲାରେ ନକୁଳ ନାୟକ ବାଦୀନୁହେଁ । ସେମିତି ହେଲେ ହାକିମ ସନ୍ଦେହ କରିବେ । ଅଧିକାଂଶ ମାମଲାର ସେ କେବଳ ପୃଷ୍ଠପୋଷକ । ହାଟକୁ ଯାଉଛି, ଦେଖିଲା ଗରିବ ପଡୋଶୀ ଆମ୍ବ ଗଛଟାକୁ ନେଇ ଈର୍ଷୁକ ଧନୀ ପଡୋଶୀ କଳିକଜିଆ କରୁଛି । ନକୁଳ ନାୟକ ଧନୀଲୋକକୁ ଡାକି ପରାମର୍ଶ ଦେବ, ଏତେ ପାଟିତୁଣ୍ଡରେ କି ଲାଭ । ଗୋଟାଏ କେସ୍ କରିଦେଲେ ଗଛ ସେମିତି ତା' ଜାଗାରେ ରହିଲା, ତୁମେ ବି ତୁମ ଜାଗାରେ । ନକୁଳ ନାୟକ ସବୁବେଳେ ସ୍ୱଚ୍ଛଳ ସାଙ୍ଗରେ ରହେ, କେବେ କେମିତି ଗରିବ ପକ୍ଷରେ ଥିଲେ ବାଟ ମଝିରୁ ଦଳବଦଳ ନେତାଙ୍କ ପରି ପକ୍ଷ ବଦଳେଇ ବୁଝାମଣା କରାଇଦିଏ । ସେଥିରେ ତା'ର ଲାଭହୁଏ । କିନ୍ତୁ ତା' ହସ୍ତକ୍ଷେପ ଯୋଗୁଁ ସମ୍ବନ୍ଧ ଭାଙ୍ଗିଗଲେ, ଭାଇଭାଇ ଭିନ୍ନେ ହୋଇଗଲେ କି ନିରୀହ ଲୋକ କାନ୍ଦି ବୋବେଇଲେ ନକୁଳ ନାୟକ ପ୍ରଚୁର ଆନନ୍ଦପାଏ । ହସିହସି ଗଡିଯାଏ । ପାନ, ବିଡି ସାଙ୍ଗକୁ ସେଦିନ ସଞ୍ଜ ବୁଡେ ଦି' ଚାରି ଚିଲମ ଗଞ୍ଜେଇ ଭିଡିଦିଏ । ମାମଲା ଯେତେ ଜଟିଳହୁଏ ନକୁଳ ସେତେ ଆନନ୍ଦପାଏ । କୁହେ, ଏମିତିକା କେସ୍‌ରେ ପଶିଲେ ମଜା । ସାପ-ନେଉଳ ଖେଳର ଉତେଜନା ପରି ତାହା ନକୁଳ ନାୟକ ର ରକ୍ତରେ ଉତେଜନା ଭରିଦିଏ ।

ବୟସ୍କ ଶିକାରୀ ଅବସର ସମୟରେ ବସି କେଉଁ କେଉଁ ଜଙ୍ଗଲରୁ ବାଘ, ହାତୀ, ଗୟଳ ଓ ଭାଲୁ ଶିକାର କରିଥିଲା ତା'ର ହିସାବ ଗୁଣିହେଲା ପରି ନକୁଳ ନାୟକ ଅବସର ସମୟରେ ନିଜର ସଫଳତାର ହିସାବ ନିକାଶ କରେ । ବାସୁଦେବ ପଟ୍ଟନାୟକ ର ପୁଅ ଦିନ ପନ୍ଦରଟାରେ ବିଦେଶକୁ ପାଠପଢି ଯାଇଥାଆନ୍ତା, ତାଆରି ଉଦ୍ୟମ ଯୋଗୁଁ ଜାଲ୍ ସାର୍ଟିଫିକେଟ୍ କେସ୍‌ରେ ପଡିଲା । ସେଥିରୁ ଅବଶ୍ୟ ସେ ମୁକୁଳିଗଲା, ମାତ୍ର ଆଉ ବିଦେଶ ଯାଇପାରିଲା ନାହିଁ । ବୀରକିଶୋର ମଙ୍ଗରାଜ ଙ୍କ ଝିଆରିର ବାହାଘର ଭାଙ୍ଗିଲା ନକୁଳ ନାୟକ ର ଉଦ୍ୟମ ଯୋଗୁଁ । ସବୁଠୁ ଭଲ କେସ୍ ଥିଲା ରାଇପୁର ନିରଞ୍ଜନ ମହାନ୍ତି ର ଦର୍ପଦଳନ । ଏମିତି ଗୋଟେ ଜାତୀୟ ପତାକା ଅବମାନନା କେସ୍‌ରେ ତାକୁ ନକୁଳ ନାୟକ ଛନ୍ଦି ଦେଇଥିଲା ଯେ ସେଥିରୁ ମୁକୁଳିବାକୁ ଚାରିବର୍ଷ ଲାଗିଗଲା । ତା'ର ସରପଚଂ ପଦବୀଟା ବି ସେଇଥିରେ ଚାଲିଗଲା । ଏସବୁ ଭାବିଲେ ନକୁଳ ନାୟକ ର ମନ ତୃପ୍ତିରେ ଭରିଯାଏ ।

ନକୁଳ ନାୟକ ଜାଣେ, ସିଭିଲ୍ କେସ୍‌ରେ ସିନାଲୋକ ଖର୍ଚ୍ଚାନ୍ତ ହୁଏ, ମାତ୍ର ଫଉଜଦାରିରେ ବେଶୀ ଅପମାନ ମିଳେ । ସେ ଲୋକ ଜାଣି ଅସ୍ତ୍ର ଖଞ୍ଜେ । ଏଥିରେ ତା'ର ଯୋଜନା ଆଦୌ ବିଫଳ ହୁଏନାହିଁ । କେତେକେତେ ଲୋକଙ୍କୁ ସେ ଘରୁନେଇ ହାଟରେ ବସେଇ ଦେଇଛି ସେକଥା କେବଳ ସିଏ ଜାଣେ ।

ଦଶରଥ ମହାକୁଡ ଙ୍କ ଘରେ ଯୌତୁକ ନିର୍ଯାତନା କେସ୍ ପୂରେଇବା ନକୁଳ ନାୟକ ର ଆଉ ଗୋଟେ ସଫଳତା । ଖୁବ୍ ଆଦର୍ଶବାଦୀ ପରିବାର ଦଶରଥଙ୍କର । ଦୁଇ ପୁଅଯାକ ଭଲଭଲ ଜାଗାରେ ବାହା ହୋଇଥିଲେ । ସାମାନ୍ୟ କଳିକଜିଆକୁ ନେଇ ସାନବୋହୂ ବାପଘରକୁ ଚାଲି ଯାଇଥିଲା । ଦିଇଟା ଦିନରେ କଳି ତୁଟିଥାଆନ୍ତା । ମାତ୍ର ନକୁଳ ନାୟକ ଇନ୍ଦୁପୁର ଯାଇ ଦଶରଥ ମହାକୁଡ ଙ୍କ ସମୁଦୁଣୀଙ୍କୁ ଭେଟିଥିଲା । ତାଙ୍କ ଜ୍ୱାଇଁ କିପରି ଆଉଗୋଟେ ଝିଅକୁ ବାହାହେବ ବୋଲି ଜାଣିଜାଣି ଝିଅ ଉପରେ ଅତ୍ୟାଚାର କରୁଛି ତା'ର ଗୋଟେ ଦୀର୍ଘ ବିବରଣୀ ଦେଇଥିଲା । ତା' ପରଦିନ ଯୌତୁକ ନିର୍ଯାତନା କେସ୍ ଦାୟର ହେଲା । ଆଦର୍ଶ ମଣିଷ ଦଶରଥ ଙ୍କ ଘରେ ଯେଉଁଦିନ ପୁଲିସ୍ ପଶିଲା ସେଦିନ ତାଙ୍କୁ ପ୍ରଥମ ହୃଦ୍‌ଘାତ ହେଲା । ବାଷଠି ବର୍ଷର ଦଶରଥ ଓ ତାଙ୍କ ପତ୍ନୀ ପୁଲିସ୍ ଥାନାକୁ ଟଣା ହୋଇଗଲେ । ଥାନାରୁ ଫେରିବା ପରେ ଦ୍ୱିତୀୟ ଆଘାତ ଓ ସେଇଥିରେ ଦଶରଥ ମହାକୁଡ ଚାଲିଗଲେ । ଏ ଖବର ପାଇ ସାନବୋହୂ ଧାଇଁଆସିଲା; ମାତ୍ର ସେତେବେଳକୁ ବରଫ ପରି ଶୀତଳ ଦଶରଥ ଙ୍କ ସାନପୁଅ ନିଆଁପରି ତାତି ଯାଇଥିଲା । ନିଜ ସ୍ତ୍ରୀକୁ ଆଉ କ୍ଷମାକରିବା ମାନସିକତାରେ ସେ ନଥିଲା । ସମସ୍ତଙ୍କ ଆଗରେ ସେ ସ୍ତ୍ରୀ ଉପରକୁ ହାତ ଉଠେଇଦେଲା ଓ କେସ୍ ପୁଣି ଜଟିଳ ହେଲା । ଆଉ ସେ ଦୁଇ ଘରର ସମ୍ପର୍କ ଯୋଡିହେଲା ନାହିଁ ।

ନକୁଳ ନାୟକ ର ଘର ଆଗଦେଇ କେହିଜଣେ ଧାଇଁଧାଇଁ ଗଲା । ବୋଧହୁଏ କାହାର ଗୋରୁ ପଘା ଛିଣ୍ଡେଇ ପଡିଶା ବାଡିରେ ପଶିଥିଲା କି କ'ଣ ! ନକୁଳ ନାୟକ ପାଟକଲା, "ଆରେ କାହା ଗୋରୁ ପଶିଲା ?"

ରାସ୍ତା ଉପରେ କେହି ନଥିଲେ । କେବଳ କିଛି ଲୋକ ଗୋପାଳ ମାଷ୍ଟ୍ର ଘରମୁହାଁ ଧାଇଁଥିଲେ । ଛାଇନେଉଟା ବେଳ । ଆଉ ଟିକକରେ ପିଲାମାନେ ସ୍କୁଲରୁ ଫେରିବେ, ଗୋରୁ ଫେରିବେ ପଡିଆରୁ । ଖରାଦିନ ବୋଲି ଚାରିଆଡ ତତଲା ଅନୁଭବ ହେଉଛି । ଗୋଟାଏ ଡାମରା କାଉ ନକୁଳ ନାୟକ ଅଗଣାରେ ଥିବା ସଜନାଗଛ ଡାଳରେ ବସି କା କା ରାବି ଚାଲିଥାଏ ।

ନକୁଳ ନାୟକ ଆଉ ଖିଲେ ପାନ କଳରେ ଗୁଞ୍ଜି ପିଣ୍ଡା ଉପରୁ ଓହ୍ଲାଇଲା । ଅଟାଂଟି କାଲିଠୁଁ ଧରିଛି । ଚାଲିବା ବେଳକୁ କଷ୍ଟ ହେଉଛି । ତା' ବାପାର ଏହି ବେମାର ଥିଲା । ଆଜି କାହିଁକି ରହିରହି ତା' ବାପା କଥା ମନେ ପଡୁଥିଲା କେଜାଣି ! ବାପା ନା ଚୋପା - ନକୁଳ ଭାବିଲା । ସେଇ ସକାଳୁ ବ୍ରଜକିଶୋର ବି କୁଆଡେ ଯାଇଛି, ଫେରିନାହିଁ । ମାଇଚିଆଟା, କୁଆଡେ ତାଳମାଙ୍କୁଡି ଖେଳୁଥିବ, ନହେଲେ ବୋହୂଚୋରି ।

ଗୋପାଳ ମାଷ୍ଟରର ଦୁର୍ଦ୍ଦଶା କଥା ଆଉ ଥରେ ନକୁଳର ମନେପଡିଲା । ଚମଛଡା କାଳିଆ ଓଠ ଉପରେ ଜିଭଟା ବୁଲେଇ ଆଣିଲା ସେ, କଳାନାଗ ଜିଭ ବୁଲେଇବା ପରି । ଏଥର ଗୋପାଳ କୁଆଡେ ଯିବ ? ବୁଲିବୁଲି ଆସି ତା' ଗୋଡତଳେ ପଡିବ । ତାକୁ

ତାରିଲେ ତାରିବ ନକୁଳ ନାୟକ, ମାରିଲେ ମାରିବ ନକୁଳ ନାୟକ । ଏ କେସ୍‌ରୁ ତାକୁ ଆଉ କେହି ମୁକୁଳେଇ ପାରିବେ ନାହିଁ । ନକୁଳ ନାୟକ ଆହୁରି ସାକ୍ଷୀ ପ୍ରମାଣ ଯୋଗାଡ କରେଇବା ବନ୍ଦୋବସ୍ତ ବି କରିଛି । ଓକିଲ ମାଗୁଣି ବାବୁ କହିଛନ୍ତି, "ନକୁଳ, ଏକ୍ ସାକ୍ଷୀ ସାକ୍ଷୀ ନୁହେଁ, ଏକ୍ ଆଖି ଆଖି ନୁହେଁ ।"

ଆଉ ଟିକକରେ ଛାଇ ଲେଉଟି ଆସିବ । ଖରାଦିନ ଉପରଓଳି, ମାଟିରୁ ଗରମ ବାମ୍ପ ବାହାରୁଛି । ନକୁଳ ନାୟକ ର ଏ ସମୟଟା ପୋଖରୀ ପାଣି ଯିବା ସମୟ । ଘର ପଛପଟେ ସୁନାନଈ । ସେ ଓଠରେ ଖଣ୍ଡେ ବିଡି ଲଗେଇଲା ଓ ଭିତର ଘରମୁହାଁ ଡାକ ପକେଇଲା, "ମୋ ଲୋଟାଟା ଦେଲୁ, ମୁଁ ପୋଖରୀ ପାଣି ଆସେ ।"

ସେତିକିବେଳେ ଗୋଟେ ମଟର ସାଇକେଲ୍ ତା' ଘର ସାମ୍ନାରେ ଅଟକିଲା । ସାଙ୍ଗରେ ମଧୁପୁର ଫାଣ୍ଡିର ଏସ୍‌ଆଇ ଓ ଜଣେ କନେଷ୍ଟବଳ । ଏମାନେ ନକୁଳ ନାୟକ ର ଖୁବ୍ ପରିଚିତ ଲୋକ । ସବୁଦିନେ ତାଙ୍କ ସାଙ୍ଗରେ ଉଠାବସା, ଚା' ଓ ପାନ ଦିଆନିଆ । ସେମାନଙ୍କୁ ଦେଖି କୁଣିଆ ଦେଖିଲା ପରି ନକୁଳ ନାୟକ ର ମୁହଁ ଉଜ୍ଜ୍ୱଳି ଉଠିଲା । ସେ ଡାକ ପକେଇଲା, "ଲୋଟା ଥାଉ, ଆଗେ ଚା' ତିନି କପ୍ ପଠାଅ ।" ତା'ପରେ ସବ୍‌ଇନ୍‌ସ୍ପେକ୍ଟର ସ୍ୱାଇଁ ବାବୁଙ୍କୁ ନମସ୍କାର କରି ସେ କହିଲା, "ଏତେ କଷ୍ଟ କଲ କାହିଁକି ? ମୋତେ ଖବର ଦେଇଥିଲେ ମୁଁ ପହଚିଂନଥାନ୍ତି !" ତା'ପରେ ସ୍ୱର ଟିକିଏ ନରମେଇ ପଚାରିଲା, "ଆଉ କିଛି ପାର୍ଟି ପାଇଗଲ କି ? ଚାଲୁନ, ମୁଁ ସାକ୍ଷୀ ପଡିଯିବି ।"

ସ୍ୱାଇଁବାବୁ ଉତ୍ସାହିତ ହେଲାନାହିଁ । କେବଳ ଗମ୍ଭୀର ସ୍ୱରରେ ପଚାରିଲା, "ତୁମେ ଏ କ'ଣ କଲ ନକୁଳ ?"

: ଆ, କ'ଣ କଲି ? କାହା କଥା ପଚାରୁଛ - ନକୁଳ ନାୟକ ଆଶ୍ଚର୍ଯ୍ୟ ସ୍ୱରରେ ପଚାରିଲା ।

: ମୁଁ ତମ ନାଁରେ ଗିରଫ ଓ୍ୱାରେଟଂ ଧରିକି ଆସିଛି । ଆଇପିସିର ଶହେ କୋଡିଏ (ଖ) ଧାରା ତୁମ ନାଁରେ ଲାଗିଛି । ଜାମା ପିନ୍ଧିକି ଆସ । ଥାନାକୁ ଯିବ ।

ତାଳଗଛ ଉପରୁ ଖସିପଡିଲା ନକୁଳ ନାୟକ । ଛାନିଆରେ ପୋଖରୀ ପାଣି ଯିବା ବନ୍ଦ ହୋଇଗଲା । ଜୀବନରେ କେତେ ଶହ ଲୋକଙ୍କୁ ସିଏ ଥାନା, କଚେରି ଓ ଜେଲ୍‌କୁ ପଠେଇଥିବ । କିନ୍ତୁ କୌଣସି ଦିନ ନିଜେ ଗିରଫ ହୋଇନାହିଁ । ଆଜି ଇଏ କି କଥା ଶୁଣୁଛି ? ପୁଣି ଦଫା ୧୨୦ (ଖ) ଅର୍ଥ ଦେଶଦ୍ରୋହ ଅପରାଧ । ସେ ତା' କାନ ଯୋଡିକୁ ବିଶ୍ୱାସ କରିପାରିଲା ନାହିଁ । ଆବାକାବା ହୋଇ ସେ ଦି' ଜଣଙ୍କୁ ଚାହିଁଲା ଓ ବିକଳ ହୋଇପଡିଲା । କହିଲା, "ଇଏ ତ ସମ୍ପୂର୍ଣ୍ଣ ମିଛ କଥା । କେଉଁ ହାରାମଜାଦା ମୋ ନାଁରେ ଏ ମିଛ କେସ୍ ଦେଲା ? ସେ ଗୋପାଳ ମାଷ୍ଟରଟା କିଛି ଲୋକଙ୍କୁ ଜୁଟେଇ ମୋ ନାଁରେ ଅଭିଯୋଗ ଦେଇଥିବ । ତମେମାନେ ତ ମୋତେ ଜାଣିଛ ।"

ସ୍ୱାଇଁବାବୁର ଡେରି ହୋଇ ଯାଉଥିଲା । ସେ କହିଲା, "ସାକ୍ଷୀ ପ୍ରମାଣ ମିଳିଗଲେ ମିଛ ଅଭିଯୋଗ ସୁଦ୍ଧା ସତ ହୁଏ ବୋଲି କ'ଣ ତୁମକୁ ବୁଝେଇବାକୁ ପଡିବ ? ଚାଲ, ଡେରି ହେଉଛି । ଇନ୍‌ସ୍ପେକ୍ଟରଙ୍କ ନିର୍ଦ୍ଦେଶ, ତୁମକୁ ସାଙ୍ଗରେ ଧରିକି ଯିବି ।" ତା'ପରେ ସେ କନେଷ୍ଟବଳକୁ ନିର୍ଦ୍ଦେଶ ଦେଲେ, "କ'ଣ କରିବା, ନକୁଳ ଆମର ପରିଚିତ ଲୋକ । ମାତ୍ର ଏ ଦେଶଦ୍ରୋହ ଅପରାଧ । ପକା, ହାତକଡା ପକା ।"

ନକୁଳ ନାୟକ ର ମୁଣ୍ଡ ଘୂରିଗଲା । ପାଟି ଆଫାଆଫା ହୋଇଗଲା । ଆଖିରୁ ଜୁଳୁଜୁଳିଆ ପୋକ ବାହାରିପଡିଲା । ସିଏ ମଟର ସାଇକେଲ୍ ପଛରେ ବସିବା ଆଗରୁ ପଚାରିଲା, "କିନ୍ତୁ ମୋ ନାଁରେ ଏଫ୍‌ଆଇଆର୍ କିଏ ଦେଲା ସ୍ୱାଇଁବାବୁ ?" ତା' ସ୍ୱର ଭାରି କରୁଣ ଶୁଭୁଥିଲା ।

: ବ୍ରଜକିଶୋର ନାୟକ ଓ ଅନ୍ୟମାନେ । ତମେ ଚାନ୍ଦିପୁର କ୍ଷେପଣାସ୍ତ୍ର ଘାଟିର ନକ୍ସା ଯୋଗାଡକରି କେନ୍ଦ୍ରାପଡା ବାଲାଂଦେଶୀଙ୍କ ଜରିଆରେ ବିଦେଶକୁ ପଠଉଥିଲେ । ଆଉ କିଏ ହୋଇଥିଲେ ଅବା ଆମେ ଅବିଶ୍ୱାସ କରିଥାଆନ୍ତୁ । ତୁମ ନିଜ ପୁଅ ଯେତେବେଳେ ଅଭିଯୋଗ ଦେଇଛି ସେତେବେଳେ ଅବିଶ୍ୱାସ କରିବାର କ'ଣ ଅଛି ? ତୁମେ ଏ କାମରେ କାହିଁକି ମୁଣ୍ଡ ପୂରଉଥିଲ ?"

ନକୁଳ ନାୟକ ର ମୁଣ୍ଡ ଘୂରିଗଲା । ଯେଉଁ ପୁଅକୁ ବାମନ, ଗେଟମା, ଅପଦାର୍ଥ କହି ସେ କୋଉ ପାସଙ୍ଗରେ ପକଉନଥିଲା ସେଇ ପୁଅ ଏତେବଡ ସାହସ କରିପାରିଲା କେମିତି ?

ରାସ୍ତା ଦି' କଡେ ଗାଁ ଗୋଟାକର ଲୋକ । ଏ ଘଟଣା ସେମାନଙ୍କ ପାଇଁ ଯେମିତି ରାତିରେ ସୂର୍ଯ୍ୟ ଉଇଁବା ଭଳି ଆଚମ୍ବିତ କଥା । ନକୁଳ ନାୟକ ହାତରେ ହାତକଡି ! ସମସ୍ତେ ପରସ୍ପରର ମୁହଁକୁ ଚାହିଁ କ'ଣ କ'ଣ କହୁଥାଆନ୍ତି । ନକୁଳ କୁ ଲାଗୁଥାଏ, ତାଙ୍କ ଭିତରୁ ଜଣେ କହୁଛି, କଟାଂକୁ ଏମିତି କଟାଂରେ କଢାଯାଏ ।

ନୂଆ ପୋଖରୀ ଆଡିରେ ଚାରି ପାଚଂଜଣ ଲୋକ ଗାତଟେ ଖୋଳୁଥାଆନ୍ତି । ସେଇଠୁ ଟିକିଏ ଛାଡି ଗୋପାଳ ମାଷ୍ଟରର ଘର । ସେପଟୁ ଗୋଟେ ଚାପା କାନ୍ଦଣା ଓ ତା' ସାଙ୍ଗରେ ଗୋଟେ ବୁଢୀର ବାହୁନା ଶୁଭୁଥାଏ । ନକୁଳ ଜାଣିପାରିଲା, ଗୋପାଳ ର ମଲା ପିଲାଟାକୁ ପୋତିବା ଲାଗି ସେଇମାନେ ଗାତ ଖୋଳୁଥିଲେ ।

ତା'ର ଏବେ ଆନନ୍ଦରେ ଡେଇଁବା କଥା । ହାତଟେକି ନାଚିବା କଥା । କିନ୍ତୁ ତା' ହାତରେ ବେଡି ପଡିଥିଲା । ସେ ବିଷ ହରେଇଥିବା ନାଗଟିଏ ପରି କେବଳ ଭିତରେ ଭିତରେ କୁହୁଳୁଥିଲା ।

# ଓଡିଆ ସାହିତ୍ୟ ର ସାହିତ୍ୟିକ

## ପ୍ରଫେସର ସନ୍ତୋଷ କୁମାର ତ୍ରିପାଠୀ

ସନ୍ତୋଷ କୁମାର ତ୍ରିପାଠୀ -

ଓଡିଆ ସାହିତ୍ୟରେ ଜଣେ ବାଗ୍ମୀ ଅଧ୍ୟାପକ ଯେପରି ଠିକ୍ ସେହିପରି ଜଣେ ଜ୍ଞାନ ଜିଜ୍ଞାଷୁ ଗବେଷକ ଓ ସାହିତ୍ୟ ସନ୍ଧିଚ୍ଛ ସାହିତ୍ୟିକ । ସମ୍ପ୍ରତି ଓଡିଶାର ପ୍ରାଚୀନତମ ବିଶ୍ୱବିଦ୍ୟାଳୟ - ଉତ୍କଳ ବିଶ୍ୱବିଦ୍ୟାଳୟର ଓଡିଆ ଭାଷା ଓ ସାହିତ୍ୟ ବିଭାଗର ବିଭାଗୀୟ ମୁଖ୍ୟ ପ୍ରଫେସର ଭାବରେ କାର୍ଯ୍ୟରତ ।

ଜନ୍ମ - ପିରିଣା, ନାଉଗାଁ, ଜଗତସିଂହପୁର - ସନ୍ତୋଷ ଙ୍କ ଜନ୍ମ - ୨୪/୦୫/୧୯୬୨ ମସିହାରେ, ବାପା - ନବଘନ ତ୍ରିପାଠୀ ଓ ମା' - ପାର୍ବତୀ ଦେବୀ । ପିଲାଟି ଦିନରୁ ସନ୍ତୋଷ ଥିଲେ ଜଣେ ମେଧାବୀ ଛାତ୍ର । ମାତୃଭାଷା ପ୍ରତି ତାଙ୍କର ଦୁର୍ବଳତା ହାଇସ୍କୁଲ୍ ସ୍ତରରେ ପାଠପଢିବା ସମୟରେ ହୋଇଥିଲା । ପରବର୍ତୀ ସମୟରେ ବି.ଏ. (ଓଡିଆ) ସମ୍ମାନ ସହିତ ଓଡିଆ ସାହିତ୍ୟରେ ଏମ୍.ଏ. ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ପିଏଚ୍.ଡି. ଡିଗ୍ରୀ ମଧ୍ୟ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଉପାଧିପ୍ରାପ୍ତ ।

ଶିକ୍ଷା ପରେପରେ କର୍ମମୟ ଜୀବନରେ ସନ୍ତୋଷ ତ୍ରିପାଠୀ ଜଣେ ଓଡିଆ ଭାଷା ଓ ସାହିତ୍ୟ ର ଅଧ୍ୟାପକ ଭାବରେ କାର୍ଯ୍ୟାରମ୍ଭ କରିଲେ । ଓଡିଶାର ବିଭିନ୍ନ କଲେଜରେ ଅଧ୍ୟାପକ ଭାବରେ ସେ ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ଖୁବ୍ ପ୍ରଶଂସିତ ଥିଲେ । ମାଣିକେଶ୍ୱର କଲେଜ, ସୁନ୍ଦରଗଡରୁ କର୍ମମୟ ଜୀବନ ଆରମ୍ଭ ।

ଓଡିଆ ଅଣକାହାଣୀ ପ୍ରଧାନ ଗଦ୍ୟଧାରାରେ ପ୍ରବନ୍ଧ, ସମାଲୋଚନା, ସ୍ତମ୍ଭଲେଖା, ଆଲେଖ୍ୟଧର୍ମୀ ଗଦ୍ୟ ରଚନା ଓ ବାଖ୍ୟାତ୍ମକ ବିମର୍ଶକୁ ନେଇ ପ୍ରଫେସର ସନ୍ତୋଷ ତ୍ରିପାଠୀ ଜଣେ ନଯବିଷ୍ଣୁ ଗଦ୍ୟକାର ଭାବରେ ବିଭାବନଶୀଳ ସ୍ୱକୀୟତା ପ୍ରଦର୍ଶନ କରିଅଛନ୍ତି ।

କାବ୍ୟିକ ଭାଷା ଓ ବ୍ୟବହାରିକ ଭାଷା, ଆଡମ୍ବରିୟ ଭାଷା, କଥନ ଧର୍ମିତା, ବ୍ୟକ୍ତ ବ୍ୟଧର୍ମିତା, ଦୃଷ୍ଟାନ୍ତଶୀଳତା ଓ ଗ୍ରାମ୍ୟ ସାରଲ୍ୟକୁ ନେଇ ନିଜ ନିମିତ ଏକ ସ୍ୱତନ୍ତ୍ର ପ୍ରକରଣାତ୍ମକ ଚାତୁରୀ ସେ ସମାଲୋଚନା ଓ ପ୍ରବନ୍ଧ କ୍ଷେତ୍ରରେ ଗ୍ରହଣ କରିଅଛନ୍ତି ।

ଓଡିଆ ସାହିତ୍ୟ ସମ୍ବନ୍ଧରେ ନବନ୍ୟାୟିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇ ଆସିଥିବା ଗବେଷକ ଓ ସମାଲୋଚକ ଡକ୍ଟର ସନ୍ତୋଷ ତ୍ରିପାଠୀ ଙ୍କ ଓଡିଆ ଉପନ୍ୟାସ ସମ୍ପର୍କରେ ବିମର୍ଶ ବିଗ୍ରହ । ତୁଲ୍ୟବୋଧ ବନାମ ସମତୁଲତା ନିର୍ମିତ ନିର୍ମାଣ, ତୁଲ୍ୟକକ୍ଷ, ତୁଲ୍ୟକଷଟି ଓଡିଆ କବିତା ସହିତ ସଂଯୋଗ ଅନୁବିଧି ଓ ଓଡିଆ ବାକ୍ୟରଣ କଳନା ଇତ୍ୟାଦି ପୁସ୍ତକ ବେଶ୍ ପାଠକାଦୃତ ଓ ଉପାଦେୟ ହୋଇପାରିଅଛି ।

ପ୍ରଫେସର ତ୍ରିପାଠୀ ଙ୍କ ପୁସ୍ତକ ଏଥିପାଇଁ ବହୁଚର୍ଚ୍ଚିତ ଓ ବହୁଆଦୃତ ।

ପୁସ୍ତକଗୁଡିକରେ ଥିବା ପ୍ରସଙ୍ଗ ତଥ୍ୟନିଷ୍ଠ, ତର୍କନିଷ୍ଠ, ଯୁକ୍ତିନିଷ୍ଠ ଓ ପ୍ରାମାଣିକ ।

ପୁସ୍ତକଗୁଡିକରେ ପରିବେଷ୍ଟିତ ବିଷୟ ନୂତନ ଓ ପୂର୍ବରୁ ତାଙ୍କ ସମଦର୍ଶନର ପାଠକୀୟ ବିଚାରପ୍ରାୟ ହୋଇନଥାଏ ।

ତାଙ୍କ ଆଲୋଚନାର ସଂରଚନାତ୍ମକ ବିଧାନ ସ୍ୱତନ୍ତ୍ର ଓ ନିଆରା ।

ପର୍ଯ୍ୟାଲୋଚନା ଓ ଆଲୋଚନା ଦିଗରୁ ସେ ବେଶ୍ ଅର୍ନ୍ତମୁଖୀ ।

ଉଭୟ ଭାରତୀୟ ଓ ୟୁରୋପୀୟ ସାହିତ୍ୟ ତତ୍ୱପ୍ରତି ସଚେତନ ରହିଥାନ୍ତି ।

ଯାହା ପୂର୍ବରୁ ଅନାଲୋଚିତ ଓ ବର୍ତମାନ ସେ ସବୁର ଆଲୋଚନା ସମୂହ ଉପଯୋଗିତା ପାଇଁ ଉପାଦେୟ ସେହିସବୁ ପ୍ରସଙ୍ଗକୁ ନେଇ ତାଙ୍କ ଗଦ୍ୟର ରଚନାଗୁଡିକ -

ତଥ୍ୟନିଧି ସମାଲୋଚନା ପୁସ୍ତକ - "ଆଧୁନିକ ଓଡିଆ ସାହିତ୍ୟ ର ବିକାଶଧାରା" - ଗଦ୍ୟ, ପଦ୍ୟ, ଉପନ୍ୟାସ, କାହାଣୀ, ନାଟକ, କବିତା, ଜୀବନୀଚରିତ, ଭ୍ରମଣ ବୃତାନ୍ତ, ସାହିତ୍ୟ ପତ୍ରିକା, ଏକାଙ୍କିକା, ଅନୁବାଦ ସାହିତ୍ୟ, ସମାଲୋଚନା ଓ ପ୍ରବନ୍ଧ ସାହିତ୍ୟକୁ ନେଇ ରାଧାନାଥ, ଫକୀରମୋହନ ଙ୍କ ସମୟରୁ ୨୦୧୦ ମସିହା ପର୍ଯ୍ୟନ୍ତ ସମୟ ଅବଧିର ଆଧୁନିକ ଓଡିଆ ସାହିତ୍ୟ କିପରି ଓ କି ପ୍ରକାର ର ଭିତିଭୂମି ଉପରେ କ୍ରମବିକାଶ ଲାଭକରିଛି ସେହି ବିଷୟରେ ନବରୁଚିରେ ଧାରଣା ଦେବାରେ ସଫଳହେବ ।

## ପ୍ରଫେସର ସନ୍ତୋଷ ତ୍ରିପାଠୀ ଙ୍କ

## ସାରସ୍ୱତ କୃତି

ଓଡିଆ ସାହିତ୍ୟ ର ଜଣେ ସ୍ୱଷ୍ଟିତ ନାମ - ପ୍ରଫେସର ସନ୍ତୋଷ ତ୍ରିପାଠୀ । ବିଶିଷ୍ଟ ସମାଲୋଚକ ଭାବରେ ସୁପ୍ରତିଷ୍ଠିତ ।

୭୩୦ରୁ ଅଧିକ ସମାଲୋଚନା ଓ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶିତ । ୮୨ ଗୋଟି ସ୍ତମ୍ଭିକ ଗଦ୍ୟଲେଖା ପ୍ରକାଶିତ ।

୪୧ ଗୋଟି ପୁସ୍ତକ ପ୍ରକାଶିତ । ସେଥିମଧ୍ୟରୁ କେତେଗୋଟି -

୧. ଓଡିଆ ବ୍ୟାକରଣ କଳନା - ୨୦୦୬

୨. ଓଡିଆ ଉପନ୍ୟାସ ସମ୍ପର୍କରେ - ୧୯୯୩

୩. ଆଧୁନିକ ଓଡିଆ ସାହିତ୍ୟ ର ବିକାଶଧାରା - ୧୯୯୩

୪. ରୁଢି ଓ ଅଳଙ୍କାର - ୧୯୯୪

୫. ଓଡିଆ ବାକ୍ୟ ପ୍ରୟୋଗ ବିଚାର - ୧୯୯୪

୬. ସଂଯୋଗ ଅନୁବିଧି - ୨୦୦୭
୭. ବିଚିତ୍ର କବିତ୍ୱ - ୨୦୦୮
୮. ରୀତିକାବ୍ୟ କଳନା - ୨୦୦୨
୯. ବିଭାବନ ବୈଚିତ୍ର୍ୟ
୧୦. ତୁଲ୍ୟଦେହୀ
୧୧. ତୁଲ୍ୟକକ୍ଷ
୧୨. ତୁଲ୍ୟବୋଧ ବନାମ ସମାନ୍ତରାଳ
୧୩. ଓଡିଆ କବିତା ସହିତ
୧୪. ବିମର୍ଶ ବିଗ୍ରହ
୧୫. ଓଡିଆ ପ୍ରାୟୋଗିକ ଭାଷା ଓ ବ୍ୟାକରଣ
୧୬. ପ୍ରତ୍ୟୟ ପ୍ରତୀତି

ବାସ୍ତବିକ୍ ସମାଲୋଚକ ପ୍ରଫେସର ସନ୍ତୋଷ ତ୍ରିପାଠୀ ଙ୍କ ଅନେକ ପୁସ୍ତକ ସମାଲୋଚନା ଓ ଓଡିଆ ବ୍ୟାକରଣ ଉପରେ ପର୍ଯ୍ୟବେଶିତ । ଓଡିଆ ଭାଷାକୁ ସମୃଦ୍ଧ କରିବା ଦିଗରେ ତାଙ୍କର ବ୍ୟାକରଣ ପୁସ୍ତକଗୁଡିକ କାଳଜୟୀ ସଦୃଶ ।

ପ୍ରଫେସର ସନ୍ତୋଷ ତ୍ରିପାଠୀ ଙ୍କ ତୁଳନାତ୍ମକ ସମାଲୋଚନା - ୟୁରୋପୀୟ ସାହିତ୍ୟ ଓ ସମୀକ୍ଷା ତତ୍ୱର ସୌହାଦ୍ର୍ୟରେ -

ସକଳ ପ୍ରକାର ର ଆହାରଣ, ଅନୁକରଣ, ଅନୁସରଣ ଓ ସେବିତା ଭାବକରଣ ସତ୍ୱେ କବି ବ୍ୟାପାର ସମଦୃଶ୍ୟକ, ସମବେଦନାଶୀଳ, ସସମ୍ବେଦ୍ୟ ଏବଂ ବିଘଟନାତ୍ମକ ଗୁଣରେ ନୂଆ ଉପାଦାନ ନିର୍ମାଣକରେ । ଏ ଦିଗରୁ ତୁଳନାତ୍ମକ ସାହିତ୍ୟ ସମାଲୋଚନା ତାତ୍ୱିକ ଉଦ୍ଦେଶ୍ୟଟି ହେଉଛି - ଏକାଧିକ ସାହିତ୍ୟ ର ଅଧ୍ୟୟନ କରି ସେ ସବୁର ସାଧାରଣ ଉପାଦାନଗୁଡିକୁ ସମତୁଳିତ କରି ଏକାଠି କରିବା ଏବଂ ମାନବୀୟ ଐକ୍ୟକୁ ପ୍ରସାରିତ କରାଇବାରେ ସବୁଗୁଡିକର ଦାୟବଧତାକୁ ସ୍ୱୀକାର କରିବା । ତେଣୁ ଭାବ, କାବ୍ୟ ଭାଷା, ସାହିତ୍ୟ ର ରସନୋଧାତ୍ମକ ଆବେଦନ, ସାହିତ୍ୟ ର ଗୁଣ, ସାହିତ୍ୟ ର ସତ୍ୟ, ସାହିତ୍ୟ ର ପ୍ରଜାତିକ ଭେଦ, ସାହିତ୍ୟ ର ଶୈଳୀ, ପ୍ରକରଣ ଧର୍ମ ଇତ୍ୟାଦି ଦିଗରୁ ଭାରତୀୟ କାବ୍ୟଶାସ୍ତ୍ରୀୟ ବିଚାରଧାରାକୁ ପାଶ୍ଚାତ୍ୟ ସମୀକ୍ଷା ତତ୍ୱର ସାଂଗଠନିକ ସମତାର ତୁଲ୍ୟଦ୍ରୋହୀ ବିଚାର ର ଆବଶ୍ୟକତା ରହିଅଛି । ଏହା ହିଁ ସମାଲୋଚନାର ଉଦ୍ଦେଶ୍ୟ ।

## ସମ୍ମାନ ଓ ପୁରସ୍କାର -

ପ୍ରଫେସର ସନ୍ତୋଷ ତ୍ରିପାଠୀ ନିଜର ସାରସ୍ୱତ ସୃଷ୍ଟିପାଇଁ ଅନେକ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନୀତ । ଅନେକ ସାରସ୍ୱତ ଅନୁଷ୍ଠାନ ପ୍ରଫେସର ତ୍ରିପାଠୀ ଙ୍କୁ ସମ୍ମାନୀତ କରିଅଛନ୍ତି । ଏ ପୁରସ୍କାର ତାଙ୍କ ସାହିତ୍ୟ ସାଧନାର ବିକାଶରେ ସହାୟକ ତଥା ପ୍ରେରଣାଦାୟୀ ହୋଇପାରିଅଛି । ସେ ସମ୍ପ୍ରତି ଉତ୍କଳ ବିଶ୍ୱବିଦ୍ୟାଳୟର ଓଡିଆ ଭାଷା ଓ ସାହିତ୍ୟ ବିଭାଗ - ପ୍ରଫେସର ।

## ପ୍ରଫେସର ସନ୍ତୋଷ ତ୍ରିପାଠୀ ଙ୍କ
## ସାରସ୍ୱତ ସୃଷ୍ଟିର ଏକ ଝଲକ

ପ୍ରଫେସର ସନ୍ତୋଷ ତ୍ରିପାଠୀଙ୍କର ପ୍ରବନ୍ଧ ଓ ସମାଲୋଚନା ପୁସ୍ତକ - "ଓଡିଆ କବିତା ସହିତ ଓ ସମ୍ପର୍କରେ" ରୁ ଏକ ପ୍ରବନ୍ଧ - "ପରିଶିଷ୍ଟ ବଚନ" -

## ସୂଚନା -

ଜୀବନର ନାନା ଅବକାଶରେ ମୋ ପାଠକସତା ଓଡିଆ କବିତାର ଅନାହତ ସ୍ୱରୂପକୁ ନେଇ କେତେକ ବନ୍ଧୁତ୍ୱ ସୁଲଭ ପ୍ରଶ୍ନର ସାମ୍ନା କରିଥିଲା । କେତୋଟି ପ୍ରଶ୍ନର ଉତର ନିଷ୍କପଟ ଭାବରେ ଦେବାକୁ ମୋ ସଚେତନ ସତା ପାଠକସତାକୁ ପ୍ରବୃତ କରାଇଥିଲା । ନାନାମତେ ନାନାରୂପେ ଉପକାର ସାଧନକରି ଆସିଥିବା ଚିତ୍ରଳ ପ୍ରବୋଧିକା କବିତାଙ୍କ ସମ୍ପର୍କରେ ମୋର ପଞ୍ଚୁଆଣ ଚିତବୃତିର କେତୋଟି ଧାରଣାକୁ ଏଠାରେ ବଳକାନୁଭୂତି ଭାବରେ ଉତ୍‌ଥାପନ କରୁଛି - ଯେଉଁଗୁଡିକ ମୋତେ ଓଡିଆ କବିତା ସହିତ ଚାଲିବାକୁ ଉସ୍‌କାଇଛି -

କବିତାର ସ୍ୱତନ୍ତତା ହିଁ ସେ କେବଳ କବିତା । ପାଠକର କବିତା । ପଠନ ଯୋଗ୍ୟ କବିତା । କବିତାକୁ କବିତା ଛାୟାରେ ଯଦି ସୁତୁରେଇ ଦେଖି ନପାରୁଛ ତେବେ ଆଉ କ'ଣ କ'ଣ ପଢିବା ହୁଅନ୍ତୁ । ମାତ୍ର କବିତା, ଅଳକବିତା, କଚାଂ କବିତା, ବାଃ ଦୁର୍ଲ୍ଲଭ କବିତା, ମୁଗ୍ଧକର କବିତା ଏମିତି ମାଖୁନା ବିଚାରଦେଇ କବିତା ପରମେଶ୍ୱରୀଙ୍କର ମହତ ହାନି କରନି । କବିତା କବି ହାତରେ ବାରମ୍ୱାର ତା'ର ପୂର୍ବସତାକୁ ବିଭାସନ କରୁଥାଏ । ପୂର୍ବସୂରୀର ଭାବନାକୁ ପରସୂରୀ ଯେତେବେଳେ ସ୍ୱତଃ ଅନୁଭବ କରେ ଏବଂ ନିଜ ସମକାଳର ପ୍ରତ୍ୟୟକୁ ମଖାଇ ନବକାରକ କରିବସେ ସେତେବେଳେ ଚିତ୍ରଳା କବିତା ତା' ପୂର୍ବସତାକୁ ଥରକୁଥର ପ୍ରଶ୍ନକରେ, ତା' ସହ ଖେଳେ, ତାକୁ ବଦଳାଏ ଓ ବିରୋଧଭାଷିକ ରମଣୀୟ ନବାର୍ଥକାରକ ପ୍ରବୋଢାର ପ୍ରତିମା ନିଜେ ହୋଇଯାଏ । ବୈପରୀତ ଅର୍ଥ ନିଷ୍ପତିର କ୍ରୀଡା ପ୍ରଦର୍ଶନ କରି ପୁରୁଣାକୁ ବିନିର୍ମାଣ କରେ । କବିତା ମାଧମରେ ହିଁ ପୁରାତନ ପୂରାକଳ୍ପ-ମିଥିର ବିଘଟନ ହୁଏ । ଛନ୍ଦର ନବୀକରଣ ଘଟି ତହିଁରେ ନବାତ୍ମାର ସଚାଂର ଘଟେ । ସାଂସ୍କୃତିକ ବାସନାର ନବୟନୀ କରଣହୁଏ । ଭାଷାର ଶାବ୍ଦିକ ବ୍ୟାପାର ଓ ଶୃଙ୍ଖଳାର ବିଭାବନ ଘଟି

ସାହିତ୍ୟ ନୂତନ ବର୍ଣ୍ଣଶାଳିନୀ ହୋଇଉଠେ । ଅଦୃଶ୍ୟକୁ ଦୃଶ୍ୟ କରିଥିବା ଅତି କଳ୍ପନାର କବି ସାରୋଳ, ଲୋକ ସଂକଳ୍ପକୁ ନେଇ ଭାବର ପ୍ରକୃଷ୍ଟ ପ୍ରବନ୍ଧନକର କବି ଜଗନ୍ନାଥ, ନିର୍ମଳ କବିତ୍ୱର କ୍ରୀଡକ ଦୀନକୃଷ୍ଣ, ବିଚିତ୍ର କବିତ୍ୱମାର୍ଗର ଶବ୍ଦରଥୀ ଉପେନ୍ଦ୍ର, ମିତ୍ରକବିତ୍ୱର ପ୍ରତିଭୂ ସର୍ଜନଶୀଳ କବି ଅଭିମନ୍ୟୁ ଙ୍କ ଠାରୁ ରୂପପ୍ରାଣ ରାଧାନାଥ, ଐତିହ୍ୟପ୍ରାଣ ମଧୁସୂଦନ, ମାନବବାଦୀ ଗୋପବନ୍ଧୁ, ପ୍ରଣଯାଗ ରୂପକାର ମାନସିଂହ, ମିଥିକ୍ ପ୍ରାଣ ସୀତାକାନ୍ତ, ନବଜୀବନୋନ୍ମୁଖୀ ରାଜେନ୍ଦ୍ର, ମଧୁଦର୍ଶୀ ସୌଭାଗ୍ୟ, କାନ୍ତଦର୍ଶୀ ରମାକାନ୍ତ ପର୍ଯ୍ୟନ୍ତ ଅନେକ ଙ୍କ ସର୍ଜନଶୀଳତାର ସ୍ୱର୍ଶରେ ଓଡିଆ କବିତା ନବସଂସ୍କାରୋଜିତ ଶାସ୍ତ୍ରୀୟତା ପାଇଛି । ଏମାନଙ୍କୁ ପଢିବାବେଳେ ମନେହୁଏ - କବିତା ଯୁକ୍ତିରେ ନଥାଏ, ଲୋଡାଣ ଓ ଯୋଡାଣରେ ମହିମାମୟ ହୋଇଥାଏ । ମୋ ଦୀକ୍ଷିତ ପରିଶୁଦ୍ଧ ଓ ପ୍ରଲୁବ୍ଧ ପାଠକୀୟତା ବୁଝିଛି - କବିତା ପାଇଁ କବିତା ଓ ପାଠକାନୁସାରେ କବିତା ଚମକେ ଓ କବିତା ଅନୁସାରେ ପାଠତ ଜୀବନ ବିଭାବିତ କଳ୍ପନାରେ ଜୀଏ ।

ପ୍ରାୟତଃ ୮୦୦ ବିଭିନ୍ନ ସ୍ତରର ପାଠକ ଙ୍କୁ ନେଇ ମୁଁ ୧୯୦୦ ରୁ ୨୦୦୦ ମସିହା ମଧ୍ୟରେ କେଉଁ କବିତାଟି ଓଡିଶାରେ ଓଡିଆ ଭାବଲଗ୍ନା ପାଠକର ପ୍ରିୟ - ବୁଝିବାପାଇଁ ସାକ୍ଷାତକାର ଓ ପ୍ରଶ୍ନୋତର ନେଇଥିଲି । ୮୫ ଭାଗ ପାଠକ (୬୮୦ ପରେ କହିଥିଲେ ଗୋଦାବରୀଶ ଙ୍କ "କାଳିଜାଇ" । ପ୍ରକୃତରେ ଏ ଗାଥା କବିତାଟିକୁ ସକଳ ନୟନରେ ସଂପ୍ରୀତି ସୃଷ୍ଟିକର କଣ୍ଠରେ ଗାନକରି ମୋର ବାଳୁତ ମନକୁ ମୋ ବୋଉ (ଯିଏ କି ଚାଟଶାଳିରେ ପାଦଦେଇ ନଥିଲା) ଯେମିତି ବୁଝେଇ ସୁଝେଇ ମୋ ମନରେ ବସା ବନ୍ଧେଇ ରଖି ଦେଇଥିଲା ମୁଁ ସର୍ବୋଚ୍ଚ ଶିକ୍ଷାସ୍ତରରେ ସେଇ କବିତାଟି ତାଠୁ ଅଧିକ ସମ୍ବେଦନାରେ ବିଦ୍ୟାର୍ଥୀଙ୍କୁ ବୁଝାଇ ପାରିନାହିଁ । ଭଲ କବିତା ଜୀବନଧାରାରେ ସନ୍ତରଣ ପ୍ରବହମାନ ହୋଇ ଚାଲିଥାଏ; ଠିକ୍ କାଳିଜାଇ ପରି ।

ଗୀତରେ କାହାଣୀ ଓ କାହାଣୀରେ ଗୀତକୁ ଯୋଡିଦେଇ ଜୀବନ, ଐତିହ୍ୟ, ସଂସ୍କୃତି ଓ ଚଳଣିର ପ୍ରତ୍ୟୟକୁ ଅନୁକରଣ କରି ଆସିଥିବା ସୌଭାଗ୍ୟ, ଦେବଦାସ, ହରପ୍ରସାଦ, ରାଜେନ୍ଦ୍ର, ହୃଷୀକେଶ, ଆମ ଭିତରେ ଅଛନ୍ତି ଓ ସେମାନଙ୍କ ସହିତ ସମକାଳଟିଏ ଆମ ପାଠକୀୟତା ବଚିଂଛି - ଏକମ୍ ଅହୋଭାଗ୍ୟର କଥାନୁହେଁ ।

ସାରଳା ଦାସ ବରଣୀୟ ଓ ସ୍ମରଣୀୟ ନୁହଁନ୍ତି ସେ କେବଳ ଆଦିକବି ବୋଲି । ସେ ଓଡିଶାର ଜାତୀୟ ସର୍ଜନଶୀଳତାର ପ୍ରବୋଧକ ପୁରୁଷ ଯାହାଙ୍କ ନବଲିଆଣ ଦିବ୍ୟତାକୁ ଧୂସର ମାଟି ମଖାଣ ଜୀବନରେ ଖେଳେଇ ଦେଇ ଲୋକାୟତ ଛନ୍ଦରେ ଆଇଲା କାଳର ସ୍ରୋତରେ ସାମୂହିକ ଜୀବନପାଇଁ କବିତାଶ୍ରିତ ଜୀବନ ଳୀଆଁଣର ଶୈଳୀ ଭସେଇ ଦେଇ ଯାଇଛନ୍ତି । ସେ ଜାତୀୟ ଜୀବନ ଓ ଅସ୍ମିତାସୂଚକ ଜୀବନଶୈଳୀର ମହାତିତ୍ୱକ ।

"ଦରବାର" କ'ଣ ? ରାଧାନାଥ କିଏ ? ବିଦ୍ରୂପାତ୍ମକ କବିତା କଳା କିପରି ? କ'ଣ ପାଇଁ ଦରବାର ବସିଲା - ଏସବୁ ପ୍ରଶ୍ନର ଉତର ୧୮୯୫ ମସିହାରୁ ୧୯୯୫ ମସିହା (୨୦୨୦ ବି ହୋଇପାରେ) ପ୍ରତି ଶହେ ଜଣ ଓଡିଆରେ ୯୦ ଜଣ ଜାଣି ନଥାଇପାରନ୍ତି । ମାତ୍ର

"ଧର୍ମ ଏକ ନାଚ ଗଢିଛନ୍ତି ବିଧି
ପାରିହେବା ପାଇଁ ସଂସାର ବାରିଧି
ଧର୍ମ ଏକାସିନା ମହତ ପଣିଆ
ଆଉସବୁ କଥା ଅଢେଇ ଦିନିଆଁ"

ଏ କବିତା ପଙ୍କ୍ତିଟିକୁ ବିଗତ ୧୦୦ ବର୍ଷରେ ୧୦୦% ଭାଗ ଓଡିଆ ଜାଣନ୍ତି, ଚିହ୍ନନ୍ତି, କୁହନ୍ତି ଓ ସ୍ମୃତି ସମ୍ପଦ କରି ରଖିଛନ୍ତି । ଭଲ କବିତା - ଏମିତି ଅନ୍ୟାହତ ସୌନ୍ଦର୍ଯ୍ୟ ବେଦନରେ ଓ ଜୀବନରସରେ ସଙ୍ଗରଙ୍ଗ ହୋଇ ଚାଲିଥାଏ ।

ଉତମୋରମ କବିତା ହିତ ସହ ରମଣୀୟ ଶୋଭାମଣ୍ଡିତ ହୋଇ ବିଦ୍ୟମାନ ହେଲେ ସେ ମନର ଛାଇ ଓ ହୃଦୟର ଛବି ହୋଇଯାଏ । ଅକ୍ଷୟ ମହାନ୍ତି ଙ୍କ ଭାଷାରେ କୋଟିଏ କଥା ଭିତରୁ ମୋ ଭିତରଟା ଯେଉଁ ଗୋଟିଏ ଗୋଟିଏ କଥାକୁ ଦେଖି ଥରିଛି ଅଥବା ଶୀତଳିଯାଇଛି ତାକୁ ଯଦି ବାହାରକୁ ଅବିକଳ ନଦେଖେଇ ପାରିଲା ତେବେ ଗୀତ (କଳିତାର ଭିନ୍ନରୂପ) କାହିଁକି କରିବି, ବରିବି, ଗାଇବି । ଭଲଗୀତ ହୃଦୟର ଗୀତ, ହୃଦୟର ଗୀତ ସ୍ମରଣୀୟ ଗୀତ । ସ୍ମରଣୀୟ ଗୀତ ଜୀବନଝରା କାହାଣୀର ଗୀତ ଆଉ କାହାଣୀର ଗୀତ । ଏମିତି ଗୀତ ମୋ ସମକାଳର କବିତା ଗଚାଳିଙ୍କ ଚିତ୍ରଳ ଶବ୍ଦ ଅନ୍ତଃଧ୍ୱନ୍ୟାତ୍ମକ କରି ଦେଇଛନ୍ତି ।

(କ) ଦୁଃଖ ଭିତରେ ବି ଝଡସମ କବିତା ଫୁଲେଇ ଦେଇଥାଏ । କବିତା ମତେଇ ଦେଇଥାଏ ଲିଭିଲା ଚୁଲିକୁ ଜଳେଇ ଦେବାହିଁ ମାନବିକତା । ଆହା ରବି ସିଂଙ୍କ ଏ ପ୍ରରୋଚିତ ହେମାଳାର ଝଙ୍କାର ଏବେ ନିଶବ୍ଦ । କବିତା ଚିହ୍ନେଇ ଦିଏ ଖରାଠୁ ବର୍ଷା ଓ ବର୍ଷାଠୁ ଶୀତ ଏମିତି ଏମିତି ପର୍ଯ୍ୟାୟ ଦେଇ ସହନଶୀଳତା ଭିତରେ ଭରି ରହିଛି ଜୀବନରୂପକ ସାହାଡା ଗଛ ପାଇଁ ଅନେକ ପାର୍ବଣମୁଖର ତିଥି (ପ୍ରତିଭା ଶତପଥୀ) । କବିତା ପୁଣି ପ୍ରେମ ଓ ମୃତ୍ୟୁର ଲୁଚକାଳି ଖେଳ । ପାଇ ନ ପାଇବା ଆଉ ନପାଇ ପାଇବାର କୁହୁକୀ ନଚାଣ ହିଁ ଜୀବନ । ଏ ଜୀବନ ବେଶ୍ କବିତାମୟ (ରମାକାନ୍ତ) । କବିତା ସୂଚେଇ ବଟେଇ ବେଟେଇ ଦିଏ ବାସ୍ତବତାର କୂଳରେ "ଆଉ ଅଛି କ'ଣ ?" ଯଦି ନାହିଁ ନୂଆନୂଆ ଥିବାଗୁଡିକୁ ପାଇବାକୁ ସପ୍ରେମ (ମୃତ୍ୟୁ ଥିବାର ସଂଭାବନା ସତ୍ତ୍ୱେ) ଜକାଜକି ହୋଇ ସକଳେ "ଡେଇଁ ପଡିବା ପାଣିକୁ (ସୌଭାଗ୍ୟ) ।

(ଖ) କବିତାର ଅଭଲ ବନିଲା ମହିମାଟି ଥାଏ ପ୍ରସାରିତ ମାନବୀୟତାରେ । କବିତା ସହିତ ମିଶିଥିବା ପାଠକ ହିଁ କହିପାରେ - "ମୋ ଛାତିରେ ଭଲ ପାଇବାର ଭୃଗୁ ପଦଚିହ୍ନ" ଏବଂ "ମୋ ପିଠିରେ ମହାମଣିଷର ମହା କଇଁବନର ଫୁଟନ୍ତା ବୋଝ" ଏବଂ "ବ୍ୟାଧି

ମୋର କୁମାରୀ ପ୍ରେୟସୀ ।" ଜୀବନ ବିତତବିତଲ ନିଆଁକୁ ନଇକୁ ଡେଇଁଯିବା ଅପେକ୍ଷା ଅସମୟ ଆଉ ଅସୁଲଭ କାଳକୁ ଡେଇଁଯିବା ଆହୁରି କଠିନ । ସର୍ବୋପରି ଜୀବନ ଧରିଥିବା ପାର୍ଥିବ ଭୌତିକ ସତାର ରହସ୍ୟଟି ହେଉଛି - କେବେ ଜୀବନ ଯୋଗୀର ଆସନରେ ତ କେବେ ଭୋଗୀର ଶୟନରେ । ସୁଖକୁ ମଣୋହିର ବେଳ ଭାବିବା ଅପେକ୍ଷା ଧୂସର ଦୁଃଖର ପଡୋଶିନୀ ଭାବିନେବାଟା ହିଁ ଜୀବନର ପ୍ରକୃତ ସୁଖସଂହିତା (ଦୀପକ) ।

କବିତା ଅସହାୟ ନିଷ୍ଫଳା ସମ୍ବେଦନାର ଜୀବନଚକ୍ରକୁ ଆଗରେ ଦେଖି ସୀତାପରି ମାଟିକୁ ଫୁଟିଯା' ଆଉ ନକହୁ ଏନବନ୍ୟାୟିକ ନାରୀ ସଂପ୍ରୀତିକର ସତ୍ୟକୁ ଦେଖେଇ ଦିଏ । ପ୍ରତିବାଦୀ କଣ୍ଠରେ ଅତି ନମ୍ରବୋଧନରେ ସସାନ୍ତ୍ୱନା କାନରେ ବାରମ୍ବାର କହିଦିଏ - ବିଷୟ କଙ୍କାଜୀବନ ଧରି ନିର୍ବିଷୟର ମୋକ୍ଷଫୋକ୍ଷକୁ ନଲୋଡି ଜୀବନର ଡଅଁର ଭିତରକୁ ଥରକୁ ଥର ନାଚିବାକୁ, ଘୂରିବାକୁ ଓ ଡେଇଁବାକୁ ଅଥୟ ପ୍ରତ୍ୟୟ ଯୋଗାଇଦିଏ (ରାଜେନ୍ଦ୍ର) । ଆଉ ଦେବ ଦାସଙ୍କ କବିତା କାନକୁ ସୁଲ୍‌ସୁଲେଇ ଦେଇ କହିଦିଏ - ଆଜି ସବୁ ସରିଯାଇନି, କାଲିକି ବି କିଛି ବାକି ପଡିଛି । ପ୍ରଖର ଆଶାବାଦର ନବନବୋନ୍ମେଷଶାଳିନୀ ଭାବାବେଗର ଅମୃତବୋଧ । ଭଣ୍ଡାର ମରେଇ ହେଉଛି ସ୍ୱାଧୀନତୋତର କାଳର ଓଡିଆ କବିତା ।

ଓଡିଆ କବିତା ମୋ ପାଠକୀୟତା ପାଇଁ ସଚିତ୍ରା ନାୟିକା । କେବେ ବିପ୍ରଲବ୍ଧା ତ କେତେ ଖଣ୍ଡିତା କେବେପୁଣି ଅଭିସାରିକା । ମାତ୍ର ନବରୁଚିରା ଓ ଯେବେ ବି ଯେପରି ଭାବରେ ଉପସ୍ଥିତି ଜାହିରକରି ମୋତେ ତନ୍ଦ୍ରାଚ୍ଛନ୍ନ କରିଦିଏ, ସେତେବେଳେ ସେ ମୋ ପାଇଁ ଜୀଅଁତା ପ୍ରଲୁବ୍ଧା ଆକର୍ଷଣରେ ଲୋଳାୟିତା ହୋଇଯାଏ ।

ମୁଁ ଅବିଦିତ ନାହିଁ; କବିଏ ସତ ମିଛ କହନ୍ତି, କବିତା ଚାତୁରୀରେ ମନ ମୋହନ୍ତି @@@ । କବିତା କବିଙ୍କର ମିଛ ଫନ୍ଦାଣ । ମାତ୍ର ତମ ଆମର ପାଠକାତ୍ମା ପାଇଁ ଜୀବନ ରସ ବାଢିଦିଏ । ବଶିକରଣ ମନ୍ତ୍ରଗାଏ । ମାତ୍ର ବଡ ସତଟି ହେଉଛି - କବି ନୁହେଁ; କବିତା ହିଁ ବିଶ୍ୱସ୍ତା ..... ।

ମୋ ପାଠକୀୟତା ବାରମ୍ବାର କବିତା ଭୋଗାଣର ଇଚ୍ଛାଧରି ବାରମ୍ବାର ମର୍ତାୟନୀ ଲୋଡେ । କାରଣ ମୁଁ କବିତା ସହିତ ଥିଲି, ଅଛି ଓ ରହିବି **XXX** - ମୁଁ ପାଠକ .....

## ଓଡିଆ ସାହିତ୍ୟ ର ବିଶିଷ୍ଟ ସାରସ୍ୱତସ୍ରଷ୍ଟା
## ପ୍ରଫେସର ମଣୀନ୍ଦ୍ର କୁମାର ମେହେର

ମଣୀନ୍ଦ୍ର କୁମାର ମେହେର (୧୯୬୩) - ଆମ ସମୟର ଜଣେ ପ୍ରଭାବଶାଳୀ ସାହିତ୍ୟ ସମାଲୋଚକ । ମେହେର ସାହିତ୍ୟ ର ଜଣେ ବିଦ୍‌ଗଦ ପାଠକ ଓ ବିମୁଧ ସମାଲୋଚକ "ମନୋଜ ଦାସଙ୍କ କଥା ଓ କାହାଣୀ" ତାଙ୍କ ଗବେଷକୀୟ ଖ୍ୟାତିର ଅନ୍ୟତମ ଦିଗ୍ । ତାଙ୍କ ଆଲୋଚନା ଦୃଷ୍ଟିର ବିସ୍ତିନତା, ବିଷୟ-ବିଚାରକ, ସ୍ପଷ୍ଟତା, ଭାବ ପ୍ରକାଶନର ପ୍ରାଞ୍ଜଳତା ବେଶ୍ ଲକ୍ଷଣୀୟ । "ସାହିତ୍ୟ ର ଅନ୍ତସ୍ୱର", "ଆଲୋକ" ଓ "ଅମୃତର କବି ଗଙ୍ଗାଧର", ଗଙ୍ଗାଧର ମେହେର "ଜୀବନ ଓ ସୃଜନ", "ସୃଜନ ସନ୍ଦେଶ", "ଅମୃତମୟ ଅମୃତରୟ" ଆଦି ତାଙ୍କର କେତୋଟି ପ୍ରକାଶିତ ପୁସ୍ତକ । ଗଙ୍ଗାଧର ଙ୍କ ଗ୍ରନ୍ଥାବଳୀର ସେ ସୁଯୋଗ୍ୟ ସଂକଳକ ଓ ସମ୍ପାଦକ ।

ମଣୀନ୍ଦ୍ର ଙ୍କ ଜନ୍ମ - ୨୬ ଜୁଲାଇ, ୧୯୬୩ କବି ଭବନ, ବରପାଲି, ଜିଲ୍ଲା - ବରଗଡ । ପିତା - କିଶୋର ଚନ୍ଦ୍ର ମେହେର ଓ ମାତା - ପ୍ରେମଶୀଳା ଦେବୀ । ସେ ଥିଲେ - ପାରିବାରିକ ଐତିହ୍ୟ ସମ୍ପର୍ଣ୍ଣ । ଦାୟଦ - ସ୍ୱଭାବକବି ଗଙ୍ଗାଧର ମେହେର ଙ୍କ ଅଣନାତି ତଥା କବିପୁତ୍ର ଭଗବାନ ମେହେର ଙ୍କ ନାତି ।

ମଣୀନ୍ଦ୍ର ଙ୍କ ଶିକ୍ଷାଥିଲା - ଅତି ସାଧାରଣ । ସେ ଗାଁ ସ୍କୁଲରୁ ଶିକ୍ଷାପରେ ଉଚ୍ଚଶିକ୍ଷା ଗ୍ରହଣ କରିଥିଲେ - ଓଡିଆ ଭାଷା ଓ ସାହିତ୍ୟ ସହିତ ସ୍ନାତକ ଓ ସ୍ନାତକୋତର (ଏମ୍.ଏ.) - ଗବେଷଣା (ପିଏଚ୍.ଡି.) ସହିତ ପୋଷ୍ଟ-ଡକ୍ଟରାଲ / ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) ଡିଗ୍ରୀଧାରୀ ।

କର୍ମକ୍ଷେତ୍ରରେ ମଣୀନ୍ଦ୍ର କୁମାର ଜଣେ ଅଧ୍ୟାପକ । ଓଡିଆ ଭାଷା ଓ ସାହିତ୍ୟ ବିଭାଗର ୧୯୮୭ ମସିହାରେ ବରପାଲି କଲେଜରେ ଅଧ୍ୟାପକ ଜୀବନ ସହିତ ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବର୍ତମାନ ଫକୀରମୋହନ ବିଶ୍ୱବିଦ୍ୟାଳୟର ପ୍ରଫେସର । ଦୀର୍ଘ ୩୩ ବର୍ଷର ଅଧ୍ୟାପକତ୍ୱ ଜୀବନର ଜୟଯାତ୍ରା ।

### ସାରସ୍ୱତସାଧକ ମଣୀନ୍ଦ୍ର କୁମାର -

ଡକ୍ଟର ମଣୀନ୍ଦ୍ର କୁମାର ମେହେର ଜଣେ ସାହିତ୍ୟିକ ଭାବରେ ଓଡିଆ ସାହିତ୍ୟରେ ମର୍ଯ୍ୟାଦାବନ୍ତ । କୌଳିକ ବୃତିର ପରିବେଶ ଥିଲା ତାଙ୍କ ସାହିତ୍ୟ ସୃଷ୍ଟି, ଓଡିଶାର ଗୋଟିଏ ଆଭିଜାତ୍ୟ ସମ୍ପର୍ଣ୍ଣ ପରିବାର ର ଦାୟାଦ ।

ପିଲାଟି ଦିନରୁ ସାହିତ୍ୟିକ ପରିବେଶ ମଧ୍ୟରେ ସେ ବଢିଛନ୍ତି । ସ୍କୁଲ ଜୀବନରେ ସାହିତ୍ୟରେ ରୁଚି ରଖି କଲେଜ ଜୀବନୀରେ ସୃଜନଶୀଳତାରେ ନିଜର ସ୍ୱାକ୍ଷର ଛାଡିଛନ୍ତି ।

ତାଙ୍କ ସୃଷ୍ଟି ସମୂହ ମଧ୍ୟରେ -

୧. ମୋର ସ୍ୱପ୍ନ ଓ ସ୍ମୃତିରୁ କେତୋଟି
୨. ସାହିତ୍ୟ ର ଅନ୍ତସ୍ୱର
୩. ନିଷ୍କପଟ୍ଟ ମୁକୁଟ
୪. ଆଲୋକ ଓ ଅମୃତର କବି ଗଙ୍ଗାଧର
୫. ମନୋଜ ଦାସଙ୍କ ଗଳ୍ପରେ ମାନବ ଜୀବନ
୬. ଅମୃତମୟ ଅମୃତରନ୍
୭. ଗଙ୍ଗାଧର ମେହେର - ଜୀବନ ଓ ସୃଜନ
୮. ସୃଜନ ସନ୍ଦେଶ
୯. ଶବ୍ଦ ସ୍ପନ୍ଦନ
୧୦. ଅମୃତ ନନ୍ଦନ
୧୧. ଫକୀରମୋହନ ଓ ଗଙ୍ଗାଧର
୧୨. ମେହେର ସାହିତ୍ୟରେ ମାନବୀୟ ମହନୀୟତା
୧୩. ମନସ୍ୱୀ ମନୋଜ
୧୪. ସଚ୍ଚିଦାନନ୍ଦ ରାଉତରାୟ
୧୫. କିଏ ଗୋ ତୁ ଜ୍ୟୋତିମୟୀ

ପ୍ରଭୃତି ପୁସ୍ତକ ଓଡିଆ ବାଣୀଭଣ୍ଡାରକୁ ଅବଦାନ । ନିଜର ମନୋନୟନ ସୃଜନଶୀଳ ସାହିତ୍ୟ ସମାଲୋଚନା ପାଇଁ ମଣୀନ୍ଦ୍ର କୁମାର ମେହେର ଓଡିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ବଜାୟ ରଖିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।

### ଅନୁଷ୍ଠାନନୁରାଗୀ ମଣୀନ୍ଦ୍ର ମେହେର -

ଜଣେ ସଂଗଠକ ଭାବରେ ମଣୀନ୍ଦ୍ର ବେଶ୍ ଜଣାଶୁଣା, ସାହିତ୍ୟିକ ଭାବରେ ଅନେକ ସାହିତ୍ୟାନୁଷ୍ଠାନ ସହିତ ସେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଜଡିତ । ଅନୁଷ୍ଠାନର ସର୍ବଦା ବିକାଶ ସାଧିତ ହୋଇପାରିବ, ତାହା ହିଁ ତାଙ୍କର ଏକମାତ୍ର ସାଧନା ।

୧. ସଭାପତି - ଗଙ୍ଗାଧର ସାହିତ୍ୟ ପରିଷଦ, ବରପାଲି
୨. ଆଜୀବନ ସଭ୍ୟ - ଓଡ଼ିଆ ଗବେଷଣା ପରିଷଦ, କଟକ
୩. ଆଜୀବନ ସଭ୍ୟ - ଉତ୍କଳ ସାହିତ୍ୟ ସମାଜ, କଟକ
୪. ସଭାପତି - ଅଶୋକ ଚନ୍ଦନ ସ୍ମୃତି ସମିତି, ପାଟଣାଗଡ
୫. ସଦସ୍ୟ - ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

## ସ୍ୱୀକୃତି ଓ ସମ୍ବର୍ଦ୍ଧନା ଭିତରେ
## ନିଆରା ମଣିଷ ମଣୀନ୍ଦ୍ର କୁମାର -

ଅଧ୍ୟାପକ, ସାହିତ୍ୟିକ ସର୍ବୋପରି ଗବେଷକ ଭାବରେ ଡକ୍ଟର ମଣୀନ୍ଦ୍ର କୁମାର ମେହେର ନିଜର କୃତିପାଇଁ ସମ୍ମାନୀତ ଓ ସମ୍ବୋର୍ଦ୍ଧିତ ହୋଇଛନ୍ତି । ଓଡ଼ିଶାର ଅନେକ ଅନୁଷ୍ଠାନରୁ -

ସେମାନଙ୍କ ମଧ୍ୟରୁ ପ୍ରମୁଖ -

୧. ଫକୀରମୋହନ ସାହିତ୍ୟ ପରିଷଦ - ବାଲେଶ୍ୱର
୨. ଅଖିଳ ଚକ୍ର ଅନୁଷ୍ଠାନ - ଯାଜପୁର
୩. ରୁଦ୍ର ଆହ୍ୱାନ - ବଲାଙ୍ଗୀର
୪. ଚେତାବନୀ ସାହିତ୍ୟ ସଂସଦ (କୋସିଙ୍ଗା) - କଳାହାଣ୍ଡି

ପ୍ରଭୃତି ଦୀର୍ଘ ୨୮ ଗୋଟି ଅନୁଷ୍ଠାନରୁ ସେ ସମ୍ମାନୀତ ଓ ସମ୍ବର୍ଦ୍ଧିତ ମଧ୍ୟ ।

ଜଣେ ସାରସ୍ୱତ ସ୍ରଷ୍ଟା ଭାବରେ ମଣୀନ୍ଦ୍ର କୁମାର ଙ୍କୁ ଆହୁରି ସୁଦୃଢ଼ କରିଥିଲା - ତାଙ୍କୁ ପ୍ରଦାନ କରାଯାଇଥିବା ସମ୍ମାନ ଦ୍ୱାରା । ଓଡ଼ିଆ ସାହିତ୍ୟ ର ବିକାଶକ୍ଷେତ୍ରରେ ମଣୀନ୍ଦ୍ର ଙ୍କ ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ ।

ପ୍ରଫେସର ମଣୀନ୍ଦ୍ର କୁମାର ମେହେର ଙ୍କ ସାହିତ୍ୟ ସମାଲୋଚନା ପୁସ୍ତକ "ଫକୀରମୋହନ ଓ ଗଙ୍ଗାଧର" ରୁ

## ଫକୀରମୋହନ ଙ୍କ "ରେବତୀ" ଓ
## ଗଙ୍ଗାଧର ମେହେର ଙ୍କ "ତପସ୍ୱିନୀ" ଏକ
## ତୁଳନାତ୍ମକ ବିଶ୍ଳେଷଣ

ଆଧୁନିକ ଗଦ୍ୟ ସାହିତ୍ୟ ର ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ହେଉଛନ୍ତି ଫକୀରମୋହନ ସେନାପତି । ଉଭୟ ଗଳ୍ପ ଓ ଉପନ୍ୟାସ ରଚନାକରି ସେ ଯେଉଁ ଅସାମାନ୍ୟ ସଫଳତା ଅର୍ଜନ କରିଛନ୍ତି ତାହା ବାସ୍ତବିକ୍ ଅତୁଳନୀୟ । କାବ୍ୟ ସାହିତ୍ୟରେ ଆଧୁନିକ ଯୁଗର ପ୍ରବର୍ତ୍ତକ ଓ ସ୍ରଷ୍ଟା ଭାବରେ ରାଧାନାଥ ରାୟ, ଓଡ଼ିଆ ସାହିତ୍ୟ ଇତିହାସରେ ସମ୍ମାନିତ ଆସନର ଅଧିକାରୀ । ସ୍ୱଭାବକବି ଗଙ୍ଗାଧର ମେହେର ରାଧାନାଥ ଙ୍କୁ କବିଗୁରୁ ଭାବରେ ଗ୍ରହଣକରି ତାଙ୍କ କାବ୍ୟ ରଚନାର ଶୈଳୀରେ ଆଣିଥିଲେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ । ତେଣୁ ଆଧୁନିକ ଯୁଗର ଜଣେ ବିସ୍ମୟକର ପ୍ରତିଭା ଭାବରେ ପ୍ରତିଭାତ ହୋଇଛନ୍ତି ଗଙ୍ଗାଧର ମେହେର । ଏଠାରେ ଉଲ୍ଲେଖ କରିବା ଏକାନ୍ତ ପ୍ରାସଙ୍ଗିକ ଯେ ରାଧାନାଥ, ଗଙ୍ଗାଧର ଙ୍କ କବିଗୁରୁ ହୋଇଥିଲେ ମଧ୍ୟ ସେହି ଯୁଗର ଶ୍ରେଷ୍ଠ ସାହିତ୍ୟ ସାଧକମାନଙ୍କ ସହିତ ଗଙ୍ଗାଧର ଙ୍କ ସାରସ୍ୱତ ସମ୍ପର୍କ ଥିଲା ଅତ୍ୟନ୍ତ ନିବିଡ଼ । ସେହି ଦୃଷ୍ଟିରୁ ଫକୀରମୋହନ ଙ୍କ ସହିତ ତାଙ୍କର ଯେଉଁ ଆତ୍ମୀୟତା ପ୍ରତିଷ୍ଠା ହୋଇଥିଲା ତାହା ଗଭୀର ରୁ ଗଭୀରତର ହୋଇ ଉଠିଥିଲା, ଯାହାର ସଙ୍କେତ ଫକୀରମୋହନ ଙ୍କ ରଚିତ ପତ୍ରରୁ ଅନୁଭବ କରିହୁଏ । ଗଙ୍ଗାଧର, ଫକରୀମୋହନ ଙ୍କ ରଚନାକୁ ଧ୍ୟାନପୂର୍ବକ ଅଧ୍ୟୟନ କରୁଥିଲେ । ବିଶ୍ୱନାଥ କରଙ୍କ ସମ୍ପାଦିତ "ଉତ୍କଳ ସାହିତ୍ୟ" ପତ୍ରିକାର ସେ ଥିଲେ ନିୟମିତ ଗ୍ରାହକ । କାବ୍ୟ କବିତା ଅଧ୍ୟୟନରେ ବିଶେଷ ରୁଚି ରଖୁଥିବା ଗଙ୍ଗାଧର ଫକୀରମୋହନ ଙ୍କ ଗଳ୍ପ ଉପନ୍ୟାସ ମଧ୍ୟ ଅତ୍ୟନ୍ତ ଶ୍ରଦ୍ଧା ସହକାରେ ପାଠ କରୁଥିଲେ । ୧୯୯୮ ମସିହାରେ "ଶ୍ରୀଧୂର୍ଜଟୀ" ନାମରେ "ଉତ୍କଳ ସାହିତ୍ୟ" ରେ ପ୍ରକାଶ ପାଇଥିବା "ରେବତୀ" ଗଳ୍ପଟି ନିଶ୍ଚୟ ତାଙ୍କର ଦୃଷ୍ଟି ପଥାରୂଢ଼ ହୋଇଥିବ । ଫକୀରମୋହନ ଙ୍କ ରଚନାଶୈଳୀ ସହିତ ଅତ୍ୟନ୍ତ ଘନିଷ୍ଠ ଗଙ୍ଗାଧର "ରେବତୀ" ଗଳ୍ପଟି ଯେ ଫକୀରମୋହନ ଙ୍କ ସୃଷ୍ଟି, ଏକଥା ଜାଣିପାରିଥିବେ ନିଶ୍ଚିତ ଭାବରେ । ଗଙ୍ଗାଧର ଙ୍କ ପ୍ରାଣଥିଲା ଅତ୍ୟନ୍ତ ସୁକୁମାର ଓ କୋମଳ । ଯେଉଁଠି କରୁଣ ରସର ପ୍ରବାହ ସେ ଲକ୍ଷ୍ୟ କରୁଥିଲେ, ସେଠି ତାଙ୍କର ଆଖି ଅଟକିଯିବା ଥିଲା ଏକାନ୍ତ ସ୍ୱାଭାବିକ । "ଉତ୍କଳ ସାହିତ୍ୟ" ପତ୍ରିକାର ପୃଷ୍ଠା ଓଲଟାଉ ଥିବାବେଳେ କରୁଣ ରସାଶ୍ରିତ "ରେବତୀ" ଗଳ୍ପର କଥାବସ୍ତୁ ଓ ବାକ୍ୟାବଳୀ ତାଙ୍କ ଅନ୍ତରରେ ଆଣିଦେଇଥିବ ନିଶ୍ଚୟ ଏପରି ଅପୂର୍ବ ଅନୁଭୂତି, ଯାହା ବିସ୍ମରି ଯିବା ତାଙ୍କ ପକ୍ଷରେ ଥିଲା ଅସମ୍ଭବ । ପରବର୍ତ୍ତୀ ସମୟରେ ଯେତେବେଳେ ସୀତାଙ୍କର ଉତର ଜୀବନକୁ କେନ୍ଦ୍ରକରି ସେ ସୃଷ୍ଟିକଲେ "ତପସ୍ୱିନୀ" ମହାକାବ୍ୟ, ସେତିକିବେଳେ ରେବତୀ ଆଖିର ଲୁହ ତାଙ୍କ ହୃଦୟକୁ ଯେ ଆଲୋଡ଼ିତ କରିନଥିବ ଏକଥା କୁହାଯାଇପାରିବ ନାହିଁ ।

"ରେବତୀ" ଗଳ୍ପ ରଚନା ସମୟରେ ଫକୀରମୋହନ ଯେପରି ଅଶ୍ରୁ ବିସର୍ଜନ କରିଛନ୍ତି ଓ ରେବତୀ ର ଦୁଃଖ ବେଦନା ଜର୍ଜରିତ ଆତ୍ମା ଭିତରକୁ ଯେପରି ପ୍ରବେଶ କରିଛନ୍ତି ତାହା ଗଙ୍ଗାଧର ଙ୍କ ପାଇଁ ଯେ ଏକ ପ୍ରଚ୍ଛନ୍ନ ପ୍ରେରଣା ହୋଇନପାରେ ଏକଥା ମଧ୍ୟ ଆମେ

କହିପାରିବା ନାହିଁ । ଫକୀରମୋହନ ଙ୍କ ରଚନା ଅଧ୍ୟୟନ କରି ସେ ଫକୀରମୋହନ ଙ୍କୁ ଯେଉଁ ପତ୍ରସବୁ ଲେଖିଥିଲେ ତାହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ; କିନ୍ତୁ ଫକୀରମୋହନ ଙ୍କ ସ୍ୱର୍ଗାରୋହଣ ପରେ ସେ ଯେପରି ଭାବରେ ଫକୀରମୋହନ ଙ୍କ ସ୍ମୃତିଚାରଣ ଅତ୍ୟନ୍ତ ଆନ୍ତରିକ ଭାବରେ କରିଛନ୍ତି ଓ ଫକୀରମୋହନ ଙ୍କ ବିୟୋଗରେ ତାଙ୍କ ପ୍ରାଣରେ ଯେପରି ଶୋକାବେଗ ସୃଷ୍ଟିହୋଇଛି, ସେଥିରୁ ଅନୁମାନ କରିହୁଏ ଯେ ଫକୀରମୋହନ ଙ୍କ ରଚନା ତାଙ୍କ ଉପରେ କିପରି ଗଭୀର ପ୍ରଭାବ ପକାଇଥିଲା । ସତୀ ସୀତାଙ୍କ ଉତର ଜୀବନର କଥା ରାମାୟଣରେ ବର୍ଣ୍ଣିତ ହୋଇଥିବା କାରୁଣ୍ୟମୟ ଅଧ୍ୟାୟ । ଏହାକୁ କେହିକେହି ମହର୍ଷି ବାଲ୍ମୀକି ଙ୍କ ମୂଳରଚନା ବୋଲି ସ୍ୱୀକାର ନକରି ପରବର୍ତ୍ତୀ ସମୟରେ ଅନ୍ୟ କବିମାନଙ୍କ ଦ୍ୱାରା ରଚିତ ହୋଇଥିବା ବିଷୟ ଅର୍ଥାତ୍ "ପ୍ରକ୍ଷେପ" ବୋଲି ମତ ପ୍ରଦାନ କରିଛନ୍ତି । ତେବେ ସେ ଯାହାହେଉ, ଗଙ୍ଗାଧର ଏଭଳି ଏକ ବିଷୟ ରଚନାପାଇଁ ଉନ୍ମୁଖ ଥିଲେ ଯାହାର ଆଧାରରେ ନିଜ ହୃଦୟର ସାର୍ଥକ ଅଭିବ୍ୟକ୍ତି ସେ ପ୍ରଦାନ କରିପାରିବେ । ସେଇ ଦୃଷ୍ଟିରୁ ସତୀ ସୀତାଙ୍କ ଉତର ଜୀବନର ବ୍ୟଥାଭରା ଆଲେଖ୍ୟ ତାଙ୍କ ହୃଦୟବୀଣାରେ ତୋଳିଥିଲା କରୁଣ ଝଙ୍କାର । ସୀତାଙ୍କ ଚରିତ୍ରକୁ ରୂପ ଦେବାକୁ ଯାଇ ମହାକବି ବାଲ୍ମୀକି, ମହାକବି କାଳିଦାସ ଓ ଭବଭୂତିଙ୍କ ଠାରୁ ମଧ୍ୟ ତାଙ୍କ ସୀତାଙ୍କୁ ସେ ଭିନ୍ନ ଭାବରେ ରୂପାୟିତ କରିଛନ୍ତି, ଯେଉଁଥିରେ ତାଙ୍କ ଅନ୍ତର ର କୋହ ଓ ଲୁହଭରା ଉପଲବ୍ଧି ଉନ୍ମୋଚିତ ହୋଇଯାଇଛି । ବାଲ୍ମୀକି, କାଳିଦାସ, ଭବଭୂତି ଏ ସମସ୍ତ ମହାକବି ମଧ୍ୟ ଏ କ୍ଷେତ୍ରରେ ଗଙ୍ଗାଧର ଙ୍କ ପାଇଁ ପ୍ରେରଣାର ଉତ୍ସ ନିଶ୍ଚୟ । ମାତ୍ର ସୀତା ଚରିତ୍ରଟିକୁ ଯେପରି ଭାବରେ କବି ପ୍ରାଣବନ୍ତ କରିଦେଇ ପାରିଛନ୍ତି ତାହା ତାଙ୍କ ଅନ୍ତରାତ୍ମାରୁ ଆବିର୍ଭୂତ ଏକ ଅନନ୍ୟ ଚରିତ୍ର ଭାବରେ ସ୍ୱତନ୍ତ୍ର ପରିଚିତି ଲାଭ କରିପାରିଛି । "ରେବତୀ" ଗଳ୍ପ ରଚନା ବେଳେ ଫକୀରମୋହନ ଯେପରି ନିଜ ଆଖିର ଅଶ୍ରୁ ନିଗାଡ଼ି ଦେଇ ରେବତୀ ଚରିତ୍ରକୁ କରିଛନ୍ତି ହୃଦୟସ୍ପର୍ଶୀ, ସେହିପରି ଗଙ୍ଗାଧର ମଧ୍ୟ ସୀତାଙ୍କ ଚରିତ୍ର ଚିତ୍ରଣ କରିବାକୁ ଯାଇ ନିଜ ପ୍ରାଣର ପବିତ୍ର ଆବେଗ ସଂଯୁକ୍ତକରି ଦେଇଛନ୍ତି ସେଥିରେ । ଆଜି ଯଦି ସମଗ୍ର ଓଡ଼ିଶାର ଗ୍ରାମେଗ୍ରାମେ କେଉଁ ଚରିତ୍ର ପାଠକମାନଙ୍କ ଦ୍ୱାରା ଅଧିକ ଆଦୃତ ବୋଲି ପ୍ରଶ୍ନ କରାଯାଏ, ତାହାହେଲେ ତାହାର ନିର୍ଭୁଲ ଉତର ହେବ ସେ ଚରିତ୍ର ହେଉଛନ୍ତି ଫକୀରମୋହନ ଙ୍କ "ରେବତୀ" ଓ ଗଙ୍ଗାଧର ମେହେର ଙ୍କ "ସୀତା" । ଏ ଦୁଇଟି କାଳଜୟୀ ଚରିତ୍ର ସମଗ୍ର ଓଡ଼ିଶାର ରସପିପାସୁ ପାଠକ ହୃଦୟକୁ ଯେପରି ଭାବରେ ଆଲୋଡ଼ିତ କରିଛି ତାହା ଏକ ମହନୀୟ ଦୃଷ୍ଟାନ୍ତ । ଏଇ ଉଭୟ ଚରିତ୍ର ଦରଦୀ ପାଠକ ଆତ୍ମାକୁ ମନ୍ଥିତ କରିଦେଇ ପ୍ରତ୍ୟେକ ଙ୍କ ଚକ୍ଷୁଯୁଗଳକୁ ଯେପରି ଅଶ୍ରୁସିକ୍ତ କରିଛି ତାହା ବାସ୍ତବିକ୍ ସ୍ୱତନ୍ତ୍ର ଅନୁଧ୍ୟାନର ବିଷୟ ।

"ରେବତୀ" ଗଳ୍ପ ରଚନା ସମୟରେ ଫକୀରମୋହନ ଯେଉଁ କାରୁଣ୍ୟ ଭାବର ମୂର୍ଚ୍ଛନା ତୋଳିଛନ୍ତି ତାହା ଏକ କରୁଣ ବଂଶୀସ୍ୱନ ପରି ଆଜି ମଧ୍ୟ ପାଠକ ଚିତକୁ ବିଗଳିତ କରିଦିଏ । ପାଠ ପଢ଼ିବ ବୋଲି ରେବତୀ ଭିତରେ କେତେ ନୂତନ ସ୍ୱପ୍ନ, କେତେ ନୂତନ କଳ୍ପନା । ତେବେ ମଣିଷର ସ୍ୱପ୍ନ ସବୁ ଯେ ସତ୍ୟହୁଏ ନାହିଁ ତା, ତା'ର କଳ୍ପନା ଯେ ବାସ୍ତବରେ ପରିଣତ ହୁଏନା ଏହାର ହୃଦୟ ବିଦାରକ ଅଭିବ୍ୟକ୍ତି ଘଟିଛି ଏହି ଗଳ୍ପରେ । ଅକାଳରେ ରେବତୀ ର ବାପା ମା' ଶେଷନିଃଶ୍ୱାସ ତ୍ୟାଗକରିବା ଘଟଣା ତା'ର ଜୀବନକୁ କରିଦେଇଛି ଶୂନ୍ୟତାମୟ । ଆଉ ତା'ପରେ ଯାହା ଉପରେ ତା'ର ଆଶା ଭରସା କେନ୍ଦ୍ରୀଭୂତ ହୋଇଥିଲା ସେ ଚରିତ୍ରଟି ହେଉଛି ତାକୁ ପାଠ ପଢ଼ାଉଥିବା ଶିକ୍ଷକ "ବାସୁଦେବ" । ଅଥଚ ନିୟତି କି ନିଷ୍ଠୁର ! ଏହି ବାସୁଦେବ କୁ ମଧ୍ୟ ମୃତ୍ୟୁ ଦେବତା ଅକାଳରେ ଆକସ୍ମିକ ଭାବରେ ଟେକିନେଇ ଯାଇଛନ୍ତି । ରେବତୀ ଭିତରେ ଯେଉଁ ଟିକିଏ ବି ଆଶାର ଦୀପଶିଖା ଜଳୁଥିଲା ତାହା ନିର୍ବାପିତ ହୋଇଯାଇଛି ଅଚାନକ । ତା' ଆଗରେ କେବଳ ଶୂନ୍ୟତା ହିଁ ଶୂନ୍ୟତା । ତା'ର ଚତୁର୍ଦ୍ଦିଗରେ କେବଳ ଅଶ୍ରୁଳ ସ୍ରୋତସ୍ୱତୀର ପ୍ରବାହ । କାହାକୁ ନେଇ ବଚିଂବ ରେବତୀ ? ଏସବୁ ହୋଇଯାଇଛି ଏକାନ୍ତ ଅସମ୍ଭବ । ଜେଜେମା'ର ଗାଳି ଭିତରେ ମଧ୍ୟ ସେ ଶୁଣିପାରିଛି ଶୋକାଚ୍ଛନ୍ନ ଆତ୍ମାର ଆର୍ତସ୍ୱର । ଫକୀରମୋହନ ତାଙ୍କ ସାହିତ୍ୟରେ କମ୍ ହାସ୍ୟରସ ସଚାଂର କରିନାହାଁନ୍ତି; କିନ୍ତୁ ତାଙ୍କର ଏହି ପ୍ରଥମ ଗଳ୍ପଟି ରଚନା କଲାବେଳକୁ ତାଙ୍କର ସାରା ହୃଦୟକୁ ଆଚ୍ଛନ୍ନକରି ରହିଥିଲା ଯେଉଁ କାରୁଣ୍ୟର ସଙ୍ଗୀତ ତାହାର ରହସ୍ୟ ଭେଦକରିବା ସହଜ ବ୍ୟାପାର ନୁହେଁ । ଗୋଟିଏ ସୁସ୍ଥ, ସୁନ୍ଦର, ପରିଚ୍ଛନ୍ନ, ପରିବାର ନିୟତିର ନିଷ୍ଠୁର ପରିହାସରେ କିପରି ବିଲୁପ୍ତ ହୋଇଗଲା ତାହାର ଅନ୍ତର୍ଦାହୀ ଚିତ୍ର ଅଙ୍କନକରି ଫକୀରମୋହନ ପ୍ରତିପାଦନ କରିଦେବା ପାଇଁ ଚାହିଁଛନ୍ତି ଯେ ମଣିଷର ଜୀବନ କେତେ ଅସହାୟ, କେତେ କରୁଣ ଓ କେତେ ବିଚ୍ଛେଦ ଦୁଃଖାକ୍ରାନ୍ତ ।

ଗଙ୍ଗାଧର ସୀତା ଚରିତ୍ର ଚିତ୍ରଣ ବେଳକୁ ଠିକ୍ ଏହିକଥା ଅନୁଭବ କରିଥିଲେ । ଅଯୋଧ୍ୟାବାସୀଙ୍କ ଦ୍ୱାରା କଳଙ୍କିତା ବୋଲି ଚିତ୍ରିତା ହୋଇ ସେ ଯେପରି ଭାବରେ ପ୍ରତ୍ୟାଖ୍ୟାତା ହୋଇ ରାମଚନ୍ଦ୍ର ଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣ ଙ୍କ ଦ୍ୱାରା ଭାଗୀରଥୀ କୂଳରେ ପହଚିଂଲେ, ଅଯୋଧ୍ୟାରୁ ନିର୍ବାସିତା ହୋଇଥିବାର ନିଷ୍ଠୁର ବାଣୀ ଶ୍ରବଣକଲେ ସେତେବେଳେ ଚେତନାହତ ହୋଇ ସେ ପଡ଼ିଯାଇଥିଲେ ଧରିତ୍ରୀ ମାତାର କୋଳରେ । ଦୁଃଖ ମଣିଷ ଜୀବନର ଚରମ ସତ୍ୟ । ଆତ୍ମୀୟ ସ୍ୱଜନଙ୍କ ଠାରୁ ବିଚ୍ଛିନ୍ନ ହେବାର ଅନୁଭବ ନିଷ୍ଠୁର ଓ ନିରାଟ ବାସ୍ତବତା । ତେବେ ଗଙ୍ଗାଧର ଙ୍କ ଲେଖନୀ ଏଠାରେ ନୂତନ ପ୍ରସଙ୍ଗ କ'ଣ ଉତ୍‌ଥାପନ କରିଛି ? ସେଇ ନୂତନ ବିଷୟଟି ହେଉଛି ନିୟତି ବିରୁଦ୍ଧରେ ପ୍ରକୃତି ମାଧ୍ୟମରେ କବି ହୃଦୟର ବିଦ୍ରୋହ ଘୋଷଣା । "ରେବତୀ" ଗଳ୍ପ ପାଠକରି ଗଙ୍ଗାଧର ଙ୍କ ଭିତରେ ଆଉ ରେବତୀ ଗଳ୍ପ ରଚନାକରି ଫକୀରମୋହନ ଙ୍କ ପ୍ରାଣରେ ନିୟତି ଉଦ୍ଦେଶ୍ୟରେ କ'ଣ ବିଦ୍ରୋହ ଜାତ ହୋଇନଥିବ ! ଫକୀରମୋହନ ନିୟତି ବିରୁଦ୍ଧରେ ତାଙ୍କର ସ୍ୱରକୁ ପ୍ରଚ୍ଛନ୍ନ ରଖିଥିବାବେଳେ ଗଙ୍ଗାଧର ଅତ୍ୟନ୍ତ ସାହସିକତାର ସହିତ ଉଦାତ କଣ୍ଠରେ ସେହି ବିଦ୍ରୋହ ଭାବର ଅଗ୍ନି ସ୍ଫୁଲିଙ୍ଗ ଉଦ୍‌ଗୀରଣ କରିଛନ୍ତି ପ୍ରକୃତିର ଜୀବନାୟନ ଘଟାଇ । ସୀତା ବାଲ୍ମୀକି ଆଶ୍ରମରେ ତାଙ୍କର କରୁଣ ଅଥଚ ତପସ୍ୱିନୀ ଜୀବନ ଅତିବାହିତ କରିଛନ୍ତି ଅସୀମ ଧୈର୍ଯ୍ୟ ଧାରଣକରି । ସମସ୍ତ ସୁଖରୁ ବଚିଂତ ହୋଇ, ପ୍ରାଣର ଆରାଧ୍ୟ ଦେବତା ରାମଚନ୍ଦ୍ର ଙ୍କ ଠାରୁ ବିଚ୍ଛିନ୍ନହୋଇ, ତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥିଲେ ମଧ୍ୟ ତପୋବନର ଶାନ୍ତ ପରିବେଶରେ ବାଲ୍ମୀକି ଙ୍କ ଠାରୁ ପିତୃସ୍ନେହ ଓ ଅନୁକମ୍ପାଙ୍କ ଠାରୁ ମାତୃସ୍ନେହ ଲାଭକରି ତଥା

ମୁନିକୁମାରୀ ଙ୍କ ସହାନୁଭୂତି ସ୍ପର୍ଶରେ ସେ ନିଜର ପ୍ରାଣ ପ୍ରଦୀପକୁ ପ୍ରଜ୍ୱଳିତ କରି ରଖିଛନ୍ତି ତାଙ୍କ ସନ୍ତାନମାନଙ୍କ ନିମିତ । ସୀତାଙ୍କ ଦୁଃଖରେ ଗଙ୍ଗାଧର ନିଜେ ଅଶ୍ରୁପାତ କରିନଥିଲେ ଏ ଚରିତ୍ରଟି ସେତିକି ପ୍ରାଣ ପ୍ରାଚୁର୍ଯ୍ୟ ଗର୍ଭିତ ହୋଇପାରିନଥାନ୍ତା । ସୀତାଙ୍କ ଦୁଃଖରେ କବି-ହୃଦୟ ସମ୍ବେଦନଶୀଳ ହୋଇଉଠିନଥିଲେ ପ୍ରକୃତି ସୀତାଙ୍କ ପ୍ରତି ସହାନୁଭୂତିଶୀଳ ହୋଇପାରିନଥାନ୍ତା । ଏସବୁ ଚିତ୍ରାଙ୍କନ ଭିତରେ ଗଙ୍ଗାଧର ଙ୍କ ହୃଦୟବୀଣାର କରୁଣ ଧ୍ୱନି ହିଁ ପାଠକ ଶୁଣିପାରେ ତା'ର କର୍ଣ୍ଣ ଗହ୍ୱରରେ ଏବଂ ସେହି ଧ୍ୱନି ଅନ୍ତର ଭିତରକୁ ପ୍ରବେଶକରି ସୂକ୍ଷ୍ମ ପ୍ରାଣତନ୍ତ୍ରୀ ସବୁକୁ ଦୋହଲାଇ ପକାଏ । "ତପସ୍ୱିନୀ" ଅଶ୍ରୁର ଅକ୍ଷରରେ ଲେଖା ହୋଇଥିବା ଏକ ମହାକାବ୍ୟ । ଫକୀରମୋହନ ଯେପରି "ରେବତୀ" ଗଳ୍ପ ରଚନା ସମୟରେ ନିଜ ହୃଦୟର ରକ୍ତଦାନ କରିଛନ୍ତି, ଗଙ୍ଗାଧର ମଧ ସେହିପରି ନିଜ ଧମନୀରେ ପ୍ରବାହିତ ରକ୍ତର ସ୍ରୋତକୁ ସଂଯୁକ୍ତକରି ଦେଇଛନ୍ତି କାବ୍ୟର ପ୍ରତିଟି ପଂକ୍ତି ସହିତ । ପୁନଶ୍ଚ ସତୀ ସୀତାଙ୍କ ଚରିତ୍ର ବ୍ୟାଖ୍ୟାନ ହେଉ, ରାମଚନ୍ଦ୍ର ଙ୍କ ହୃଦୟର ବେଦନା ବର୍ଣ୍ଣନା କରିବାରେ ହେଉ ବା ତମସା ନଦୀର ଅଭୀପ୍‌ସା ଉନ୍ମୁକ୍ତ କରିଦେବାରେ ହେଉ - ସବୁଥିରେ ଗଙ୍ଗାଧର ତାଙ୍କ ନିଜସ୍ୱ ଆତ୍ମାର ନିଭୃତ କକ୍ଷରେ ଥିବା ସବୁ ଚିରନ୍ତନ ଭାବରାଶିକୁ ଢାଳି ଦେଇଛନ୍ତି । ଫକୀରମୋହନ ନିଜର ଆତ୍ମଜୀବନୀ ସ୍ୱତନ୍ତ୍ର ଭାବରେ ରଚନା କରିଛନ୍ତି । ଗଙ୍ଗାଧର ଙ୍କ ଆତ୍ମଜୀବନୀ ଅତ୍ୟନ୍ତ ସଂକ୍ଷିପ୍ତ; କିନ୍ତୁ ଗଙ୍ଗାଧର ଙ୍କ ବାସ୍ତବ ଆତ୍ମକଥା ହେଉଛି ତାଙ୍କର "ତପସ୍ୱିନୀ" ମହାକାବ୍ୟ ଆଉ "ରେବତୀ" ମଧ ହେଉଛି ଫକୀରମୋହନ ଙ୍କ ଆତ୍ମୋପଲବ୍ଧିର ଶ୍ରେଷ୍ଠ ବିନ୍ୟାସ । ତେଣୁ ଆତ୍ମଜୀବନୀ ଭିତରେ ଫକୀରମୋହନ ଙ୍କ ସଂଘର୍ଷପୂର୍ଣ୍ଣ ଘଟଣାମୟ ଜୀବନର ବୈଚିତ୍ର୍ୟକୁ ଆମେ ଦେଖୁଥିଲେ ମଧ "ରେବତୀ" ଗଳ୍ପରେ ଆମେ ତାଙ୍କ ଅନ୍ତରାତ୍ମାର କରୁଣ ସ୍ୱର ଅନାୟାସରେ ଶୁଣିପାରୁ । ଯେକୌଣସି ସ୍ରଷ୍ଟା ତାଙ୍କର ଆତ୍ମଜୀବନୀକୁ ଯେତେ ଆକର୍ଷଣୀୟ ଭାବରେ ରଚନା କରନ୍ତୁ ନା କାହିଁକି ତାଙ୍କ ଅନ୍ତର୍ଜୀବନର ପ୍ରକୃତ ବ୍ୟାଖ୍ୟା ହେଉଛି ତାଙ୍କର ସାହିତ୍ୟ ସୃଷ୍ଟି । ସେ ଦୃଷ୍ଟିରୁ "ରେବତୀ" ଫକୀରମୋହନ ଙ୍କ ଅନ୍ତର୍ବ୍ୟଥାର ଯେପରି ହୃଦୟ ବିଦାରକ ଅଭିବ୍ୟକ୍ତି ସେହିପରି ଗଙ୍ଗାଧର ଙ୍କ "ତପସ୍ୱିନୀ" କବିଙ୍କ ଅନ୍ତରାତ୍ମାର କରୁଣ ପ୍ରତିଧ୍ୱନି ।

ଏସବୁ ଦୃଷ୍ଟିରୁ "ରେବତୀ" ଗଳ୍ପ ଏବଂ "ତପସ୍ୱିନୀ" କାବ୍ୟ ଉଭୟ ସାହିତ୍ୟକୃତି ଶତବର୍ଷ ଅତିକ୍ରମ କରି ସୁଦ୍ଧା ଓଡିଶାବାସୀଙ୍କର ପ୍ରାଣର ପ୍ରିୟ ସମ୍ପଦ ହୋଇରହିଛି । ଓଡିଆ ପାଠକମାନଙ୍କ ଛାତି ତଳେ ହୃଦୟର ସ୍ପନ୍ଦନ ଯେତେଦିନ ସ୍ପନ୍ଦିତ ହେଉଥିବ, ସେତେଦିନ ପର୍ଯ୍ୟନ୍ତ ଏ ଉଭୟ ଚରିତ୍ର ସେମାନଙ୍କ ପ୍ରାଣକୁ ବେଦନାପ୍ଲୁତ କରିବା ସଙ୍ଗେସଙ୍ଗେ ଚକ୍ଷୁ ଯୁଗଳକୁ କରୁଥିବ ଲୋତକାପ୍ଲୁତ । ଏହା ହିଁ ଏଇ ଦୁଇ ମହାନ୍ ସ୍ରଷ୍ଟାଙ୍କର ସୃଷ୍ଟି ମଧରେ ଥିବା ଅପୂର୍ବ ସମାଞ୍ଜସ୍ୟର ଶ୍ରେଷ୍ଠ ନିଦର୍ଶନ ।

"ରେବତୀ" ଏକ ଗଳ୍ପ । "ତପସ୍ୱିନୀ" ଏକ କାବ୍ୟ । ରେବତୀ ଚରିତ୍ରଟି ସମାଜର ବାସ୍ତବତାରୁ ଉତ୍‌ଥିତ । "ତପସ୍ୱିନୀ" ର "ସୀତା" ଚରିତ୍ର ପୁରାଣ ପୃଷ୍ଠାରୁ ଉତୋଳିତ; କିନ୍ତୁ ଉଭୟଙ୍କର ଆତ୍ମା ଭିତରେ ଥିବା ବେଦନା ଓ ଅଶ୍ରୁ ହେଉଛି ସମାନ ଭାବରେ ଉତପ୍ତ ଓ ପାଠକ ହୃଦୟକୁ ଆପ୍ଲୁତ କରିଦେବାରେ ସମାନ ଭାବରେ ସମର୍ଥ । କାବ୍ୟ ହେଉ, କବିତା ହେଉ, ଗଳ୍ପ କି ଉପନ୍ୟାସ ହେଉ ସାହିତ୍ୟ ର ଯେକୌଣସି ବିଭାଗରେ ଜଣେ ଲେଖକ ଲେଖନୀ ଚାଳନା କରନ୍ତୁ ନା କାହିଁକି ତାଙ୍କ ପ୍ରାଣରେ ଯଦି ସଚିଂତହୋଇ ରହିଛି ସମ୍ବେଦନା ଓ ସହାନୁଭୂତିର ଅଶ୍ରୁଧାର ତାହାହେଲେ ସେଇ ଉଷ୍ଣଧାରା ନିଶ୍ଚିତ ଭାବରେ ସୃଷ୍ଟି ଭିତରେ ଆତ୍ମପ୍ରକାଶ କରିବ ସ୍ୱତଃସ୍ଫୂର୍ତ ଭାବରେ । ଫକୀରମୋହନ ଗଳ୍ପ ଲେଖିଥିଲେ ମଧ, ଗଙ୍ଗାଧର କାବ୍ୟ ଲେଖିଥିଲେ ମଧ ଉଭୟଙ୍କ ହୃଦୟର ଅପୂର୍ବ ସମ୍ବେଦନଶୀଳତା ଭିତରେ କୌଣସି ତାରତମ୍ୟ ନଥିଲା । ରେବତୀ ଓ ସୀତାଙ୍କ ହୃଦୟର ଉଚ୍ଛ୍ୱାସ ଯେପରି ଅଭିନ୍ନ, ଫକୀରମୋହନ ଓ ଗଙ୍ଗାଧର ଙ୍କ ବେଦନାକ୍ତ ଆତ୍ମାର ଉଚ୍ଚାରଣ ସେହିପରି ସମାନ । ବ୍ୟାସକବି ଭାବରେ ଫକୀରମୋହନ ଓ ସ୍ୱଭାବକବି ଭାବରେ ଗଙ୍ଗାଧର ଉଭୟ ଓଡିଆ ପାଠକମାନଙ୍କ ପାଇଁ ଏକାନ୍ତ ପ୍ରିୟ ଦୁଇଟି ସୁନ୍ଦର ଓ ମର୍ମସ୍ପର୍ଶୀ ନାମ । ଏହି ନାମର ଅମରତ୍ୱ କାଳୋତୀର୍ଣ୍ଣ ହେଉ ଏହା ହିଁ ପ୍ରାର୍ଥନା ।

## ଓଡିଆ ସାହିତ୍ୟ ର ସେବକ
## ପ୍ରଫେସର ସୁବାଷ ନାୟକ

ସୁବାଷ ନାୟକ (୧୪/୦୭/୧୯୭୭) ଜନ୍ମ - ଏସିଆ ମହାଦେଶର ସର୍ବବୃହତ ଗ୍ରାମ ଭୁବନ, ୧୯୭୨ ମସିହାରୁ ସହର ର ମାନ୍ୟତାପ୍ରାପ୍ତ । ୫୦ ହଜାର ଜନସଂଖ୍ୟା ବିଶିଷ୍ଟ ସହର । ଭାରତୀୟ ସ୍ୱାଧିନତା ସଂଗ୍ରାମର କିଶୋର ଶହୀଦ୍ ବାଜିରାଉତ ଙ୍କ ଜନ୍ମମାଟି ଭୁବନ । ଏଠିକାର କଂସା, ପିତଳ ବାସନ ସାମଗ୍ରୀ ଓଡିଶା ପ୍ରସିଦ୍ଧ । କାରିଗରଙ୍କ କାରୁକାର୍ଯ୍ୟ ଓଡିଶାରେ ସୁବିଦିତ । ଏଠାକାର ଆରାଧ୍ୟ ଦେବତା ବାବା ବୁଦ୍ଧେଶ୍ୱର ମନ୍ଦିର ପର୍ଯ୍ୟଟନ ସ୍ଥଳୀରେ ମାନ୍ୟତାପ୍ରାପ୍ତ । ୩୬ ପାଟକର ଲୋକମାନେ ଏଠାରେ ବସବାସ କରିଥାନ୍ତି ।

### ଜନ୍ମବୃତାନ୍ତ -

ଏହି ଗାଁର ବିଶିଷ୍ଟ ତୁଳା ବ୍ୟବସାୟୀ ସ୍ୱର୍ଗତ ବାବାଜୀ ନାୟକ ଙ୍କ ନାତି ତଥା ବିଶିଷ୍ଟ କାଠଶିଳ୍ପୀ ରାମଚନ୍ଦ୍ର ନାୟକ ଙ୍କ ସୁପୁତ୍ର ସୁବାଷ ନାୟକ । ବାପା ରାମଚନ୍ଦ୍ର ଓ ମା' ଭାରତୀଦେବୀ ଙ୍କ ଚାରିଜଣ ସନ୍ତାନ ସନ୍ତତି ମଧରେ ସୁବାଷ ବଡପୁଅ । ଏକମାତ୍ର ବଡନାନୀ - ଲେଖିକା ଜୟନ୍ତୀ, ଦୁଇ ସାନଭାଇ - ଓକିଲ ପ୍ରକାଶ ଓ ଶିକ୍ଷକ ମାନସ ଙ୍କୁ ନେଇ ଶ୍ରୀରାମ ପରିବାର । ଜେଜେବାପା ବାବାଜୀ ଙ୍କ ପୈତୃକ ଘର ଭୁବନ ପୋଥାଳ ସାହିରେ ସୁବାଷ ଜନ୍ମିତ, ମାତ୍ର ଦୁଇବର୍ଷ ବୟସ ବେଳେ ବାପା ରାମଚନ୍ଦ୍ର ଙ୍କ ନିର୍ମିତ ଭୁବନ ବଡହାଟର ଶ୍ରୀରାମ ନିବାସରେ ବର୍ତମାନ ଅବସ୍ଥାପିତ ।

### ଶିକ୍ଷାଜଗତ -

ବାପା ରାମଚନ୍ଦ୍ର ଜଣେ ସୃଜନଶୀଳ କାଠଶିଳ୍ପୀ ସହିତ ଜଣେ ରାଜନେତା ଅଟନ୍ତି । ମା' ଭାରତୀଦେବୀ ଜଣେ ସାଧାରଣ ଗୃହିଣୀ । ସୁବାଷ ଙ୍କ ଶିକ୍ଷା ଆରମ୍ଭ ହୋଇଥାଏ - ଚାରି ଓ ପାଚଂ ଦୁଇବର୍ଷ ଭୁବନର ଏକ ଚାଟଶାଳୀରେ । ଶିକ୍ଷକ ଥାଆନ୍ତି - ବାସୁଦେବ ବେହେରା (ବୁଲା) । ପରେପରେ ଛ'ବର୍ଷ ଆରମ୍ଭ ହେବା କ୍ଷଣି ଭୁବନ ବଡହାଟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଦୀର୍ଘ ସାତବର୍ଷ ସେ ସେଠାରେ ପଢନ୍ତି ସହପାଠୀ ଓ ସହପାଠିନୀ ତଥା ଶିକ୍ଷକ ଓ ଶିକ୍ଷୟତ୍ରୀ ଙ୍କ ଗ୍ରହଣରେ ।

ପରବର୍ତୀ ସମୟରେ ଭୁବନ ହାଇସ୍କୁଲରେ ତିନିବର୍ଷ - ଅଷ୍ଟମ, ନବମ ଓ ଦଶମ ଶ୍ରେଣୀ ପାଠପଢି ୧୯୯୩ ମସିହାରେ କାମାକ୍ଷାନଗର ର ସାରଙ୍ଗଧର ହାଇସ୍କୁଲରୁ ପରୀକ୍ଷାଦେଇ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାସ୍ ।

ପରେ ଉଚ୍ଚଶିକ୍ଷା ପାଇଁ ଭୁବନର ବାଜିରାଉତ ମେମୋରିଆଲ କଲେଜରେ +୨ ଓ +୩ (କଳା) ପାଠପଢି - +୨ରେ ଦ୍ୱିତୀୟ ଶ୍ରେଣୀ ଓ +୩ରେ ଶିକ୍ଷା ସମ୍ମାନ ଓ ଓଡିଆ ବିଷୟ ସହିତ ପ୍ରଥମ ଶ୍ରେଣୀରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସଫଳତାର ସହିତ ଉତୀର୍ଣ୍ଣ । ବାପା ରାମଚନ୍ଦ୍ର କଲେଜର ଗଭର୍ଣ୍ଣିଙ୍ଗ ବଡି ସଦସ୍ୟ (ଢେଙ୍କାନାଳ ଏମ୍.ପି. ନୋମିନୀ) ଭାବରେ କାର୍ଯ୍ୟ କରୁଥିଲେ । ସୁବାଷ ଥିଲେ ଜଣେ ଛାତ୍ରନେତା ତଥା ଓଡିଆ ସାହିତ୍ୟ ଓ ସଂସ୍କୃତି ପ୍ରେମୀ ।

ପରବର୍ତୀ ସମୟରେ ଉଚ୍ଚଶିକ୍ଷା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୧ ମସିହାରେ ଓଡିଆ ଭାଷା ଓ ସାହିତ୍ୟରେ ଏମ୍.ଏ. ପାସ୍ କରିବା ସହ ବିଭିନ୍ନ ସାରସ୍ୱତ ସଭାରେ ଯୋଗଦାନ ସହ ଭୁବନରେ ଘରୋଇ ଭାବରେ ଶିକ୍ଷାଦାନ କରିଲେ । ବାଜିରାଉତ କଲେଜର ଓଡିଆ ଭାଷା ଓ ସାହିତ୍ୟରେ ବିଭିନ୍ନ ଜାତୀୟ ସଂସ୍ଥାନରେ ଯୋଗଦାନ ତାଙ୍କ ସାହିତ୍ୟିକ ଜୀବନକୁ ଉନ୍ନତ କରିପାରିଥିଲା ।

ସମୟପୋଯୟୀ ଉଚ୍ଚଶିକ୍ଷା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଗବେଷଣା (ପିଏଚ୍.ଡି.) ପରୀକ୍ଷାରେ ବିଫଳତା ହୋଇ ପରିଶେଷରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ - "ଓଡିଆ ସାହିତ୍ୟକୁ ନନ୍ଦିନୀ ଶତପଥି ଙ୍କ ଅବଦାନ" ପ୍ରସଙ୍ଗରେ ଗବେଷଣା କରି ଗାଇଡି ପ୍ରଫେସର ଡକ୍ଟର ଆଦିକନ୍ଦ ସାହୁଙ୍କ ତତ୍ୱବଧାନରେ ଡକ୍ଟରେଟ୍ ପିଏଚ୍.ଡି. ଉପାଧି ପାଇଲେ ।

ସମ୍ପ୍ରତି ଉତ୍କଳ ବିଶ୍ୱବିଦ୍ୟାଳୟରେ ଉଚ୍ଚତର ଗବେଷଣା ପୋଷ୍ଟ ଡକ୍ଟରାଲ / ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) ଉପାଧି ପାଇଁ ସନ୍ଦର୍ଭ - "ଓଡିଆ ସାହିତ୍ୟ ର କବି କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ସାହିତ୍ୟ ର କବି ନରେନ୍ଦ୍ର ମୋଦିଙ୍କ କାବ୍ୟଜଗତ - ଏକ ଅଧୟନ" ପ୍ରସଙ୍ଗରେ ଗବେଷଣା ପାଇଁ ପ୍ରସ୍ତୁତି କାର୍ଯ୍ୟ ଚାଲୁରହିଛି ।

### କର୍ମ ସାଧନା -

ଓଡିଆ ସାହିତ୍ୟରେ (ଏମ୍.ଏ.) ପାସ୍ପରେ ଓଡିଆ ଭାଷା ଓ ସାହିତ୍ୟ ର ଜଣେ ଅଧାପକ ଭାବରେ ଘରୋଇ ଭାବରେ ଉଚ୍ଚ ମାଧମିକ (+୨) ସ୍ତରରେ ଶିକ୍ଷାଦାନ କରିବାରେ ଲାଗିଲେ । ନିକଟସ୍ଥ ବାଜିରାଉତ କଲେଜରେ ଓଡିଆ ଭାଷା ଓ ସାହିତ୍ୟ ର ବିଭାଗରେ ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ଯୋଗଦେଇ ନିଜର ଉଚ୍ଚକୋଟୀର ସନ୍ଦର୍ଭ ଦ୍ୱାରା ଶିକ୍ଷାର୍ଥୀ ତଥା ଶିକ୍ଷକ ମଣ୍ଡଳୀଙ୍କ ପ୍ରିୟ ଭାଜନ ହୋଇ ପାରିଥିଲେ ଓ ଶିକ୍ଷାର୍ଥୀଙ୍କୁ ମାର୍ଗ ଦର୍ଶନ କରି ପାରିଥିଲେ ।

ପରେ ଗବେଷଣାରେ ସମୟ ଦେବାସହ ସାହିତ୍ୟ ସାଧନାରେ ମନୋନିବେଶ କରିବା ସହିତ ରାଜନୀତିରେ ରୁଚି ମଧ ରଖିଥିଲେ । ଡକ୍ଟରେଟ୍ ଉପାଧି ପରେ ସ୍ଥାୟୀ ଭାବରେ ଓଡିଆ ସାହିତ୍ୟ ର ଅଧାପକ ଭାବରେ ଯୋଗଦାନ - ଢେଙ୍କାନାଳର ବିଦ୍ୟାର୍ଥୀ ରେସିଡେଟାଂଲ କଲେଜ (+୨, ବିଜ୍ଞାନ) କଲେଜର ଚେୟାରମ୍ୟାନ ଜ୍ଞାନେନ୍ଦ୍ର କୁମାର ସାହୁ ତଥା ସମସ୍ତ ଅଧାପକ ଓ ଶିକ୍ଷାର୍ଥୀମାନଙ୍କ ପାଖରେ ପ୍ରିୟପାତ୍ର ହୋଇ ପାରିଛନ୍ତି ।

ସମୟର ସ୍ରୋତରେ ଓଡିଶାର ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନ - ଟେଟ୍ରାହେଡ୍ରନ କଲେଜ, ଟାଙ୍ଗୀ, କଟକରେ ସ୍ଥାୟୀ ଓଡିଆ ସାହିତ୍ୟ ର ଅଧ୍ୟାପକ ଭାବରେ ଯୋଗଦାନ କରନ୍ତି - ୨୦୧୭ ମସିହା ଜାନୁୟାରୀ ୧୭ ତାରିଖରେ । +୨, ବିଜ୍ଞାନ ସ୍ତରରେ ଓଡିଆ ଶିକ୍ଷାଦାନ ପରେ ଟେଟ୍ରାହେଡ୍ରନ ଗ୍ରୁପ୍ ଅଫ୍ ଇନ୍ଷ୍ଟିଚ୍ୟୁସନ୍ସର ତ୍ରିଦେବ ଡିଗ୍ରୀ କଲେଜରେ ଓଡିଆ ଭାଷା ଓ ସାହିତ୍ୟ ର ଆସିଷ୍ଟାଂଟ ପ୍ରଫେସର ପଦବୀ ସହିତ ଭାଇସ୍-ପ୍ରିନିସ୍ପାଲ ପଦବୀରେ କାର୍ଯ୍ୟ ସହିତ ଭାରପ୍ରାପ୍ତ ପ୍ରିନିସ୍ପାଲ ଭାବରେ ମଧ୍ୟ କାର୍ଯ୍ୟ ସୁଚାରରୂପେ ତୁଲାଇଅଛନ୍ତି ଅଦ୍ୟାବଧି । ଅଧ୍ୟାପକ ତ୍ରିଦେବ ବେହେରା - ଏହି କଲେଜର ଚେୟାରମ୍ୟାନ ଅଟନ୍ତି ।

ତ୍ରିଦେବ ଡିଗ୍ରୀ କଲେଜ ସୁବାଷ ଙ୍କ ଜୀବନକୁ ଉନ୍ନତି ମାର୍ଗକୁ ନେଇ ଯାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଅଧ୍ୟାପକ, ସାହିତ୍ୟିକ ଓ ଗବେଷକ ଭାବରେ ସେ ଏକ ସ୍ୱତନ୍ତ୍ର ପରିଚୟ ଏହି କର୍ମକ୍ଷେତ୍ରରୁ ପାଇପାରିଛନ୍ତି । ବର୍ତମାନ କୋଡିଏ ବର୍ଷରୁ ଅଭିଜ୍ଞତା ସମ୍ପର୍ଣ୍ଣ ଅଧ୍ୟାପକ ।

## ବୈବାହିକ ଓ ପାରିବାରିକ ଜୀବନ -

ବାପା ରାମଚନ୍ଦ୍ର ଓ ମା' ଭାରତୀଦେବୀ ଙ୍କୁ ନେଇ ଶ୍ରୀରାମ ପରିବାର । ଏହି ପରିବାର ଭୁବନ ସହର ର ଗୋଟିଏ ପ୍ରତିଷ୍ଠିତ ପରିବାର ଅଟେ । ରାମଚନ୍ଦ୍ର ଜଣେ ରାଜ୍ୟ ଓ ଜାତୀୟ ସ୍ତରୀୟ ସ୍ୱୀକୃତିପ୍ରାପ୍ତ ଷାଠିଏ ବର୍ଷର ଅଭିଜ୍ଞତା ସମ୍ପନ୍ନ କାଠଶିଳ୍ପୀ ଓ ଢେଙ୍କାନାଳର ସର୍ବୋଚ୍ଚ ଶିଳ୍ପୀ ସମ୍ମାନ ମହିମା ହସ୍ତକଳା ସମ୍ମାନପ୍ରାପ୍ତ କାଠଶିଳ୍ପୀ । ଜଣେ ଚାଳିଶ ବର୍ଷର ଅଭିଜ୍ଞତା ସମ୍ପନ୍ନ ରାଜନେତା - ଭାରତୀୟ ଜନତା ପାର୍ଟି (ବିଜେପି) ଢେଙ୍କାନାଳ ଜିଲ୍ଲାର ଜିଲ୍ଲା ଉପସଭାପତି ସହିତ ରାଜ୍ୟସଭା ଏମ୍.ପି. ଙ୍କ ନୋମିନୀ ଭାବରେ କାର୍ଯ୍ୟ କରିଥିଲେ - ଭୁବନ ଏନ୍.ଏ.ସି. ରେ । ମା' ଭାରତୀଦେବୀ ଜଣେ ସାଧାରଣ ଗୃହିଣୀ । ଚାରିପିଲାଙ୍କୁ ମଣିଷ କରିବାରେ ତାଙ୍କ ଭୂମିକା ଅତୁଳନୀୟ ।

ବଡନାନୀ ଜୟନ୍ତୀ ଜଣେ ଲେଖିକା ତଥା ଓଡିଶା ଲେଖିକା ସଂସଦର ଆଜୀବନ ସଭ୍ୟା ଓ ତିନିଗୋଟି ପୁସ୍ତକ ସହ ବିଭିନ୍ନ ଲେଖା ଓ ପତ୍ର ପତ୍ରିକାରେ ପ୍ରକାଶିତ । କେନ୍ଦ୍ରାପଡା ଜିଲ୍ଲା ଓଳକଣା ନିବାସୀ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ନନ୍ଦକିଶୋର ଲେଙ୍କା ଙ୍କ ମଧ୍ୟମପୁଅ ମହେନ୍ଦ୍ର କୁମାର ଲେଙ୍କା ତାଙ୍କ ସ୍ୱାମୀ । ମହେନ୍ଦ୍ର ଜଣେ ସାମ୍ବାଦିକ ତଥା ଟ୍ରାନ୍ସପୋର୍ଟର ସହ ଗ୍ୟାସ ବ୍ୟବସାୟ ଭାବରେ କାର୍ଯ୍ୟରତ । ଇନ୍ଦିରା ଗାନ୍ଧୀ ରାଷ୍ଟ୍ରୀୟ ମୁକ୍ତ ବିଶ୍ୱବିଦ୍ୟାଳୟ (ଇଗ୍ନୁ)ରୁ ଜୟନ୍ତୀ ଓ ମହେନ୍ଦ୍ର ଦୁହେଁ ଅଣ୍ଡର ଗ୍ରାଜୁଏଟ୍ । ଦୁଇଝିଅ - ରାଜେଶ୍ୱରୀ (ଲିସା) ଓ ବ୍ରଜେଶ୍ୱରୀ (ଇସା) କୁ ନେଇ ତାଙ୍କ ପରିବାର । ଜୟନ୍ତୀ ଢୋରାବିଶ୍ ବ୍ଲକ୍‌ର ଏଣ୍ଡର ପଚାଂୟତ ନିର୍ବାଚିତ ଓ୍ୱାର୍ଡ ପ୍ରତିନିଧି ଭାବରେ କାର୍ଯ୍ୟ କରିଥିଲେ ।

ସୁବାଷ କର୍ମରେ ଜଣେ ଅଧ୍ୟାପକ । ଐତିହାସିକ କଟକ ସହର ର ଚାଉଳିଆଗଞ୍ଜ ନିବାସୀ - ଟେଲର ମାଷ୍ଟର ସୁରେନ୍ଦ୍ର ସାହୁ ଓ ସୁଭଦ୍ରା ସାହୁ ଙ୍କ କନ୍ୟା ତୁଳସୀ ସାହୁ (ଟିକି) ଙ୍କୁ ୧୨ ଜୁନ୍, ୨୦୧୫ ମସିହାରେ ବୈଦିକ ରୀତିରେ ବିବାହ କରନ୍ତି । ତୁଳସୀ ଏକ ଘରୋଇ ସ୍ୱାସ୍ଥ୍ୟ ପ୍ରତିଷ୍ଠାନରେ ଆକାଉଟାଂଟଂ ସେକ୍ସନରେ କାର୍ଯ୍ୟ କରୁଥିଲେ । ବିବାହ ପରେ ଘରୋଇ ଭାବରେ ଇଂରାଜୀ ସାହିତ୍ୟରେ (ଏମ୍.ଏ.) ପାସ୍‌କରି ଜଣେ ଘରୋଇ ଶିକ୍ଷୟତ୍ରୀ ଭାବରେ କାର୍ଯ୍ୟରତ । ଏକ ଭାଇ ଓ ଚାରିଜଣ ଭଉଣୀ ଙ୍କୁ ନେଇ ତୁଳସୀ ଙ୍କ ପରିବାର । ସୁବାଷ ଓ ତୁଳସୀ ଙ୍କ ଏକମାତ୍ର କନ୍ୟାରତ୍ନା ତେଜସ୍ୱିନୀ ନାୟକ (ଲକି) ବିଦ୍ୟାରମ୍ଭ କରିଅଛି ।

ମଧ୍ୟମପୁତ୍ର ଆଡଭୋକେଟ୍ ପ୍ରକାଶ ନାୟକ (ବି.ଏ., ଏଲ୍.ଏଲ୍.ବି.) ଭୁବନ ଜୁଡିସିଆଲ କୋର୍ଟରେ କାର୍ଯ୍ୟରତ । ବାଲେଶ୍ୱର ସହରରେ ବିବାହିତ । ଧର୍ମପନ୍ତୀ ସୁପ୍ରଭା ଟାଲଡୀ (ନିନୀ) (ବି.ଏ., ବି.ଇଡି.) ସରକାରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷୟତ୍ରୀ । ଏକମାତ୍ର ପୁତ୍ର ଅଂଶୁମାନ (ରାଜା) ଙ୍କୁ ନେଇ ପରିବାର ।

କନିଷ୍ଠପୁତ୍ର ଶିକ୍ଷକ ଡକ୍ଟର ମାନସ ନାୟକ, ଇଂରାଜୀ ସାହିତ୍ୟରେ (ଏମ୍.ଏ.), ବି.ଇଡି. ଡିଗ୍ରୀ ସହ ସରକାରୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକ, ଜଣେ ଲେଖକ ତଥା ଗବେଷକ । ନବୀନ ପଟ୍ଟନାୟକ ଙ୍କ ସାରସ୍ୱତ କୃତି ଉପରେ ଡକ୍ଟରେଟ୍ (ପିଏଚ୍.ଡି.) ଉପାଧିପ୍ରାପ୍ତ । ଢେଙ୍କାନାଳର ରାସୋଳରେ ବିବାହିତ । ଧର୍ମପନ୍ତୀ ଶିବାନୀ ସାହୁ (ବି.ଏସ୍‌ସି., ସିଟି), ଘରୋଇ ସ୍କୁଲରେ ଶିକ୍ଷୟତ୍ରୀ, ଏକମାତ୍ର ପୁତ୍ର ସନ୍ତାନ ଜ୍ୟୋତିଆଦିତ୍ୟ (ଆଦି) କୁ ନେଇ ପରିବାର ।

ଏକାନ୍ନବର୍ତୀ ପରିବାରରେ ବାପା ଓ ମା' ଙ୍କ ସହିତ ସମସ୍ତେ ନିଜ ନିଜର ଭାବର ଆଦାନ ପ୍ରଦାନ କରିଥାନ୍ତି - ବସୁଧୈବ କୁଟୁମ୍ବକମ୍ ନ୍ୟାୟରେ ।

## ସାଧନା ଜୀବନ -

ଡକ୍ଟର ସୁବାଷ ନାୟକ ଜଣେ ଅଧ୍ୟାପକ, ସାହିତ୍ୟିକ ଓ ଗବେଷକ ଭାବରେ ଓଡିଶାରେ ପରିଚିତ । ୧୫ ଗୋଟି ସାରସ୍ୱତ ପୁସ୍ତକର ଲେଖକ ଭାବରେ ଓଡିଆ ସାହିତ୍ୟ ର ଜଣେ ସାହିତ୍ୟିକ ଭାବରେ ପରିଚିତ ।

ଷାଠିଏ ଗୋଟି ଗବେଷଣା ପତ୍ରର ସେ ଗବେଷକ । ଏସବୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଅଛି ।

ଚାଳିଶ ଗୋଟି ଜାତୀୟ ଓ ଆନ୍ତର୍ଜାତୀୟ ସଂଗୋଷ୍ଠୀ (ସେମିନାର)ରେ ଯୋଗଦାନ ଓ ପ୍ରବନ୍ଧ ପାଠ ଉପସ୍ଥାପନା ଜଣେ ଅଧ୍ୟାପକ ଭାବରେ ।

ଅନେକ ସାରସ୍ୱତ ଅନୁଷ୍ଠାନ ସହିତ ଜଡିତ ରହିବା ସହିତ ଅନେକ ଅନୁଷ୍ଠାନରୁ ସମ୍ମାନୀତ ଓ ପୁରସ୍କୃତ ମଧ୍ୟ ।

## ସାହିତ୍ୟିକ -

ଡକ୍ଟର ସୁବାଷ ନାୟକ ଓଡିଆ ସାହିତ୍ୟ ର ଜଣେ ସାହିତ୍ୟିକ । ଓଡିଆ ସାହିତ୍ୟ ର ବିଭିନ୍ନ ବିଭାଗରେ ଯଥା - କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ଅନୁବାଦକ, ଜୀବନୀକାର, ପ୍ରାବନ୍ଧିକ, ସମାଲୋଚକ, ସମୀକ୍ଷକ, ସନ୍ଦର୍ଭକାର, ସଂକଳକ ଭାବରେ ନିଜର କଲମ ଚାଳନା କରି ଜଣେ ସାହିତ୍ୟିକ ଭାବରେ ପରିଚିତ ।

### ୧. କବିତା ସାହିତ୍ୟ -

କବିତା ପୁସ୍ତକ - "ପ୍ରିୟା" - ସୁବାଷ ଙ୍କ ମାନସର ସୃଷ୍ଟି । ଏଥିରେ ପଚାଶ ଗୋଟି କବିତା ସ୍ଥାନ ପାଇଅଛି । ପ୍ରେମ, ଅଭିମାନ, ପ୍ରଭୁସର୍ତା, ରାଜନେତା, ବିରହ, ବେଦନାର ଆଧାରିତ ସ୍ୱ କବିତାଗୁଡିକ ରୂପମଣ୍ଡନ କରିଅଛି - କବିତା ସଂକଳନ "ପ୍ରିୟା" ପୁସ୍ତକରେ । ଏ ପୁସ୍ତକଟିକୁ କନ୍ୟାରନ୍ ତେଜସ୍ୱିନୀ (ଲକି) କୁ ଉତ୍ସର୍ଗ କରାଯାଇଅଛି ।

### ୨. ସମୀକ୍ଷା ସାହିତ୍ୟ -

"ବିଜୁ ଜନତା ଦଳ - ଓଡିଶା ଜନମାନସର ସେବକ" - ଏକ ରାଜନୈତିକ ଧର୍ମୀ ସମୀକ୍ଷା ସାହିତ୍ୟ । ଲେଖକ ସୁବାଷ ଏଠାରେ ବିଜୁ ପଟ୍ଟନାୟକ ଙ୍କ ଜୀବନୀ ତଥା ବିଜେଡିର ଉତ୍ଥାନ ଓଡିଶା ଓ ବିଜେଡି ଆଦିକୁ ସ୍ଥାନ ଦେଇଛନ୍ତି । ଏ ପୁସ୍ତକଟି ୨୬ ଡିସେମ୍ବର ୨୦୧୩ ମସିହାରେ ମୁଖ୍ୟମନ୍ତ୍ରୀ ତଥା ବିଜେଡି ସଭାପତି ନବୀନ ପଟ୍ଟନାୟକ ଉନ୍ମୋଚନ କରିଥିଲେ । ଏ ପୁସ୍ତକଟି ନବୀନ ପଟ୍ଟନାୟକ ଙ୍କୁ ଉତ୍ସର୍ଗ ସହିତ ନବୀନ ଙ୍କ ସ୍ୱାକ୍ଷର ରହିଅଛି (ଅଟୋଗ୍ରାଫ୍) ।

### ୩. ଅନୁବାଦ ସାହିତ୍ୟ -

"ଏକ ଯାତ୍ରା" - ନରେନ୍ଦ୍ର ମୋଦିଙ୍କ କାବ୍ୟମାନସ - (ଶାସ୍ତ୍ରୀୟ ଓଡିଆ ଭାଷା ଅନୁବାଦ ସାହିତ୍ୟ) - ଅନୁବାଦକ ସୁବାଷ ଏହାକୁ ନରେନ୍ଦ୍ର ମୋଦିଙ୍କ ଗୁଜୁରାଟୀ କବିତା ସଂକଳନ "ଆଖଁା ଆ ଧନ୍ୟ ଛୋ" କୁ ଇଂରାଜୀରେ ରବିମନ୍ତ୍ରା ଅନୁବାଦ କରିଛନ୍ତି । ତାହାକୁ ସେ ଓଡିଆରେ ଅନୁବାଦ କରିଛନ୍ତି । ଏଥିରେ ୬୭ ଗୋଟି କବିତା ସ୍ଥାନୀତ । ନରେନ୍ଦ୍ର ମୋଦି ନିଜ ଜୀବନରେ ଘଟି ଯାଇଥିବା ଅନେକ ଘଟଣାକୁ କବିତା ମାଧ୍ୟମରେ ସ୍ଥାନ ଦେଇଅଛନ୍ତି । ଆଧାତ୍ମିକ, ସାଂସ୍କୃତିକ, ଦେଶଭକ୍ତି, କର୍ମ ସାଧନା ଆଦି ଏ କବିତାରେ ସ୍ପଷ୍ଟ ଭାବରେ ଉଲ୍ଲେଖ ରହିଅଛି ।

ସୁବାଷ ଙ୍କ ପ୍ରେରଣାରେ ଏ କବିତା ସଂକଳନ "ଏକ ଯାତ୍ରା" - ୧୨ ଜଣ ଭାରତୀୟ କବି ଓ ୪ ଜଣ ବିଦେଶୀ କବିଙ୍କ ଦ୍ୱାରା ଅନୁବାଦ କାର୍ଯ୍ୟ ଚାଲୁ ରହିଛି । ଏହାକୁ ପ୍ରଧାନମନ୍ତ୍ରୀଙ୍କ ପ୍ରମୁଖ ସଚିବ - ଓଡିଆ ପୁଅ ଡକ୍ଟର ପ୍ରମୋଦ କୁମାର ମିଶ୍ରଙ୍କୁ ଉତ୍ସର୍ଗ କରାଯାଇଛି

### ୪. ଗବେଷଣାତ୍ମକ ସନ୍ଦର୍ଭ ସାହିତ୍ୟ -

ସୁବାଷ ଙ୍କ ଗବେଷଣା - "ଓଡିଆ ସାହିତ୍ୟକୁ ନନ୍ଦିନୀ ଶତପଥି ଙ୍କ ଅବଦାନ" ର ଫଳସୃତ୍ରୀ - ଗବେଷଣାତ୍ମକ ସନ୍ଦର୍ଭ ସାହିତ୍ୟ - "ସାରସ୍ୱତସାଧିକା ନନ୍ଦିନୀ ଶତପଥି" - ଏଥିରେ ନନ୍ଦିନୀ ଦେବୀଙ୍କ ସାହିତ୍ୟିକ ଜୀବନୀ ସହିତ ରାଜନୈତିକ ଜୀବନୀ ଉଲ୍ଲେଖିତ । ଏକଗୋଟି କବିତା - ଉତର ପୁରୁଷ ଓ ଦୁଇଗୋଟି ଗଳ୍ପ ସଂକଳନ - କେତୋଟି କଥା, ସପ୍ତଦର୍ଶୀ ସହିତ ଚାରିଗୋଟି ଅନୁବାଦ ପୁସ୍ତକ - ତସ୍‌ଲିମା ନାସରିନ ଙ୍କ ଲଜ୍ଜ୍ୟା, ଅମୃତା ପ୍ରୀତମ ଙ୍କ ରେଭ୍ୟୁନ୍ ଟିକେଟ୍, ମହେଶ୍ୱତା ଦେବୀଙ୍କ ନିର୍ବାଚିତ ଗଳ୍ପ ଓ କୃଷ୍ଣା କ୍ରିପାଳିନୀ ଙ୍କ ଗାନ୍ଧୀ କଥାମୃତ କୁ ସେ ଓଡିଆରେ ଅନୁବାଦ କରିଥିଲେ । ତମାମ ରାଜନୈତିକ ଜୀବନ ମଧ୍ୟରେ ନନ୍ଦିନୀ ଦେବୀ ଓଡିଶାର ମୁଖ୍ୟମନ୍ତ୍ରୀ ତଥା ଭାରତର କେନ୍ଦ୍ରମନ୍ତ୍ରୀ ପଦବୀରେ ଥାଇ ମଧ୍ୟ ସାହିତ୍ୟ ସାଧନାକୁ ଭୁଲିପାରିନଥିଲେ । ତାହା ଏଥିରେ ବିଷାଦ ଭାବରେ ବର୍ଣ୍ଣିତ । ଏହି ପୁସ୍ତକଟିକୁ ନନ୍ଦିନୀ ଙ୍କ ଜୀବନୀ ଲେଖକ ଶ୍ରୀ ଆଶିଷ ରଞ୍ଜନ ମହାପାତ୍ର ଙ୍କୁ ଅର୍ପଣ କରାଯାଇଅଛି ।

### ୫. ଗଳ୍ପ ସାହିତ୍ୟ -

ସୁବାଷ ଙ୍କ ଗଳ୍ପ ସଂକଳନ - "ପଥହରା ପଥିକ" - ଏକ ଉଚ୍ଚକୋଟୀର ନିଜ ଅନୁଭୂତି ସମ୍ପର୍ଣ୍ଣ ଗଳ୍ପ ସାହିତ୍ୟଟିଏ । ନିଜ ଜୀବନ ମଧ୍ୟରେ ଘଟି ଯାଇଥିବା ଅନେକ ଘଟଣା ଓ ଦୁର୍ଘଟଣାକୁ ସଚରାଚରରେ ଲେଖିବା କୌଣସି ଲେଖକ ଙ୍କ ପକ୍ଷରେ ଦୁଃରୂହ ବ୍ୟାପାର, ମାତ୍ର ସୁବାଷ ନିଜର ଭାବ ଓ ଭାଷାରେ ଏହାକୁ ଗଳ୍ପରେ ରୂପାନ୍ତରିତ କରିଛନ୍ତି । ଏଥିରେ ବାରଗୋଟି ଗଳ୍ପ ସ୍ଥାନୀତ ହୋଇଅଛି । ସେଗୁଡିକ ହେଲା - ପଥହରା ପଥିକ, ଜନ୍ମଲଗ୍ନ, ଶିକ୍ଷାଳୟ, କର୍ମକ୍ଷେତ୍ର, ଧର୍ମପତ୍ନୀ, ଭାଉଜ, ଶାଳୀ ଦୁଇଟି, ଭଉଣୀର ରାକ୍ଷୀ, ଭାଇବୋହୂ, ଗୁରୁଦେବ, ମହାମାରୀ କରୋନା ଆଣିଦେଲା ସାହିତ୍ୟ ରଚନା, ପଥହରା ପଥିକର ସ୍ୱପ୍ନ ସାଂସଦ (ଏମ୍.ପି.) ପ୍ରମୁଖ ସ୍ଥାନ ପାଇଅଛି । ଏହି ପୁସ୍ତକଟି ସୁବାଷ ଙ୍କ ଧର୍ମପତ୍ନୀ ତୁଳସୀ ସାହୁ (ଟିକି) ଙ୍କୁ ଉତ୍ସର୍ଗ କରାଯାଇଛି ।

### ୬. ପ୍ରବନ୍ଧ ସାହିତ୍ୟ -

ସୁବାଷ ଙ୍କ "ଭାରତୀୟ ସାହିତ୍ୟ ର କାବ୍ୟପୁରୁଷ ନରେନ୍ଦ୍ର ମୋଦି ଓ କାଳିନ୍ଦୀଚରଣ ପାଣିଗ୍ରାହୀ" - (ଏକ ଆଲୋଚନାତ୍ମକ ପ୍ରବନ୍ଧ ସାହିତ୍ୟ) । ଏହି ପ୍ରବନ୍ଧ ସାହିତ୍ୟଟି ତାଙ୍କ ଉଚ୍ଚତର ଗବେଷଣା ପୋଷ୍ଟ-ଡକ୍ଟରାଲ / ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) ବିଷୟବସ୍ତୁ - "ଓଡିଆ ସାହିତ୍ୟ ର କବି କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ସାହିତ୍ୟ ର କବି ନରେନ୍ଦ୍ର ମୋଦିଙ୍କ କାବ୍ୟଜଗତ - ଏକ ଅଧ୍ୟୟନ" ର ଝଲକ ଅଟେ । ଏଥିରେ ଉପକ୍ରମ (ଅଗ୍ରଲେଖ) ସହିତ ନରେନ୍ଦ୍ର ମୋଦି, ରାଷ୍ଟ୍ରନାୟକ ନରେନ୍ଦ୍ର ମୋଦି, ସାହିତ୍ୟସ୍ରଷ୍ଟା ନରେନ୍ଦ୍ର ମୋଦି, କବି ନରେନ୍ଦ୍ର ମୋଦି ଏବଂ କାଳିନ୍ଦୀଚରଣ ପାଣିଗ୍ରାହୀ, ସାରସ୍ୱତସାଧକ କାଳିନ୍ଦୀଚରଣ ପାଣିଗ୍ରାହୀ, କବି କାଳିନ୍ଦୀଚରଣ ପାଣିଗ୍ରାହୀ ତଥା ନରେନ୍ଦ୍ର ମୋଦି ଓ କାଳିନ୍ଦୀଚରଣ ପାଣିଗ୍ରାହୀ ଙ୍କ ସାହିତ୍ୟିକ ଜୀବନର ଉନ୍ମେଷ ଓ ଉତୋରଣ ଓ ଭାରତୀୟ

ସାହିତ୍ୟ ର କାବ୍ୟପୁରୁଷ ନରେନ୍ଦ୍ର ମୋଦି ଓ କାଳିନ୍ଦୀଚରଣ ପାଣିଗ୍ରାହୀ ଆଦି ବିଷାଦ ଭାବରେ ବର୍ଣ୍ଣିତ ହୋଇଅଛି । ପରିଶେଷରେ ସହାୟକ ଗ୍ରନ୍ଥସୂଚୀ ସ୍ଥାନୀତ ହୋଇଅଛି । ଏ ପ୍ରବନ୍ଧ ପୁସ୍ତିକାଟିକୁ ସୁବାଷ ତାଙ୍କର ଗବେଷଣା ଗୁରୁଦେବ ପ୍ରଫେସର ଆଦିକନ୍ଦ ସାହୁଙ୍କୁ ଉତ୍ସର୍ଗ କରିଅଛନ୍ତି ।

**୭. ନାଟ୍ୟ ସାହିତ୍ୟ -**

ସୁବାଷ ଙ୍କ ନାଟ୍ୟ ସାହିତ୍ୟ - "ଅସ୍ତମିତ ସୂର୍ଯ୍ୟ - ବାବାଜୀ" - (ଏକ ସାମାଜିକ ରଚିତ ନାଟ୍ୟ ସାହିତ୍ୟ) । ଏଥିରେ ସେ ତାଙ୍କ ଜେଜେବାପା ବାବାଜୀ ଙ୍କ ଉପରେ ଆଧାରକରି ନାଟକଟିକୁ ରଚନା କରିଛନ୍ତି । "ବିଧିର ବିଧାନ କେ କରିବ ଆନ" ନ୍ୟାୟରେ ଯୌବନରେ ବାବାଜୀ ଆରପାରିକୁ ଚାଲି ଯାଇଥିଲେ । ଚାରିଗୋଟି ପୁଅ ଓ ଏକମାତ୍ର କନ୍ୟା ସହ ଧର୍ମପତ୍ନୀ ଭୂତିଦେବୀ ଙ୍କୁ ଛାଡି ସଂସାର ରୁ ବିଦାୟ ନେଇଥିଲେ ଏକ ରୋଗାଗ୍ରସ୍ତ ଭାବରେ ।

ନାଟକଟିରେ ବିଷୟପିଣ୍ଡରେ ନାଟ୍ୟକାରଙ୍କ ଦୃଷ୍ଟିରେ ନାଟକ, ବାବାଜୀ, ସ୍ୱାମୀହରା ପତ୍ନୀ ଭୂତିଦେବୀ, ବଡପୁତ୍ର ଦୁଃଶାସନ, କନ୍ୟାରତ୍ନ ବେଙ୍ଗୁଲି, ମଧ୍ୟମପୁତ୍ର ଭୀମସେନ, ପୁତ୍ର ରାମଚନ୍ଦ୍ର, କନିଷ୍ଠପୁତ୍ର ଭାଗବତ, ନାଟକର ଜବନୀକା ସ୍ଥାନୀତ ହୋଇଅଛି ।

ବାପା ଚାଲିଗଲା ପରେପରେ ୨ ରୁ ୧୨ ବର୍ଷ ବୟସର ସମସ୍ତ ବାପା ଛେଉଣ୍ଡ ପିଲାମାନେ ସମାଜରେ ଦୁଃଖକଷ୍ଟରେ କିପରି ଠିଆହୋଇ ସେମାନେ ସେମାନଙ୍କର ପିଲାମାନଙ୍କୁ ସମାଜରେ ଶିକ୍ଷାଦୀକ୍ଷା ଦେଇ ମଣିଷ କରିଛନ୍ତି, ତାହାର ଏକ ନିଚ୍ଛକ ପ୍ରତିଛବି । ଏହି ପୁସ୍ତକଟିକୁ ସୁବାଷ ତାଙ୍କ ମଧ୍ୟମଭାଇ ତଥା ବାବାଜୀ ଙ୍କ ନାତି ଆଡଭୋକେଟ୍ ପ୍ରକାଶ ନାୟକ ଙ୍କୁ ଉତ୍ସର୍ଗ କରିଅଛନ୍ତି ।

**୮. ଜୀବନୀ ସାହିତ୍ୟ -**

ସୁବାଷ ଙ୍କ ଏକ ଅନନ୍ୟ ସୃଷ୍ଟି ଜୀବନୀ ସାହିତ୍ୟ - "ରାମଚନ୍ଦ୍ର ନାୟକ - ଏକ ଅମ୍ଳାନ ପ୍ରତିଭା" - (ଏକ ଜୀବନୀ ସାହିତ୍ୟ) - ଏହି ଜୀବନୀ ପୁସ୍ତିକାଟି ସୁବାଷ ଙ୍କ ଜନ୍ମଦାତା ବାପା ରାମଚନ୍ଦ୍ର ନାୟକ ଙ୍କ ଜୀବନୀ ଉପରେ ଆଧାରିତ । ମାତ୍ର ପାଚଂବର୍ଷ ବୟସରେ ପିତୃହରା ହୋଇ ରାମଚନ୍ଦ୍ର କିପରି ଜୀବନରେ ହାରିନଯାଇ ଅଦ୍ୟମ ଚେଷ୍ଟାବଳରେ ସମାଜରେ ପ୍ରତିଷ୍ଠିତ ହୋଇ ପାରିଥିଲେ ଜଣେ ଜାତୀୟ ସ୍ତରୀୟ କାଠଶିଳ୍ପୀ ଓ ରାଜନେତା ଭାବରେ ତାହା ବର୍ଣ୍ଣିତ । ଧର୍ମପତ୍ନୀ ସୁଗୃହିଣୀ ଭାରତୀଦେବୀ ତଥା ଏକମାତ୍ର କନ୍ୟା ଲେଖିକା ଜୟନ୍ତୀ, ବଡପୁଅ ଅଧ୍ୟାପକ ସୁବାଷ, ମଧ୍ୟମପୁତ୍ର ଓକିଲ ପ୍ରକାଶ, ସାନପୁଅ ଶିକ୍ଷକ ମାନସ କୁ ସମାଜରେ ପ୍ରତିଷ୍ଠିତ କରିପାରିଛନ୍ତି, ଏଥିରେ ବର୍ଣ୍ଣିତ । ଏତଦ୍ ସହିତ ପିତୃହରା ରାମଚନ୍ଦ୍ର, କର୍ମବୀର ଶିଳ୍ପୀ ରାମଚନ୍ଦ୍ର, ସନ୍ତାନବତ୍ସଳ ବାପା ରାମଚନ୍ଦ୍ର, ସମାଜସେବୀ ରାମଚନ୍ଦ୍ର, ରାଜନେତା ରାମଚନ୍ଦ୍ର ଓ ସ୍ମୃତିର ଆଇନାରେ ଫଟୋଗୁଚ୍ଛ ସହ ମାନପତ୍ର (ସାର୍ଟିଫିକେଟ୍) ବର୍ଣ୍ଣିତ । ଏ ପୁସ୍ତକଟିକୁ ସୁବାଷ ତାଙ୍କ ବାପା ରାମଚନ୍ଦ୍ର ଙ୍କୁ ଉତ୍ସର୍ଗ କରିଅଛନ୍ତି ।

**୯. ଉପନ୍ୟାସ ସାହିତ୍ୟ -**

ସୁବାଷ ଙ୍କ ଉପନ୍ୟାସ - "ଭାରତୀଦେବୀ - ଏକ ନାରୀକେନ୍ଦ୍ରୀକ ଉପନ୍ୟାସ ସାହିତ୍ୟ" । ଏହି ଉପନ୍ୟାସ ସେ ନିଜର ଜନ୍ମଦାତ୍ରୀ ଭାରତୀଦେବୀ (ମା'ଙ୍କ) ଜୀବନୀକୁ ଆଧାରକରି ଲେଖିଛନ୍ତି । ଅସାଧାରଣ ପ୍ରତିଭାର ଅଧିକାରିଣୀ ଭାରତୀଦେବୀ ଏହାକୁ ଯଥୋଚିତ ପ୍ରତିପାଦନ କରିପାରିଛନ୍ତି ।

ସ୍ୱାମୀ ରାମଚନ୍ଦ୍ର ସର୍ବୋପରି ନାୟକ ପରିବାର ନିଜର ଚାରି ସନ୍ତାନ ଓ ସନ୍ତତି ର ସବୁ କାର୍ଯ୍ୟକୁ ତୁଲାଇ ସେ ସେମାନଙ୍କୁ ସମାଜରେ ପରିଚିତ କରାଇବାରେ ବଡ ଭୂମିକା ନେଇଅଛନ୍ତି । ସତେ ଅବା ନାରୀ ନୁହେଁ ସେ ନାରାୟଣୀ ଉପନ୍ୟାସଟିରେ କନ୍ୟାରତ୍ନ ଭାରତୀ, ଭଗିନୀ ଭାରତୀ, ଧର୍ମପତ୍ନୀ ଭାରତୀ, ଜନନୀ ଭାରତୀ, ଶାଶୁମା ଭାରତୀ, ଆଈମା ଭାରତୀ, ଜେଜେମା ଭାରତୀ, ସ୍ମୃତିର ଆଇନାରେ ଭାରତୀଦେବୀ ଙ୍କ କିଛି ଫଟୋଗୁଚ୍ଛ ସ୍ଥାନୀତ ।

ଭାରତୀଦେବୀ ଙ୍କ ପାଖରେ ପୁଅ, ବୋହୂ, ନାତି, ନାତୁଣୀ ଓ ଝିଅ, ଜ୍ୱାଇଁ ସମସ୍ତେ ସମାନ । ଏ ପୁସ୍ତିକାଟି ଭାରତୀଦେବୀ ଙ୍କ କନ୍ୟାରତ୍ନ ଲେଖିକା ଜୟନ୍ତୀ ଙ୍କୁ ଉତ୍ସର୍ଗ କରାଯାଇଅଛି ।

**୧୦. ସମାଲୋଚନା ସାହିତ୍ୟ -**

ସୁବାଷ ଙ୍କ ସମାଲୋଚନା ସାହିତ୍ୟ - "ସୃଜନପ୍ରଭା - ଓଡିଆ ସାହିତ୍ୟ ର ସୃଷ୍ଟି ଓ ସ୍ରଷ୍ଟା" - (ଏକ ସୃଜନଶୀଳ ସମାଲୋଚନା ସାହିତ୍ୟ) - ଓଡିଆ ଜାତିର ପ୍ରାଣକେନ୍ଦ୍ର ମହାପ୍ରଭୁ ଜଗନ୍ନାଥ ଙ୍କୁ ପୁସ୍ତକରେ ବିମୋଣ୍ଡିତ କରାଯାଇଛି ।

ଓଡିଆ ସାହିତ୍ୟ ର ଏକ ଆଧୁନିକ ସମାଲୋଚନା ସାହିତ୍ୟ । ଏଥିରେ ଓଡିଆ ସାହିତ୍ୟ ର କୋଡିଏ ଜଣ ସାହିତ୍ୟିକ ଙ୍କ ଜୀବନ ଓ ସୃଜନ ଙ୍କୁ ଉପସ୍ଥାପନା କରାଯାଇଛି ।

ପ୍ରାରମ୍ଭିକ ଭାଗରେ - ଓଡିଆ ସାହିତ୍ୟ ର ସୃଷ୍ଟି ଓ ସ୍ରଷ୍ଟା ପରେପରେ ସାହିତ୍ୟିକ ଗଣ -

ଫକୀରମୋହନ ସେନାପତି, ରାଧାନାଥ ରାୟ, ଗଙ୍ଗାଧର ମେହେର, ଗୋପବନ୍ଧୁ ଦାସ, ହରେକୃଷ୍ଣ ମହତାବ, କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋପିନାଥ ମହାନ୍ତି, ଚିତରଞ୍ଜନ ଦାସ, ଜାନକୀ ବଲ୍ଲଭ ପଟ୍ଟନାୟକ, ପଠାଣୀ ପଟ୍ଟନାୟକ, ଜୟନ୍ତ ମହାପାତ୍ର, ନନ୍ଦିନୀ ଶତପଥି, କୃଷ୍ଣଚରଣ ବେହେରା, ମନୋଜ ଦାସ, ରମାକାନ୍ତ ରଥ, ବିଣାପାଣୀ ମହାନ୍ତି, ସୀତାକାନ୍ତ ମହାପାତ୍ର, ବିଭୁତି ପଟ୍ଟନାୟକ, ପ୍ରତିଭା ରାୟ ଓ ରତ୍ନାକର ଚଇନି ସ୍ଥାନ ପାଇଛନ୍ତି ।

ଏହି ପୁସ୍ତିକାଟିକୁ ସୁବାଷ ତାଙ୍କ ସାନଭାଇ ଇଂରାଜୀ ସାହିତ୍ୟ ର ଲେଖକ, ଗବେଷକ, ଶିକ୍ଷକ ଡକ୍ଟର ମାନସ ନାୟକ ଙ୍କୁ ଉତ୍ସର୍ଗ କରିଅଛନ୍ତି ।

**୧୧. ସଂକଳକ (ସନ୍ଦର୍ଭକାର) ସାହିତ୍ୟ -**

ସୁବାଷ ଙ୍କ ଏକ ସଂକଳନ ପୁସ୍ତକ - ନରେନ୍ଦ୍ର ମୋଦିଙ୍କ କାବ୍ୟମାନସ - "ଏକ ଯାତ୍ରା" - ଭାରତୀୟ ସାହିତ୍ୟରେ ପ୍ରତିଫଳିତ - (ଏକ ଗବେଷଣାତ୍ମକ ସନ୍ଦର୍ଭ କାବ୍ୟ ସାହିତ୍ୟ) ।

ନରେନ୍ଦ୍ର ମୋଦିଙ୍କ ଗୁଜୁରାଟୀ କବିତା ପୁସ୍ତକ - "ଆଖାଁ ଆଁ ଧନ୍ୟ ଛେ" କୁ ଇଂରାଜୀରେ ଅନୁବାଦ କରିଛନ୍ତି - ରବିମନ୍ଥା ଓ ଶାସ୍ତ୍ରୀୟ ଓଡିଆ ଭାଷାରେ ଅନୁବାଦ କରିଅଛନ୍ତି - ପ୍ରଫେସର ଡକ୍ଟର ସୁବାଷ ନାୟକ, ଏହାକୁ ହିନ୍ଦୀରେ ଅନୁବାଦ କରିଛନ୍ତି - ଡକ୍ଟର ଅଞ୍ଜନା ସନ୍ଧିର ଓ ସଂସ୍କୃତରେ ଅନୁବାଦ କରିଛନ୍ତି - ରାଜଲକ୍ଷ୍ମୀ ଶ୍ରୀନିବାସନ ।

ସୁବାଷ ଙ୍କ ପ୍ରତ୍ୟକ୍ଷ ପ୍ରେରଣା ବହି ପ୍ରଦାନ ଦ୍ୱାରା ଭାରତୀୟ ଭାଷା ଯଥା - ତାମିଲ୍, ତେଲୁଗୁ, ମରାଠୀ, ମାଲାୟଲମ, ଆସାମିଜ୍, ବେଙ୍ଗଲି, ସିନ୍ଧି, ରାଜସ୍ଥାନୀ, ପଞ୍ଜାବୀ, କନ୍ନଡ, ସାନ୍ତାଳୀ ଆଦି ଭାଷାରେ ଅନୁବାଦ କାର୍ଯ୍ୟ ଚାଲୁ ରହିଅଛି ।

ଏହା ଭାରତୀୟ ସାହିତ୍ୟକୁ ଅମୂଲ୍ୟ ଦାନ । ଏ ପୁସ୍ତକଟିକୁ ସୁବାଷ ତାଙ୍କ କର୍ମଗୁରୁ ଜ୍ଞାନେନ୍ଦ୍ର କୁମାର ସାହୁ - ଚେୟାରମ୍ୟାନ - ବିଦ୍ୟାର୍ଥୀ ରେସିଡେନ୍‌ସିଆଲ କଲେଜ, ଢେଙ୍କାନାଳଙ୍କୁ ଉତ୍ସର୍ଗ କରିଅଛନ୍ତି ।

**୧୨. ସଂକଳନ (ସନ୍ଦର୍ଭ) ସାହିତ୍ୟ -**

ସୁବାଷ ଙ୍କ ଏକ ସଂକଳନ ପୁସ୍ତକ - ନରେନ୍ଦ୍ର ମୋଦିଙ୍କ କାବ୍ୟମାନସ - "ଏକ ଯାତ୍ରା" - ବିଶ୍ୱସାହିତ୍ୟ ରେ ପ୍ରତିଫଳନ - (ଏକ ଉଚ୍ଚ ଗବେଷଣାତ୍ମକ ସନ୍ଦର୍ଭ କାବ୍ୟ ସାହିତ୍ୟ) ।

ନରେନ୍ଦ୍ର ମୋଦିଙ୍କ ଗୁଜୁରାଟୀ ପୁସ୍ତକ - "ଆଖି ଆଁ ଧନ୍ୟ ଛେଁ" କୁ ଇଂରାଜୀରେ ଅନୁବାଦ କରିଛନ୍ତି - ରବିମନ୍ଥା ଓ ଓଡିଆ ଭାଷାରେ ଅନୁବାଦ କରିଛନ୍ତି - ପ୍ରଫେସର ଡକ୍ଟର ସୁବାଷ ନାୟକ ।

ସୁବାଷ ଙ୍କ ପ୍ରେରଣାରେ ୧୫ ଜଣ ଭାରତୀୟ କବି ଏହାକୁ ଅନୁବାଦ କରିବା ସହିତ ୫ ଜଣ ବିଶ୍ୱର କବି ଅନୁବାଦ କରୁଅଛନ୍ତି

ଆର୍ଜେଣ୍ଟିଂନା ରାଷ୍ଟ୍ରର ସିନେଟ୍ ସଦସ୍ୟ ଡକ୍ଟର ସୁଷନା ରୋବର୍ଟ - ଏହାକୁ ବିଶ୍ୱର ବହୁଳ ପ୍ରସାରିତ ସ୍ପାନିସ୍ ଭାଷାରେ ଅନୁବାଦ କରିଛନ୍ତି । ଫ୍ରାନ୍ସ ଭାଷାରେ ଅନୁବାଦ କରିଅଛନ୍ତି - ଥୋରା ମାରିଆ ରୋବର୍ଟ ।

ଚୀନ୍, ଫ୍ରାନ୍ସ, ଆମେରିକା, ଭୁଟାନ, ନେପାଳ, ବାଲାଂଦେଶ ର କବିମାନେ ଅନୁବାଦ କାର୍ଯ୍ୟ ଚାଲୁ ରଖିଛନ୍ତି, ଯାହାକି ବିଶ୍ୱ ସାହିତ୍ୟକୁ ଅବଦାନ ।

ସୁବାଷ ଏ ପୁସ୍ତକଟିକୁ ବର୍ତ୍ତମାନର ତାଙ୍କର କର୍ମଗୁରୁ ଅଧ୍ୟାପକ ତ୍ରିଦେବ ବେହେରା - ଚେୟାରମ୍ୟାନ - ଟେଟ୍ରାହେଡ୍ରନ ଗ୍ରୁପ୍ ଅଫ୍ ଇନିଟ୍ୟୁସନ୍ସ, ଟାଙ୍ଗୀ, କଟକ ଙ୍କୁ ଉତ୍ସର୍ଗ କରିଅଛନ୍ତି ।

**୧୩. ଅନୁବାଦ ସାହିତ୍ୟ -**

ସୁବାଷ ଙ୍କ ଅନ୍ୟଏକ ଅନୁବାଦ ସାହିତ୍ୟ - "ଦେବୀ ମା'ଙ୍କୁ ଚିଠି" - ନରେନ୍ଦ୍ର ମୋଦିଙ୍କ କାବ୍ୟାଞ୍ଜଳୀ । ମୋଦି ତପସୀ ଜୀବନ ଅତିବାହିତ କରୁଥିବା ସମୟରେ ରାତ୍ରି ସମୟରେ ଦେବୀ ମା'ଙ୍କୁ ଆରାଧନା କରି କବିତା ଲେଖୁଥିଲେ ଓ ତାକୁ ଚିରି ପକାଇ ଦେଉଥିଲେ, ମାତ୍ର କେତେଗୋଟି କବିତା ତାଙ୍କ ଡାଏରୀରେ ରହିଯାଇଥିଲା । ପରବର୍ତ୍ତୀ ସମୟରେ ତାହା ଗୁଜୁରାଟୀ କବିତା ପୁସ୍ତକ - "ସାହିଭାବ" ନାମରେ ପ୍ରକାଶିତ ହେଲା । ଏଥିରେ ୧୬ ଗୋଟି କବିତା ରହିଅଛି ।

ଏହାକୁ ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି - ହିନ୍ଦୀ ଫିଲ୍ମ ଜଗତର ସଂଳାପ ପଦ୍ମଶ୍ରୀ ଭାବନା ସୌମ୍ୟା । ଓଡିଆ ଭାଷାରେ ଅନୁବାଦ କରିଛନ୍ତି - ପ୍ରଫେସର ଡକ୍ଟର ସୁବାଷ ନାୟକ ।

ସୁବାଷ ଏ ପୁସ୍ତିକାଟିକୁ ଉତ୍ସର୍ଗ କରିଛନ୍ତି - ହିରାବେନ୍ ମୋଦିଙ୍କୁ । ନରେନ୍ଦ୍ର ମୋଦିଙ୍କ ମା' ହିରାବେନ୍ ଦେବୀ । ତାଙ୍କ ସୁଯୋଗ୍ୟ ସନ୍ତାନ ନରେନ୍ଦ୍ର ଭାରତୀୟ ସାହିତ୍ୟ ଓ ରାଜନୀତି କାହିଁକି ବିଶ୍ୱ ସାହିତ୍ୟ ଓ ବିଶ୍ୱ ରାଜନୀତିରେ ଜଣେ ସଫଳ ମଣିଷ ।

**୧୪. ପ୍ରବନ୍ଧ ସାହିତ୍ୟ -**

ସୁବାଷ ଙ୍କ ଅନ୍ୟଏକ ସୃଷ୍ଟି - ସୃଜନଧାରା - ଓଡିଆ ସାହିତ୍ୟ ର ସାଧକ ଓ ସାଧନା - (ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ) ।

ଏହା ଉତର ଆଧୁନିକ ଓଡିଆ ସାହିତ୍ୟ ର ଏକ ସାହିତ୍ୟାବଳୀ । ଓଡିଆ ସାହିତ୍ୟ ର କୋଡିଏ ସାହିତ୍ୟିକ ଙ୍କ ଜୀବନୀ ଓ ସୃଜନୀ ଉପରେ ଏ ପୁସ୍ତକ ଆଧାରିତ ।

ବିଷୟ ପିଣ୍ଡିର ପ୍ରାରମ୍ଭରେ ଉତର ଆଧୁନିକ ଓଡିଆ ସାହିତ୍ୟ ର ସଂକ୍ଷିପ୍ତିକରଣ ସହ ସାହିତ୍ୟିକ ଙ୍କ ଜୀବନୀ ଓ ସୃଜନୀ କୁ ସ୍ଥାନୀତ କରାଯାଇଛି । ଏଥିରେ ଦେବୀପ୍ରସନ୍ନ ପଟ୍ଟନାୟକ, ଆଦିକନ୍ଦ ସାହୁ, ଉଦୟନାଥ ସାହୁ, ମଣୀନ୍ଦ୍ର କୁମାର ମେହେର, କୃଷ୍ଣଚନ୍ଦ୍ର ପ୍ରଧାନ, ନୀଳାଦ୍ରିଭୂଷଣ ହରିଚନ୍ଦନ, ବିଷ୍ଣୁପ୍ରିୟା ଓଟା, ବାଉରୀବନ୍ଧୁ କର, ଅନ୍ତର୍ଯ୍ୟାମୀ ମିଶ୍ର, ହରପ୍ରସାଦ ଦାସ, ରାମଚନ୍ଦ୍ର ବେହେରା, ତରୁଣକାନ୍ତି ମିଶ୍ର, ଗୌରହରି ଦାସ, ସନ୍ତୋଷ କୁମାର ତ୍ରିପାଠୀ, ନୃସିଂହଚରଣ ଷଡଙ୍ଗୀ, ବିଷ୍ଣୁ ସାହୁ, ବୈଷ୍ଣବଚରଣ ସାମଲ, ବିଜୟାନନ୍ଦ ସିଂହ, ଧନେଶ୍ୱର ସାହୁ, ସୁବାଷ ନାୟକ ପ୍ରମୁଖଙ୍କ କୃତିକୁ ଉପସ୍ଥାପିତ କରାଯାଇଅଛି - ଏହା ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ ଅଟେ ।

ଏହି ପୁସ୍ତକଟିକୁ ସୁବାଷ ନିଜର ଗୁରୁ ଡକ୍ଟର ନୃସିଂହଚରଣ ମିଶ୍ର (ପ୍ରଧାପକ ଓଡ଼ିଆ ସାହିତ୍ୟ)ଙ୍କୁ ଉତ୍ସର୍ଗ କରିଅଛନ୍ତି, ଯେକି ସୁବାଷ ଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟ (ଏମ୍.ଏ.) ଶ୍ରେଣୀରେ ଅଧ୍ୟୟନରେ ଦିଗ୍‌ଦର୍ଶକ ଭାବରେ କାର୍ଯ୍ୟ କରିଥିଲେ ।

ବାସ୍ତବିକ୍ ଦୀର୍ଘ ତିନି ହଜାର ବର୍ଷର ଏହି ଆମ ଶାସ୍ତ୍ରୀୟ ଓଡ଼ିଆ ଭାଷା ଓ ସାହିତ୍ୟ, ଯଦି ଏକ ମହାସାଗର ହୁଏ, ସୁବାଷ ଙ୍କ ସାହିତ୍ୟ କୃତି ଏକ ସିନ୍ଧୁର ବିନ୍ଦୁ ଭାବରେ ଜଣେ ସାହିତ୍ୟିକ ଭାବରେ ପରିଚିତ ।

ଓଡ଼ିଆ ଏକ ଜାତି, ଏ ଜାତିର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥ । ଏହାର ସଂସ୍କୃତି ଅତି ପ୍ରାଚୀନ । ଭାରତୀୟ ଦର୍ଶନ ଓ ସାହିତ୍ୟ କ୍ଷେତ୍ରରେ ଓଡ଼ିଆଙ୍କ ଅବଦନା ଅତୁଳନୀୟ । ଭାରତୀୟ କଳା, ଶିଳ୍ପ, ସମ୍ପ୍ରୃତି, ସାହିତ୍ୟରେ ଓଡ଼ିଆଙ୍କ ସ୍ୱାକ୍ଷର ସର୍ବଦା ସ୍ମରଣୀୟ । କାଳଜୟୀ ସାହିତ୍ୟିକ ମାନେ ସାହିତ୍ୟ ରଚନାକରି ଓଡ଼ିଆ ଜାତିକୁ ଭାରତ କାହିଁକି ବିଶ୍ୱରେ ମଧ୍ୟ ପ୍ରତିଷ୍ଠିତ କରାଇ ଯାଇଅଛନ୍ତି । ଅନେକ କାଳଜୟୀ ସ୍ରଷ୍ଟାଙ୍କ ସୃଷ୍ଟିରେ ଏ ସାହିତ୍ୟ ଅନୁପ୍ରାଣିତ । ସେଥିରୁ ବା ସୁବାଷ ଜଣେ ସାହିତ୍ୟିକ ଭାବରେ ବାଦ୍ ପଡ଼ନ୍ତା ବା କିପରି ?

**୧୫. ଆତ୍ମଜୀବନୀ -**

ମାଟିର ମଣିଷ - ପ୍ରଫେସର ସୁବାଷ ନାୟକ - (ଏକ ଆତ୍ମଜୀବନୀ) - ଓଡ଼ିଆ ସାହିତ୍ୟ ର ଜଣେ ଅଧ୍ୟାପକ, ସାହିତ୍ୟିକ ଓ ଗବେଷକ ଭାବରେ ପ୍ରଫେସର ଡକ୍ଟର ସୁବାଷ ନାୟକ ପରିଚିତ । ନିଜ ଜୀବନୀ ଓ ସୃଜନୀକୁ ନେଇ ତାଙ୍କ ଆତ୍ମଜୀବନୀ - "ମାଟିର ମଣିଷ - ପ୍ରଫେସର ସୁବାଷ ନାୟକ" ।

ଜଣେ ସାଧାରଣ ମଣିଷ ଭାବରେ ଜୀବନଶୈଳୀ ସହିତ ଆଗାମୀ ପିଢ଼ି କିପରି ତାଙ୍କର ସାରସ୍ୱତକୃତିକୁ ଅଧିକ ଜାଣିବା ସହିତ ଯୁବ ଅଧ୍ୟାପକମାନେ ତାଙ୍କୁ ସୃଷ୍ଟିକୁ ନେଇ ଗବେଷଣା କରିବାରେ ଏ ପୁସ୍ତିକାଟି ସହାୟକ ହୋଇପାରିବ ।

ଏ ସମସ୍ତ ସାରସ୍ୱତ କୃତି ପ୍ରଫେସର ସୁବାଷ ନାୟକ ଙ୍କ Webside - www.professorsubashnayak.comରେ E.bookରେ ବିଶ୍ୱବାସୀଙ୍କ ଜ୍ଞାତପାଇଁ Uploaded ହୋଇଅଛି ।

**ଗବେଷକ -**

ସୁବାଷ - ଓଡ଼ିଆ ଭାଷା ଓ ସାହିତ୍ୟ ର ଯେପରି ଜଣେ ଅଧ୍ୟାପକ ଠିକ୍ ସେହିପରି ଜଣେ ସାହିତ୍ୟିକ ଅବା ଗବେଷକ । ଓଡ଼ିଆ ସାହିତ୍ୟରେ ଅଧିକରୁ ଅଧିକ ଜ୍ଞାନପୀପାଷୁ ତଥା ଜିଜ୍ଞାସା ର ବିପୁଳ ଅନୁଭୂତିକୁ ଆୟୁଧ କରି ଗବେଷଣାରେ ସାଧନାରତ ।

କଲେଜରେ ସ୍ନାତକ ଶ୍ରେଣୀରେ ଅଧ୍ୟୟନ ସମୟରେ ବିଶେଷତଃ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ସାହିତ୍ୟରେ (ଏମ୍.ଏ.) ପଠନ ସହିତ ଗବେଷଣା ମନୋଜ୍ଞୀ ଥିଲେ ।

ନନ୍ଦିନୀ ଶତପଥି - ଓଡ଼ିଶାର ମୁଖ୍ୟମନ୍ତ୍ରୀ ସହିତ କେନ୍ଦ୍ରମନ୍ତ୍ରୀ ପଦରେ ଅଧିଷ୍ଠିତା ସର୍ବୋପରି ଜଣେ ଓଡ଼ିଆ ସାହିତ୍ୟିକ । ତାଙ୍କ ସୁପୁତ୍ର ତଥାଗତ ଶତପଥି - ଢେଙ୍କାନାଳ ଲୋକସଭା ସାଂସଦ ଭାବରେ ଭୁବନସ୍ଥ ବାଜିରାଉତ ମେମୋରିଆଲ କଲେଜ ଗଭନିଙ୍ଗ ବଡିରେ ଏମ୍.ପି. ନୋମିନୀ ଭାବରେ ସୁବାଷ ଙ୍କ ବାପା ରାମଚନ୍ଦ୍ର ନାୟକ କାର୍ଯ୍ୟ କରିଥିଲେ । ଏଥିରେ ପ୍ରଭାବିତ ହୋଇ ସୁବାଷ - ନନ୍ଦିନୀ ଶତପଥି ଙ୍କ ସାରସ୍ୱତ ଜୀବନରେ ଗବେଷଣା କରିବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ଗବେଷଣା ପାଇଁ (ପିଏଚ୍.ଡି.) ପାଇଁ ପ୍ରବେଶିକା ପରୀକ୍ଷାର ସଫଳତା ନପାଇ ପରବର୍ତ୍ତୀ ସମୟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପ୍ରଫେସର ଆଦିକନ୍ଦ ସାହୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ "ଓଡ଼ିଆ ସାହିତ୍ୟକୁ ନନ୍ଦିନୀ ଶତପଥି ଙ୍କ ଅବଦାନ" ପ୍ରସଙ୍ଗରେ ଗବେଷଣା କରି ପିଏଚ୍.ଡି. ଉପାଧି ଓଡ଼ିଶାର ମହାମହିମ ରାଜ୍ୟପାଳ ତଥା ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳାଧିପତିଙ୍କ ଠାରୁ ପାଇଅଛନ୍ତି ।

ତା' ପରେପରେ ଗବେଷଣା ଜୀବନରେ ବ୍ୟାପକ ପରିବର୍ତ୍ତନ ଘଟିଥିଲା । ଗବେଷଣାରତ ସମୟରେ ଓଡ଼ିଆ ଗବେଷଣା ପରିଷଦ - କଟକରେ ଏହାର ରୌପ୍ୟ ଜୟନ୍ତୀ ବର୍ଷରେ ଓଡ଼ିଆ ସାହିତ୍ୟ ର ଦିଗଦିଗନ୍ତ ବାର୍ଷିକ ସେମିନାର ଯୋଗଦାନ କରି "ଓଡ଼ିଆ ସାହିତ୍ୟକୁ ନନ୍ଦିନୀ ଶତପଥି ଙ୍କ ଅବଦାନ" ସନ୍ଦର୍ଭ ଉପସ୍ଥାପନା କରି ପ୍ରମାଣପତ୍ର ଗ୍ରହଣ କରିଥିଲେ - ନଭେମ୍ବର, ୨୦୦୮ ମସିହାରେ ।

ନିଜ କଲେଜ - ଭୁବନର ବାଜିରାଉତ ମେମୋରିଆଲ କଲେଜ - ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଜାତୀୟ ସେମିନାର - "ପଚଂସଖା ଯୁଗ ଧର୍ମ ସାହିତ୍ୟ" ପ୍ରସଙ୍ଗରେ ସେଠାରେ "ସାରସ୍ୱତସାଧିକା ନନ୍ଦିନୀ ଶତପଥି" ଗବେଷଣା ସନ୍ଦର୍ଭ ପାଠ କରିଥିଲେ - ନଭେମ୍ବର, ୨୦୦୭ ମସିହାରେ ଓ ପ୍ରମାଣପତ୍ର ଗ୍ରହଣ କରିଥିଲେ ।

ଗବେଷକ ସୁବାଷ ଙ୍କ ୬୦ରୁ ଉର୍ଦ୍ଧ୍ୱ ଗବେଷଣା ପତ୍ର (ସାହିତ୍ୟ ଗବେଷଣା) ମଧ୍ୟରୁ ଅନେକ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ର ଓ ପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଅଛି ।

ଓଡ଼ିଆ ଭାଷା ଶାସ୍ତ୍ରୀୟତା ଲାଭକରିବା ପରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଶାସ୍ତ୍ରୀୟ ଓଡ଼ିଆ ଭାଷା ଜାତୀୟ ପରାମର୍ଶ ଦାତା କର୍ମଶାଳାରେ (ଜାତୀୟ ସେମିନାର) ରେ ଯୋଗଦେଇ ନିଜ ଭାଷା ବିକାଶର ପାରଦର୍ଶିତା ଦର୍ଶାଇଥିଲେ । ଏହାଥିଲା - ଫେବୃୟାରୀ ମାସ ୨୦୧୬ ମସିହାରେ ।

ଜଣେ ଅଧ୍ୟାପକ ଭାବରେ ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନ, ଭୁବନେଶ୍ୱର ରେ ଗାନ୍ଧୀ ଓ ଓଡ଼ିଆ ସାହିତ୍ୟ (ଜାତୀୟ ସେମିନାର) ରେ ଭୁବନେଶ୍ୱର ରେ ଅଂଶଗ୍ରହଣ କରି ପ୍ରମାଣପତ୍ର ଗ୍ରହଣ କରିଥିଲେ - ଡିସେମ୍ବର, ୨୦୧୯ ମସିହାରେ ।

୧. ବିଶ୍ୱକବି ରବୀନ୍ଦ୍ରନାଥ ଓ ବିଶ୍ୱଭାରତୀ - ଉପରେ ରଚିତ ସନ୍ଦର୍ଭଟି ସାହିତ୍ୟ ପତ୍ରିକା - "ପ୍ରଭାସର୍ଜନା" ରେ ପ୍ରକାଶିତ ହୋଇଥିଲା - ଡିସେମ୍ବର, ୨୦୧୧ ମସିହାରେ ।

୨. ନନ୍ଦିନୀ ଶତପଥି ସାରସ୍ୱତସାଧିକା - "ଜନନେତ୍ରୀ" ପ୍ରକାଶିତ - ଓଡିଶା ସରକାର ଙ୍କ ଉତ୍କଳ ପ୍ରସଙ୍ଗ - ଜୁନ୍, ୨୦୧୩ ।

୩. ରାଧାନାଥ - ଦ ଆପ୍ରୋଚ ମେକର - ପ୍ରକାଶିତ - ଗବେଷଣା ଧର୍ମୀ ପ୍ରତିକା "ଭିଜନ" - ଡିସେମ୍ବର, ୨୦୧୨ ।

୪. ଓଡିଆ ସାହିତ୍ୟ ର ଏକ କାଳଜୟୀ ପୁରୁଷ ପ୍ରଫେସର ଚିତରଞ୍ଜନ ଦାସ - ସାହିତ୍ୟ ପତ୍ରିକା - ସୃଜନଶୀଳତା - "ନବନୀତା" - ସେପ୍ଟେମ୍ବର, ୨୦୧୩ ।

୫. ଶାନ୍ତି ନିକେତନ - ଦ ଡ୍ରିମ୍ ପ୍ରୋଜେକ୍ଟ ଅଫ୍ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର - ପ୍ରକାଶିତ - ଗବେଷଣା ଧର୍ମୀ ସାହିତ୍ୟ ପତ୍ରିକା "ଭିଜନ" - ସେପ୍ଟେମ୍ବର, ୨୦୧୩ ।

୬. "ମାଟିର ମଟାଳ" - ନୋଭେଲିଷ୍ଟ ଗୋପିନାଥ ମହାନ୍ତି - ପ୍ରକାଶିତ - ଗବେଷଣା ଧର୍ମୀ ସାହିତ୍ୟ ପତ୍ରିକା "ଭିଜନ" - ସେପ୍ଟେମ୍ବର, ୨୦୧୩ ।

୭. କାଳିନ୍ଦୀଚରଣ ପାଣିଗ୍ରାହୀ - ଏ ଷ୍ଟୋରୀ ଟେଲର ଅଫ୍ ଏମିନେସ୍ - ପ୍ରକାଶିତ - ଓଡିଶା ସରକାର ଙ୍କ "ଓଡିଶା ରିଭ୍ୟୁ" - ସେପ୍ଟେମ୍ବର, ୨୦୧୩ ।

୮. କାଳିନ୍ଦୀଚରଣ - ଏ ବ୍ରାଇଡ ଲ୍ୟୁମିନାରୀ ଅଫ୍ ଓଡିଆ ଲିଟରେଚର - ପ୍ରକାଶିତ - ୟୁଜିସି କେୟାର "ରକ୍‌ପେବୁଲ" ଜର୍ଣ୍ଣାଲ - ଜୁନ୍, ୨୦୧୨ ।

୯. ଓଡିଆ ସାହିତ୍ୟ ର କାଳଜୟୀ ସାଧକ କାଳିନ୍ଦୀଚରଣ - ପ୍ରକାଶିତ - ଓଡିଆ ସାରସ୍ୱତ ପତ୍ରିକା "ଜନସୁଧା" - ସେପ୍ଟେମ୍ବର, ୨୦୧୭ ।

୧୦. ଓଡିଆ ସାହିତ୍ୟ ର କବି କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ସାହିତ୍ୟ ର କବି ନରେନ୍ଦ୍ର ମୋଦିଙ୍କ କାବ୍ୟଜଗତ - ଏକ ଅଧ୍ୟୟନ - ପ୍ରକାଶିତ - ସାହିତ୍ୟ ପତ୍ରିକା "ଜନସୁଧା" - ଜୁନ୍, ୨୦୧୮ ।

୧୧. ସୋସିଆଲ ରିପ୍ଲେସନ ଅଫ୍ ଓଡିଆ ପୋଏଟ୍ - କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ପୋଏଟ୍ ନରେନ୍ଦ୍ର ମୋଦି - ପ୍ରକାଶିତ - ଗବେଷଣା ଧର୍ମୀ ପତ୍ରିକା "ଭିଜନ" - ମାର୍ଚ୍ଚ, ୨୦୧୮ ।

୧୨. ଓଡିଆ ପୋଏଟ୍ କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ପୋଏଟ୍ ନରେନ୍ଦ୍ର ମୋଦି - ଆନ୍ ଆନାଲୋଗସ୍ ଷ୍ଟଡି - ପ୍ରକାଶିତ - ୟୁଜିସି କେୟାର - ଲିଟେରାରୀ ଜର୍ଣ୍ଣାଲ - "ରକ୍‌ପେବୁଲ" - ଡିସେମ୍ବର, ୨୦୧୮ ।

୧୩. "ଓଡିଆ ସାହିତ୍ୟକୁ ନନ୍ଦିନୀ ଶତପଥି ଙ୍କ ଅବଦାନ" - ପ୍ରକାଶିତ - ସାରସ୍ୱତ ପତ୍ରିକା "କୋଣାର୍କ" - ଓଡିଶା ସାହିତ୍ୟ ଏକାଡେମୀ - ଓଡିଶା ସରକାର - ଏପ୍ରିଲ୍, ୨୦୧୧ ।

ସୁବାଷ ଙ୍କ ଅନେକ ଗବେଷଣା ପତ୍ର ସାହିତ୍ୟ ସାଧନା କ୍ଷେତ୍ରରେ ସାରସ୍ୱତ ପୁରୁଷଙ୍କ ଜୀବନୀ ଓ ସୃଜନୀ କୁ ପାଥେୟ କରି ପ୍ରସ୍ତୁତ କରାଯାଇଅଛି । ତାହା ଅନେକ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ରପତ୍ରିକାର ପୃଷ୍ଠାମଣ୍ଡନରେ ଅପେକ୍ଷାରତ ..... ତନ୍ମଧ୍ୟରୁ -

୧୪. ଓଡିଆ ସାହିତ୍ୟ ର ଆଧୁନିକ ଯୁଗର ଆଦ୍ୟସ୍ରଷ୍ଟା
କବିବର ରାଧାନାଥ ରାୟ

୧୫. ଓଡିଆ ସାହିତ୍ୟ ର ଅମ୍ଳାନ ସାଧକ
ପ୍ରଫେସର ଚିତରଞ୍ଜନ ଦାସ

୧୬. ଓଡିଆ ସାହିତ୍ୟ ର କାଳଜୟୀ ସ୍ରଷ୍ଟା
ଗୋପିନାଥ ମହାନ୍ତି

୧୭. ଓଡିଆ ସାହିତ୍ୟ ର ଉଜ୍ଜ୍ୱଳତମ ସାଧକ
ପଠାଣୀ ପଟ୍ଟନାୟକ

୧୮. ଓଡିଆ ସାହିତ୍ୟ ର ଯୁଗସ୍ରଷ୍ଟା
କାଳିନ୍ଦୀଚରଣ ପାଣିଗ୍ରାହୀ

୧୯. ଓଡିଆ ସାହିତ୍ୟରେ ନାରୀସ୍ୱର
ନନ୍ଦିନୀ ଶତପଥି

୨୦. ଓଡିଆ ସାହିତ୍ୟ ର ବିଶିଷ୍ଟ କବି
ରମାକାନ୍ତ ରଥ

୨୧. ଓଡିଆ ସାହିତ୍ୟ ର ଯଶସ୍ୱୀ କବି
ସୀତାକାନ୍ତ ମହାପାତ୍ର

୨୨. ଓଡ଼ିଆ ସାହିତ୍ୟ ର ବରେଣ୍ୟ ସାଧକ
ମନୋଜ ଦାସ

୨୩. ଓଡ଼ିଆ ସାହିତ୍ୟ ର ବିଶିଷ୍ଟ ଔପନ୍ୟାସିକା
ପ୍ରତିଭା ରାୟ

୨୪. ଓଡ଼ିଆ ସାହିତ୍ୟ ର ଅନନ୍ୟ କବି
ଜୟନ୍ତ ମହାପାତ୍ର

୨୫. ଓଡ଼ିଆ ସାହିତ୍ୟ ର ଲେଖିକା
ବିଣାପାଣୀ ମହାନ୍ତି

୨୬. ଓଡ଼ିଆ ସାହିତ୍ୟ ର ପ୍ରସିଦ୍ଧ ଔପନ୍ୟାସିକ
ବିଭୁତି ପଟ୍ଟନାୟକ

୨୭. ନରେନ୍ଦ୍ର ମୋଦି
ଇଣ୍ଡିଆନ୍ ଲିଟେଚରର

୨୮. ଓଡ଼ିଆ ସାହିତ୍ୟ ର କାଳଜୟୀ ସାଧକ
କୃଷ୍ଣଚରଣ ବେହେରା

୨୯. ଓଡ଼ିଆ ସାହିତ୍ୟ ର ଜାତୀୟବାଦୀ
ଚେତନାର ସାରଥି ପଣ୍ଡିତ ଗୋପବନ୍ଧୁ ଦାସ

୩୦. ପଠାଣୀ ପଟ୍ଟନାୟକ -
ଦ ଲିମ୍ୟୁନାରୀ ଓଡ଼ିଆ ଲିଟେଚରର

୩୧. ଓଡ଼ିଆ ସାହିତ୍ୟ ର ଅନନ୍ୟ ସାଧକ
ହରେକୃଷ୍ଣ ମହତାବ

୩୨. ଓଡ଼ିଆ ସାହିତ୍ୟ ର ସାରସ୍ୱତପୁରୁଷ
ଜାନକୀ ବଲ୍ଲଭ ପଟ୍ଟନାୟକ

୩୩. ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଏକ ଶାସ୍ତ୍ରୀୟ ଭାଷା
ଏକ ଅବଲୋକନ

୩୪. ଓଡ଼ିଆ ସାହିତ୍ୟ ର ଅମ୍ଳାନ ପ୍ରତିଭା
ରତ୍ନାକର ଚଇନି

୩୫. ଓଡ଼ିଆ ସାହିତ୍ୟ ର କୀର୍ତ୍ତିସ୍ତମ୍ଭ
ସ୍ୱଭାବକବି ଗଙ୍ଗାଧର ମେହେର

୩୬. ଓଡ଼ିଆ ସାହିତ୍ୟ ଜଗତର କିମ୍ବଦନ୍ତୀ ପୁରୁଷ
ବ୍ୟାସକବି ଫକୀରମୋହନ ସେନାପତି

୩୭. ନବୀନ ପଟ୍ଟନାୟକ
ଭାରତୀୟ ଲେଖକ

୩୮. ଗୀତା ମେହେଟ୍ଟା
ଆନ ଇଣ୍ଡିଆନ୍ ରାଇଟର

୩୯. ଡିଜିଟାଲାଇଜେସନ୍ ଅଫ୍ ହାୟର ଏଜୁକେସନ୍
ଇଟଂର ନ୍ୟାସନାଲାଇଜଡ୍ ଅଫ୍ ପୋଷ୍ଟ କୋଭିଡ - ୨୦୧୯

୪୦. ନ୍ୟାସନାଲ ଏଜୁକେସନ୍ ପଲିସ୍ - ୨୦୨୦
ମେକିଙ୍ଗ ନ୍ୟୁ ଇଣ୍ଡିଆ

୪୧. ଓଡ଼ିଆ ସାହିତ୍ୟ ର ଉଜ୍ଜ୍ୱଳମୟ ତାରକା
ଦେବୀ ପ୍ରସନ୍ନ ପଟ୍ଟନାୟକ

୪୨. ଓଡ଼ିଆ ସାହିତ୍ୟ ର ସାର୍ଥକ ସମାଲୋଚକ
ଆଦିକନ୍ଦ ସାହୁ

୪୩. ଓଡିଆ ସାହିତ୍ୟ ର ସାଧକ
ଉଦୟନାଥ ସାହୁ

୪୪. ଓଡିଆ ସାହିତ୍ୟ ର ସାହିତ୍ୟିକ
ମନୀନ୍ଦ୍ର କୁମାର ମେହେର

୪୫. ଓଡିଆ ସାହିତ୍ୟ ର ଦୃଢସ୍ୱର
କୃଷ୍ଣଚନ୍ଦ୍ର ପ୍ରଧାନ

୪୬. ଓଡିଆ ସାହିତ୍ୟ ର ବିଶିଷ୍ଟ ନାଟ୍ୟକାର
ନୀଳାଦ୍ରି ଭୂଷଣ ହରିଚ୍ଛନ୍ଦନ

୪୭. ଓଡିଆ ସାହିତ୍ୟରେ ସାରସ୍ୱତସାଧିକା
ବିଷ୍ଣୁପ୍ରିୟା ଓତା

୪୮. ଓଡିଆ ସାହିତ୍ୟ ର ବିଶିଷ୍ଟ ପ୍ରାବନ୍ଧିକ
ବାଉରୀବନ୍ଧୁ କର

୪୯. ଓଡିଆ ସାହିତ୍ୟ ର ଭାଷା ଗବେଷକ
ପଣ୍ଡିତ ଅନ୍ତର୍ଯ୍ୟାମି ମିଶ୍ର

୫୦. ଓଡିଆ ସାହିତ୍ୟ ର ବିଶିଷ୍ଟ କବି
ହରପ୍ରସାଦ ଦାଶ

୫୧. ଓଡିଆ ସାହିତ୍ୟ ର ବିଶିଷ୍ଟ ଗାଳ୍ପିକ
ରାମଚନ୍ଦ୍ର ବେହେରା

୫୨. ଓଡିଆ ସାହିତ୍ୟ ର ବିଶିଷ୍ଟ ସାହିତ୍ୟିକ
ତରୁଣକାନ୍ତି ମିଶ୍ର

୫୩. ଓଡିଆ ସାହିତ୍ୟ ର ବିଶିଷ୍ଟ ପ୍ରାବନ୍ଧିକ
ଗୌରହରି ଦାସ

୫୪. ଓଡିଆ ସାହିତ୍ୟ ର ସାହିତ୍ୟିକ
ସନ୍ତୋଷ କୁମାର ତ୍ରିପାଠୀ

୫୫. ଓଡିଆ ସାହିତ୍ୟ ର ସାଧକ
ନୃସିଂହ ଚରଣ ଷଡଙ୍ଗୀ

୫୬. ଓଡିଆ ସାହିତ୍ୟ ର ବିଶିଷ୍ଟ ଗାଳ୍ପିକ
ଇଂ. ବିଷ୍ଣୁ ସାହୁ

୫୭. ଓଡିଆ ସାହିତ୍ୟ ର ସାରସ୍ୱତସାଧକ
ବୈଷ୍ଣବ ଚରଣ ସାମଲ

୫୮. ଓଡିଆ ସାହିତ୍ୟ ର ସାହିତ୍ୟିକ - ସଂଗଠକ
ବିଜୟାନନ୍ଦ ସିଂହ

୫୯. ଓଡିଆ ସାହିତ୍ୟ ର ଲେଖକ
ଧନେଶ୍ୱର ସାହୁ

୬୦. ଓଡିଆ ସାହିତ୍ୟ ର ସେବକ
ପ୍ରଫେସର ସୁବାଷ ନାୟକ

ଦୀର୍ଘ ଷାଠିଏ ଗୋଟି ଗବେଷଣାତ୍ମକ - ଗବେଷଣା ପତ୍ର (ରିସର୍ଚ୍ଚ ପେପର) ର ସ୍ରଷ୍ଟା ସାହିତ୍ୟ ସେବକ ସୁବାଷ ।

"ଓଡିଆ ସାହିତ୍ୟକୁ ନନ୍ଦିନୀ ଶତପଥି ଙ୍କ ଅବଦାନ" ପ୍ରସଙ୍ଗରେ ଗବେଷଣା କରି ପ୍ରଫେସର ଆଦିକନ୍ଦ ସାହୁଙ୍କ ଅଧିନରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧିପ୍ରାପ୍ତ । ଏହି ସନ୍ଦର୍ଭରେ ନନ୍ଦିନୀ ଶତପଥି ଙ୍କ ଜୀବନୀ ସହିତ ସୃଜନୀକୁ ବିଷାଦ ଭାବରେ ବର୍ଣ୍ଣନା କରାଯାଇଅଛି । ନନ୍ଦିନୀ ଙ୍କ ସାରସ୍ୱତ ସୃଷ୍ଟି - ଗୋଟିଏ କବିତା ସଂକଳନ - ଉତର ପୁରୁଷ, ଦୁଇଗୋଟି ଗଳ୍ପ ସଂକଳନ - କେତୋଟି କଥା ଓ ସପ୍ତଦର୍ଶୀ ଓ ଚାରିଗୋଟି ଅନୁବାଦ ସଂକଳନ ପୁସ୍ତକ - ତସଲିମା ନାସରିନ ଙ୍କ ଲଜ୍ୟା, ଅମୃତା ପ୍ରୀତମ ଙ୍କ ରେଭ୍ୟୁନ୍ ଟିକେଟ୍, ମହାଶ୍ୱେତା ଦେବୀଙ୍କ ନିର୍ବାଚିତ ଗଳ୍ପ ତଥା କୃଷ୍ଣା କ୍ରିପାଳିନୀ ଙ୍କ ଗାନ୍ଧୀ କଥାମୃତକୁ ଉପସ୍ଥାପିତ କରାଯାଇଅଛି - ଗବେଷଣାତ୍ମକ

ଶୈଳୀରେ ତମସା ରାଜନୀତିକ ଜୀବନ - ଓଡ଼ିଶାର ମୁଖ୍ୟମନ୍ତ୍ରୀ ତଥା କେନ୍ଦ୍ରମନ୍ତ୍ରୀ ଭାବରେ ନନ୍ଦିନୀ ଦେବୀ ଭୁଲିପାରିନଥିଲେ ସାହିତ୍ୟ ସାଧନାକୁ ।

ଉଚ୍ଚତର ଗବେଷଣା / ପୋଷ୍ଟ ଡକ୍ଟରାଲ / ଡକ୍ଟର ଅଫ୍ ଲିଟରେଚର (ଡି.ଲିଟ୍.) ଉପାଧି ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରୟାସଯୁକ୍ତ ଗବେଷଣା ସନ୍ଦର୍ଭ - "ଓଡ଼ିଆ ସାହିତ୍ୟ ର କବି କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ସାହିତ୍ୟ ର କବି ନରେନ୍ଦ୍ର ମୋଦିଙ୍କ କାବ୍ୟଜଗତ - ଏକ ଅଧ୍ୟୟନ" ପ୍ରସଙ୍ଗରେ କାର୍ଯ୍ୟରତ ।

ଏଥିରେ କାଳିନ୍ଦୀଚରଣ ପାଣିଗ୍ରାହୀ, ସାରସ୍ୱତସାଧକ କାଳିନ୍ଦୀଚରଣ ପାଣିଗ୍ରାହୀ, କବି କାଳିନ୍ଦୀଚରଣ ପାଣିଗ୍ରାହୀ, ନରେନ୍ଦ୍ର ମୋଦି, ରାଷ୍ଟ୍ରନାୟକ ନରେନ୍ଦ୍ର ମୋଦି, ସାହିତ୍ୟସ୍ରଷ୍ଟା ନରେନ୍ଦ୍ର ମୋଦି, କବି ନରେନ୍ଦ୍ର ମୋଦି ଆଦି ବିଷୟବସ୍ତୁ ପାଣ୍ଡୁଲିପିରେ ସ୍ଥାନୀତ ହୋଇପାରିବ ।

ଗବେଷଣ କ୍ଷେତ୍ରରେ ସୁବାଷ - ଉତ୍କଳ ବିଶ୍ୱବିଦ୍ୟାଳୟରେ ରିସର୍ଚ୍ଚ ଗାଇଡ଼ି ପାଇଁ ଅନୁମତି ଅପେକ୍ଷାରତ ସହିତ ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟରେ ମଧ୍ୟ ଅନେକ କିଛି ଗବେଷକ ଶିକ୍ଷାର୍ଥୀଙ୍କ ମାର୍ଗଦର୍ଶନ କାରୀ ।

## ଅଧ୍ୟାପକତ୍ୱ -

ସୁବାଷ ଜଣେ ଓଡ଼ିଆ ଭାଷା ଓ ସାହିତ୍ୟ ର ଅଧ୍ୟାପକ ଭାବରେ ନିଜକୁ ଅନେକ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରୀୟ ସେମିନାର ଓ କନ୍ଫରେନ୍ସରେ ସକ୍ରିୟ ଅଂଶଗ୍ରହଣ ଓ ୱେବିନାରରେ ଅଂଶଗ୍ରହଣ କରି ସାର୍ଟିଫିକେଟ୍ ପ୍ରାପ୍ତ ଚାଳିଶ ଗୋଟିରୁ ଉର୍ଦ୍ଧ୍ୱ ସଂପାନରେ ଜଣେ ଅଧ୍ୟାପକ ଭାବରେ ଯୋଗଦାନ କରି ବୌଦ୍ଧିକ ବିକାଶ ଦିଗରେ ନିଜକୁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟିକରି ପାରିଛନ୍ତି । ସେହି ପ୍ରମୁଖ ଅନୁଷ୍ଠାନ ମଧ୍ୟରୁ କିଛି ଝଲକ୍ -

୧. ଓଡ଼ିଆ ଗବେଷଣା ପରିଷଦର - ରୌପ୍ୟ ଜୟନ୍ତୀ ମେମୋରିଆଲ ଲେକଚର - ଭୁବନେଶ୍ୱର ରେ - ଓଡ଼ିଆ ସାହିତ୍ୟ ର ଦିଗ ଓ ଦିଗନ୍ତ ପ୍ରସଙ୍ଗରେ ଅଂଶଗ୍ରହଣ - ନଭେମ୍ବର, ୨୦୦୮ ।

୨. ବାଜିରାଉତ ମେମୋରିଆଲ କଲେଜ, ଭୁବନରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ - ୟୁଜିସି ସେମିନାର, ପଚଂସଖା ଯୁଗ ଧର୍ମ ସାହିତ୍ୟ ପ୍ରସଙ୍ଗରେ ଯୋଗଦାନ - ଡିସେମ୍ବର, ୨୦୦୭ ।

୩. ୩୯ତମ ବିଶ୍ୱକବି ସମ୍ମିଳନୀ - "ୱାଲର୍ଡ ଏକାଡେମୀ ଅଫ୍ ଆର୍ଟ ଆଣ୍ଡ କଲଚର" ପକ୍ଷରୁ - ଭାରତର ଓଡ଼ିଶା ପ୍ରଦେଶର ଭୁବନେଶ୍ୱରସ୍ଥ କିଟ୍ ବିଶ୍ୱବିଦ୍ୟାଳୟରେ ପାଚଂଦିନ ବ୍ୟାପି ସାରସ୍ୱତ ମେଳାର ଅଂଶଗ୍ରହଣ ଓ କବିତା ପାଠସହ ମାନପତ୍ରପ୍ରାପ୍ତ - ଅକ୍ଟୋବର, ୨୦୧୯ ।

୪. ଜାତୀୟ ଶିକ୍ଷାନୀତି ଉପରେ - ନେସନାଲ କନଫରନେସ୍ - ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ଓ କଲେଜ ଶିକ୍ଷକ ସଂଘ (ଆଇଫୁଟୋ) ପକ୍ଷରୁ - ଓଡ଼ିଶାରେ ଯୋଗଦାନ - ଡିସେମ୍ବର, ୨୦୧୯ ସହିତ ସନ୍ଦର୍ଭ ପାଠ ଓ ମାନପତ୍ରପ୍ରାପ୍ତ ।

୫. ୟୁଜିସି ଅନୁମୋଦିତ - ସାରସ୍ୱତ ପତ୍ରିକା "ରକ୍‌ପେବୁଲ" ର ଜାତୀୟ ସଂପାନ ବ୍ୟାସନଗର କଲେଜ ଯାଜପୁର ରେ ଯୋଗଦାନ ଓ ସନ୍ଦର୍ଭ ପାଠସହ ମାନପତ୍ରପ୍ରାପ୍ତ - "ଭାରତୀୟ ସାହିତ୍ୟରେ ଦଳିତ" ଶୀର୍ଷକରେ - ଡିସେମ୍ବର, ୨୦୧୯ ।

୬. "ଇକୋଲୋଜି ଓ ଇନଭାରମେ " ପ୍ରସଙ୍ଗରେ ଜାତୀୟ ସଂପାନ - ୟୁଜିସି କେୟାର ସାରସ୍ୱତ ପତ୍ରିକା "ରକ୍‌ପେବୁଲ" ରେ ସନ୍ଦର୍ଭ ପାଠ ଓ ମାନପତ୍ରପ୍ରାପ୍ତ (ରୋମାଟିଂକ୍ ଲିଟରେଚର ଓ ଇନ୍‌ଭାରମେଟଂ) - ଜାନୁୟାରୀ, ୨୦୨୦ ।

୭. ଭୁବନେଶ୍ୱର ରେ - ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନରେ "ଗାନ୍ଧୀ ଓ ଓଡ଼ିଆ ସାହିତ୍ୟ" ଜାତୀୟ ସେମିନାର ରେ ଅଂଶଗ୍ରହଣ ଓ ମାନପତ୍ରପ୍ରାପ୍ତ - ଡିସେମ୍ବର, ୨୦୧୯ ।

୮. ଦୀର୍ଘ ୩୦୦୦ ବର୍ଷର ଆମ ଓଡ଼ିଆ ଭାଷାକୁ ଭାରତ ସରକାର ଶାସ୍ତ୍ରୀୟ ଭାଷାର ମର୍ଯ୍ୟାଦା ଦେବାପରେ ଏହାର କିପରି ରୂପାୟନ ହୋଇପାରିବ - ସେଥିପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ - ଶାସ୍ତ୍ରୀୟ ଓଡ଼ିଆ ଭାଷା - ଜାତୀୟ ପରାମର୍ଶ କର୍ମଶାଳାରେ ଜଣେ ନିମନ୍ତ୍ରୀତ ସଭ୍ୟ ଭାବରେ ଯୋଗଦାନ କରି ନିଜର ସ୍ୱ ମତାମତ ପ୍ରଦାନରେ ଗୁରୁତ୍ୱ ଆରୋପ - ଫେବୃୟାରୀ, ୨୦୧୬ ।

୯. ଚୈତନ୍ୟ ଡିମଣ୍ଡ ବିଶ୍ୱବିଦ୍ୟାଳୟ - ୱାରଙ୍ଗଲ, ତେଲଙ୍ଗାନା ପ୍ରଦେଶରୁ - ଜାତୀୟ ଶିକ୍ଷାନୀତି - ୨୦୨୦ରେ ଅଂଶଗ୍ରହଣ ଓ ମାନପତ୍ରପ୍ରାପ୍ତ - ଅଗଷ୍ଟ, ୨୦୨୦ ।

୧୦. ଭୁବନେଶ୍ୱର - କିଟ୍ ବିଶ୍ୱବିଦ୍ୟାଳୟ ପକ୍ଷରୁ - ତିନି ଦିବସୀୟ ବ୍ୟାପି ଆନ୍ତର୍ଜାତୀୟ ସେମିନାର - ଜାତୀୟ ଶିକ୍ଷାନୀତି ୨୦୨୦ ଉପରେ ସକ୍ରିୟ ଅଂଶଗ୍ରହଣ ଓ ମାନପତ୍ରପ୍ରାପ୍ତ ।

୧୧. ସାରଳା ଭାଷା ସାହିତ୍ୟ ଓ ସ୍ୱଦେଶୀ ଗବେଷଣା ପରିଷଦ - ଓଡ଼ିଶା ପକ୍ଷରୁ - ବନ୍ଦେ ଉତ୍କଳ ଜନନୀ - ଜାତୀୟ ସମନ୍ୱୟର ସାଧନା ଜାତୀୟ ସେମିନାର ରେ ଅଂଶଗ୍ରହଣ ।

୧୨. କିସ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ର ଜାତୀୟ ସେମିନାର - ଓଡ଼ିଆ ସାହିତ୍ୟ ବିଭାଗ - ଆସାମ ଓ ଓଡ଼ିଶା ର ଜନଜାତି ସଂସ୍କୃତି - ଏକ ତୁଳନାତ୍ମକ ଚର୍ଚ୍ଚାରେ ଯୋଗଦାନ ।

୧୩. ଜବାହାର ନେହୁର ବିଶ୍ୱବିଦ୍ୟାଳୟ, ନୂଆଦିଲ୍ଲୀ - ଆଦିକବି ସାରଳା ଦାସ - ଓଡ଼ିଆ ଚେୟାର ପକ୍ଷରୁ - ମିଟ୍ ଦ ଅର୍ଥର (ପ୍ରତିଭା ରାୟ) ୱେବିନାର ରେ ଯୋଗଦାନ - ଅଗଷ୍ଟ, ୨୦୨୦ ।

୧୪. ପୋଷ୍ଟ-କୋଭିଡ-୨୦୧୯ ପରିପ୍ରେକ୍ଷୀରେ ଆନ୍ତର୍ଜାତୀୟ ସ୍ତରରେ - ଉଚ୍ଚଶିକ୍ଷାର ଭବିଷ୍ୟତ ଓ ପରିକଳ୍ପନା ଶୀର୍ଷକ - ଆନ୍ତର୍ଜାତୀୟ ସେମିନାର ଆୟୋଜକ - ଆନ୍ତର୍ଜାତୀୟ ବିଶ୍ୱବିଦ୍ୟାଳୟ ସଂଘ (IAU) - ଜୁନ୍, ୨୦୨୦ ଓ ମାନପତ୍ରପ୍ରାପ୍ତ ।

୧୫. ଭାରତରେ ଆମେରିକା ରାଷ୍ଟ୍ରଦୂତ (ୟୁଏସ୍ - ଆମ୍ବାସୀ) ଓ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘ (AIU) ପକ୍ଷରୁ - ଜାତୀୟ ସେମିନାର - ପୋଷ୍ଟ କୋଭିଡରେ - ଉଚ୍ଚଶିକ୍ଷାର ଭବିଷ୍ୟତ ପ୍ରସଙ୍ଗରେ ଯୋଗଦାନ କରି ମାନପତ୍ରପ୍ରାପ୍ତ - ଜୁଲାଇ, ୨୦୨୦ ।

୧୬. ବିର୍ଲା ଗ୍ଲୋବାଲ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ପକ୍ଷରୁ - ଆନ୍ତର୍ଜାତୀୟ ସେମିନାର - ପୋଷ୍ଟ କୋଭିଡ ପରିପ୍ରେକ୍ଷୀରେ - ଆନ୍ତର୍ଜାତୀୟ ବ୍ୟବସାୟରେ ପ୍ରଭାବ ପ୍ରସଙ୍ଗରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ଜୁଲାଇ, ୨୦୨୦ ।

୧୭. ବିର୍ଲା ଗ୍ଲୋବାଲ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ପକ୍ଷରୁ - କୋଭିଡ - ୨୦୧୯ ପରିପ୍ରେକ୍ଷୀରେ - ଓଡିଶାର ଉଚ୍ଚଶିକ୍ଷା କ୍ଷେତ୍ରରେ ଡିଜିଟାଲାଇଜ୍ କିପରି ଭାବରେ ପ୍ରଭାବିତ କରିଅଛି - ଶୀର୍ଷକ - ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ଜୁଲାଇ, ୨୦୨୦

୧୮. ଓଡିଆ ସମାଜ, ନୂଆଦିଲ୍ଲୀ ପକ୍ଷରୁ - ଓଡିଆ ଭାଷା ଓ ସାହିତ୍ୟ - କିଛି ଦୃଷ୍ଟି-କିଛି ଚିନ୍ତା ପ୍ରସଙ୍ଗରେ ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ ।

୧୯. "କିପରି ସିଷ୍ଟୋମେଟିକ ରିସର୍ଚ୍ଚ" କରାଯାଇପାରିବ, ସେ ଦିଗରେ ଜାତୀୟ ୱେବିନାର - ଡକ୍ଟର ଏମ୍. ଜି. ଆର. - ଏଜୁକେସନାଲ ଓ ରିସର୍ଚ୍ଚ ଇନିଷ୍ଟ୍ୟୁଟ୍ (ଡିମିଡ୍ ବିଶ୍ୱବିଦ୍ୟାଳୟ) ତାମିଲନାଡୁରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ ।

୨୦. କିସ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ର ଓଡିଆ ସାହିତ୍ୟ ବିଭାଗ ପକ୍ଷରୁ - ଆଦିବାସୀ ଭାଷା ଓ ସଂସ୍କୃତି ଏକ ଦୃଷ୍ଟିପାତ ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ଅଗଷ୍ଟ, ୨୦୨୦ ।

୨୧. ଭାରତରେ ଆମେରିକା ରାଷ୍ଟ୍ରଦୂତ - (ୟୁଏସ୍ ଆମ୍ବାସୀ) ଓ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘ (AIU) ପକ୍ଷରୁ - ଉଚ୍ଚଶିକ୍ଷାରେ ଭବିଷ୍ୟତ ପ୍ରସଙ୍ଗରେ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ଅଗଷ୍ଟ, ୨୦୨୦ ।

୨୨. ଜବାହାରଲାଲ କଲେଜ, ପାଟଣାଗଡ - ଓଡିଆ ଭାଷା ଓ ସାହିତ୍ୟ ପକ୍ଷରୁ - "ମେହେର ସାହିତ୍ୟରେ ମାନବିକତା" - ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ଅଗଷ୍ଟ, ୨୦୨୦ ।

୨୩. ବିର୍ଲା ଗ୍ଲୋବାଲ ବିଶ୍ୱବିଦ୍ୟାଳୟ ପକ୍ଷରୁ - "ଆତ୍ମନିର୍ଭର ଭାରତ - ସୁଯୋଗ ଅପର୍ଯ୍ୟାପ୍ତ" ପ୍ରସଙ୍ଗରେ - ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ଅଗଷ୍ଟ, ୨୦୨୦ ।

୨୪. ଓଡିଆ ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ପକ୍ଷରୁ - ଓଡିଆ ସଂସ୍କୃତିକୁ ଅତିବଡିଙ୍କ ଅବଦାନ ପ୍ରସଙ୍ଗରେ - ଜାତୀୟ ୱେବିନାର ରେ ଯୋଗଦାନ - ଅଗଷ୍ଟ, ୨୦୨୦ ।

୨୫. ଶିଶୁ ଅନନ୍ତ ମହାବିଦ୍ୟାଳୟ, ବାଲିପାଟଣା ପକ୍ଷରୁ - ଜାତୀୟ ୱେବିନାର - "ଗ୍ରାମୀଣ ଯୁବକ ଓ କୁଶଳୀ ବିକାଶ" ପ୍ରସଙ୍ଗରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୨୬. ଆନ୍ତର୍ଜାତୀୟ ବିଶ୍ୱବିଦ୍ୟାଳୟ ସଂଘ (AIU) ପକ୍ଷରୁ - ଉଚ୍ଚଶିକ୍ଷାର ଭବିଷ୍ୟତ - (ପୋଷ୍ଟ କୋଭିଡ) ପରିପ୍ରେକ୍ଷୀରେ - ଡିଜିଟାଲ ମାଧ୍ୟମରେ ଶିକ୍ଷାଦାନ ପ୍ରସଙ୍ଗରେ ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୨୭. ୟୁଜିସି କେୟାର - ଲିଟରାରୀ ଜର୍ଣ୍ଣାଲ - "ରକ୍‌ପେବୁଲ" ପକ୍ଷରୁ - "ଭାରତୀୟ ଇଂରାଜୀ ସାହିତ୍ୟକୁ ଗୀତା ମେହେଟ୍ଟା ଙ୍କ ଅବଦାନ" ପ୍ରସଙ୍ଗରେ ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୨୮. ଭାରତୀୟ ଦାର୍ଶନିକ ଗବେଷଣା ପରିଷଦ ପକ୍ଷରୁ - "ବିଶ୍ୱ ଶାନ୍ତି ହିଁ ବେଦ ଦ୍ୱାରା ସମ୍ଭବ" ପ୍ରସଙ୍ଗରେ ଆନ୍ତର୍ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୨୯. ଜବାହାରଲାଲ କଲେଜ, ପାଟଣାଗଡ - "ପେନ୍ ଆଣ୍ଡ ପାଣ୍ଡାମିକ" ପ୍ରସଙ୍ଗରେ ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୩୦. ସରକାରୀ କଲେଜ, ଡାମନ ପକ୍ଷରୁ - ଜାତୀୟ ୱେବିନାର - "ମହିଳା ପ୍ରତିନିଧିତ୍ୱ - ଭାରତୀୟ ଉଚ୍ଚ ଶିକ୍ଷାନୁଷ୍ଠାନରେ" ପ୍ରସଙ୍ଗରେ ଯୋଗଦାନ - ସେପ୍ଟେମ୍ବର, ୨୦୨୦ ।

୩୧. ଭାରତରେ ଆମେରିକାର ରାଷ୍ଟ୍ରଦୂତ (ୟୁଏସି) ପକ୍ଷରୁ ତଥା ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘ (AIU) ମିଳିତ ସହଯୋଗରେ - "ଉଚ୍ଚଶିକ୍ଷାର ଭବିଷ୍ୟତ" ପ୍ରସଙ୍ଗରେ ଜାତୀୟ ୱେବିନାର ରେ ଯୋଗଦାନ ଓ ମାନପତ୍ର ପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୩୨. କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ପକ୍ଷରୁ - ଆନ୍ତର୍ଜାତୀୟ ୱେବିନାର - "ଇଟଂର ଡିସିପିନାରୀ ପ୍ରଫେକଟସ୍ ଅଫ୍ ଡିଜିଟାଲ ହ୍ୟୁମାନିଟି" ପ୍ରସଙ୍ଗରେ ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୩୩. କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ପକ୍ଷରୁ - ଆନ୍ତର୍ଜାତୀୟ ୱେବିନାର - "କଲଚରାଲ ଷ୍ଟଡିଜ୍ - ଟେଟ୍ରୋ ଆଣ୍ଡ ପ୍ରପୋଟ୍ରିଭସ୍" ପ୍ରସଙ୍ଗରେ ଯୋଗଦାନ - ସେପ୍ଟେମ୍ବର, ୨୦୨୦ ।

୩୪. ରାମଚନ୍ଦ୍ର ମର୍ଦ୍ଦରାଜ ବିଜ୍ଞାନ ମହାବିଦ୍ୟାଳୟ, ଓଡିଆ ଭାଷା ଓ ସାହିତ୍ୟ ସ୍ନାତକୋତର ବିଭାଗ ପକ୍ଷରୁ ଖଲ୍ଲିକୋର୍ଟ ଗଡର - ଐତିହ୍ୟ ଓ ସଂସ୍କୃତି - ଓଡିଆ ପ୍ରକଳ୍ପ ଶୀର୍ଷକ ଜାତୀୟ ୱେବିନାର ରେ ଯୋଗଦାନ - ସେପ୍ଟେମ୍ବର, ୨୦୨୦ ।

୩୫. ଜବାହାରଲାଲ କଲେଜ, ପାଟଣାଗଡ ପକ୍ଷରୁ - ଜାତୀୟ ୱେବିନାର - "ସ୍ୱାମୀ ବିବେକାନନ୍ଦ - ଭାରତୀୟ ଯୁବମାନସର ପ୍ରତୀକ" ଯୋଗଦାନ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୩୬. ମୋ ରାଷ୍ଟ୍ରୀୟ ଶିକ୍ଷାନୀତି (My NEP) - "ବିଦ୍ୟା ଭାରତୀ" - ଅଖିଳ ଭାରତୀୟ ଶିକ୍ଷା ସଂସ୍ଥାନ ପକ୍ଷରୁ - ରାଷ୍ଟ୍ରୀୟ ପ୍ରତିଯୋଗିତାରେ ଅଂଶଗ୍ରହଣ ଓ ମାନପତ୍ରପ୍ରାପ୍ତ - ସେପ୍ଟେମ୍ବର, ୨୦୨୦ ।

୩୭. ଜାତୀୟ ୱେବିନାର - କନଫରେନ୍ସ ଅନ୍ ଅନଲାଇନ୍ ୟୁନିଭରସିଟି ଏଜୁକେସନ୍ ଆଣ୍ଡ ଇଂରାଜୀ ଲାଙ୍ଗୁଏଜ୍ ଟିଚିଙ୍ଗ୍ ସ୍କୋପ ଓ ଚାଲେଞ୍ଜ (ଭେଲୋର ଇନଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜି (ଭିଟ୍) ଡିମଡ୍ ଟୁ ୟୁନିଭରସିଟି - ତାମିଲନାଡୁ) ଓ ମାନପତ୍ରପ୍ରାପ୍ତ ।

୩୮. ଇଣ୍ଟରନ୍ୟାସନାଲ ୱେବିନାର (ଭର୍ଚୁଆଲ୍) - ୪୦ତମ ୱାଲର୍ଡ କଂଗ୍ରେସ ଅଫ୍ ପୋଏଟ୍ (ୱାଲର୍ଡ ଆକାଡେମିକ୍ ଅଫ୍ ଆର୍ଟ ଆଣ୍ଡ କଲଚର୍) ।

୩୯. ଗ୍ଲୋବାଲ କନଫରେନ୍ସ (ଭର୍ଚୁଆଲ୍) - ୱାଲର୍ଡ ଆସୋସିଏସନ୍ ଅଫ୍ ଆକାଡେମିକ୍ ଡକ୍ଟର ମିଳିତ ଆନୁକୂଲ୍ୟ - କୋଲଡ ଟେକ୍ନିକାଲ ୟୁନିଭରସିଟି (ପ୍ରଫୋଟିଭିସ୍ ଅଫ୍ ଏ ରପାଇନୋସିପ୍ ଏଜୁକେସନ୍ ଆଣ୍ଡ ଟେକ୍ନୋଲୋଜି) ।

୪୦. ଇ. ୱାର୍କସପ୍ ଅନ୍ ରିସର୍ଚ୍ଚ ମୋଥୋଡଲୋଜି ଆଣ୍ଡ ପବ୍ଲିକେଶନ୍ ଏଥିକସ୍ - ଡକ୍ଟର ବି. ଆର୍. ଆମ୍ବେଦକର ସେର୍ଟାଂଲ ଲାଇବ୍ରେରୀ - ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟ (ଜେଏନ୍.ୟୁ), ନୂଆଦିଲ୍ଲୀ - ଯୋଗଦାନ ଓ ମାନପତ୍ରପ୍ରାପ୍ତ ।

୪୧. ଜାତୀୟ ୱେବିନାର - ସେବା ଓ ତ୍ୟାଗର ପ୍ରତୀକ ଉତ୍କଳମଣି ଗୋପବନ୍ଧୁ ଓ ଏକବିଂଶ ଶତାବ୍ଦୀର ଓଡିଶା - ବ୍ୟାସନଗର ମହାବିଦ୍ୟାଳୟ, ଯାଜପୁର ।

୪୨. ଏଜୁକେସନ୍ ଫର ନେସନ୍ ବିଲିଡିଙ୍ଗ ଇନିଷ୍ଟିଚ୍ୟୁଟ୍ ଅଫ୍ କ୍ୱାଲିଟ୍ ଆଣ୍ଡ ଏନ୍‌ଭରଫମେଟଂ ମ୍ୟାନେଜମେଟଂ ସର୍ଭିସ୍ ।

ଆହୁରି ଅନେକ ୱେବିନାର / ସେମିନାର ରେ ଜଣେ ଅଧ୍ୟାପକ ଭାବରେ ସୁବାଷ ଙ୍କ ଯୋଗଦାନ ତାଙ୍କୁ ଜଣେ ପାଣ୍ଡିତ୍ୱ ବ୍ୟକ୍ତିତ୍ୱ ଆଡକୁ ଅଗ୍ରସର କରିଅଛି କହିଲେ ଅତ୍ୟୁକ୍ତି ହେବନାହିଁ ।

## ସାଂଗଠନିକ ପଦ ଓ ପଦବୀ -

ସୁବାଷ ଓଡିଆ ସାହିତ୍ୟ ର ଜଣେ ଅଧ୍ୟାପକ, ସାହିତ୍ୟିକ, ଗବେଷକ ଭାବରେ ଜଣେ ସାହିତ୍ୟ ସେବକ । ସମାଜର ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ପକ୍ଷରୁ କାର୍ଯ୍ୟରତ ।

୧. ସାଧାରଣ ସମ୍ପାଦକ - (ସଂଗଠନ)
ବାଣି ସାହିତ୍ୟ ସଂସଦ, ଭୁବନ
(ଭୁବନର ଏକ ଅଗ୍ରଣୀ ସାହିତ୍ୟ ଅନୁଷ୍ଠାନ)

୨. ଜିଲ୍ଲା ସଂସ୍କୃତି ପରିଷଦ, ଢେଙ୍କାନାଳର ସଭ୍ୟ
(ଢେଙ୍କାନାଳ ଜିଲ୍ଲା ମହୋତ୍ସବର ସ୍ମରଣୀକା କମିଟି ସହିତ କବି ସମ୍ମିଳନୀ କମିଟି ସଦସ୍ୟ)

୩. ଓଡିଶାର ଶତାୟୁ ସାରସ୍ୱତ ଅନୁଷ୍ଠାନ
ଉତ୍କଳ ସାହିତ୍ୟ ସମାଜ, କଟକର ଆଜୀବନ ସଭ୍ୟ

୪. ଓଡିଶାର ଅଗ୍ରଣୀ ଗବେଷଣା ସଂସ୍ଥା
ଓଡିଆ ଗବେଷଣା ପରିଷଦର ଆଜୀବନ ସଭ୍ୟ

୫. ସ୍ମରଣୀକା ସମ୍ପାଦନା ମଣ୍ଡଳୀ ସଭ୍ୟ (ପୁରାତନ ଛାତ୍ର ପ୍ରତିନିଧି)
ରଜତ ଜୟନ୍ତୀ ଉତ୍ସବ - ବାଜିରାଉତ କଲେଜ, ଭୁବନ

୬. ଆଲୁମୁନି ଆସୋସିଏସନ୍ ସଭ୍ୟ
ବଡହାଟ ଉଚ୍ଚ ପ୍ରାଥମିକ ସ୍କୁଲ, ବଡହାଟ, ଭୁବନ

୭. ଆଲୁମୁନି ଆସୋସିଏସନ୍ ସଭ୍ୟ
ଭୁବନ ହାଇସ୍କୁଲ, ଭୁବନ

୮. ଆଲୁମୁନି ଆସୋସିଏସନ୍ ସଭ୍ୟ
ବାଜିରାଉତ ମେମୋରିଆଲ କଲେଜ, ଭୁବନ

୯. ଆଲୁମୁନି ଆସୋସିଏସନ୍ ସଭ୍ୟ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

୧୦. ଆଲୁମୁନି ଆସୋସିଏସନ୍ ସଭ୍ୟ
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର, ସମ୍ବଲପୁର

୧୧. ଆଜୀବନ ସଭ୍ୟ
ନିଖିଳ ଭାରତ ଓଡିଆ ଅଧ୍ୟାପକ ସମ୍ମିଳନ, ଭୁବନେଶ୍ୱର

୧୨. ଆଜୀବନ ସଭ୍ୟ - ୟୁଜିସି କେୟାର -
ଲିଟେରାରୀ ଜର୍ଣ୍ଣାଲ "ରକ୍‌ପେବୁଲ"

୧୩. ଆଜୀବନ ସଭ୍ୟ - ଓଡିଆ ସାରସ୍ୱତ ପତ୍ରିକା "ଜନସୁଧା"

୧୪. ସଭ୍ୟ - ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ଶିକ୍ଷକ ସଂଗଠନ

୧୫. ପୋଗ୍ରାମ୍ କୋ-ଅଡିନେଟର - ଓମେନ୍ ସେଲଫ୍ ଡିଫେନ୍ସ
ତ୍ରିଦେବ ଡିଗ୍ରୀ କଲେଜ (ଟେଟ୍ରାହେଡ୍ରନ୍ ଗ୍ରୁପ୍)
(ଉତ୍କଳ ବିଶ୍ୱବିଦ୍ୟାଳୟ) - ଟାଙ୍ଗୀ, କଟକ

୧୬. ଆସିଷ୍ଟାଟଂ ପ୍ରଫେସର
ଓଡିଆ ଭାଷା ଓ ସାହିତ୍ୟ ବିଭାଗ
ତ୍ରିଦେବ ଡିଗ୍ରୀ କଲେଜ, ଟାଙ୍ଗୀ, କଟକ

୧୭. ଭାଇସ୍-ପ୍ରିନିସ୍‌ପାଲ୍
ତ୍ରିଦେବ ଡିଗ୍ରୀ କଲେଜ
ଟାଙ୍ଗୀ, କଟକ

୧୮. ପ୍ରିନିସ୍‌ପାଲ୍
ତ୍ରିଦେବ ଡିଗ୍ରୀ କଲେଜ
(ଉତ୍କଳ ବିଶ୍ୱବିଦ୍ୟାଳୟ)
ଟାଙ୍ଗୀ, କଟକ

୧୯. ଅଧ୍ୟାପକ
ଓଡିଆ ସାହିତ୍ୟ ବିଭାଗ
ବିଦ୍ୟାର୍ଥୀ ରେସିଡେଟାଂଲ କଲେଜ, ଢେଙ୍କାନାଳ

୨୦. ଅଧକ୍ଷ
ଆଡିମିଶନ କମିଟି
ବିଦ୍ୟାର୍ଥୀ ରେସିଡେଟାଂଲ କଲେଜ, ଢେଙ୍କାନାଳ

୨୧. ପ୍ରତିଷ୍ଠାତା ସଭାପତି - ଛାତ୍ର ସଂସଦ
ଭୁବନ ୧୯୯୩ ମାଟ୍ରିକ୍ ବ୍ୟାଚ (ହାଇସ୍କୁଲ)

**ସମ୍ମାନ ଓ ପୁରସ୍କାର -**

ସୁବାଷ ଜଣେ ଅଧ୍ୟାପକ, ସାହିତ୍ୟିକ, ଗବେଷକ ଭାବରେ ଓଡିଆ ସାହିତ୍ୟ ର ସେବକ । କାର୍ଯ୍ୟଧାରାକୁ ଆଧାରକରି ସମାଜର ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ପକ୍ଷରୁ ସମ୍ମାନୀତ ଓ ମାନପତ୍ର ପ୍ରାପ୍ତ ।

୧. ବାଣୀ ସାରସ୍ୱତ ସମ୍ମାନ
ବାଣୀ ସାହିତ୍ୟ ସଂସଦ, ଭୁବନ - ୨୦୧୩

୨. କବିତା ପାଠ ମାନପତ୍ର
ଜିଲ୍ଲା ସଂସ୍କୃତି ପରିଷଦ, ଢେଙ୍କାନାଳ - ୨୦୧୧

୩. କବିତା ପାଠ - ପ୍ରଶଂସା ପତ୍ର
ଢେଙ୍କାନାଳ ମହୋତ୍ସବ, ଢେଙ୍କାନାଳ - ୨୦୧୪

୪. ସାହିତ୍ୟ ମାନପତ୍ର
ଅବଦୁଲ ସୂତାର ସ୍ମୃତି ସଂସଦ
ସୁକିନ୍ଦା, ଯାଜପୁର

୫. ସାହିତ୍ୟ ସମ୍ମାନ
ଶୁଭଶ ଙ୍କ, ବାରଗାଡିଆ, କଳିଙ୍ଗନଗର, ଯାଜପୁର - ୨୦୧୩

୬. ପ୍ରତିଭା ଅନ୍ୱେଷଣ ସମ୍ମାନ
ବିରିଡି, ଜଗତ୍‌ସିଂହପୁର

୭. ମେଧାବୀ ଶିକ୍ଷାର୍ଥୀ ସମ୍ମାନ
ବଡହାଟ ସରକାରୀ ଉଚ୍ଚ ପ୍ରାଥମିକ ସ୍କୁଲ୍, ଭୁବନ

୮. ଓଡିଶା ସାମ୍ବାଦିକ ସଂଘ, ଟାଙ୍ଗୀ - ଚୌଦ୍ୱାର ଶାଖା ପକ୍ଷରୁ -
ଶ୍ରେଷ୍ଠ ଶିକ୍ଷା ପ୍ରଶାସକ ସମ୍ମାନ

୯. ୧୬ତମ ଢେଙ୍କାନାଳ ମହୋତ୍ସବ କବି ସମ୍ମାନ - ୨୦୧୫

୧୦. ୧୭ତମ ଢେଙ୍କାନାଳ ମହୋତ୍ସବ କବି ସମ୍ମାନ - ୨୦୧୬



**କଲମରୁ .....**

ପ୍ରଫେସର ସୁବାଷ ନାୟକ, ଭାରତ ର ମୁକ୍ତି ସଂଗ୍ରାମରେ କିଶୋର ଶହୀଦ୍ ବାଜି ରାଉତ ଙ୍କ ଜନ୍ମମାଟି ତଥା ଏସିଆ ମହାଦେଶର ସର୍ବବୃହତ ଗ୍ରାମ ଭୁବନ ବର୍ତମାନର ଭୁବନ ସହର ର ବିଶିଷ୍ଟ କାଠଶିଳ୍ପୀ ବାପା ଶ୍ରୀ ରାମଚନ୍ଦ୍ର ନାୟକ ଓ ମା' ଭାରତୀ ଦେବୀ ଙ୍କ ସୁଯୋଗ୍ୟ ସନ୍ତାନ । ଜଣେ ଅଧ୍ୟାପକ, ସାହିତ୍ୟିକ, ଗବେଷକ ଭାବରେ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଥିବା ଅନେକ ଓଡିଆଙ୍କ ମଧ୍ୟରୁ ଅନ୍ୟତମ ।

ଜଣେ ଶିକ୍ଷାନୁରାଗୀ ପ୍ରଫେସର ଭାବରେ ଓଡିଶା ଶିକ୍ଷାଜଗତ ର ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନ ଟେଟ୍ରାହେଡ୍ରନ୍ ଗ୍ରୁପ୍ ଅଫ୍ ଇନ୍ଷ୍ଟିଚ୍ୟୁସନ୍ସ, ଟାଙ୍ଗୀ, କଟକସ୍ଥ ଉତ୍କଳ ବିଶ୍ୱବିଦ୍ୟାଳୟ ଅନୁମୋଦିତ ତ୍ରିଦେବ ଡିଗ୍ରୀ କଲେଜ ର ଓଡିଆ ଭାଷା ଓ ସାହିତ୍ୟ ବିଭାଗ ର ଆସିଷ୍ଟାଂଟ୍ ପ୍ରଫେସର ସହ ଭାଇସ୍ ପ୍ରିନ୍ସିପାଲ୍ ଓ ପ୍ରିନ୍ସିପାଲ୍ ପଦବୀରେ କାର୍ଯ୍ୟରତ ସହିତ ଅନେକ ଶିକ୍ଷାର୍ଥୀ ସମାଜରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି । ଜଣେ ପ୍ରଫେସର ଭାବରେ ୪୦ରୁ ଉର୍ଦ୍ଧ୍ୱ ଜାତୀୟ ଓ ଆନ୍ତର୍ଜାତୀୟ ସେମିନାର, ୱେବିନାର, କନ୍‌ଫରେନ୍ସ, ୱାର୍କସପ୍ ରେ ଯୋଗଦାନ ସହିତ ମାନପତ୍ର ପ୍ରାପ୍ତ ।

ଜଣେ କୃତି ସାହିତ୍ୟିକ ଭାବରେ ୧୫ଗୋଟି ପୁସ୍ତକର ସ୍ରଷ୍ଟା, ଯଥା – "ପ୍ରିୟା" – (ଏକ କାବ୍ୟ ସାହିତ୍ୟ), "ବିଜେଡି" – (ଏକ ରାଜନୈତିକ ସମୀକ୍ଷା ସାହିତ୍ୟ), "ସୃଜନପ୍ରଭା – ଓଡିଆ ସାହିତ୍ୟ ର ସୃଷ୍ଟି ଓ ସ୍ରଷ୍ଟା" – (ଏକ ସୃଜନଶୀଳ ସମାଲୋଚନା ସାହିତ୍ୟ), "ସାରସ୍ୱତସାଧିକା ନନ୍ଦିନୀ ଶତପଥୀ" – (ଏକ ଗବେଷଣାତ୍ମକ ନିବନ୍ଧ ସାହିତ୍ୟ), ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କ କାବ୍ୟ ମାନସ "ଏକ ଯାତ୍ରା" – (ଏକ ଶାସ୍ତ୍ରୀୟ ଓଡିଆ ଭାଷା ଅନୁବାଦ ସାହିତ୍ୟ), "ଭାରତୀୟ ସାହିତ୍ୟ ର କାବ୍ୟପୁରୁଷ – ନରେନ୍ଦ୍ର ମୋଦି ଓ କାଳିନ୍ଦୀଚରଣ ପାଣିଗ୍ରାହୀ" – (ଏକ ଆଲୋଚନାତ୍ମକ ପ୍ରବନ୍ଧ ସାହିତ୍ୟ), "ରାମଚନ୍ଦ୍ର ନାୟକ – ଏକ ଅମ୍ଳାନ ପ୍ରତିଭା" – (ଏକ ଜୀବନୀ ସାହିତ୍ୟ), "ଅସ୍ତମିତ ସୂର୍ଯ୍ୟ – ବାବାଜୀ" – (ଏକ ସାମାଜିକ ନାଟ୍ୟ ସାହିତ୍ୟ), "ଭାରତୀ ଦେବୀ" – (ଏକ ନାରୀ କେନ୍ଦ୍ରିକ ଉପନ୍ୟାସ ସାହିତ୍ୟ), "ପଥହରା ପଥିକ" – (ଏକ ଗଳ୍ପ ସାହିତ୍ୟ), ନରେନ୍ଦ୍ର ମୋଦିଙ୍କ କାବ୍ୟ ମାନସ "ଏକ ଯାତ୍ରା" – ଭାରତୀୟ ସାହିତ୍ୟରେ ପ୍ରତିଫଳନ – (ଏକ ଗବେଷଣାତ୍ମକ ସନ୍ଦର୍ଭ କାବ୍ୟ ସାହିତ୍ୟ), ନରେନ୍ଦ୍ର ମୋଦିଙ୍କ କାବ୍ୟ ମାନସ "ଏକ ଯାତ୍ରା" – ବିଶ୍ୱ ସାହିତ୍ୟରେ ପ୍ରତିଫଳନ – (ଏକ ଉଚ୍ଚତର ଗବେଷଣାତ୍ମକ ସନ୍ଦର୍ଭ କାବ୍ୟ ସାହିତ୍ୟ), "ଦେବୀ ମା'ଙ୍କୁ ଚିଠି – ନରେନ୍ଦ୍ର ମୋଦିଙ୍କ କାବ୍ୟାଞ୍ଜଳି"– (ଏକ ଶାସ୍ତ୍ରୀୟ ଓଡିଆ ଭାଷା ଅନୁବାଦ ସାହିତ୍ୟ), "ସୃଜନଧାରା – ଓଡିଆ ସାହିତ୍ୟ ର ସାଧକ ଓ ସାଧନା" – (ଏକ ସୃଜନଶୀଳ ପ୍ରବନ୍ଧ ସାହିତ୍ୟ), "ମାଟିର ମଣିଷ – ପ୍ରଫେସର ସୁବାଷ ନାୟକ" – (ଏକ ଆତ୍ମଜୀବନୀ), ଯାହାକି ଶାସ୍ତ୍ରୀୟ ଓଡିଆ ସାହିତ୍ୟ, ଭାରତୀୟ ସାହିତ୍ୟ ତଥା ବିଶ୍ୱ ସାହିତ୍ୟ ପାଇଁ ଏକ ଉଲ୍ଲେଖନୀୟ ସାହିତ୍ୟ ରଚନାରେ ସାଧନାରତ ।

ଜଣେ ସଫଳ ଗବେଷକ ଭାବରେ "ଓଡିଆ ସାହିତ୍ୟକୁ ନନ୍ଦିନୀ ଶତପଥୀ ଙ୍କ ଅବଦାନ" ପ୍ରସଙ୍ଗରେ ଗବେଷଣାତ୍ମକ ସନ୍ଦର୍ଭ ଲେଖି ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ (ପିଏଚ୍.ଡି.) ଉପାଧିପ୍ରାପ୍ତ । ସମ୍ପ୍ରତି ଉତ୍କଳ ବିଶ୍ୱବିଦ୍ୟାଳୟରେ ଉଚ୍ଚତର ଗବେଷଣା – ପୋଷ୍ଟ-ଡକ୍ଟରାଲ୍/ ଡକ୍ଟର ଅଫ୍ ଲିଟରେଚର୍ (ଡି.ଲିଟ୍.) ପ୍ରସଙ୍ଗ – "ଓଡିଆ ସାହିତ୍ୟ ର କବି କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଗୁଜୁରାଟୀ ସାହିତ୍ୟ ର କବି ନରେନ୍ଦ୍ର ମୋଦି ଙ୍କ କାବ୍ୟ ଜଗତ – ଏକ ଅଧ୍ୟୟନ" ଉପରେ ସ୍ୱତତ୍ତ୍ୱାବଧାରକ (ସେଲଫ୍ ଗାଇଡି) ଭାବରେ ଗବେଷଣା ପାଇଁ ପ୍ରସ୍ତୁତିରତ । ୬୦ରୁ ଉର୍ଦ୍ଧ୍ୱ ଗବେଷଣାତ୍ମକ ସନ୍ଦର୍ଭ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିବା ସହିତ ଅନେକ ପ୍ରକାଶନ ଅପେକ୍ଷାରେ । ନିଜ ଅଧିନରେ ଗବେଷଣା (ପିଏଚ୍.ଡି.) ଶିକ୍ଷାର୍ଥୀଙ୍କ ଗାଇଡ୍ ଭାବରେ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟାରମ୍ଭ ପାଇଁ ପ୍ରୟାସରତ ।

ସମାଜର ବିଭିନ୍ନ ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଜଡିତ ତଥା ସମ୍ମାନପ୍ରାପ୍ତ । ତନ୍ମଧ୍ୟରୁ ନିଖିଳ ଭାରତ ଓଡିଆ ଅଧ୍ୟାପକ ସମ୍ମିଳନୀ, ଓଡିଶା ଓ ଉତ୍କଳ ସାହିତ୍ୟ ସମାଜ ତଥା ଓଡିଆ ଗବେଷଣା ପରିଷଦର ଆଜୀବନ ସଦସ୍ୟ ଭାବରେ କାର୍ଯ୍ୟରତ ଏବଂ ୟୁଜିସି ସାରସ୍ୱତ ପତ୍ରିକା – "ରକ୍ ପେବୁଲ୍" ଓ ଓଡିଆ ସାରସ୍ୱତ ପତ୍ରିକା – "ଜନସୁଧା" ର ଆଜୀବନ ସଦସ୍ୟ ରୂପେ ସାହିତ୍ୟାନୁରାଗୀ । ଆନ୍ତର୍ଜାତୀୟ କଳା ଓ ସଂସ୍କୃତି ପରିଷଦର ୩୯ତମ ବିଶ୍ୱକବି ସମ୍ମିଳନୀ ୨୦୧୯ (କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର) ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ ତଥା ମହାବିଦ୍ୟାଳୟ ଶିକ୍ଷକ ସଂଗଠନର ଜାତୀୟ ସମ୍ମିଳନୀ – ୨୦୧୯ (ଏକାମ୍ର କଲେଜ, ଭୁବନେଶ୍ୱର) ଏବଂ ୟୁଜିସି ସାରସ୍ୱତ ପତ୍ରିକାର "ରକ୍ ପେବୁଲ୍" ର ଜାତୀୟ ସେମିନାର – ୨୦୧୯ (ବ୍ୟାସନଗର କଲେଜ, ଯାଜପୁର ରୋଡ)ରୁ ସାରସ୍ୱତ ମାନପତ୍ର ପ୍ରାପ୍ତ । ଢେଙ୍କାନାଳ ଜିଲ୍ଲା ସଂସ୍କୃତି ପରିଷଦ (ଜିଲ୍ଲା ମହୋତ୍ସବ)ରୁ କବି ସମ୍ମାନପ୍ରାପ୍ତ ତଥା ଜଗତ୍‌ସିଂହପୁର ର ପ୍ରତିଭା ଅନ୍ୱେଷଣ, ବିରିଡି ଅନୁଷ୍ଠାନରୁ ପ୍ରତିଭା ସମ୍ମାନପ୍ରାପ୍ତ । ଓଡିଶା ସାହିତ୍ୟ ଏକାଡେମୀ ତଥା କେନ୍ଦ୍ର ସାହିତ୍ୟ ଏକାଡେମୀ ଏବଂ ଶାସ୍ତ୍ରୀୟ ଓଡିଆ ଭାଷା ଜାତୀୟ ଆଲୋଚନା ଚକ୍ର ଓ କାଦମ୍ବିନୀ ସାହିତ୍ୟ ମହୋତ୍ସବ ଜାନୁୟାରୀ – ୨୦୨୦ ଏବଂ ୟୁଜିସି – କେୟାର ସାରସ୍ୱତ ପତ୍ରିକା "ରକ୍ ପେବୁଲ୍" – ସାରସ୍ୱତ ସନ୍ଦର୍ଭ (ଜାନୁୟାରୀ – ୨୦୨୦) ଉପସ୍ଥାପନା ଯୁକ୍ତ ମାନପତ୍ର ପ୍ରାପ୍ତ । ବିଦ୍ୟାଳୟର ପ୍ରଥମ ପାହାଚ ବଡହାଟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ଜଣେ ସଫଳ ଶିକ୍ଷାର୍ଥୀ ଭାବରେ (ଜାନୁୟାରୀ – ୨୦୨୦) ମାନପତ୍ର ପ୍ରାପ୍ତ । ବାଣୀ ସାହିତ୍ୟ ସଂସଦ, ଭୁବନରୁ ବାଣୀ ସମ୍ମାନପ୍ରାପ୍ତ ତଥା ଓଡିଶା ସାମ୍ବାଦିକ ସଂଘ (କଟକ ଜିଲ୍ଲା ସମ୍ମିଳନୀ – ଟାଙ୍ଗୀ – ଚୌଦ୍ୱାର – ୨୦୨୦)ରୁ ଶିକ୍ଷା ପ୍ରଶାସକ ମାନପତ୍ର ପ୍ରାପ୍ତ ।

ଭାରତୀୟ ଶିକ୍ଷା ନୀତି (ଜାତୀୟ ଶିକ୍ଷା ନୀତି – ୨୦୨୦) ପ୍ରସଙ୍ଗରେ ଆନ୍ତର୍ଜାତୀୟ ୱେବିନାର – କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର – ଅଗଷ୍ଟ – ୨୦୨୦ ତଥା ଭର୍ଚ୍ୟୁଆଲ୍ କନ୍‌ଫରେନ୍ସ – ୱାର୍ଲ୍ଡ ଏକାଡେମୀ ଅଫ୍ ଆକାଡେମିକ୍ ଡକ୍ଟର (ଆମେରିକା) – ଅକ୍ଟୋବର – ୨୦୨୦ ଓ ଇ-ୱାର୍କସପ୍ – ରିସର୍ଚ୍ଚ ମେଥୋଡଲୋଜି ଓ ପବ୍ଲିକେଶନ୍ ଏଥିକ୍ – ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟ (ଜେଏନ୍‌ୟୁ), ନୂଆଦିଲ୍ଲୀ – ଅକ୍ଟୋବର – ୨୦୨୦ରେ ସକ୍ରିୟ ଅଂଶଗ୍ରହଣ ଓ ମାନପତ୍ରପ୍ରାପ୍ତ ।

ଧର୍ମପତ୍ନୀ ତୁଳସୀ ସାହୁ (ଟିକି) ଓ କନ୍ୟାରତ୍ନ ତେଜସ୍ୱିନୀ ନାୟକ (ଲକି) ଙ୍କୁ ନେଇ ପ୍ରଫେସର ସୁବାଷ ନାୟକ ଙ୍କ ସଂସାର ।

**ଗୁଣମୁଗ୍ଧ ସାହିତ୍ୟସେବକ**

**(ପ୍ରଫେସର ଡକ୍ଟର ସୁବାଷ ନାୟକ)**

**www.professorsubashnayak.com**